GLIMPSES OF WORLD HISTORY : Vol. IV.

By Pandit Jawaharlal Nehru

Translated by Surendranath Dwivedy

Published by A. Mahaptra, Grantha Mandir, Cuttack-2

Reprinted January 1989 : 1100 copies

Library edition : Rs. 55.00

Paper-back : Rs. 50.00



ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ, ସୁତାହାଟ, କଟକ

ପୁନର୍ମୁଦ୍ରଣ : ଜାନୁଆରୀ, ୧୯୮୯
୧୧୦୦ ବହି

ପାଠାଗାର ସଂସ୍କରଣ : ଟ ୫୫.୦୦

ପେପର ବ୍ୟାକ୍ : ଟ ୫୦.୦୦

# ସୂଚୀପତ୍ର

# ୧୭୩ : ଇଜପ୍ଟର ସ୍ୱାଧୀନତା ସଂଗ୍ରାମ

ମେ ୨୦, ୧୯୩୩

ଆମେ ଏବେ ଇଜପ୍ଟକୁ ଯିବା ଏବଂ ସେଠାରେ ପ୍ରଗତିଶୀଳ ଜାତୀୟତାବାଦୀ ଓ ସାମ୍ରାଜ୍ୟବାଦୀ ଶକ୍ତି ଭିତରେ ଆଉ ଏକ ସଂଗ୍ରାମ ଅନୁସରଣ କରିବା । ଭାରତ ପରି ସେଠାରେ କ୍ଷମତାଶାଳୀ ହେଉଛି ବ୍ରିଟେନ । ଇଜପ୍ଟ ଅନେକ ଭାବରେ ଭାରତଠାରୁ ସ୍ୱତନ୍ତ୍ର ଏବଂ ବ୍ରିଟେନ ସେଠାରେ ଅପେକ୍ଷାକୃତ ଅଳ୍ପ କାଳ ହେଲା ରହିଛି । ତଥାପି ଦୁଇ ଦେଶ ଭିତରେ ଅନେକ ସମାନ ଜିନିଷ ଓ ଲକ୍ଷଣ ରହିଛି । ଭାରତ ଓ ଇଜପ୍ଟର ଜାତୀୟତାବାଦୀ ଆନ୍ଦୋଳନ ବିଭିନ୍ନ ପନ୍ଥା ଗ୍ରହଣ କରିଛନ୍ତି, କିନ୍ତୁ ମୌଳିକଭାବରେ ଜାତୀୟ ସ୍ୱାଧୀନତା ନିମନ୍ତେ ପ୍ରେରଣା ସମାନ ଏବଂ ଉଦ୍ଦେଶ୍ୟ ସମାନ । ଏହିସବୁ ଜାତୀୟତାବାଦୀ ଆନ୍ଦୋଳନକୁ ଦବାଇବା ନିମନ୍ତେ ବ୍ରିଟିଶ ସାମ୍ରାଜ୍ୟବାଦ ଯେଉଁସବୁ ଉଦ୍ୟମ କରିଛି ତାହା ମଧ୍ୟ ସମାନ । ତେଣୁ ଆମ ଭିତରୁ ପ୍ରତ୍ୟେକେ ପରସ୍ପରର ଅଭିଜ୍ଞତାରୁ ଅନେକ କଥା ଶିଖିପାରିବା । ଆମ ପକ୍ଷରେ ଭାରତରେ ଏକ ବିଶେଷ ଶିକ୍ଷା କରିବାର ଅଛି, କାରଣ ଇଜପ୍ଟ ଦୃଷ୍ଟାନ୍ତରୁ ବ୍ରିଟିଶର 'ସ୍ୱାଧୀନତା' ଦେବାର ଅର୍ଥ କଣ ଏବଂ ତାହା କେତେଦୂର ଯାଏ ଆମେ ତାହା ଦେଖିପାରିବା ।

ସବୁ ଆରବ ଦେଶ ଭିତରେ (ଆରବିଆ, ଇରାକ, ସିରିଆ, ପାଲେଷ୍ଟାଇନ୍) ଇଜପ୍ଟ ହେଉଛି ସର୍ବାପେକ୍ଷା ଉନ୍ନତ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଏହାହିଁ ରାଜପଥ—ସୁଏଜ କେନାଲ ତିଆରି ହେଲା ଦିନୁଁ ଜାହାଜମାନଙ୍କର ଏହା ହିଁ ବାଣିଜ୍ୟ ପଥ । ପଶ୍ଚିମ ଏସିଆର ଦେଶ ଅପେକ୍ଷା ଊନବିଂଶ ଶତାବ୍ଦୀର ନୂତନ ଇଉରୋପ ସହିତ ଏହାର ଅଧିକ ସମ୍ପର୍କ ଥିଲା । ଏହା ଏକ ଅତି ସ୍ୱତନ୍ତ୍ର ଜାତୀୟ ଅଙ୍ଗ ବିଶେଷ, ଅନ୍ୟ ଆରବ ଦେଶମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ, କିନ୍ତୁ ସେମାନଙ୍କ ସହିତ ଘନିଷ୍ଠ ସାଂସ୍କୃତିକ ବନ୍ଧନ ରହିଛି, କାରଣ ସେ ସମସ୍ତଙ୍କର ଏକା ଭାଷା, ପରମ୍ପରା ଓ ଧର୍ମ ରହିଛି । କାଏରୋର ଦୈନିକ ସମ୍ବାଦପତ୍ର ସବୁ ଆରବ ଦେଶକୁ ଯାଏ ଏବଂ ସେଠି ଏହାର ଖୁବ୍ ପ୍ରଭାବ ରହିଛି । ଏହିସବୁ ଦେଶ ଭିତରେ ଜାତୀୟତାବାଦ ଆନ୍ଦୋଳନ ପ୍ରଥମେ ଇଜପ୍ଟରେ ଦେଖାଦେଲା ଏବଂ ତେଣୁ ଇଜପ୍ଟ ଜାତୀୟତାବାଦ ପକ୍ଷରେ ଅନ୍ୟ ଆରବ ଦେଶ ଭିତରେ ଆଦର୍ଶରୂପେ ରହିବା ସ୍ୱାଭାବିକ ।

ଇଜିପ୍ଟ ସମ୍ବନ୍ଧରେ ଲେଖିଥିବା ଗତ ଚିଠିରେ ଆରବୀ ପାଶାଙ୍କ ନେତୃତ୍ୱରେ ଚାଲିଥିବା ୧୮୮୧-୮୨ର ଜାତୀୟତାବାଦୀ ଆନ୍ଦୋଳନ ଏବଂ ଏହା ଉପରେ ବ୍ରିଟେନଦ୍ୱାରା ଦମନ ହେଲା, ସେ କଥା ମୁଁ କହିଛି । ଆଧୁନିକ ସଂସ୍କାରକ ଜମାଲ୍ ଉଦ୍ଦିନ ଆଫଗାନୀଙ୍କ ସମ୍ବନ୍ଧରେ ଏବଂ ପଶ୍ଚିମର ନୂତନ ଭାବଧାରାର ରକ୍ଷଣଶୀଳ ଇସଲାମ ଉପରେ କପରି ପ୍ରଭାବ ପଡ଼ିଲା, ସେ କଥା ମୁଁ ତତେ କହିଛି । ଏହି ସଂସ୍କାରକମାନେ ପୁରୁଣା ନୀତି ବାକ୍ୟକୁ ଫେରିଯାଇ ଏବଂ ଶତ ଶତ ବର୍ଷର ଗତିରେ ଯେଉଁସବୁ ନୂତନ ଜିନିଷ ଯୋଗ ହୋଇ ଧର୍ମରେ ମିଶି ଯାଇଥିଲା, ତାହା ତ୍ୟାଗ କରି ଆଧୁନିକ ପ୍ରଗତି ସହିତ ଇସଲାମକୁ ମେଳ ଖୁଆଇବା ନିମନ୍ତେ ଚେଷ୍ଟା କରିଥିଲେ । ପ୍ରଗତିଶୀଳ ଲୋକଙ୍କର ତାପରର କାର୍ଯ୍ୟ ହେଲା 'ସାମାଜିକ' ଅନୁଷ୍ଠାନମାନଙ୍କରୁ ଧର୍ମକୁ ଅଲଗା କରିବା । ପୁରାତନ ଧର୍ମ ଆମର ଦୈନନ୍ଦିନ ଜୀବନର ପ୍ରତ୍ୟେକ ବିଭାଗକୁ ବିସ୍ତୃତ ଏବଂ ନିୟନ୍ତ୍ରଣ କରେ । ତେଣୁ ହିନ୍ଦୁ ଓ ମୁସଲମାନ ଧର୍ମ କେବଳ ଧର୍ମୋପଦେଶ ବ୍ୟତୀତ ବିବାହ, ଉତ୍ତରାଧିକାରୀ, ସିଭିଲ ଓ ଫୌଜଦାରୀ ଆଇନ, ରାଜନୀତିକ ସଂଗଠନ ଏବଂ ବାସ୍ତବିକ ପ୍ରାୟ ପ୍ରତ୍ୟେକ ଜିନିଷ ପାଇଁ ସାମାଜିକ ରୀତି ଓ ନିୟମ ବାନ୍ଧି ଦେଇଛି । ଅନ୍ୟ କଥାରେ କହିଲେ, ସେଗୁଡ଼ିକ ପୂର୍ଣ୍ଣ ସାମାଜିକ ଗଠନ ଧାର୍ଯ୍ୟ କରିଛନ୍ତି ଏବଂ ଏହାକୁ ଧାର୍ମିକ ମଞ୍ଜୁରୀ ଓ କର୍ତ୍ତୃତ୍ୱ ସହକାରେ ସ୍ଥାୟୀ କରିବା ନିମନ୍ତେ ଚେଷ୍ଟା କରନ୍ତି । ହିନ୍ଦୁ ଧର୍ମ ତାର କଠୋର ଜାତିପ୍ରଥାରେ ଏ ଦିଗରେ ବହୁଦୂର ଚାଲିଯାଇଛି । ଏପରି ସାମାଜିକ ଗଠନରେ ଧର୍ମଦୃଷ୍ଟିରୁ ସ୍ଥାୟିତ୍ୱ ହେତୁ ପରିବର୍ତ୍ତନ କଷ୍ଟକର ହୁଏ । ତେଣୁ ଅନ୍ୟତ୍ର ପରି ଇଜିପ୍ଟରେ ବି ପ୍ରଗତିପନ୍ଥୀ ଲୋକ ସାମାଜିକ ଗଠନ ଓ ଅନୁଷ୍ଠାନମାନଙ୍କରୁ ଧର୍ମକୁ ପୃଥକ୍ କରିବା ନିମନ୍ତେ ଚେଷ୍ଟା କଲେ । ଏହାର କାରଣ ସ୍ୱରୂପ ସେମାନେ ଦର୍ଶାଇଲେ ଯେ, ଏହି ସବୁ ଯେଉଁ ପୁରୁଣା ଅନୁଷ୍ଠାନମାନଙ୍କୁ ଅତୀତରେ ଧର୍ମ ବା ରୀତି ଲୋକଙ୍କ ଉପରେ ଲଦିଦେଇଛି, ଏହା ସେତେବେଳେ ଧର୍ମ-ପୁସ୍ତକ କାଳର ପ୍ରଚଳିତ ଅବସ୍ଥା ପ୍ରତି ଉପଯୋଗୀ ଓ ସୁବିଧାଜନକ ଯେ ଥିଲା ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ଅବସ୍ଥା ବହୁ ପରିମାଣରେ ଏବେ ବଦଳିଯାଇଛି ଏବଂ ପୁରାତନ ଅନୁଷ୍ଠାନ ସବୁ ସେଥିରେ ଖାପ ଖାଉ ନାହିଁ । ସାଧାରଣ ଅକଲ ଖଟାଇଲେ ଆମେ ଜାଣିପାରିବା ଯେ, ଗୋରୁଗାଡ଼ି ପାଇଁ ହୋଇଥିବା ନିୟମ ଏକ ମଟର ଗାଡ଼ି ବା ରେଲ ଗାଡ଼ିକି ଖଟିବ ନାହିଁ ।

ଏହି ପ୍ରଗତିପନ୍ଥୀ ଓ ସଂସ୍କାରକମାନେ ଏହିସବୁ ଯୁକ୍ତି କରୁଥିଲେ । ଏହା ଫଳରେ ସରକାର ଓ ଅନ୍ୟ ଅନେକ ଅନୁଷ୍ଠାନ କ୍ରମେ ଅଧିକ ଭାବରେ ବିଚ୍ଛିନ୍ନ ହୋଇଗଲା—ଅର୍ଥାତ୍ ଧର୍ମରୁ ପୃଥକ୍ ହୋଇଗଲା । ଆମେ ଦେଖିଛେ ଏହି ସ୍ରୋତ ତୁର୍କିରେ ସର୍ବାପେକ୍ଷା ବେଶି । ତୁର୍କି ପ୍ରଜାତନ୍ତ୍ରର ସଭାପତି ଭଗବାନଙ୍କ ନାମରେ ବି ଶପଥ ଗ୍ରହଣ କରନ୍ତି ନାହିଁ, ସେ ଏହା ନିଜର ଶପଥ କରି ନିଅନ୍ତି । ଇଜିପ୍ଟରେ ବ୍ୟାପାର ଏ ପର୍ଯ୍ୟନ୍ତ ହୋଇପାରି ନାହିଁ, କିନ୍ତୁ ସେଠାରେ ଓ ଅନ୍ୟ ମୁସଲମାନ ଦେଶମାନଙ୍କରେ ସେହି ପ୍ରବୃତ୍ତି ଦେଖାଯାଉଛି । ତୁର୍କି, ଇଜିପ୍ଟବାସୀ, ସିରିଆନ୍, ପର୍ସିଆନ୍ ପ୍ରଭୃତି ପୁରାତନ ଧର୍ମ ଦୃଷ୍ଟିରୁ ନୁହେଁ, ନୂତନ ଜାତୀୟତା ଭାବରେ

ଅଧିକ ଭାବରେ କହନ୍ତି । ସମ୍ଭବତଃ ପୃଥିବୀର ଅନ୍ୟ ଯେ କୌଣସି ମୁସଲମାନ ଗୋଷ୍ଠୀ ଭିତରେ ଏହି ଜାତୀୟତା ଭାବଧାରା ଗ୍ରହଣ କରିବାରେ ଭାରତର ମୁସଲମାନମାନେ ହିଁ ଅଧିକ ଭାବରେ ପ୍ରତିରୋଧ କରିଛନ୍ତି ଏବଂ ଅନ୍ୟ ଇସଲାମ ଦେଶମାନଙ୍କରେ ଥିବା ତାଙ୍କର ସ୍ୱଧର୍ମୀ ଲୋକଙ୍କ ଅପେକ୍ଷା ଏମାନେ ଅଧିକ ରକ୍ଷଣଶୀଳ ଓ ଧର୍ମଭାବାପନ୍ନ । ଏହା ଏକ ବିଚିତ୍ର ଓ ଆଶ୍ଚର୍ଯ୍ୟ ବିଷୟ । ସାଧାରଣତଃ ବୁର୍ଜୋୟା ଶ୍ରେଣୀ-ପୁଞ୍ଜିବାଦୀ ଆର୍ଥନୀତିକ ପ୍ରଥା ଅଧୀନରେ ମଧ୍ୟବିତ୍ତ ଶ୍ରେଣୀର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ନୂତନ ଜାତୀୟତା ବି ବୃଦ୍ଧି ପାଇଛି । ଏହି ବୁର୍ଜୋୟା ଶ୍ରେଣୀ ବୃଦ୍ଧି ଭାରତୀୟ ମୁସଲମାନଙ୍କ ଭିତରେ ପଛେଇ ଯାଇଛି ଏବଂ ଏହି ଅସଫଳତା ନୂତନ ଜାତୀୟତା ଆଡ଼କୁ ସେମାନେ ଗତି କରିବାରେ ଦୃଢ଼ଏତ ବାଧା ଦେଇଛି । ଏହା ମଧ୍ୟ ସମ୍ଭବ ଯେ, ଭାରତରେ ସେମାନେ ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟ ବୋଲି ମନରେ ଏତେ ଭୟ ଜାତ ହୋଇଛି ଯେ, ସେମାନେ ରକ୍ଷଣଶୀଳ ହୋଇପଡ଼ିଛନ୍ତି ଏବଂ ପୁରୁଣା ପରମ୍ପରା ସହ ଛନ୍ଦି ହୋଇଛନ୍ତି ଏବଂ ନୂତନ ଉଦ୍ଭାବିତ ମତ ଓ ଭାବଧାରା ପ୍ରତି ସନ୍ଦିହାନ ହୋଇ ପଡ଼ିଛନ୍ତି । ଏହିପରି ମନୋବୃତ୍ତି ହେତୁ ଦୃଢ଼ଏତ ଯେତେବେଳେ ପ୍ରାୟ ଏକ ହଜାର ବର୍ଷ ପୂର୍ବେ ପ୍ରଥମ ଇସଲାମୀୟ ଆକ୍ରମଣ ସବୁ ହେଲା, ହିନ୍ଦୁମାନେ ନିଜର ଗୋଷ୍ଠୀ ଭିତରେ ଆବଦ୍ଧ ହୋଇଗଲେ ଏବଂ ଅତି କଠୋର ଜାତିରେ ବନ୍ଧା ସମ୍ପ୍ରଦାୟ ହେଲେ ।

୧୯ଶ ଶତାବ୍ଦୀର ଶେଷ କ୍ୱାର୍ଟର ଓ ତାପରେ ବିଦେଶୀ ବେପାର ବଢ଼ିବା ସଙ୍ଗେ ସଙ୍ଗେ ଇଜିପ୍ଟରେ ନୂତନ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ ଗଢ଼ି ଉଠିଲା । ଏକ 'ଫେଲୋ' ବା କୃଷକ ପରିବାରରୁ ସାଦ୍ ଜଗଲୁଲ ମଧ୍ୟବିତ୍ତ ଶ୍ରେଣୀକୁ ଉନ୍ନୀତ ହେଲେ । ୧୮୮୧-୮୨ରେ ଯେତେବେଳେ ଆରବୀ ପାଶା ବ୍ରିଟିଶ ସହ ଲଢ଼ିଥିଲେ, ସେତେବେଳେ ସେ ଯୁବକ ଥିଲେ ଏବଂ ସେ ଆରବୀଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ସେହିଦିନଠାରୁ ୧୯୨୭ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ୭୫ ବର୍ଷ କାଳ ସେ ଇଜିପ୍ଟର ସ୍ୱାଧୀନତା ପାଇଁ କାର୍ଯ୍ୟ କଲେ ଏବଂ ଇଜିପ୍ଟ ସ୍ୱାଧୀନତା ଆନ୍ଦୋଳନର ନେତା ହେଲେ । ସେ ଇଜିପ୍ଟର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ, କୃଷକ ପରିବାରରୁ ଆସିଥିବାରୁ କୃଷକମାନଙ୍କର ପ୍ରିୟ ଥିଲେ ଏବଂ ମଧ୍ୟବିତ୍ତ ଶ୍ରେଣୀର ଲୋକ ହିସାବରେ ସେମାନେ ତାଙ୍କୁ ଦେବତା ପରି ପୂଜା କରୁଥିଲେ । କିନ୍ତୁ ତଥାକଥିତ ଆଭିଜାତ୍ୟ ଶ୍ରେଣୀ, ପୁରୁଣା ସାମନ୍ତବାଦୀ ଜମିଦାର ଶ୍ରେଣୀ ତାଙ୍କୁ ଭଲ ଭାବରେ ଗ୍ରହଣ କଲେ ନାହିଁ, ସେମାନେ ମଧ୍ୟବିତ୍ତ ଶ୍ରେଣୀର ଜାଗରଣକୁ ଭଲ ପାଇଲେ ନାହିଁ, ଏହା କ୍ରମେ ତାଙ୍କ ଦେଶର ଦଖଲ କରିଥିବା ପ୍ରଧାନ ସ୍ଥାନରୁ ଧକ୍କା ଦେଇ ବାହାର କରି ଦେଲେ । ସେମାନଙ୍କ ଚକ୍ଷୁରେ ଜଗଲୁଲ ହେଉଛନ୍ତି ଜଣେ 'ହଠାତ୍ ବାବୁ' ଏବଂ ଗାନ୍ଧୀଙ୍କୁ ଏକ ନେତା ଓ ନିଜ ଶ୍ରେଣୀର ପ୍ରତିନିଧି ହିସାବରେ ସେମାନଙ୍କ ବିରୁଦ୍ଧରେ ଲଢ଼ିବାକୁ ପଡ଼ିଥିଲା । ଭାରତ ପରି ଏହି ସୀମାନ୍ତ ଭୂସ୍ୱାମୀ ଶ୍ରେଣୀ ଭିତରୁ ନିଜ ଲାଗି ସମର୍ଥନ ପାଇବା ନିମନ୍ତେ ବ୍ରିଟିଶ ଚେଷ୍ଟା କଲେ । ଏମାନେ ଯେତେ ଇଜିପ୍ଟବାସୀ ନୁହନ୍ତି ବେଶୀ ହେଉଛନ୍ତି, ତୁର୍କିବାସୀ ଏବଂ ପୁରୁଣା ଶାସକ ସମ୍ପ୍ରଦାୟର ପ୍ରତିନିଧି ।

ସେହିପରି ଭାବରେ ସାମ୍ରାଜ୍ୟବାଦର ସବଂସମ୍ମତ ଓ ସୁଚେଷ୍ଟିତ ଢଙ୍ଗରେ ବ୍ରିଟିଶ ଇଜିପ୍ଟରେ କୌଣସି ନା କୌଣସି ସାମାଜିକ ଗୋଷ୍ଠୀ ବା ରାଜନୀତିକ ସମ୍ପ୍ରଦାୟ ସହିତ ଯୋଗ କରିବାକୁ ଚେଷ୍ଟା କଲେ ଏବଂ ଗୋଟିଏ ଶ୍ରେଣୀ ବା ଗୋଷ୍ଠୀଙ୍କୁ ଅନ୍ୟ ବିରୁଦ୍ଧରେ ମତାଇ ଏକ ଜାତୀୟତା ବୃଦ୍ଧି ହେବାରେ ବାଧା ଦେଲେ । ଭାରତ ପରି ସେଠି ମଧ୍ୟ ସେମାନେ ସଂଖ୍ୟାଲଘିଷ୍ଠ ପ୍ରଶ୍ନ ଉଠାଇବାକୁ ଚେଷ୍ଟା କଲେ, ଖ୍ରୀଷ୍ଟିୟାନ କୋପ୍ଟମାନଙ୍କୁ ଇଜିପ୍ଟରେ ଅଳ୍ପ ସଂଖ୍ୟକ ବୋଲି କୁହାଗଲା । କିନ୍ତୁ ଏଥିରେ ସେମାନେ ବିଫଳ ହେଲେ । ଏସବୁ ମଧ୍ୟ ସେମାନେ ସମର୍ଥିତ ଢଙ୍ଗରେ ମୁହଁରେ ପବିତ୍ର ବଚନ କହି ଏବଂ ଅନ୍ୟ ପକ୍ଷର ମଙ୍ଗଳ ସକାଶେ ସେମାନେ ପ୍ରତ୍ୟେକ ଜିନିଷ କରୁଛନ୍ତି ବୋଲି ବାହାନା କରି ଏସବୁ କରି ଯାଉଥିଲେ । ସେମାନେ 'ମୂକ ଜନତା'ର ହେଲେ 'ମାରଫତ୍‌ଦାର' ଏବଂ ଯଦି 'ଆନ୍ଦୋଳନକାରୀ' ଏବଂ 'ଦେଶରେ ପ୍ରତିଷ୍ଠା ନ ଥିବା' ସେହିପରି ଲୋକେ ସବୁ ଗଣ୍ଡଗୋଳ ସୃଷ୍ଟି ନକରନ୍ତି, ତେବେ ସବୁ ଭଲ ଭାବରେ ଚାଲିଯାନ୍ତା । ଘଟଣା କ୍ରମେ ଏହି ଉପକାର ଦେବା ସ୍ୱାର୍ଥରେ ବହୁସଂଖ୍ୟକ ଉପକୃତ ଲୋକଙ୍କୁ ବିନାଶ କରାଯାଏ । ସମ୍ଭବତଃ ଏହି ଭାବରେ ସେମାନେ ଦୁନିଆର ଦୁର୍ଦ୍ଦଶାରୁ ରକ୍ଷା ପାଇଛନ୍ତି ଏବଂ ସ୍ୱର୍ଗ ଲୋକକୁ ସେମାନଙ୍କ ପ୍ରତ୍ୟାବର୍ତ୍ତନ ଚଞ୍ଚଳ ହୋଇଯାଇଛି ।

ଯୁଦ୍ଧକାଳ ସାରା ଏବଂ ତାପରେ ଦୀର୍ଘକାଳ ପର୍ଯ୍ୟନ୍ତ ଇଜିପ୍ଟ ସାମରିକ ଆଇନ ଅଧୀନରେ ରହିଛି । ଯୁଦ୍ଧକାଳ ଭିତରେ ଏକ ନିରସ୍ତ୍ରୀକରଣ ଆଇନ ଓ ବାଧ୍ୟତାମୂଳକ ସୈନ୍ୟ ଶିକ୍ଷା ଆଇନ ପାସ ହେଲା । ଦେଶରେ ବ୍ରିଟିଶ ସେନା ଭରିଥିଲା । ଯୁଦ୍ଧ ଆରମ୍ଭରେ ଏହା ଏକ ବ୍ରିଟିଶ ସଂରକ୍ଷଣ ବୋଲି ଘୋଷଣା ହୋଇଥିଲା ।

୧୯୧୮ରେ ଶାନ୍ତି ଆସିବା ସଙ୍ଗେ ସଙ୍ଗେ ଇଜିପ୍ଟରେ ଜାତୀୟତାବାଦୀମାନେ ପୁନର୍ବାର କର୍ମଠ ହୋଇପଡ଼ିଲେ ଏବଂ ବ୍ରିଟିଶ ସରକାର ଓ ପାରିସରେ ହୋଇଥିବା ଶାନ୍ତି ସମ୍ମିଳନୀରେ ଇଜିପ୍ଟର ସ୍ୱାଧୀନତା ଦାବୀ ଉପସ୍ଥାପିତ କରିବା ନିମନ୍ତେ ପ୍ରସ୍ତୁତ କଲେ । ସେତେବେଳେ ଇଜିପ୍ଟରେ ପ୍ରକୃତ ଦଳ କିଛି ନ ଥିଲା । ବତନିଷ୍ଟ (Watanist) ନାମକ ଏକ ଜାତୀୟ ଦଳ ଥିଲା—ତାହାର ଅଳ୍ପ ସଭ୍ୟ ଥିଲେ । ଇଜିପ୍ଟର ସ୍ୱାଧୀନତା ଦାବୀ ପାଇଁ କହିବା ନିମନ୍ତେ ସାଦ ଜଗଲୁଲ ପାଶାଙ୍କ ନେତୃତ୍ୱରେ ଗୋଟିଏ ବଡ଼ ଶିଷ୍ଟମଣ୍ଡଳୀ ( ଡେପୁଟେସନ ) ଲଣ୍ଡନ ଓ ପାରିସକୁ ପଠାଇବା ନିମନ୍ତେ ସ୍ଥିର ହେଲା ଏବଂ ଏହା ପଛରେ ବହୁତ ଲୋକ ସମର୍ଥନ ସହ ଏହାକୁ ଏକ ଜାତୀୟ ଡେପୁଟେସନ ରୂପେ ପରିଣତ କରିବା ନିମନ୍ତେ ବ୍ୟାପକ ସଂଗଠନ ତିଆ କରାଗଲା । ଇଜିପ୍ଟର ମହାନ ଓ୍ୟାଫଦ ଦଳର ଏହି ହେଲା ଆରମ୍ଭ, କାରଣ ଓ୍ୟାଫଦ ଅର୍ଥ ହେଉଛି ଡେପୁଟେସନ । ଏହି ଡେପୁଟେସନ ଲଣ୍ଡନ ଯିବାପାଇଁ ବ୍ରିଟିଶ ସରକାର ଅନୁମତି ଦେଲା ନାହିଁ ଏବଂ ୧୯୧୯ ମାର୍ଚ୍ଚ ମାସରେ ଜଗଲୁଲ ଓ ଅନ୍ୟ ନେତାମାନଙ୍କୁ ଗିରଫ କରାଗଲା ।

ଏହା ଫଳରେ ଏକ ରକ୍ତାକ୍ତ ବିପ୍ଳବ ଆରମ୍ଭ ହେଲା । କେତେକ ବ୍ରିଟିଶ ଲୋକ ନିହତ ହେଲେ ଏବଂ କାଏରୋ ସହର ଓ ଅନ୍ୟ କେତୋଟି କେନ୍ଦ୍ର ବିପ୍ଳବୀ କମିଟି ହାତରେ ରହିଗଲା । ଅନେକ ସ୍ଥାନରେ ସାଧାରଣ ନିରାପତ୍ତା ରକ୍ଷା କରିବା ନିମନ୍ତେ ଜାତୀୟତାବାଦୀ କମିଟିମାନ ଗଢ଼ାହେଲା । ଏହି ବିଦ୍ରୋହରେ ବିଶ୍ୱବିଦ୍ୟାଳୟର ଛାତ୍ରମାନେ ମୁଖ୍ୟ ଭାବରେ ଭାଗ ନେଲେ । ଯାହାହେଉ ଏହି ପ୍ରାଥମିକ ସାଫଲ୍ୟ ପରେ ବିଦ୍ରୋହ ଅଧିକ ପରିମାଣରେ ଦବାଇ ଦିଆଗଲା ଯଦିଓ ବେଳେ ବେଳେ ଇଂରେଜ କର୍ମଚାରୀଙ୍କୁ ହତ୍ୟା କରାଯାଇଥିଲା । କିନ୍ତୁ ଯଦିଓ କ୍ରିୟାଶୀଳ ବିଦ୍ରୋହକୁ ଦବାଇ ଦିଆଗଲା ଆନ୍ଦୋଳନ ଦମନ ହୋଇପାରି ନ ଥିଲା । ଏହା ଏହାର କୌଶଳ ବଦଳାଇଲା ଏବଂ ଦ୍ୱିତୀୟ ପ୍ରବାହରେ ପରିଣତ—ତାହା ହେଉଛି ନିଷ୍କ୍ରିୟ ପ୍ରତିରୋଧ । ଏହା ଏତେ ସଫଳ ହେଲା ଯେ, ଇଜିପ୍ଟର ଦାବୀ ପୂରଣ କରିବା ନିମନ୍ତେ କିଛି ପ୍ରତିକାର କରିବାକୁ ବ୍ରିଟିଶ ସରକାର ବାଧ୍ୟ ହେଲା । ଲର୍ଡ଼ ମିଲନରଙ୍କ ଅଧୀନରେ ଏକ କମିଶନ ଇଂଲଣ୍ଡରୁ ପଠାଗଲା । ଇଜିପ୍ଟର ଜାତୀୟତାବାଦୀମାନେ ଏହି କମିସନ ବର୍ଜନ କରିବା ନିମନ୍ତେ ସ୍ଥିର କଲେ ଏବଂ ଏହା କରିବାରେ ସେମାନେ ଅପୂର୍ବ ସାଫଲ୍ୟ ଲାଭ କଲେ । ମିଲନର କମିସନ ବର୍ଜନ କରିବାରେ ଛାତ୍ରମାନେ ପୁଣି ପ୍ରଧାନ ଭାଗ ନେଲେ । ଜାତୀୟ ପ୍ରତିରୋଧରେ କମିସନ ଏପରି ପ୍ରଭାବିତ ହେଲେ ଯେ, ସେମାନେ କେତେକ ସୁଦୂରଗାମୀ ସୁପାରିଶସବୁ କଲେ । ବ୍ରିଟିଶ ସରକାର ଏସବୁକୁ ଅବଜ୍ଞା ଦେଖାଇଲା ଏବଂ ୧୯୧୯ ଆରମ୍ଭରୁ ୧୯୨୨ର ପ୍ରଥମ ଭାଗ ପର୍ଯ୍ୟନ୍ତ ତିନି ବର୍ଷ କାଳ ଇଜିପ୍ଟରେ ସଂଗ୍ରାମ ଚାଲିଲା । ପୂର୍ଣ୍ଣ ସ୍ୱାଧୀନତା—'ଇସ୍ତିକଲାଲ ଅଲତାମ୍'—ଛଡ଼ା ଆଉ କିଛି କମ୍‌ରେ ଇଜିପ୍ଟବାସୀ ସନ୍ତୁଷ୍ଟ ହେଲେ ନାହିଁ ।

୧୯୧୯ରେ ତାଙ୍କ ଗିରଫର ଉଚ୍ଛେଦନ ପରେ ଜଗଲୁଲ ପାଶା ଖଲାସ ହେଲେ । ୧୯୨୧ ଡିସେମ୍ବର ମାସରେ ସେ ପୁଣି ଗିରଫ ହେଲେ ଏବଂ ଦେଶାନ୍ତର କରି ଦିଆଗଲା । କିନ୍ତୁ ବ୍ରିଟିଶଙ୍କ ଦୃଷ୍ଟିରୁ ଏହା ଇଜିପ୍ଟର ଅବସ୍ଥାରେ କିଛି ଉନ୍ନତି ଆଣିଲା ନାହିଁ ଏବଂ ଇଜିପ୍ଟବାସୀଙ୍କୁ ବୋଧ କରିବା ନିମନ୍ତେ ସେମାନଙ୍କୁ କିଛି କାର୍ଯ୍ୟକରିବାକୁ ବାଧ୍ୟ ହେବାକୁ ହେଲା । ଜଗଲୁଲ ମୀମାଂସା ବିରୋଧୀ ଉଗ୍ରପନ୍ଥୀ ନ ଥିଲେ ସୁଦ୍ଧା ମୀମାଂସା କରିବାର ସମସ୍ତ ଉଦ୍ୟମ ବିଫଳ ହୋଇଥିଲା । ବାସ୍ତବିକ କେତେକ ଲୋକ ଥରେ ଜଗଲୁଲଙ୍କୁ ହତ୍ୟା କରିବା ନିମନ୍ତେ ପ୍ରକୃତରେ ଉଦ୍ୟମ କରିଥିଲେ । ଜଗଲୁଲ ବ୍ରିଟିଶ ସହ ଦୁର୍ବଳ ମୀମାଂସା ସବୁ କରି ସେମାନଙ୍କ ପ୍ରତି ବିଶ୍ୱାସଘାତକତା କରୁଛନ୍ତି ବୋଲି ସେମାନେ ତାଙ୍କୁ ଅଭିଯୁକ୍ତ କଲେ । କିନ୍ତୁ ସେତେବେଳେ ବ୍ରିଟିଶ ସରକାର ଓ ଇଜିପ୍ଟ ଜାତୀୟତାବାଦୀଙ୍କ ପକ୍ଷରେ ସମ୍ମତ ହେବାରେ ବିଫଳ ହେବାର ପ୍ରକୃତ କାରଣ ହେଉଛି ମୌଳିକ—ଏବେ ବି ତାହା ରହିଛି । ଠିକ୍ ଭାରତରେ ଯେଉଁ କାରଣରୁ ମିଳାମିଶା ହୋଇପାରୁ ନାହିଁ ଏହା ସେହି ପ୍ରକାର କାରଣ । ଇଜିପ୍ଟ ଜାତୀୟତାବାଦୀମାନେ ଇଜିପ୍ଟରେ ସବୁ ବ୍ରିଟିଶ ସ୍ୱାର୍ଥକୁ ଅବହେଳା କରିବାକୁ ଚାହୁଁ ନ

ଥିଲେ । ସେମାନେ ଏହା ଆଲୋଚନା କରିବା ନିମନ୍ତେ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲେ ଏବଂ ବ୍ରିଟିଶ ସାମ୍ରାଜ୍ୟର ବେପାର ପାଇଁ ବିଶେଷ ସ୍ୱାର୍ଥ, ଅସଲ ପଥ ଓ ଅନ୍ୟ ବ୍ୟାପାରରେ ସୁବିଧା ଦେବା ନିମନ୍ତେ ସେମାନେ ପ୍ରସ୍ତୁତ ଥିଲେ, କିନ୍ତୁ କେବଳ ତାଙ୍କର ପୂର୍ଣ୍ଣ ସ୍ୱାଧୀନତା ସ୍ୱୀକୃତ ହେଲେ ଯାଇ ସେମାନେ ଏସବୁ ଆଲୋଚନା କରିବେ—ଯାହାହେବ ସେଥିରେ ତାଙ୍କର ସ୍ୱାଧୀନତା ଉପରେ ହାନି ପହଞ୍ଚ କିଛି ହେବ ନାହିଁ । ଅନ୍ୟ ପକ୍ଷରେ ଇଂଲଣ୍ଡ ଭାବିଲା ଯେ କେତେ ସ୍ୱାଧୀନତା ଦେବା ଦରକାର ଏହା କହିବା ହେଲା ତାର କାମ ଏବଂ ଏହି ସ୍ୱାଧୀନତା ପୁଣି ତାର ସ୍ୱାର୍ଥ ଅନୁସାରେ ହେବ— ପ୍ରଥମେ ନିଜ ସ୍ୱାର୍ଥ ରକ୍ଷା କରିବାକୁ ହେବ ।

ତେଣୁ ରାଜିନାମା ପାଇଁ କିଛି ସାଧାରଣ କ୍ଷେତ୍ର ରହିଲା ନାହିଁ । କିନ୍ତୁ ବ୍ରିଟିଶ ସରକାର ବୋଧ କଲା ଶୀଘ୍ର କିଛି କରିବା ଦରକାର ଏବଂ ତେଣୁ କୌଣସି ରାଜିନାମା ହୋଇ ନ ପାରି ସୁଦ୍ଧା ୧୯୨୨ ଫେବୃୟାରୀ ୨୮ ତାରିଖରେ ଏହା ଏକ ଘୋଷଣା ପତ୍ର ବାହାର କଲା । ସେଥିରେ କୁହାଗଲା ଯେ, ଭବିଷ୍ୟତରେ ସେମାନେ ଇଜିପ୍ଟକୁ 'ଏକ ସ୍ୱାଧୀନ ରାଜ୍ୟ' **(Independent Sovereign State)** ଭାବରେ ସ୍ୱୀକାର କରିବେ—କିନ୍ତୁ—ଏହା ଏକ ବଡ଼, କିନ୍ତୁ—ସେମାନଙ୍କ ବିଚାର ପାଇଁ ଗୁଡ଼ିଏ ବିଷୟ ରଖାଗଲା । ତାହା ହେଉଛି— ୧—ଇଜିପ୍ଟରେ ବ୍ରିଟିଶ ସାମ୍ରାଜ୍ୟର ଯାତାୟାତ ପଥର ନିର୍ବିଘ୍ନତା । ୨—ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ସମସ୍ତ ବିଦେଶୀ ଆକ୍ରମଣ ବା ହସ୍ତକ୍ଷେପରୁ ଇଜିପ୍ଟକୁ ରକ୍ଷା କରିବା । ୩—ଇଜିପ୍ଟରେ ବିଦେଶୀ ସ୍ୱାର୍ଥ ଓ ସଂଖ୍ୟା ଲଘିଷ୍ଠ ସମ୍ପ୍ରଦାୟର ରକ୍ଷା । ୪—ସୁଦାନର ଭବିଷ୍ୟତ ପ୍ରଶ୍ନ ।

ଏହି ସବୁ ନିଜ ହାତରେ ରଖିବା କଥା ଠିକ୍ ଭାଇବିରାଦର ଭିତରେ ପରିବାରର ସାମଞ୍ଜସ୍ୟ ରହିବା ପରି ଭାରତ ସହିତ ମିଳିଯାଉଛି; ଆମେ ତାକୁ 'ହାତର ପାଞ୍ଚ' ବୋଲି କହୁ ଏବଂ ଏଠି ଏହାର ସଂଖ୍ୟା ବହୁତ ବେଶୀ । ଏହିସବୁ 'ହାତର ପାଞ୍ଚ' କଥା ଗୃହୀତ ହେଲା ନାହିଁ, କାରଣ ଯେତେ ସରଳ ଓ ନିର୍ଦ୍ଦୋଷ ପରି ଏହା ଦେଖାଗଲେ ସୁଦ୍ଧା ଏହାର ଅର୍ଥ ହେଲା ଦେଶର ଆଭ୍ୟନ୍ତରୀଣ ବା ବୈଦେଶିକ ସମସ୍ୟାରେ ପ୍ରକୃତ ସ୍ୱାଧୀନତା ରହିବ ନାହିଁ । ତେଣୁ ୧୯୨୨ ଫେବୃୟାରୀ ୨୮ ତାରିଖରେ ବ୍ରିଟିଶ ସରକାରର ସ୍ୱାଧୀନତା ଘୋଷଣା ଏକପାଖିଆ କାର୍ଯ୍ୟ—ଏହା ଇଜିପ୍ଟରେ ସ୍ୱୀକୃତ ହେଲା ନାହିଁ । ବ୍ରିଟେନର ଅନୁକୂଳ ହାତର ପାଞ୍ଚ କ୍ଷମତା ରଖି ସ୍ୱାଧୀନତା କିପରି ହୋଇପାରେ, ତାହା ପରବର୍ତ୍ତୀ ବର୍ଷମାନଙ୍କରେ ଇଜିପ୍ଟରେ ଭଲଭାବରେ ଦେଖାଯାଇଛି ।

ଏହି 'ସ୍ୱାଧୀନତା' ସତ୍ତ୍ୱେ ଦେଢ଼ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ବ୍ରିଟିଶ କର୍ମଚାରୀଙ୍କ ଅଧୀନରେ ସାମରିକ ଆଇନ ଜାରି ରହିଲା । ଇଜିପ୍ଟ ସରକାର ଏକ କ୍ଷତିପୂରଣ ଆଇନ ପାସ୍ କରିବା ପରେ ଏହା ଶେଷ ହେଲା—ଅର୍ଥାତ୍ ସାମରିକ ଆଇନ କାଳରେ କର୍ମଚାରୀମାନେ ଯେତେ ବେଆଇନ କାମ କରିଥିବେ ସେଥିଲାଗି ସେମାନଙ୍କୁ ଦାୟୀ କରାଯିବ ନାହିଁ ।

ନୂତନ 'ସ୍ୱାଧୀନ' ଇଜିପ୍ଟକୁ ଏକ ଅତି ପ୍ରତିଗାମୀ ଶାସନ ଖସଡ଼ା ଦିଆଗଲା—ରାଜା ହାତରେ ପ୍ରଭୂତ କ୍ଷମତା ଦିଆଗଲା—ରାଜା ଫୁଆଡ଼ଙ୍କୁ ବିଚରା ଇଜିପ୍ଟବାସୀଙ୍କ ଉପରେ ଲଦି ଦିଆଗଲା । ରାଜା ଫୁଆଡ଼ ଓ ବ୍ରିଟିଶ କର୍ମଚାରୀଙ୍କ ଭିତରେ ଖୁବ୍ ଭଲ ପଡ଼ିଲା; ଉଭୟେ ଜାତୀୟତାବାଦୀଙ୍କୁ ଘୃଣା କଲେ ଏବଂ ସେମାନେ ଲୋକଙ୍କ ପାଇଁ ସ୍ୱାଧୀନତାର ଭାବ ବା ଏପରିକି ପ୍ରକୃତ ପାର୍ଲିଆମେଣ୍ଟାରୀ ସରକାର ହେବାରେ ଆପତ୍ତି ଦର୍ଶାଇଲେ । ଫୁଆଡ଼ ଆପଣାକୁ ସରକାର ବୋଲି ମନେ କଲେ ଏବଂ ବ୍ରିଟିଶ ସଙ୍ଗୀନ୍ ଉପରେ ନିର୍ଭର କରି ଡିକଟେଟର ଭାବରେ ଶାସନ କଲେ—ସଙ୍ଗୀନ କେବେ ଯେ ତାଙ୍କୁ ନ ମିଳୁଥିଲା ଏପରି ନୁହେଁ ।

ଇଜିପ୍ଟ ସ୍ୱାଧୀନତା ଘୋଷଣା ପରେ ବ୍ରିଟିଶ ସରକାରର ପ୍ରଥମ ପରସେବା କାର୍ଯ୍ୟ ହେଲା ନୂତନ ରାଜୁତିରେ ଯେଉଁସବୁ କର୍ମଚାରୀ ଅବସର ଗ୍ରହଣ କରୁଥିଲେ କ୍ଷତିପୂରଣ ସ୍ୱରୂପ ପ୍ରଚୁର ପରିମାଣରେ ସେମାନଙ୍କ ପାଇଁ ଧନ ଦାବୀ । ଇଜିପ୍ଟ ସରକାର ଭାବରେ ରାଜା ଫୁଆଡ଼ ସହଜରେ ସମ୍ମତ ହୋଇଗଲେ ଏବଂ ଏହିରୂପେ ପ୍ରକାଣ୍ଡ ପରିମାଣ ୬,୫୦୦,୦୦୦ ପାଉଣ୍ଡ ଦିଆଗଲା—ଜଣେ ଉଚ୍ଚ କର୍ମଚାରୀ ଏପରିକି ୮,୫୦୦ ପାଉଣ୍ଡ ପାଇଲା । ଆହୁରି ମଜାର କଥା ହେଉଛି ଯେଉଁସବୁ କର୍ମଚାରୀ ଅବସର ଗ୍ରହଣ କରିଥିବା ହେତୁ ଏତେ ପ୍ରଚୁର ପରିମାଣରେ କ୍ଷତିପୂରଣ ପାଇଥିଲେ, ସେମାନଙ୍କ ଭିତରୁ କେତେକଙ୍କୁ ସଙ୍ଗେ ସଙ୍ଗେ ବିଶେଷ ଚୁକ୍ତିରେ ପୁଣି ନିଯୁକ୍ତ କରାଗଲା । ମନେରଖ, ଇଜିପ୍ଟ କିଛି ଗୋଟାଏ ବଡ଼ ଦେଶ ନୁହେଁ ଏବଂ ଏହାର ଲୋକସଂଖ୍ୟା ଯୁକ୍ତପ୍ରଦେଶର ଲୋକସଂଖ୍ୟାର ଏକ-ତୃତୀୟାଂଶରୁ କମ୍ ହେବ ।

ଇଜିପ୍ଟ ଶାସନ ଖସଡ଼ାରେ ଧାର୍ଯ୍ୟ ହୋଇଛି ଯେ, "ଜାତିଠାରୁ ହିଁ ସମସ୍ତ କ୍ଷମତା ଉଦ୍ଭୂତ ହୁଏ ।" ପ୍ରକୃତରେ ଦେଖିବାକୁ ଗଲେ ନୂତନ ଶାସନ ଖସଡ଼ା କାର୍ଯ୍ୟକାରୀ ହେଲା ଦିନୁଁ ଇଜିପ୍ଟ ପାର୍ଲିଆମେଣ୍ଟ ଖୁବ୍ ଅଳ୍ପକାଳ ରହିଛି । ମୋତେ ଯେତେଦୂର ଜଣା ଗୋଟିଏ ହେଲେ ପାର୍ଲିଆମେଣ୍ଟ ତାର ପୂରା ସମୟ ରହିପାରି ନାହିଁ । ବାରମ୍ବାର ରାଜା ଫୁଆଡ଼ଙ୍କ ହାତରେ ଏହାର ହଠାତ୍ ମୃତ୍ୟୁ ହୋଇଛି—ସେ ଶାସନ ଖସଡ଼ା ସ୍ଥଗିତ ରଖିଦେଇ ଜଣେ ଏକଛତ୍ର ଶାସକ ଭାବରେ ଶାସନ କରନ୍ତି ।

୧୯୨୩ରେ ନୂତନ ପାର୍ଲିଆମେଣ୍ଟର ପ୍ରଥମ ନିର୍ବାଚନ ହେଲା । ଜଗଲୁଲ ପାଶା ଓ ତାଙ୍କ ଦଳ ( ଏହା ଓ୍ୟାଫଦ୍ ଦଳ ନାମରେ ଜଣା ) ସମସ୍ତଙ୍କୁ ଟପିଗଲା । ସେମାନେ ସବୁ ଭୋଟର ଶତକଡ଼ା ୯୦ ପାଇଲେ ଏବଂ ୨୧୪ରୁ ୧୭୭ ସ୍ଥାନ ଦଖଲ କଲେ । ଇଂଲଣ୍ଡ ସହିତ ମିଳାମିଶା କରିବା ନିମନ୍ତେ ପୁଣି ଏକ ଉଦ୍ୟମ ହେଲା—ଏହି ଉଦ୍ଦେଶ୍ୟରେ ଜଗଲୁଲ ଲଣ୍ଡନ ଗଲେ । ଦୁଇଟି ଦୃଷ୍ଟିକୋଣର ମିଳନ ହୋଇପାରିଲା ନାହିଁ ଏବଂ କେତେକ ପ୍ରଶ୍ନ ଉପରେ ଏହି ମିଳାମିଶା କଥାବାର୍ତ୍ତା ଭାଙ୍ଗିଗଲା—ଏଥିରୁ ଗୋଟିଏ ହେଉଛି ସୁଡ଼ାନ । ସୁଡ଼ାନ ଦେଶ ଇଜିପ୍ଟର ଦକ୍ଷିଣକୁ, ଏହା ଇଜିପ୍ଟଠାରୁ ଅତ୍ୟନ୍ତ ବିଭିନ୍ନ; ଲୋକେ ଅଲଗା ଧରଣର ଏବଂ ଭାଷା ମଧ୍ୟ ସେହିପରି । ସୁଡ଼ାନ ଉପରେ ଦେଇ ନୀଳନଦୀ ବହି ଆସିଛି । ଇତିହାସ ବିବରଣୀ

ଲିପିବଦ୍ଧ ହେବାର ଆରମ୍ଭ ଦିବସରୁ ଅର୍ଥାତ୍ ୭୦୦୦-୮୦୦୦ ବର୍ଷ ହେଲା ନୀଳନଦୀ ଇଜିପ୍ଟର ଜୀବନପ୍ରବାହ ହୋଇ ରହିଛି । ସମଗ୍ର ଇଜିପ୍ଟର କୃଷି ଓ ଜୀବନ ନୀଳନଦୀର ବାର୍ଷିକ ବନ୍ୟାର ଚତୁର୍ଦ୍ଦିଗରେ ଗଠିତ—ଆବିସିନିଆର ପାହାଡ଼ମାନଙ୍କରୁ ଏହା ଉର୍ବରମୃତ୍ତିକା ବହି ଆଣିଛି ଏବଂ ମିଶରର ମରୁଭୂମିକୁ ସମ୍ପଦଶାଳୀ ଓ ଉର୍ବର ଭୂମିରେ ପରିଣତ କରିଛି । ଲର୍ଡ଼ ମିଲନର ( ଯାହାଙ୍କ କମିସନ ବର୍ଜନ କରାଯାଇଥିଲା ) ନୀଳନଦୀ ବିଷୟରେ ନିମ୍ନଲିଖିତ ମତେ ଲେଖିଛନ୍ତି—

"ଏହି ମହାନ ନଦୀଦ୍ୱାରା ଇଜିପ୍ଟକୁ ଯେ ସୀମିତ ଜଳ ଯୋଗାଯାଉଛି ଏହା ତା ପକ୍ଷରେ କେବଳ ସୁବିଧା ଓ ଉନ୍ନତିର ପ୍ରଶ୍ନ ନୁହେଁ, ମାତ୍ର ଜୀବନର ପ୍ରଶ୍ନ । ନଦୀର ଉପର ଅଂଶ ଯଦି ଇଜିପ୍ଟ କର୍ତ୍ତୃତ୍ୱରେ ନ ରହେ ତେବେ ସର୍ବଦା ଏହା ବିପଦ ମୁଖରେ ପଡ଼ି ରହିଥିବ ।"

ନୀଳ ନଦୀର ଉପର ଅଞ୍ଚଳ ସୁଡ଼ାନରେ; ତେଣୁ ସୁଡ଼ାନ ଇଜିପ୍ଟ ପକ୍ଷରେ ଏପରି ଗୁରୁତ୍ୱପୂର୍ଣ୍ଣ ।

ଅତୀତରେ ସୁଡ଼ାନ ଇଜିପ୍ଟ ଓ ଇଂଲଣ୍ଡର ମିଳିତ କର୍ତ୍ତୃତ୍ୱାଧୀନରେ ଥିଲା ବୋଲି ଧରାଯାଏ । ଏହାକୁ ଆଙ୍ଗ୍ଲୋ-ଇଜିପ୍ଟ ସୁଡ଼ାନ ବୋଲି କହନ୍ତି । ବ୍ରିଟେନ ପ୍ରକୃତରେ ଇଜିପ୍ଟ ଶାସନ କରୁଥିବାରୁ କୌଣସି ସ୍ୱାର୍ଥର ସଂଘର୍ଷ ନ ଥିଲା ଏବଂ ସୁଡ଼ାନରେ ପ୍ରଚୁର ପରିମାଣରେ ଇଜିପ୍ଟ ଧନ ବ୍ୟୟ ହୋଇଥିଲା । ବାସ୍ତବିକ୍ ୧୯୨୪ରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଲର୍ଡ଼ କର୍ଜନ କହିଥିଲେ ଯେ, ତାର ଆର୍ଥିକ ବ୍ୟୟଭାର ଯଦି ଇଜିପ୍ଟ ନ ନେଇଥାନ୍ତା, ତେବେ ସୁଡ଼ାନ ଅନେକଦିନୁ ଦେବାଳିଆ ହୋଇ ଯାଆନ୍ତାଣି । ଯେତେବେଳେ ଶେଷରେ ବ୍ରିଟିଶକୁ ଇଜିପ୍ଟ ଛାଡ଼ି ଆସିବା ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିଲା, ସେତେବେଳେ ସେମାନେ ସୁଡ଼ାନକୁ ହାତରେ ରଖିବା ପାଇଁ ଚାହିଁଲେ । ଅନ୍ୟ ପକ୍ଷରେ ଇଜିପ୍ଟବାସୀ ବୋଧ କଲେ ସୁଡ଼ାନର ନୀଳନଦୀର ଉପର ଅଞ୍ଚଳ ନିୟନ୍ତ୍ରଣ ଉପରେ ତାଙ୍କର ଅବସ୍ଥିତି ଜଡ଼ିତ ହୋଇ ରହିଛି । ତେଣୁ ଏହି ସ୍ୱାର୍ଥର ସଂଘର୍ଷ ।

୧୯୨୪ରେ ଯେତେବେଳେ ଜଗଲୁଲ ଓ ବ୍ରିଟିଶ ସରକାର ଭିତରେ ସୁଡ଼ାନ ପ୍ରଶ୍ନ ଆଲୋଚିତ ହେଉଥିଲା, ସେତେବେଳେ ସୁଡ଼ାନର ଲୋକେ ନାନା ଭାବରେ ଇଜିପ୍ଟ ସହ ସେମାନଙ୍କର ସମ୍ପର୍କ ଦେଖାଇଥିଲେ । ଏଥିଯୋଗୁଁ ବ୍ରିଟିଶ ସେମାନଙ୍କୁ ଗୁରୁତର ଶାସ୍ତି ଦେଇଥିଲେ—ମିଳିତ ଶାସନ ଥିବା ସତ୍ତ୍ୱେ ଏବଂ ସେଥିପାଇଁ ଇଜିପ୍ଟ ପ୍ରଚୁର ଅର୍ଥ ଦେଉଥିବା ସତ୍ତ୍ୱେ ଇଜିପ୍ଟ ସରକାରକୁ ପରାମର୍ଶ ନ କରି ସେମାନେ ମନ ଇଚ୍ଛା ଯାହା କରିଗଲେ ।

ତଥାକଥିତ ଇଜିପ୍ଟ ସ୍ୱାଧୀନତା ଘୋଷଣାରେ ବ୍ରିଟେନ ଆଉ ଏକ ହାତର ପାଞ୍ଚ ରଖିଲା—ତାହା ହେଉଛି ବିଦେଶୀ ସ୍ୱାର୍ଥ ସଂରକ୍ଷଣ । ଏହି ବିଦେଶୀ ସ୍ୱାର୍ଥ କ'ଣ ? ମୁଁ ପୂର୍ବ

ଏକ ଶତିରେ ଏ ସମ୍ବନ୍ଧରେ କିଛି ତଳେ କହୁଛି । ତୁର୍କି ସାମ୍ରାଜ୍ୟ ଦୁର୍ବଳ ହେଉଥିବାବେଳେ ପ୍ରଧାନ ଶକ୍ତିମାନେ ନାନା ନିୟମ ସବୁ ତା ଉପରେ ଲଦିଥିଲେ—ସେଥିରେ ତୁର୍କିରେ ଥିବା ତାଙ୍କ ଦେଶର ନାଗରିକଙ୍କ ବିଶେଷ ବ୍ୟବହାରର ପ୍ରସ୍ତାବ ଥିଲା । ଏହି ଇଉରୋପୀୟ ନାଗରିକମାନେ ଯାହା କିଛି ଅପରାଧ କରନ୍ତୁ ପଛକେ ତୁର୍କି ଆଇନ ବା କଚେରୀ ଅଧୀନରେ ତାଙ୍କର ବିଚାର ହେବ ନାହିଁ । ସେମାନଙ୍କର ବିଚାର ତାଙ୍କ ନିଜର କୂଟନୀତିକ ପ୍ରତିନିଧି କିମ୍ବା ବିଦେଶୀମାନେ ସଭ୍ୟ ଥିବା ବିଶେଷ କଚେରୀରେ ହେବ । ସେମାନଙ୍କର ଆଉ ସବୁ ବିଶେଷାଧିକାର ବି ଥିଲା, ଯଥା ଅଧିକାଂଶ ଟିକସରୁ ମୁକ୍ତି । ବିଦେଶୀମାନଙ୍କର ଏହିସବୁ ବିଶେଷ ଓ ଅତି ମୂଲ୍ୟବାନ ବିଶେଷାଧିକାରକୁ "ଶତ୍ରୁ ହାତରେ ସମର୍ପଣ"— କାରଣ କେତେକ ପରିମାଣରେ ସମ୍ପୃକ୍ତ ସରକାରର କର୍ତ୍ତୃତ୍ୱ ଏଥିରେ ସମର୍ପିତ ହୋଇଗଲା । ତୁର୍କିକୁ ଏହା ଗ୍ରହଣ କରିବାକୁ ପଡ଼ିବାରୁ ତୁର୍କି ସାମ୍ରାଜ୍ୟର ବିଭିନ୍ନ ଅଂଶକୁ ମଧ୍ୟ ଏହା ମାନିନେବାକୁ ପଡ଼ିଲା । ଇଜିପ୍ଟ ସମ୍ପୂର୍ଣ୍ଣରୂପେ ବ୍ରିଟିଶ ଶାସନ ଅଧୀନରେ ଥିଲା ଏବଂ ସେଠାରେ ତୁର୍କିର ନାମକୁ ମାତ୍ର କର୍ତ୍ତୃତ୍ୱ ମଧ୍ୟ ନ ଥିଲା—ଯାହାହେଉ ଏଥିରେ ତୁର୍କି ସାମ୍ରାଜ୍ୟର ଅଂଶରୂପେ ତାକୁ ବି କଷ୍ଟ ଭୋଗିବାକୁ ପଡ଼ିଲା ଏବଂ "ଶତ୍ରୁ ହାତରେ ସମର୍ପଣ" ତାକୁ ସହ୍ୟ କରିବାକୁ ହେଲା । ଏହି ସୁବିଧାଜନକ ଅବସ୍ଥାରେ ବିଦେଶୀ ବେପାରୀ ଓ ପୁଞ୍ଜିପତିମାନଙ୍କର ବସତି ସବୁ ହୋଇ ସହର ସୃଷ୍ଟି ହୋଇଗଲା । ସେମାନଙ୍କୁ ଯେଉଁ ପ୍ରଥା ସବୁମନ୍ତେ ରକ୍ଷା କରିଛି ଏବଂ ଏପରି କି ଟିକସ ଦେବାକୁ ନ ପଡ଼ି ସମୃଦ୍ଧିଶାଳୀ ଓ ଧନୀ ହେବା ନିମନ୍ତେ ସୁବିଧା ଦେଇଛି, ସେହି ପ୍ରଥା ଲୋପର ବିରୋଧ କରିବା ତାଙ୍କ ପକ୍ଷରେ ସ୍ୱାଭାବିକ । ଏହିସବୁ ବିଦେଶୀ ସ୍ୱାର୍ଥକୁ ବ୍ରିଟିଶ ସରକାର ରକ୍ଷା କରିବାକୁ ଚାହିଁଲା । ଇଜିପ୍ଟ ପକ୍ଷରେ ଏପରି ଏକ ପ୍ରଥାରେ ରାଜି ହେବା ସମ୍ଭବ ନୁହେଁ—ଏହା ଯେ ତାର ସ୍ୱାଧୀନତା ସହ ସମ୍ପୂର୍ଣ୍ଣ ଅସାମଞ୍ଜସ୍ୟ ତାହା ନୁହେଁ, କିନ୍ତୁ ତାର ରାଜସ୍ୱର ପ୍ରଚୁର କ୍ଷତି । ସର୍ବାପେକ୍ଷା ଧନୀ ଲୋକଙ୍କ ଉପରେ ଯଦି ଟିକସ ବସି ନ ପାରେ, ତେବେ ବିସ୍ତୃତ ଆକାରରେ ଦେଶର ସାମାଜିକ ଅବସ୍ଥା ସଂସ୍କାର ଦିଗରେ କିଛି କରିବା ସମ୍ଭବ ନୁହେଁ । ଦୀର୍ଘକାଳ ପ୍ରତ୍ୟକ୍ଷ ବ୍ରିଟିଶ ଶାସନରେ ସେମାନେ ପ୍ରାଥମିକ ଶିକ୍ଷା ବା ସ୍ୱାସ୍ଥ୍ୟ ଓ ଗ୍ରାମ ଅବସ୍ଥାର ଉନ୍ନତି ପାଇଁ କାର୍ଯ୍ୟତଃ କିଛି କରି ନ ଥିଲେ ।

ଏପରି ହେଲା ଯେ "ଶତ୍ରୁ ହାତରେ ସମର୍ପଣ" ଯେଉଁ ତୁର୍କି ଉପରେ ପ୍ରଥମେ ଲଦା ହୋଇଥିଲା, ତାହା କେମାଲ ପାଶାଙ୍କ ବିଜୟ ପରେ ସେଥିରୁ ମୁକ୍ତ ହୋଇଗଲା । ମୁଁ ଏଠାରେ ଉଲ୍ଲେଖ କରିପାରେ ଯେ ଚୀନ ଏହି "ଶତ୍ରୁ ହାତରେ ସମର୍ପଣ" ପରି କେତେକ ବିଷୟ ପାଇଁ ଏବେ ସୁଦ୍ଧା ସଂଗ୍ରାମ କରୁଛି । ୧୯ଶ ଶତାବ୍ଦୀରେ ଅଳ୍ପକାଳ ନିମନ୍ତେ ଜାପାନରେ ବି ଏହିପରି ଥିଲା, କିନ୍ତୁ ସେ ଶକ୍ତିଶାଳୀ ହେବା ମାତ୍ରକେ ତାହା ପ୍ରତ୍ୟାଖ୍ୟାନ କରିଦେଲା । ଏହିରୂପେ ବ୍ରିଟେନ ଓ ଇଜିପ୍ଟ ଭିତରେ ମିଳାମିଶା ପଥରେ ବିଦେଶୀ ସ୍ଥାପିତ ସ୍ୱାର୍ଥ ପ୍ରଶ୍ନ ହେଲା ଆଉ ଏକ ପ୍ରତିବନ୍ଧକ । ସ୍ଥାପିତ ସ୍ୱାର୍ଥଗୁଡ଼ିକ ସର୍ବଦା ସ୍ୱାଧୀନତା ପଥରେ ଅନ୍ତରାୟ ।

ତାଙ୍କର ସଦା ଉଦାରତା ଗୁଣ ସହକାରେ ବ୍ରିଟିଶ ସରକାର ସଂଖ୍ୟା ଲଘିଷ୍ଠ ସମ୍ପ୍ରଦାୟଙ୍କ ସ୍ୱାର୍ଥରକ୍ଷା କରିବା ନିମନ୍ତେ ବ ସ୍ଥି ର କଲେ ଏବଂ ୧୯୨୨ ଫେବୃୟାରି ମାସ ସ୍ୱାଧୀନତା ଘୋଷଣାରେ ଏହା ବି ଏକ "ହାତର ପାଞ୍ଚ" ଥିଲା । କୋପ୍‌ଟମାନେ ହେଲେ ପ୍ରଧାନ ସଂଖ୍ୟା ଲଘିଷ୍ଠ ସମ୍ପ୍ରଦାୟ । ଏମାନେ ପୁରାତନ ଇଜିପ୍ଟବାସୀଙ୍କ ବଂଶଧରବୋଲି ଧରାଯାଏ ଏବଂ ତେଣୁ ଇଜିପ୍‌ଟରେ ଏମାନେ ହେଉଛନ୍ତି ପୁରୁଣା ଜାତି । ସେମାନେ ଖ୍ରୀଷ୍ଟିୟାନ; ଖ୍ରୀଷ୍ଟିୟାନ ଧର୍ମ ଆରମ୍ଭରୁ ଇଉରୋପ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବା ପୂର୍ବରୁ ସେମାନେ ଖ୍ରୀଷ୍ଟିୟାନ ହୋଇଛନ୍ତି । ବ୍ରିଟିଶ ସରକାର ସଂଖ୍ୟା ଲଘିଷ୍ଠ ଶ୍ରେଣୀ ପ୍ରତି ଯେ ମହାନୁଭବତା ଦେଖାଉଛନ୍ତି, ସେଥିଲାଗି ସେମାନଙ୍କୁ ଧନ୍ୟବାଦ ଦେବା ପରିବର୍ତ୍ତେ କୋପ୍‌ଟମାନେ ଅକୃତଜ୍ଞ ହୋଇ ତାଙ୍କ ବିଷୟ ଯେଣି ବ୍ୟସ୍ତ ନ ହେବା ପାଇଁ, ସେମାନଙ୍କୁ କହିଦେଲେ । ୧୯୨୨ ଫେବୃୟାରି ଘୋଷଣାର ଅଳ୍ପ ଦିନ ପରେ କୋପ୍‌ଟମାନେ ଏକ ବଡ଼ ସଭାରେ ଏକତ୍ର ହେଲେ ଏବଂ ପ୍ରସ୍ତାବ କଲେ "ଜାତୀୟ ଏକତା ଓ ଜାତୀୟ ଲକ୍ଷ୍ୟ ହାସଲ ସ୍ୱାର୍ଥ ଦୃଷ୍ଟିରୁ ସେମାନେ ସମସ୍ତ ପ୍ରକାର ସଂଖ୍ୟା ଲଘିଷ୍ଠ ପ୍ରତିନିଧିତ୍ୱ ଓ ସଂଖ୍ୟା ଲଘିଷ୍ଠ ଶ୍ରେଣୀ ପାଇଁ ରକ୍ଷାର ବ୍ୟବସ୍ଥା ତ୍ୟାଗ କରୁଛନ୍ତି ।" କୋପ୍‌ଟମାନଙ୍କର ଏହି ନିଷ୍ପତ୍ତିକୁ ନିତାନ୍ତ ନିର୍ବୋଧପଣିଆ ବୋଲି ବ୍ରିଟିଶ ସମାଲୋଚନା କଲା । କିନ୍ତୁ ବୁଦ୍ଧିମାନ ବା ନିର୍ବୋଧ ଯାହା ହେଉ ପଛକେ ବ୍ରିଟିଶଙ୍କର ସେମାନଙ୍କୁ ରକ୍ଷା କରିବା ଦାବୀ ଏହାପରେ ଇତି ହୋଇଗଲା ଏବଂ ସଂଖ୍ୟା ଲଘିଷ୍ଠ ଶ୍ରେଣୀ ସମସ୍ୟା ଅଭି ବିଗ୍ରହ ବସ୍ତୁ ହୋଇ ରହିଲା ନାହିଁ । ପ୍ରକୃତରେ ଦେଖିଲେ ଜାତୀୟ ସ୍ୱାଧୀନତା ସଂଗ୍ରାମରେ କୋପ୍‌ଟମାନେ ପ୍ରଧାନ ଭାଗ ନେଲେ ଏବଂ ଓ୍ୱାଫ୍‌ଦ୍‌ମାନଙ୍କ ଭିତରେ ଜଗଲୁଲ ପାଶାଙ୍କର କେତେକ ବିଶ୍ୱସ୍ତ ସହକର୍ମୀ ଥିଲେ କୋପ୍‌ଟମାନେ ।

ଏହି ସବୁ ବିରୋଧୀ ଦୃଷ୍ଟିକୋଣ ଏବଂ ପ୍ରକୃତ ସ୍ୱାର୍ଥର ସଂଘର୍ଷ ହେତୁ ଇଜିପ୍ଟର ପ୍ରତିନିଧିରୂପେ ସାଦ ଜଗଲୁଲ ଓ ତାଙ୍କ ସହକର୍ମୀ ଓ ବ୍ରିଟିଶ ଭିତରେ ୧୯୨୪ରେ ଯେଉଁ ମିଳାମିଶା କଥାବାର୍ତ୍ତା ଚାଲିଥିଲା, ତାହା ଭାଙ୍ଗିଗଲା । ବ୍ରିଟିଶ ସରକାର ଏଥିରେ ଭାରି ରାଗିଗଲେ । ଇଜିପଟ୍‌ରେ ସେମାନେ ନିଜର ମନ ମୁତାବକ ଚଳି ଆସିଥିଲେ ଏବଂ କାଏରୋରେ ନୂତନ ପାର୍ଲିମେଣ୍ଟର ଜିଦ୍ ଓ ବିଶେଷତଃ ଓ୍ୱାଫ୍‌ଦ୍ ନେତାମାନଙ୍କର କାର୍ଯ୍ୟକଳାପ ତାଙ୍କ ପକ୍ଷରେ ଅତି ବିରକ୍ତିକର ବୋଧ ହେଲା । ସେମାନେ ନିଜର ସାମ୍ରାଜ୍ୟବାଦୀ ଉପାୟରେ ଓ୍ୱାଫ୍‌ଦ ଓ ଇଜିପ୍ଟ ପାର୍ଲିମେଣ୍ଟକୁ ଏକ ଶିକ୍ଷା ଦେବେ ବୋଲି ସ୍ଥିର କଲେ । ଶୀଘ୍ର ଏକ ସୁଯୋଗ ତାଙ୍କୁ ମିଳିଗଲା ଏବଂ ଯେପରି ଅସାଧାରଣ ଭାବରେ ସେମାନେ ଏହାକୁ ଧରି ଏଥିରେ ଲାଭବାନ୍ ହେଲେ, ସେ ସମ୍ବନ୍ଧରେ ମୋର ଆଗାମୀ ଚିଠିରେ ମୁଁ ଲେଖିବି । ଏହି ଅଲୌକିକ ଘଟଣାଟି ଆଧୁନିକ ସାମ୍ରାଜ୍ୟବାଦର କାର୍ଯ୍ୟର ଦର୍ପଣରେ ଦେଖାଯାଉଥିବା ପ୍ରତିବିମ୍ବ ପରି— ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ଚିଠି ଦରକାର ।

## ୧୭୪ : ବ୍ରିଟିଶ ଶାସନ ତଳେ ସ୍ୱାଧୀନତା ଅର୍ଥ କଣ ?

ମେ ୨୨, ୧୯୩୩

ଇଜିପ୍ଟ ସରକାର ତରଫରୁ ଜାତୀୟତାବାଦୀ ପ୍ରତିନିଧି ଓ ବ୍ରିଟିଶ ସରକାର ମଧ୍ୟରେ ୧୯୨୪ରେ ଯେ କଥାବାର୍ତ୍ତା ଚାଲିଥିଲା ତାହା କିପରି ବିଫଳ ହେଲା ଏବଂ ସେଥିରେ ବ୍ରିଟିଶ ସରକାର ଯେପରି କ୍ରୋଧାନଳ ହୋଇଗଲା ସେ ସମ୍ବନ୍ଧରେ ଗତ ଚିଠିରେ ମୁଁ ତଳେ କହିଛି । ଏହା ପରେ ଯେଉଁ ସବୁ ଅଲୌକିକ ଘଟଣାସବୁ ଘଟିଲା ତାହା ବର୍ଣ୍ଣନା କରିବା ପୂର୍ବରୁ ମୁଁ ତତେ ସ୍ମରଣ କରାଇ ଦେବାକୁ ଚାହେଁ ତଥାକଥିତ ସ୍ୱାଧୀନତା ସତ୍ତ୍ୱେ ଇଜିପ୍ଟ ବ୍ରିଟିଶ ସାମରିକ ଦଖଲରେ ରହିଥିଲା । ସେଠାରେ କେବଳ ଯେ ବ୍ରିଟିଶ ସୈନ୍ୟ ଥିଲେ ତାହା ନୁହେଁ, ଇଜିପ୍ଟ ସେନା ବି ବ୍ରିଟିଶ କର୍ତ୍ତୃତ୍ୱାଧୀନରେ ଥିଲେ ଏବଂ ସେନା ସର୍ଦ୍ଦାର ଉପାଧି ଧାରଣ କରି-ଜଣେ ଇଂରେଜ ଏହାର ମୁଖିଆ ଥିଲେ । ମୁଖ୍ୟ ପୁଲିସ କର୍ମଚାରୀସବୁ ଥିଲେ ଇଂରେଜ ଏବଂ ଇଜିପ୍ଟରେ ବିଦେଶୀଙ୍କୁ ରକ୍ଷା କରିବା ବାହାନାରେ, ବ୍ରିଟିଶ ସରକାର ଅର୍ଥ, ନ୍ୟାୟ ଓ ଆଭ୍ୟନ୍ତରୀଣ ବିଭାଗ ପରିଚାଳନା କଲା; କହିବାକୁ ଗଲେ ସେମାନେ ସରକାରର ପ୍ରତ୍ୟେକ ମର୍ମସ୍ଥଳୀ ଆୟତ୍ତରେ ରଖିଲେ । ସ୍ୱାଭାବିକରୂପେ ଇଜିପ୍ଟବାସୀ ବ୍ରିଟିଶ ଏହି କର୍ତ୍ତୃତ୍ୱ ହଟାଇ ନେଉବୋଲି ଜୋର୍ କରୁଥିଲେ ।

ସାର ଲିଷ୍ଟକ ନାମକ ଜଣେ ଇଂରେଜ ଇଜିପ୍ଟ ସେନା ସର୍ଦ୍ଦାର ଥିଲେ ଓ ସୁଡ଼ାନର ଗଭର୍ଣ୍ଣର ଜେନେରାଲ ବି ଥିଲେ—୧୯୨୪ ନଭେମ୍ବର ତା ୧୦ ଶଖରେ କେତେକ ଇଜିପ୍ଟବାସୀ ତାଙ୍କୁ ହତ୍ୟା କଲେ । ସ୍ୱାଭାବିକ ଭାବରେ ଏହା ଇଜିପ୍ଟ ଓ ଇଂଲଣ୍ଡର ଇଂରେଜ ଲୋକଙ୍କୁ ଆଘାତ ଦେଲା, ସମ୍ଭବତଃ ଇଜିପ୍ଟର ଜାତୀୟତାବାଦୀ ଦଳ ଓ୍ୱାଫଦ୍‌ମାନଙ୍କୁ ଏହା ଅଧିକ ଆଘାତ ଦେଲା, କାରଣ ସେମାନେ ଜାଣିଥିଲେ ଏହାର ଅର୍ଥ ସେମାନଙ୍କ ଉପରେ ଆଉ ଏକ ଆକ୍ରମଣ ହେବ । ଏପରି ଆକ୍ରମଣ ବଡ଼ ଶୀଘ୍ର ଆରମ୍ଭ ହେଲା । ତିନିଦିନ ଭିତରେ ନଭେମ୍ବର ତା ୨୨ ଶଖରେ ଇଜିପ୍ଟର ବ୍ରିଟିଶ ହାଇକମିସନର ଲର୍ଡ଼ ଆଲେନବି ତଳ ଲିଖିତ ଦାବୀମାନ କରି ଇଜିପ୍ଟ ସରକାରକୁ ଏକ ଚରମପତ୍ର ଦେଲେ—

୧—କ୍ଷମା ପ୍ରାର୍ଥନା ।

୨—ଅପରାଧୀଙ୍କୁ ଶାସ୍ତି ।

୩—ସମସ୍ତ ପ୍ରକାର ରାଜନୀତିକ ପ୍ରଦର୍ଶନର ବାରଣ ।

୪—କ୍ଷତିପୂରଣ ସ୍ୱରୂପ ୫୦୦,୦୦୦ ପାଉଣ୍ଡ ଦାନ ।

୫—୨୪ ଘଣ୍ଟା ଭିତରେ ସୁଡ଼ାନର ସମସ୍ତ ଇଜିପ୍ଟ ସେନାଙ୍କୁ ଫେରାଇ ନେବା ।

୬—ଇଜିପ୍ଟ ସ୍ୱାର୍ଥ ଦୃଷ୍ଟିରୁ ସୁଡ଼ାନରେ ଯେଉଁସବୁ ଜଳସେଚନ ଅଞ୍ଚଳ ସୀମାବଦ୍ଧ କରାଯାଇଛି, ତାହା ଉଠାଇ ନେବା ।

୭—ଇଜିପ୍ଟରେ ଥିବା ସମସ୍ତ ବିଦେଶୀଙ୍କୁ ରକ୍ଷା କରିବା ନିମନ୍ତେ ବ୍ରିଟିଶ ସରକାର ଦାବୀ ପ୍ରତି ଆଉ ବିରୋଧ କରାଯିବ ନାହିଁ । ଏହା ବିଶେଷ ଭାବରେ ଅର୍ଥ, ନ୍ୟାୟ ଓ ଆଭ୍ୟନ୍ତରୀଣ ବିଭାଗରେ ବ୍ରିଟିଶ କର୍ତ୍ତୃତ୍ୱ ରକ୍ଷା ।

ଏହି ସାତଟି ଦାବି ବିଚାରର ଯୋଗ୍ୟ । କାରଣ କେତେକ ଲୋକ ସାର ଲିଷ୍ଟକଙ୍କୁ ହତ୍ୟା କରିଥିବାରୁ ବ୍ରିଟିଶ ସରକାର ତତ୍‌କ୍ଷଣାତ୍ ଏବଂ ଏପରିକି ତଦନ୍ତ ସୁଦ୍ଧା ନ କରି ସମଗ୍ର ଇଜିପ୍ଟ ସରକାର ଅର୍ଥାତ୍ ଇଜିପ୍ଟ ଲୋକମାନଙ୍କୁ ହତ୍ୟା ଅପରାଧୀ ପରି ବ୍ୟବହାର କଲା । ଅଧିକନ୍ତୁ ମଧ୍ୟ ଏହି ବ୍ୟାପାରରେ ସେମାନେ ସୁନ୍ଦର ଆର୍ଥିକ ଲାଭ ବି କଲେ ଏବଂ ସର୍ବାପେକ୍ଷା ମହତ୍ତ୍ୱର କଥା ହେଉଛି, ଏହି ସୁଯୋଗର ସୁବିଧା ନେଇ ତାଙ୍କ ଓ ଇଜିପ୍ଟ୍ ସରକାର ଭିତରେ ଯେ ସବୁ ବିଷୟରେ ବିବାଦ ଲାଗିଥିଲା ଏବଂ ଯେଉଁସବୁ କଥା ଯେନି କେତେକ ମାସ ପୂର୍ବେ ଲଣ୍ଡନରେ ମିଳାମିଶା କଥାବାର୍ତ୍ତା ଭାଙ୍ଗି ଯାଇଥିଲା ସେ ସବୁ ବଳପୂର୍ବକ ନିଷ୍ପତ୍ତି କରାଇ ନେଲେ । ସତେ ଯେପରି ଏହା ଯଥେଷ୍ଟ ହୋଇ ନ ଥିଲା, ତେଣୁ ସେମାନେ ସକଳ ପ୍ରକାର ରାଜନୀତିକ ପ୍ରଦର୍ଶନକୁ ବାରଣ କଲେ—ଏହିରୂପେ ଦେଶର ସାଧାରଣ ରାଜନୀତିକ ଜୀବନରେ ବାଧା ଦେଲେ ।

ହତ୍ୟା ହେତୁ ଏ ସବୁ ଅସାଧାରଣ ଘଟଣା ଉପୁଜିଲା ଏବଂ ଗୋଟାଏ ହତ୍ୟାରୁ ଏତେ ଲାଭ ପାଇବା—ଏହା ବ୍ରିଟିଶର ଉର୍ବର ଦୃଢ଼ କଳ୍ପନାଶକ୍ତିର ପରିଚାୟକ । ଆହୁରି ବିଚିତ୍ର କଥା ହେଉଛି, ଦୁଇଟିଯାକ ମୁଖ୍ୟ କର୍ମଚାରୀ, (ନାମକୁ ମାତ୍ର ଇଜିପ୍ଟ ସରକାର ଅଧୀନରେ ଥିଲେ) କାଏରୋର ପୁଲିସ କର୍ତ୍ତା ଏବଂ ସାଧାରଣ ନିରାପତ୍ତା ପାଇଁ ଇଉରୋପୀୟ ବିଭାଗର ଡିରେକ୍ଟର ଜେନେରାଲ ଉଭୟେ ଥିଲେ ଇଂରେଜ । ଅପରାଧ ଓ ଉପଦ୍ରବ ବାଧା ଦେବାରେ ସେମାନଙ୍କୁହିଁ ଦାୟୀ ବୋଲି ଧରାଯାଇ ପାରିଥାଆନ୍ତା । ହତ୍ୟା ଲାଗି ସେମାନଙ୍କୁ କେହି ଦାୟୀ ବୋଲି ବିଚାରିଲେ ନାହିଁ । କିନ୍ତୁ ବିଚରା ଇଜିପ୍ଟ ସରକାର ଯେ କି ହତ୍ୟାର ଠିକ୍ ପରମୁହୂର୍ତ୍ତରେ ସେଥି ସକାଶେ ଦୁଃଖ ପ୍ରକାଶ କରିଥିଲା, ତାକୁ ବ୍ରିଟିଶ ସରକାରର ଭୀଷଣ କ୍ରୋଧ ସହିବାକୁ ପଡ଼ିଥିଲା । ଏହା ଧୀରେ ସୁସ୍ଥେ ହିସାବ କରାଯାଇ ଓ ଲାଭଜନକ ହେବା ଭଳି ସେମାନଙ୍କ ଉପରେ ଲଦା ହୋଇଥିଲା ।

ଇଜିପ୍ଟ ସରକାର ନିଜକୁ ଧୂଳି ଅପେକ୍ଷା ନ୍ୟୂନ କରିଦେଲା । ଜଗଲୁଲ୍ ପାଶା ଚରମ ପତ୍ରର ପ୍ରାୟ ସବୁ ସର୍ତ୍ତରେ ରାଜି ହୋଇଗଲେ ଏବଂ ଏପରି କି ୨୪ ଘଣ୍ଟା ଭିତରେ

୫୦୦,୦୦୦ ପାଉଣ୍ଡ କ୍ଷତିପୂରଣ ବି ଦେଇଦେଲେ । କେବଳ ସୁଡ଼ାନ ବିଷୟରେ ସେମାନେ ତାଙ୍କର ଅଧିକାର ଛାଡ଼ି ପାରିବେ ନାହିଁ ବୋଲି ଜଣାଇଲେ । ଏହି ନ୍ୟୂନତା ଓ କ୍ଷମାପ୍ରାର୍ଥନା ମଧ୍ୟ ଲର୍ଡ଼ ଆଲେନବିଙ୍କୁ ଯଥେଷ୍ଟ ମନେ ହେଲା ନାହିଁ ଏବଂ ସୁଡ଼ାନ ସମ୍ବନ୍ଧୀୟ ସର୍ତ୍ତ ଗୃହୀତ ନ ହେବାରୁ ସେ ବ୍ରିଟିଶଙ୍କ ତରଫରୁ ବଳପୂର୍ବକ ଆଲେକ୍‌ଜାଣ୍ଡ୍ରିଆର ଶୁଳ୍କ ଅଫିସ ଦଖଲ କଲେ ଏବଂ ଏହି ରୂପେ ଶୁଳ୍କ ରାଜସ୍ୱ ନିଜ ହାତକୁ ନେଲେ । ଅ‌ଧିକନ୍ତୁ ମଧ୍ୟ ଇଜିପ୍ଟର ପ୍ରତିବାଦ ସତ୍ତ୍ୱେ ସେ ସୁଡ଼ାନରେ ଏହି ସବୁ ସର୍ତ୍ତ ଲଗାଇଲେ ଏବଂ ସୁଡ଼ାନକୁ ଏକ ବ୍ରିଟିଶ ଉପନିବେଶ କଲେ । ସୁଡ଼ାନରେ ଇଜିପ୍ଟ ସୈନ୍ୟ ବିଦ୍ରୋହ କଲେ କିନ୍ତୁ ଅତ୍ୟନ୍ତ ନିଷ୍ଠୁରତାର-ସହ ତାହା ଦମନ କରାଗଲା ।

ବ୍ରିଟିଶ କାର୍ଯ୍ୟର ପ୍ରତିବାଦ ସ୍ୱରୂପ ସଙ୍ଗେ ସଙ୍ଗେ ଜଗଲୁଲ ପାଶା ଓ ତାଙ୍କ ସରକାର ଇସ୍ତଫା ଦାଖଲ କଲେ ଏବଂ ସେହି ମାସରେ (୧୯୨୪ ନଭେମ୍ବର) ରାଜା ଫୁଆଡ଼ ପାର୍ଲାମେଣ୍ଟ ଭାଙ୍ଗିଦେଲେ । ଏହି ରୂପେ ବ୍ରିଟିଶ ଜଗଲୁଲ ଓ ତାଙ୍କ ଓ୍ୱାଫ୍‌ଦ ଦଳକୁ ଅଫିସରୁ ତଡ଼ିଦେବାରେ ସଫଳ ହେଲେ ଏବଂ ଅନ୍ତତଃ କ୍ଷଣକାଳ ପାଇଁ ପାର୍ଲାମେଣ୍ଟକୁ ଭାଙ୍ଗିଦେଇ ପାରିଲେ । ସେମାନେ ବି ସୁଡ଼ାନକୁ ସଂଯୋଗ କଲେ ଏବଂ ସେହିପରି ଭାବରେ ସୁଡ଼ାନରେ ନୀଳନଦୀର ଜଳକୁ ନିୟନ୍ତ୍ରଣ କରି ଇଜିପ୍ଟର ଗଳା ଚିପିବା ନିମନ୍ତେ ସୁବିଧା ସ୍ଥାନରେ ରହିଲେ ।

"ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟରେ ଏକ ଶୋଚନୀୟ ଘଟଣାର ଶୋଷଣ" ବିରୁଦ୍ଧରେ ଅସହାୟ ଇଜିପ୍ଟ ପାର୍ଲାମେଣ୍ଟ ଲିଗ୍ ଅଫ୍ ନେସନ୍‌କୁ ନିବେଦନ କରିଥିଲା । କିନ୍ତୁ ପ୍ରଧାନ ଶକ୍ତିମାନଙ୍କ ବିରୁଦ୍ଧରେ ଆପତ୍ତି ଅଭିଯୋଗ ପ୍ରତି ଲିଗ୍ ଅନ୍ଧ ଓ ବଧିର ହୋଇ ରହିଥିଲା ।

ଏହି କାଳଠାରୁ ଇଜିପ୍ଟରେ ବରାବର ସଂଗ୍ରାମ ଚାଲିଲା—ଏକ ପାଖରେ ସମସ୍ତ ଜାତିର ପ୍ରତିନିଧି ରୂପେ ଓ୍ୱାଫ୍‌ଦ ଦଳ ଓ ଅନ୍ୟ ବିଦେଶୀ ସ୍ୱାର୍ଥ ଓ ରାଜପ୍ରାସାଦର ଅନୁଗ୍ରହାଭିଳାଷୀଙ୍କ ସମର୍ଥନରେ ରାଜା ଫୁଆଡ଼ ଓ ବ୍ରିଟିଶ ହାଇକମିଶନରଙ୍କ ଭିତରେ ସଂଘର୍ଷ ଲାଗିଲା । ଶାସନ ବିଧାନ ପ୍ରତି ଅବମାନନା ଦେଖାଇ ଅଧିକ କାଳ ପର୍ଯ୍ୟନ୍ତ ଦେଶ ଡିକ୍‌ଟେଟରସାହି (ଅଧିନାୟକତ୍ୱ) ଅଧୀନରେ ଶାସିତ ହେଲା, ରାଜା ଫୁଆଡ଼ ଏକଛତ୍ର ଅଧିପତି ରୂପେ କାର୍ଯ୍ୟ କଲେ । ଯେତେବେଳେ ବା ପାର୍ଲାମେଣ୍ଟ ବୈଠକ ହେବାର ସୁବିଧା ଦିଆଗଲା ସେତେବେଳେ ଦେଖାଯାଏ ଯେ ଓ୍ୱାଫ୍‌ଦ ଦଳ ପଛରେ ସାରା ଦେଶ ରହିଛି—ତେଣୁ ଏହା ଭାଙ୍ଗିଦିଆଗଲା । ଫୁଆଡ଼ଙ୍କ କର୍ତ୍ତୃତ୍ୱାଧୀନରେ ବ୍ରିଟିଶ ସେନା ଓ ପୁଲିସର ସମର୍ଥନ ନ ଥିଲେ ସେ ଏପରି ଭାବରେ କାର୍ଯ୍ୟ କରିବା ସମ୍ଭବ ହୋଇ ନ ଥାନ୍ତା । ଯେପରି ଭାରତୀୟ ଦେଶୀୟ ରାଜ୍ୟରେ ପ୍ରକୃତ କର୍ତ୍ତାରୂପେ ବ୍ରିଟିଶ ରେସିଡେଣ୍ଟ ଥାଇ ପଛରୁ ଦଉଡ଼ି ଟାଣୁଥାଆନ୍ତି; ଅନେକ ଅଧିକେ "ସ୍ୱାଧୀନ" ଇଜିପ୍ଟ ସେହିପରି ଶାସିତ ହେଲା ।

୧୯୨୪ ନଭେମ୍ବର ମାସରେ ପାର୍ଲାମେଣ୍ଟ ଭାଙ୍ଗି ଦିଆଗଲା । ୧୯୨୫ ମାର୍ଚ୍ଚ ମାସରେ ନୂତନ ପାର୍ଲାମେଣ୍ଟ ବସିଲା । ଏଥିରେ ଓ୍ୱାଫ୍‌ଦ ଦଳ ବହୁତ ଅଧିକ ସଂଖ୍ୟାରେ ଆସିଲେ ଏବଂ ଏହା ସଙ୍ଗେ ସଙ୍ଗେ ଚେମ୍ବର ଅଫ୍ ଡେପୁଟିଜ୍ ( Chamber of Deputies )ର ସଭାପତି ରୂପେ ଜଗଲୁଲ ପାଶାଙ୍କୁ ନିର୍ବାଚିତ କଲା । ଇଂରେଜ ବା ରାଜା ଫୁଆଡ଼ କେହି ଏହା ପସନ୍ଦ କଲେ ନାହିଁ ଏବଂ ତେଣୁ ସେହିଦିନ ଏକଦିନର ପୁରୁଣା ପାର୍ଲାମେଣ୍ଟକୁ ଭାଙ୍ଗି ଦିଆଗଲା । ଶାସନ ବିଧାନ ଆଇ ସୁଦ୍ଧା ପୂରା ଏକ ବର୍ଷ ପର୍ଯ୍ୟନ୍ତ କୌଣସି ପାର୍ଲାମେଣ୍ଟ ରହିଲା ନାହିଁ ଏବଂ ଫୁଆଡ଼ ଏକ ଡିକ୍‌ଟେଟର୍ ରୂପେ ଶାସନ କଲେ । ତାଙ୍କ ପଛରେ ପ୍ରକୃତ ଶକ୍ତିଥିଲା ବ୍ରିଟିଶ କମିଶନରର । ସମସ୍ତ ଦେଶ ଏଥିରେ ଅସନ୍ତୋଷ ପ୍ରକାଶ କଲା ଏବଂ ରାଜା ଫୁଆଡ଼ ଓ ଇଂରେଜଙ୍କ ମିଳିତ ଶକ୍ତିର ବିରୋଧ କରିବା ନିମନ୍ତେ ସବୁଦଳକୁ ଏକାଠି କରିବାରେ ସାଦ୍ ଜଗଲୁଲ କୃତକାର୍ଯ୍ୟ ହେଲେ । ୧୯୨୫ ନଭେମ୍ବର ମାସରେ ସରକାରୀ ନିଷେଧାଜ୍ଞା ଅମାନ୍ୟ କରି ପାର୍ଲାମେଣ୍ଟ ସଭ୍ୟମାନେ ଏକ ସଭା କଲେ । ପାର୍ଲାମେଣ୍ଟ ଘରକୁ ସୈନ୍ୟ ଦଖଲ କରିଗଲେ—ତେଣୁ ସଭ୍ୟମାନେ ଅନ୍ୟତ୍ର ବୈଠକ କଲେ ।

ତେଣୁ ଫୁଆଡ଼ ତାଙ୍କ ରାଜପ୍ରାସାଦର ଏକ ହୁକୁମନାମା ବାହାର କରି ସମସ୍ତ ଶାସନ ବିଧାନକୁ ପରିବର୍ତ୍ତନ କରିବା ନିମନ୍ତେ ଚେଷ୍ଟା କଲେ । ଏହାକୁ ଆହୁରି ଅଧିକ ରକ୍ଷଣଶୀଳ କରିବା ହେଲା ତାଙ୍କ ଉଦ୍ଦେଶ୍ୟ, ତାହା ଦ୍ୱାରା ଭବିଷ୍ୟତ ପାର୍ଲାମେଣ୍ଟଗୁଡ଼ିକ ସହଜରେ ଆୟତ୍ତ କରି ହେବ ଏବଂ ଜଗଲୁଲ ପନ୍ଥୀଙ୍କ ଭିତରୁ ଅଧିକାଂଶଙ୍କୁ ଅଲଗା କରି ହେବ । କିନ୍ତୁ ଏହା ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ଉଠିଲା ଏବଂ ପରିଷ୍କାର ଦେଖାଗଲା ଯେ ନୂତନ ପ୍ରଥାନୁସାରେ ନିର୍ବାଚନ ସମ୍ପୂର୍ଣ୍ଣ ରୂପେ ବର୍ଜନ ହେବ । ତେଣୁ ରାଜା ଫୁଆଡ଼ଙ୍କୁ ନଇଁବାକୁ ପଡ଼ିଲା ଏବଂ ପୁରାତନ ପ୍ରଥା ଅନୁସାରେ ନିର୍ବାଚନ ହେଲା । ଫଳ କଣ ହେଲା ? ଜଗଲୁଲଙ୍କ ଦଳ ବହୁତ ଅଧିକ ସଂଖ୍ୟାରେ ଆସିଲେ—୨୦୦ ଭୋଟ ହେଲା ତାଙ୍କର, ବିରୋଧ ପକ୍ଷରେ ୧୪ ! ଦେଶ ଉପରେ ଜଗଲୁଲଙ୍କ ପ୍ରଭାବ କପରି ଓ ଇଜିପ୍ଟ କଣ ଚାହୁଁଥିଲା ତାହାର ପ୍ରମାଣ ଏଥିରୁ ଆଉ କିଛି ମିଳି ନ ଥାନ୍ତା ! ଏହା ସତ୍ତ୍ୱେ ବ୍ରିଟିଶ କମିସନର ( ସେ ହେଉଛନ୍ତି ଲର୍ଡ ଲଏଡ଼, ଭାରତରେ ଆଗେ ଗଭର୍ଣ୍ଣର ଥିଲେ ) ଜଗଲୁଲ ପ୍ରଧାନମନ୍ତ୍ରୀ ହେବାରେ ଆପତ୍ତି ଦର୍ଶାଇଲେ ଏବଂ ତେଣୁ ଆଉ ଜଣେ ବ୍ୟକ୍ତି ନିଯୁକ୍ତ ହେଲେ । ଏଥିରେ ଇଂରେଜଙ୍କର ହସ୍ତକ୍ଷେପ କରିବାର କଣ ଥିଲା ବୁଝିବା ମୁସ୍କିଲ୍ । ଯାହାହେଉ, ଜଗଲୁଲଙ୍କ ଦଳର ନୂତନ ସରକାର ଉପରେ କର୍ତ୍ତୃତ୍ୱ ରହିଲା ଏବଂ ସେମାନେ ନରମ ହେବା ନିମନ୍ତେ ସକଳ ଚେଷ୍ଟା କରିବା ସତ୍ତ୍ୱେ ଲଏଡ଼ଙ୍କ ସହିତ ବାରମ୍ବାର ସଙ୍ଘର୍ଷ ହେଲା । ସେ ଜଣେ ଅତି ପ୍ରଭୁତ୍ୱବ୍ୟଞ୍ଜକ ଓ ପ୍ରାଧାନ୍ୟପ୍ରେମୀ ବ୍ୟକ୍ତି ଥିଲେ ଏବଂ ବ୍ରିଟିଶ ଯୁଦ୍ଧଜାହାଜ ଧମକ ସବଦା ସେମାନଙ୍କୁ ଦେଖାଉଥିଲେ ।

ବ୍ରିଟେନସହ ଏକ ରାଜିନାମାରେ ପହଞ୍ଚିବା ନିମନ୍ତେ ୧୯୨୭ରେ ଆଉ ଏକ ଉଦ୍ୟମ ହେଲା; କିନ୍ତୁ ରାଜା ଫୁଆଡ଼ଙ୍କର ଅତି ନରମା ପ୍ରଧାନମନ୍ତ୍ରୀ ସୁଦ୍ଧା ବ୍ରିଟେନର ସର୍ତ୍ତସବୁ ଦେଖି

ବସ୍ଥିତ ହୋଇଯାଇଥିଲେ । କାଗଜରେ ଏକ ସ୍ୱାଧୀନତା ଆବରଣ ଦେଇ ସେମାନେ ପ୍ରକୃତରେ ବ୍ରିଟିଶ ସଂରକ୍ଷଣ ରୂପେ ବ୍ୟବହାର କରୁଥିଲେ । ତେଣୁ ମିଳାମିଶା ପୁନର୍ବାର ବିଫଳ ହେଲା ।

ଏହି ମିଳାମିଶା କଥାବାର୍ତ୍ତା ଚାଲିଥିବାବେଳେ ୧୯୨୭ ମସିହା ଅଗଷ୍ଟ ତା୨୩ରିଖରେ ୭୦ ବର୍ଷ ବୟସରେ ଇଜିପ୍ଟର ପ୍ରଧାନ ନେତା ସାଦ୍ ଜଗଲୁଲ ପାଶା ମରିଗଲେ । ସେ ମଲେ; କିନ୍ତୁ ତାଙ୍କର ସ୍ମୃତି ଇଜିପଟରେ ଏକ ଉଜ୍ଜ୍ୱଳ ଓ ମୂଲ୍ୟବାନ ସମ୍ପତ୍ତି ରୂପେ ରହିଛି ଏବଂ ଇଜିପ୍ଟ ଲୋକମାନଙ୍କୁ ପ୍ରେରଣା ଦେଉଛି । ତାଙ୍କର ସ୍ତ୍ରୀ ମାଡ଼ାମ୍ ସାଫିଆ ଜଗଲୁଲ ଏବେ ସୁଦ୍ଧା ଜୀବିତ ଅଛନ୍ତି—ସମଗ୍ର ଜାତି ତାଙ୍କୁ ସମ୍ମାନ ଦେଖାଏ ଓ ଶ୍ରଦ୍ଧା କରେ—ଜାତି ତାଙ୍କୁ "ଦେଶର ମାତା" ବୋଲି ଉପାଧି ଦେଇଛି । କାଏରୋରେ ତାଙ୍କ ଘରକୁ "ଲୋକଙ୍କ ଘର" ବୋଲି କୁହାଯାଏ—ଦୀର୍ଘକାଳ ହେଲା ଏହା ଇଜିପ୍ଟର ଜାତୀୟତାବାଦୀମାନଙ୍କର ହେଡ଼୍‌କ୍ୱାର୍ଟର ହୋଇ ରହିଛି ।

ଜଗ୍‌ଲୁଲଙ୍କ ପରେ ମୋସ୍ତାଫା ନାହାସ ପାଶା ଓ୍ୱାଫ୍‌ଦ ନେତା ହେଲେ । ପରେ ୧୯୨୮ ମାର୍ଚ୍ଚ ମାସରେ ସେ ପ୍ରଧାନମନ୍ତ୍ରୀ ହେଲେ । ସେ ନାଗରିକ ଅଧିକାର ଓ ଲୋକଙ୍କ ଅସ୍ତ୍ର ଧାରଣା କରିବା ଅଧିକାର ଆଦି କେତେକ ଅତି ସରଳ ସଂସ୍କାର ଦେଶରେ କରିବା ନିମନ୍ତେ ଚେଷ୍ଟା କଲେ । ସାମରିକ ଆଇନ କାଳରେ ବ୍ରିଟିଶ ଏହି ଅଧିକାର ସେମାନଙ୍କଠାରୁ କାଢ଼ି ନେଇଥିଲେ । ଇଜିପ୍ଟ ପାର୍ଲିମେଣ୍ଟରେ ଏହି ପ୍ରଶ୍ନ ବିଚାର ହେବା ସଙ୍ଗେ ସଙ୍ଗେ ଇଂଲଣ୍ଡରୁ ଧମକ ଆସିଲା ଯେ ଏହା କରାଯିବା ଉଚିତ ନୁହେଁ । ଏକ ନିତାନ୍ତ ଘରୋଇ ବ୍ୟାପାରରେ ଇଂଲଣ୍ଡ ଏପରି ହସ୍ତକ୍ଷେପ କରିବା ଅତି ଅସାଧାରଣ ପରି ମନେ ହେଲା; କିନ୍ତୁ ପ୍ରଚଳିତ ପୁରୁଣା ଢଙ୍ଗରେ ଲର୍ଡ଼ ଲସ୍ୱେଡ଼୍ ଏକ ଚରମପତ୍ର ଦେଲେ ଏବଂ ମାଲଟାରୁ ଆଲେକ୍‌ଜାଣ୍ଡ୍ରିଆ ବନ୍ଦରକୁ ବ୍ରିଟିଶ ଯୁଦ୍ଧଜାହାଜ ଚାଲିଲା । ନାହାସ ପାଶା କେତେକ ପରିମାଣରେ ନଇଁଲେ ଏବଂ କେତେ ମାସ ପରେ ଆସନ୍ତା ଅଧିବେଶନରେ ଏହି ଆଇନ ବିଚାର ସ୍ଥଗିତ ରଖିବାକୁ ସମ୍ମତ ହୋଇଥିଲେ ।

କିନ୍ତୁ ଆଉ ଆଗାମୀ ଅଧିବେଶନ ହୋଇ ନାହିଁ । ରାଜା, ବ୍ରିଟିଶ ସରକାର—ପ୍ରତିକ୍ରିୟା ଓ ସାମ୍ରାଜ୍ୟବାଦ— ଚେଷ୍ଟା କଲେ ଯେପରି ଆଉ 'ବଦ୍ ଆଚରଣ' କରିବା ନିମନ୍ତେ ପାର୍ଲିମେଣ୍ଟ ସୁବିଧା ନ ପାଏ । ଗୋଟାଏ ନୂତନ ଉପାୟରେ ଚକ୍ରାନ୍ତ ଚାଲିଲା । ଉଚ୍ଚ ଚରିତ୍ରବାନ୍ ଓ ନିଷ୍କଳଙ୍କ ଲୋକ ହିସାବରେ ନାହାସ ପାଶାଙ୍କର ବିଶେଷ ଖ୍ୟାତି ରହିଛି । ହଠାତ୍ ଏକ ଚିଠି ଉପରେ ଭିତ୍ତି କରି ( ଏହା ପୁଣି ପରେ ଜାଲ ବୋଲି ଜଣାପଡ଼ିଲା ) ନାହାସ ପାଶା ଓ ଓ୍ୟାଫ୍‌ଦ ଦଳର ଜଣେ କୋପ୍ଟ ନେତାଙ୍କ ବିରୁଦ୍ଧରେ ଉତ୍କୋଚ ଗ୍ରହଣର ଏକ ଅଭିଯୋଗ ଅଣା ହେଲା । ରାଜପ୍ରାସାଦର ଲୋକେ ଓ ବ୍ରିଟେନ୍ ଖୁବ୍ ପ୍ରଚାର ଚଳାଇଲେ । ଖାଲି ଇଜିପ୍ଟ ନୁହେଁ ବିଦେଶରେ ମଧ୍ୟ ବ୍ରିଟିଶ ଏଜେନ୍‌ସି ଓ ସମ୍ବାଦପତ୍ର ପ୍ରତିନିଧିମାନେ

ମିଥ୍ୟା ଅଭିଯୋଗ ପ୍ରଚାର କଲେ । ଏହି ଅପରାଧ ବାହାନାରେ ନାହାଶ ପାଶାଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେବା ନିମନ୍ତେ ରାଜା ଫୁଆଡ଼୍ କହିଲେ, ସେ ତାହା କରିବାକୁ ଅସ୍ୱୀକାର କଲେ ଏବଂ ତେଣୁ ତାଙ୍କୁ ଫୁଆଡ଼୍ ବରଖାସ୍ତ କଲେ । ଲୟେଡ଼୍ ଫୁଆଡ଼୍ ଷଡ଼ଯନ୍ତ୍ରର ଏବେ ଦ୍ୱିତୀୟ ପର୍ବ ଆରମ୍ଭ ହେଲା । ବଳପୂର୍ବକ କ୍ଷମତା ଦଖଲ କରାଗଲା ଏବଂ ଏକ ହୁକୁମନାମାରେ ରାଜା ପାର୍ଲାମେଣ୍ଟ ସ୍ଥଗିତ ରଖିଲେ ଏବଂ ଶାସନତନ୍ତ୍ର ବଦଳାଇ ଦେଲେ । ମୁଦ୍ରାଯନ୍ତ୍ରର ସ୍ୱାଧୀନତା ଓ ଅନ୍ୟ ସ୍ୱାଧୀନତା ଅଧିକାର ଧାର୍ଯ୍ୟ କରିଥିବା ଦଫା ସବୁ ଶାସନ ବିଧାନରୁ ଉଠାଇ ଦିଆଗଲା ଏବଂ ଅଧିନାୟକତ୍ୱ (ଡିକ୍‌ଟେଟରଶାହି) ଘୋଷଣା କରାଗଲା । ଇଂରେଜ ସମ୍ବାଦପତ୍ର ଓ ଇଜିପ୍ଟରେ ଥିବା ୟୁରୋପୀୟମାନେ ଉତ୍‌ଫୁଲ୍ଲ ହେଲେ ।

ଡିକ୍‌ଟେଟରଶାହି ଥିବା ସତ୍ତ୍ୱେ ପାର୍ଲାମେଣ୍ଟ ସଭ୍ୟ ବୈଠକ କଲେ ଏବଂ ନୂତନ ସରକାରକୁ ବେଆଇନ ଘୋଷଣା କଲେ; କିନ୍ତୁ ଲୟେଡ଼୍ ବା ଫୁଆଡ଼୍ କେହି ଏଥିରେ ବିଚଳିତ ହେଲେ ନାହିଁ । "ଆଇନ ଓ ଶୃଙ୍ଖଳାର" କାର୍ଯ୍ୟ ହେଲା ପ୍ରତିକ୍ରିୟା ଓ ସାମ୍ରାଜ୍ୟବାଦର ସମର୍ଥନ; ତା ବିରୁଦ୍ଧରେ ଶସ୍ତ୍ରରୂପେ ବ୍ୟବହୃତ ହେବା ନୁହେଁ ।

ସରକାରୀ ଚାପ ସତ୍ତ୍ୱେ ନାହାଶ ପାଶାଙ୍କ ବିରୁଦ୍ଧରେ ସରକାରୀ ଅଭିଯୋଗ ବିଫଳ ହେଲା । ତାଙ୍କ ବିରୁଦ୍ଧରେ ଅଭିଯୋଗ ସବୁ ମିଥ୍ୟା ବୋଲି ପ୍ରମାଣିତ ହେଲା । ସରକାର (ଆହା କପରି ଅଦ୍ଭୁତ ନ୍ୟାୟ ଓ ଉଦାର !) ସମ୍ବାଦପତ୍ରରେ ରାୟ ପ୍ରକାଶିତ ହେବା ବାରଣ କରିଦେଲା । କିନ୍ତୁ ସମ୍ବାଦ କିଞ୍ଚିତ ଭାବରେ ତତ୍‌କ୍ଷଣାତ୍ ପ୍ରଚାରିତ ହୋଇଗଲା ଏବଂ ପ୍ରତ୍ୟେକ ସ୍ଥାନରେ ମହାଆନନ୍ଦ ଦେଖାଗଲା ।

ଲର୍ଡ଼ ଲୟେଡ଼୍ ଓ ବ୍ରିଟିଶ ସେନାଙ୍କ ସମର୍ଥନରେ ଡିକ୍‌ଟେଟର ଶାସନ ଓ୍ୟାଫ୍‌ଦ ଦଳ ଅର୍ଥାତ୍ ଇଜିପ୍ଟ ଜାତୀୟତାକୁ ଭାଙ୍ଗି ଦମନ କରିଦେବା ନିମନ୍ତେ କଠୋର ଉଦ୍ୟମ କଲେ । ସ୍ୱଭାବତ ଆତଙ୍କ ଜାରି ହେଲା ଏବଂ ସମ୍ବାଦସବୁ ଯାଞ୍ଚ କରାଗଲା । ଏସବୁ ସତ୍ତ୍ୱେ ବିରାଟ ଜାତୀୟ ପ୍ରଦର୍ଶନମାନ ହେଲା ଏବଂ ସେଥିରେ ନାରୀମାନେ ବିଶେଷ ଭାଗ ନେଲେ । ଏକସପ୍ତାହ ଧର୍ମଘଟ ହେଲା, ଓକିଲ ଓ ଅନ୍ୟମାନେ ସେଥିରେ ଭାଗ ନେଲେ; କିନ୍ତୁ ଯାଞ୍ଚ ପ୍ରଥା (Censorship) ଯୋଗୁଁ ସମ୍ବାଦପତ୍ର ସବୁ ଏହା ପ୍ରକାଶ କରିପାରିଲେ ନାହିଁ ।

ତେଣୁ ୧୯୨୮ ବର୍ଷଟି ସ୍ୱେଚ୍ଛାଚାରିତାରେ ବିତିଗଲା । ଏହି ବର୍ଷ ଶେଷବେଳକୁ ଇଂଲଣ୍ଡର ରାଜନୀତିକ ପରିସ୍ଥିତିର ପରିବର୍ତ୍ତନର ପ୍ରତିକ୍ରିୟା ଇଜିପ୍ଟରେ ହେଲା । ସେଠି ଏକ ଶ୍ରମିକ ସରକାର ମନ୍ତ୍ରୀପଦକୁ ଆସିଥିଲା ଏବଂ ତାହାର ପ୍ରଥମ କାର୍ଯ୍ୟ ହେଲା ଲର୍ଡ଼ ଲୟେଡ଼୍‌ଙ୍କୁ ଫେରାଇ ନେବା—ସେ ବ୍ରିଟିଶ ସରକାର ପକ୍ଷରେ ସୁଦ୍ଧା ଅସହ୍ୟ ହୋଇ ପଡ଼ିଥିଲା । ଲୟେଡ଼୍ ଚାଲିଯିବାରୁ ଷଡ଼ଯନ୍ତ୍ର ପାଇଁ ଫୁଆଡ଼୍-ଇଂରେଜ ମିତ୍ରତା ଭାଙ୍ଗିଗଲା । ଇଂରେଜ ସମର୍ଥନ ବିନା ଫୁଆଡ଼୍ ଚଳିପାରିଲେ ନାହିଁ ଏବଂ ତେଣୁ ୧୯୨୮ ଡ଼ିସେମ୍ବର ମାସରେ ସେ ପାର୍ଲାମେଣ୍ଟର ନୂଆ ନିର୍ବାଚନ ପାଇଁ ଅନୁମତି ଦେଲେ । ପୁନର୍ବାର ପ୍ରାୟ ସବୁ ସ୍ଥାନ ଓ୍ୟାଫ୍‌ଦ ଦଳ ଦଖଲ କରିଗଲେ ।

ଇଜିପ୍‌ଟ ସହିତ ଇଂରେଜ ଶ୍ରମିକ ସରକାର ପୁନର୍ବାର ମିଳାମିଶା କଥାବାର୍ତ୍ତା ଆରମ୍ଭ କଲେ ଏବଂ ସେହି ଉଦ୍ଦେଶ୍ୟରେ ୧୯୨୯ରେ ନାହାଶ ପାଶା ଲଣ୍ଡନ ଗଲେ । ପୂର୍ବ ସରକାର ଅପେକ୍ଷା ଶ୍ରମିକ ସରକାର ଅଳ୍ପ ଟିକିଏ ଆଗକୁ ଗଲେ ଏବଂ ଚାରୋଟି "ସ୍ୱାତର ପାଶ୍ଚ" କ୍ଷମତା ବିଷୟରେ ନାହାଶ ପାଶାଙ୍କର ମତ ରକ୍ଷା କରାଗଲା । କିନ୍ତୁ ଚତୁର୍ଥ ଅର୍ଥାତ୍ ସୁଡ଼ାନ ପ୍ରଶ୍ନରେ କୌଣସି ରାଜିନାମା ହୋଇପାରିଲା ନାହିଁ ଏବଂ ଶେଷ ମିଳାମିଶା କଥାବାର୍ତ୍ତା ବିଫଳ ହେଲା । ଯାହାହେଉ, ଏଥରକ ପୂର୍ବାପେକ୍ଷା ଖୁବ୍ ଅଧିକ ରାଜିନାମା ହୋଇଥିଲା, ଏବଂ ଉଭୟ ପକ୍ଷ ଭିତରେ ବନ୍ଧୁଭାବ ହେଲା ଏବଂ ପୁନର୍ବାର ଆଲୋଚନା କରିବା ନିମନ୍ତେ ପ୍ରତିଶ୍ରୁତ ହେଲେ । ମୋଟାମୋଟି ଏହାଦ୍ୱାରା ନାହାଶ ପାଶା ଓ ତାଙ୍କ ଓ୍ୟାଫ୍‌ଦ ଦଳର ବିଜୟ ହେଲା ଏବଂ ଇଜିପ୍‌ଟର ବ୍ରିଟିଶ ଓ ଅନ୍ୟ ବ୍ୟବସାୟୀ ଲୋକ ଓ ଧନପତିମାନେ ଏହାକୁ ଆଦୌ ଭଲ ପାଇଲେ ନାହିଁ । ରାଜା ଫୁଆଡ଼ଙ୍କୁ ମଧ୍ୟ ଭଲ ଲାଗିଲା ନାହିଁ । କେତେକ ମାସ ପରେ ୧୯୩୦ ଜୁନରେ ରାଜା ଓ ପାର୍ଲାମେଣ୍ଟ ଭିତରେ ସଙ୍ଘର୍ଷ ହେଲା ଏବଂ ନାହାଶ ପାଶା ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ।

ଏହି ଗୋଲମାଲ କରି ଫୁଆଡ଼ ପୁନର୍ବାର ଡିକ୍‌ଟେଟର ସାଜିଲେ—ତାଙ୍କ ଅମଳ ଭିତରେ ତାହା ତୃତୀୟ ଡିକ୍‌ଟେଟରି ରାଜୁତି । ପାର୍ଲାମେଣ୍ଟ ଭାଙ୍ଗି ଦିଆଗଲା, ଓ୍ୟାଫ୍‌ଦ ସମ୍ପାଦ-ପତ୍ରମାନଙ୍କୁ ବନ୍ଦ କରି ଦିଆଗଲା ଏବଂ ସାଧାରଣରେ ଅତି କଠୋରତାସହ ଡିକ୍‌ଟେଟରି ଶାସନ ଚଳିବାକୁ ଆରମ୍ଭ କଲା । ଚେମ୍ବର ଓ ସିନେଟ୍ ଉଭୟ ପାର୍ଲାମେଣ୍ଟର ସଭ୍ୟମାନେ ରାଜକୀୟ ସରକାରକୁ ମାନିଲେ ନାହିଁ ଏବଂ ପାର୍ଲାମେଣ୍ଟ ଗୃହରେ ଜବରଦସ୍ତି ପ୍ରବେଶ କରି ସେଠାରେ ଏକ ବୈଠକ କଲେ । ୧୯୩୦ ଜୁନ ୨୩ ତାରିଖରେ ପବିତ୍ର ଭାବରେ ଶାସନ ବିଧାନକୁ ଭକ୍ତି ଦେଖାଇ ଶପଥ ଗ୍ରହଣ କଲେ ଏବଂ ସେମାନେ ପ୍ରତିଜ୍ଞା କଲେ ଯେ ନିଜର ସମସ୍ତ ଶକ୍ତିସହ ସେମାନେ ଏହାକୁ ରକ୍ଷା କରିବେ । ସମଗ୍ର ଦେଶରେ ବଡ଼ ବଡ଼ ସଭା ସମିତି ହେଲା । ସୈନ୍ୟମାନେ ଏହା ସବୁ ବଳପୂର୍ବକ ଭାଙ୍ଗିଦେଲେ ଏବଂ ପ୍ରଚୁର ପରିମାଣରେ ରକ୍ତପାତ ହେଲା । ନାହାଶ ପାଶା ନିଜେ ଆହତ ହେଲେ । ଏହି ରୂପେ ବ୍ରିଟିଶ କର୍ମଚାରୀଙ୍କ ଅଧୀନସ୍ଥ ସୈନ୍ୟ ଓ ପୁଲିସ ଡିକ୍‌ଟେଟରି ଶାସନକୁ କାଏମ୍ କରି ରଖିଲେ—କେବଳ ରାଜା ପାଖରେ ମୁହଁ ମାଡ଼ି ପଡ଼ିଥିବା କେତେକ ଧନୀ ଓ ଅଭିଜାତ ଶ୍ରେଣୀ ଛଡ଼ା ସମଗ୍ର ଦେଶ, ଏହି ଡିକ୍‌ଟେଟରି ଶାସନ ପ୍ରତି ତୀବ୍ର ବିରକ୍ତି ଦେଖାଉଥିଲା । ଓ୍ୟାଫ୍‌ଦ ଦଳ ଛଡ଼ା ଅନ୍ୟମାନେ ଯେପରିକି ଭାରତର ମାନ୍ଦା ଓ ନରମା ଦଳ, ଯେଉଁମାନେ ଲୋକଙ୍କ ପକ୍ଷରୁ ସକଳ ପ୍ରକାର ଦୃଢ଼ କାର୍ଯ୍ୟର ବିରୋଧ କରନ୍ତି, ସେମାନେ ବି ଏହି ଡିକ୍‌ଟେଟର ପ୍ରଥାର ପ୍ରତିବାଦ କଲେ ।

ସେହିବର୍ଷ ପରେ ୧୯୩୦ରେ ରାଜା ଏକ ନୂତନ ଶାସନବିଧାନ ଘୋଷଣା କରି ହୁକୁମନାମା ଜାରି କଲେ—ଏଥିରେ ସେ ପାର୍ଲାମେଣ୍ଟର କ୍ଷମତା ଉଚ୍ଛେଦ କଲେ ଓ ନିଜର କ୍ଷମତା ବଢ଼ାଇଥିଲେ । ଏପରି କାମ କରିବା ଅତି ସହଜ ଥିଲା । ଖାଲି ଏକ ଘୋଷଣା ପତ୍ର

ବାହାର କର ଏବଂ ଏହା ହୋଇଯିବ, କାରଣ ରାଜାଙ୍କ ପଶ୍ଚାତ୍ତରେ ସାମ୍ରାଜ୍ୟବାଦୀ ଶକ୍ତିର କ୍ରୂର ଛାୟା ରହିଥିଲା ।

୧୯୨୨ଠାରୁ ୧୯୩୦ ପର୍ଯ୍ୟନ୍ତ ଇଜିପ୍ଟର ନଅବର୍ଷର କାହାଣୀ ଟିକିଏ ବିସ୍ତୃତ ଭାବରେ ମୁଁ ତତେ ଲେଖିଛି, କାରଣ ଏହା ମୋତେ ଏକ ଅସାଧାରଣ କାହାଣୀ ପରି ବୋଧ ହେଲା । ୧୯୨୨ ଫେବୃୟାରୀର ବ୍ରିଟିଶ ଘୋଷଣା ପତ୍ର ଅନୁସାରେ ଇଜିପ୍ଟର ଏହା "ସ୍ୱାଧୀନତା" ଅମଳ । ଇଜିପ୍ଟ ଲୋକଙ୍କର ଇଚ୍ଛା ବିଷୟରେ କିଛି ସନ୍ଦେହ ନ ଥିଲା । ଯେତେବେଳେ ସୁଯୋଗ ଦିଆଗଲା ମୁସଲମାନ ଓ କୋପ୍ଟ ସମ୍ପ୍ରଦାୟ ଅଧିକ ସଂଖ୍ୟକ ରୂପେ ଓ୍ୟାଫଦ୍ ଦଳମାନଙ୍କୁ ନିର୍ବାଚିତ କଲେ । କିନ୍ତୁ ସେମାନେ ବିଦେଶୀ ଓ ବିଶେଷତଃ ଇଂରେଜ ଦେଶକୁ ଶୋଷଣ କରିବାର କ୍ଷମତା ସେମାନେ କମାଇ ଦେବାକୁ ଚାହିଁ ଥିବାରୁ ଏହି ସବୁ ବିଦେଶୀ ସ୍ଥାପିତ ସ୍ୱାର୍ଥ ବଳ ପ୍ରୟୋଗ ଓ ହିଂସା ଶଠତା ଓ ଚକ୍ରାନ୍ତ—ପ୍ରତ୍ୟେକ ଉପାୟରେ ବିରୋଧ କରିବାକୁ ଲାଗିଲେ ଏବଂ ନିଜର ହୁକୁମ ଅନୁସାରେ କାର୍ଯ୍ୟ କରିବା ନିମନ୍ତେ ଏକ ପୁତ୍ତଳୀ ରାଜା ଥୋଇଲେ ।

ଓ୍ୟାଫଦ୍ ଆନ୍ଦୋଳନ ଏକ ଖାଣ୍ଟି ଜାତୀୟତାବାଦୀ ବୁର୍ଜୋୟା ଆନ୍ଦୋଳନ । ଏହା ଜାତୀୟ ସ୍ୱାଧୀନତା ପାଇଁ ଲଢ଼ାଇ କରିଛି ଏବଂ ସାମାଜିକ ସମସ୍ୟାରେ ହସ୍ତକ୍ଷେପ କରି ନାହିଁ । ଯେତେବେଳେ ପାର୍ଲାମେଣ୍ଟ କାର୍ଯ୍ୟ କରିଛି, ଏହା ଶିକ୍ଷା ଓ ଅନ୍ୟ ବିଭାଗରେ କେତେକ ଭଲ କାମ କରିଛି । ବାସ୍ତବିକ ଜାତୀୟ ସଂଗ୍ରାମ ସତ୍ତ୍ୱେ ଏହି ଅଳ୍ପକାଳ ମଧ୍ୟରେ ପାର୍ଲାମେଣ୍ଟ ଇଂରେଜ ଶାସନ ଆଗ ଚାଳିଶବର୍ଷ ଭିତରେ ଯାହା କରି ନ ଥିଲା ତାହା କରିପାରିଛି । ନିର୍ବାଚନ ଓ ବଡ଼ ବଡ଼ ସଭା ସମିତିମାନଙ୍କରେ ଓ୍ୟାଫଦ୍ ଦଳର କୃଷକମାନଙ୍କ ଭିତରେ ଲୋକପ୍ରିୟତା ଦେଖା ହୋଇଛି । ତଥାପି ଏହି ଆନ୍ଦୋଳନ ପ୍ରକୃତରେ ଏକ ମଧ୍ୟବିତ୍ତ ଶ୍ରେଣୀ ଆନ୍ଦୋଳନ ହୋଇ ଥିବାରୁ, ସାମାଜିକ ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ହେଉଥିବା ଆନ୍ଦୋଳନ ଯେ ପରିମାଣରେ ଜନସାଧାରଣଙ୍କୁ ଜାଗ୍ରତ କରିପାରନ୍ତା, ଏହା କରିପାରି ନ ଥିଲା ।

ମୁଁ ଏ ଚିଠି ଶେଷ କରିବା ପୂର୍ବରୁ ତତେ ନାରୀ ଆନ୍ଦୋଳନ ସମ୍ବନ୍ଧରେ କିଛି କହିବି । କେବଳ ବୋଧହୁଏ ଆରବୀୟା ଛଡ଼ା ସବୁ ଆରବ ଦେଶରେ ନାରୀମାନଙ୍କ ଭିତରେ ବହୁତ ଜାଗରଣ ହୋଇଥିଲା । ଅନ୍ୟ ଅନେକ ବିଷୟ ପରି ଏଥିରେ ମଧ୍ୟ ଇଜିପ୍ଟ ଇରାକ, ସିରିଆ ଓ ପାଲେଷ୍ଟାଇନ ଅପେକ୍ଷା ଅଧିକ ଅଗ୍ରଗାମୀ ଥିଲା । କିନ୍ତୁ ଏ ସବୁ ଦେଶରେ ଏକ ସଙ୍ଗଠିତ ନାରୀ ଆନ୍ଦୋଳନ ରହିଛି ଏବଂ ୧୯୩୦ ଜୁଲାଇ ମାସରେ ଡାମାସ୍କସ୍‌ରେ ପ୍ରଥମ ଆରବ ନାରୀ କଂଗ୍ରେସ ବସିଥିଲା । ସେମାନେ ରାଜନୀତିକ ବ୍ୟାପାର ଅପେକ୍ଷା ସାଂସ୍କୃତିକ ଓ ସାମାଜିକ ପ୍ରଗତି ପ୍ରତି ବେଶୀ ଜୋର ଦେଲେ । ଇଜିପ୍ଟରେ ନାରୀମାନେ ଅଧିକ ରାଜନୀତିକ ମନୋଭାବାପନ୍ନ । ସେମାନେ ରାଜନୀତିକ ସଭାସମିତିରେ ଯୋଗ ଦିଅନ୍ତି ଏବଂ ଗୋଟିଏ ମଜବୁତ ନାରୀ ଭୋଟ

ଦାବୀ ପୂନଃପୂନ ରହିଛି । ସେମାନେ ନିଜ ଅନୁକୂଳ ଢଙ୍ଗରେ ବିବାହ ଆଇନର ସଂସ୍କାର ଦାବୀ କରନ୍ତି ଏବଂ ବ୍ୟବସାୟ ପ୍ରଭୃତିରେ ସମାନ ସୁବିଧା ଦାବୀ କରନ୍ତି । ମୁସଲମାନ ଓ ଖ୍ରିଷ୍ଟିୟାନ ନାରୀମାନେ ପରସ୍ପରସହ ସମ୍ପୂର୍ଣ୍ଣ ରୂପେ ସହଯୋଗ କରନ୍ତି । ମୁହଁରେ ବୁର୍ଖାପିନ୍ଧିବାର ଅଭ୍ୟାସ ସବୁସ୍ଥାନରେ ବିଶେଷତଃ ଇଜିପ୍ଟରେ କମିଯାଇଛି । ପରଦା ରୂଳି ପରି ଉଠିଯାଇ ନାହିଁ; କିନ୍ତୁ ଏହା ଭାଙ୍ଗି ଗଲଣି ।

ନୋଟ ( ଅକ୍ଟୋବର ୧୯୩୮ ) :—

୧୯୩୦ ପରଠାରୁ ଇଜିପ୍ଟ ଏକ ଡିକ୍ଟେଟର ସରକାର ଅଧୀନରେ ଥିଲା—ରାଜା ନିୟନ୍ତ୍ରଣ କରୁଥିଲା । କାଗଜ କଲମରେ ଏହା ଏକ ଅଧିକାରପ୍ରାପ୍ତ ସ୍ୱାଧୀନ ରାଜ୍ୟ (Sovereign Independent State) ଥିଲା, କିନ୍ତୁ ବାସ୍ତବରେ ଏହା ପ୍ରାୟ ଗ୍ରେଟ୍ ବ୍ରିଟେନର ଏକ ଉପନିବେଶ ଥିଲା—କାଏରୋ, ଆଲେକଜାଣ୍ଡ୍ରିଆ ଓ ବ୍ରିଟେନରେ ବିଦେଶୀ ପଲଟନ ସୁଏଜ୍‌କେନାଲ ଓ ସୁଡ଼ାନକୁ ନିୟନ୍ତ୍ରଣ କରୁଥିଲେ । ଏତେବେଳେ ସମସ୍ତ ଦୁନିଆରେ ମହାନ ଆର୍ଥିକ ସଙ୍କଟ ବେଳ ପଡ଼ିଥିଲା ଏବଂ ତୁଳାଦର ପଡ଼ିଯିବାରୁ ଇଜିପ୍ଟ ବଡ଼ କ୍ଷତିଗ୍ରସ୍ତ ହେଲା ।

୧୯୩୫ରେ ଫାସିଷ୍ଟ ଇଟାଲୀ ଆବିସିନିଆ ଆକ୍ରମଣ କଲା ଏବଂ ଇଜିପ୍ଟ ଓ ଉପର ନୀଳ ଉପତ୍ୟକାରେ ବ୍ରିଟିଶ ସ୍ୱାର୍ଥ ଉପରେ ଏ ଯେଉଁ ନୂତନ ବିପଦ ପଡ଼ିଲା, ସେଥିରେ ଇଜିପ୍ଟ ଓ ଇଂଲଣ୍ଡ ସମ୍ବନ୍ଧ ପରିବର୍ତ୍ତନ ହେଲା । ଇଂଲଣ୍ଡ ଏକ ବିଦ୍ରୋହୀ ଓ ବିରୁଦ୍ଧ ଇଜିପ୍ଟ ରହିବା ଚାହୁଁ ନ ଥିଲା ଏବଂ ଇଜିପ୍ଟ ନେତାମାନେ ଇଂଲଣ୍ଡକୁ ଏକ ସମ୍ଭବପର ବନ୍ଧୁ ହିସାବରେ ଦୃଷ୍ଟି ପକାଇଲେ । ପାର୍ଲାମେଣ୍ଟ ନିର୍ବାଚନରେ ଓ୍ୟାଫଦ୍ ଦଳ ଜୟଯୁକ୍ତ ହେଲେ ଏବଂ ନାହାଶ ପାଶା ପ୍ରଧାନମନ୍ତ୍ରୀ ହେଲେ । ଆବିସିନିଆ ଉପରେ ଇଟାଲୀ ଆକ୍ରମଣ ଫଳରେ ଏକ ନୂତନ ବାୟୁମଣ୍ଡଳ ସୃଷ୍ଟି ହେଲା, ଇଜିପ୍ଟ ଓ ଇଂଲଣ୍ଡ ରାଜିନାମାରେ ପହଞ୍ଚିଲେ ଏବଂ ୧୯୩୬ ଅଗଷ୍ଟରେ ଗୋଟାଏ ସନ୍ଧି ସ୍ୱାକ୍ଷରିତ ହେଲା । ଶାନ୍ତି ସକାଶେ ଆଗରୁ ଯାହା ସବୁ ଇଜିପ୍ଟ ଦାବୀ କରୁଥିଲା, ସେଥିରୁ ଅନେକ ଛାଡ଼ି ଦେଲା ଏବଂ ସୁଡ଼ାନରେ ପ୍ରଚଳିତ ଅବସ୍ଥା ଓ ସୁଏଜ କେନାଲକୁ ଇଂଲଣ୍ଡ ରକ୍ଷା କରିବାର ଅଧିକାରକୁ ଗ୍ରହଣ କଲା । ଆହୁରି ମଧ୍ୟଇଜିପ୍ଟର ବୈଦେଶିକ ନୀତି ଇଂଲଣ୍ଡ ସହ ସମ୍ବନ୍ଧ ରଖିଲା ପରି ହେଲା । ଅନ୍ୟ ପକ୍ଷରେ ଇଂଲଣ୍ଡ ମଧ୍ୟ କାଏରୋ ଓ ଆଲେକ୍‌ଜାଣ୍ଡ୍ରିଆରୁ ସୈନ୍ୟ ନେଇ ଆସିଲା, ମିଳିତ କଚେରୀ ସବୁ ଓ ଏକ୍‌ସଟ୍ରା ଟେରିଟରିଆଲିଟି (Extra territoriality) ଉଠାଇବାରେ ସାହାଯ୍ୟ କରିବ ବୋଲି ପ୍ରତିଶ୍ରୁତି ଦେଲା ଏବଂ ଇଜିପ୍ଟର ଲିଗ୍ ଅଫ୍ ନେସନ୍‌ସରେ ପ୍ରବେଶାଧିକାର ସମର୍ଥନ କରିବ ବୋଲି କହିଲା ।

ଏହି ମିଳାମିଶାରେ ଖୁବ୍ ଆନନ୍ଦ ଦେଖାଦେଲା; କିନ୍ତୁ ଏହା ଏକ ପ୍ରକାର ଆଗରୁଚି କଥା ହୋଇଗଲା । ରାଜା ସବୁ ବଦଳିଗଲେ ଯୁବା ରାଜକୀୟ ଆଡ଼ଡ଼ା ସେହିପରି ଓ୍ୱାଫଦ୍ ଦଳକୁ ଘୃଣା କରିବାକୁ ଲାଗିଲେ ଏବଂ ତା ବିରୁଦ୍ଧରେ ଚକ୍ରାନ୍ତ କରୁଥିଲେ । ଅଳ୍ପଦିନରେ

ରହି ବ୍ରିଟିଶ ସାମ୍ରାଜ୍ୟବାଦ ଏବେ ସୁଦ୍ଧା କାର୍ଯ୍ୟ କରୁଛି । ମୁଷ୍ଟିମେୟ ବ୍ୟକ୍ତିଙ୍କ ଅଧୀନରେ ଇଜିପ୍ଟ ଭୂମିର ବହୁ ବଡ଼ ଭାଗ ରହିଛି ଏବଂ ରାଜବଂଶର ବହୁତ ଅଂଶ ରହିଛି । ଏହି ଭୂମ୍ୟଧିକାରୀମାନେ ପ୍ରଗତିଶୀଳ ଆଇନ କାନୁନ ଓ ଲୋକଙ୍କ ଶକ୍ତି ବୃଦ୍ଧିର ବଡ଼ ବିରୋଧୀ । ଏହି ରୂପେ ବରାବର ବିବାଦ ଲାଗିରହିଲା; ରାଜା ନାହାଶ ପାଶାଙ୍କୁ ବରଖାସ୍ତ କଲେ ଓ ପାର୍ଲିମେଣ୍ଟ ଭାଙ୍ଗି ଦେଲେ ।

ରାଜବଂଶରର ସରକାର କିଛି ଦିନ ଚାଲିଲା ପରେ ନୂତନ ନିର୍ବାଚନ ହେଲା ଏବଂ ଓ୍ୱାଫ୍‌ଦମାନେ ଖୁବ୍ ପରାସ୍ତ ହେବା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ପରେ ଦେଖାଗଲା ଯେ ଏହି ନିର୍ବାଚନ ଗୋଟାଏ କୃତ୍ରିମ ବ୍ୟାପାର ଥିଲା ଏବଂ ଆଗରୁ ପାଞ୍ଚ କରି ପରାଜିତ ଲୋକଙ୍କୁ ନିର୍ବାଚିତ ବୋଲି ଘୋଷଣା କରି ଦିଆଗଲା । ନାହାଶ ପାଶାଙ୍କ ନେତୃତ୍ୱରେ ଓ୍ୱାଫ୍‌ଦ ଦଳ ଖୁବ୍ ଲୋକପ୍ରିୟ ହୋଇ ରହିଛି; କିନ୍ତୁ ଆଜିର ସରକାର ବ୍ରିଟିଶ ସାମ୍ରାଜ୍ୟବାଦ ସମର୍ଥନରେ ଏକ ରାଜପ୍ରାସାଦର ଚକ୍ରାନ୍ତରେ ଚାଲିଛି ।

## ୧୭୪ : ବିଶ୍ୱ ରାଜନୀତିରେ ପଶ୍ଚିମ-ଏସିଆର ପୁନଃ ପ୍ରବେଶ

ମେ ୨୫, ୧୯୩୩

ଏକ ଗ୍ରେଟ ଜଳଧାରା ହିଁ ପଶ୍ଚିମ-ଏସିଆରୁ ଇଜିପ୍ଟ ଓ ଆଫ୍ରିକାକୁ ପୃଥକ କରି ଦେଇଛି । ଆମେ ସୁଏଜ କେନାଲ ପାର ହେଲେ ଆରବୀସ୍ଥା, ପାଲେଷ୍ଟାଇନ, ସିରିଆ, ଇରାକ ସବୁ ଆରବ ଦେଶ ଏବଂ ଆଉ ଟିକିଏ ପଛକୁ ପର୍ସିଆରେ ପହଞ୍ଚିବା । ଆମେ ଦେଖିଛେ ପଶ୍ଚିମ ଏସିଆ ଇତିହାସରେ ପ୍ରଧାନ ଭାଗ ନେଇଥିଲା ଏବଂ ଅନେକ ସମୟରେ ପୃଥିବୀ ସମସ୍ୟାର ଏହା କେନ୍ଦ୍ର ହୋଇଥିଲା । ତା ପରେ ଗୋଟାଏ ବେଳ ପହଞ୍ଚିଲା ଏବଂ ଏହା ଅନେକ ବର୍ଷ ପର୍ଯ୍ୟନ୍ତ ରହିଲା—ସେଥିରେ ରାଜନୀତିକ ଭାବରେ ଏହା ପଛରେ ପଡ଼ିଗଲା । ଏହା ବନ୍ଧାଣ ପାଣି ହୋଇଗଲା ଏବଂ ଜୀବନସ୍ରୋତ ଧାବମାନ ହେଲା, ଏହାର ନିସ୍ତବ୍ଧ ସ୍ତର ଉପରେ ଗୋଟାଏ ହେଲେ ତରଙ୍ଗ ଜାତ କରି ନ ଥିଲା । ଆମେ ଏବେ ଆଉ ଏକ ପରିବର୍ତ୍ତନ ମଧ୍ୟରେ ରହିଛେ —ଏହା ମଧ୍ୟପ୍ରାଚ୍ୟର ଦେଶମାନଙ୍କୁ ପୁନର୍ବାର ବିଶ୍ୱ ସମସ୍ୟା ଭିତରକୁ ଟାଣି ଆଣୁଛି; ପୁନର୍ବାର ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ରାଜପଥ ଦେଇ ଏହା ଅତିକ୍ରମ କରୁଛି । ଏହା ଲକ୍ଷ୍ୟ କଲାପରି ଜିନିଷ ।

ପଶ୍ଚିମ-ଏସିଆ କଥା ଭାବିଲାବେଳକୁ ମୁଁ ଅତୀତରେ ନିଜକୁ ହରାଇ ଦେବାର ସମ୍ଭାବନା ରହିଛି; ପୁରାତନ କାଳର ଏତେ ପ୍ରତିବିମ୍ବ ମୋ ମନ ଘୋଡ଼ାଇ ପକାଉଛି ଏବଂ

ତାର ଚମତ୍କାର ଆକର୍ଷକ ଭାବ ଗ୍ରହିବା ମୋ ପକ୍ଷରେ କଷ୍ଟକର ହେଉଛି । ଏହି ଆକର୍ଷଣ-ମୋହରେ ନିଜକୁ ହରାଇ ନ ଦେବା ଲାଗି ମୁଁ ଚେଷ୍ଟା କରିବି; ତୁ କାଳେ ଭୁଲିଯିବୁ । ସେଥିପାଇଁ ମୁଁ ପୁଣି ଥରେ ତୋତେ ସ୍ମରଣ କରାଇ ଦେବାକୁ ଚାହେଁ ଯେ, ଇତିହାସ ଆରମ୍ଭରୁ ଅନେକ ସହସ୍ର ବର୍ଷ ପର୍ଯ୍ୟନ୍ତ ପୃଥିବୀର ଏହି ଅଞ୍ଚଳଟି ଶ୍ରେଷ୍ଠତ୍ୱ ହାସଲ କରିଥିଲା । ୭ ହଜାର ବର୍ଷ ପୂର୍ବେ ପୁରାତନ ଚାଲଡିଆ କୁଆଡ଼େ ଇତିହାସରେ ଲୀନ ହୋଇଯାଇଛି ( ଏହା ଆଧୁନିକ ଇରାକ ) । ତାପରେ ଆସିଲା ବାବିଲୋନ୍ । ବାବିଲୋନ୍ ପରେ କ୍ରୁର ଆସିରୀୟାନମାନେ ଆସିଲେ —ତାଙ୍କର ରାଜଧାନୀ ହେଲା ବିଖ୍ୟାତ ନିନେଭ । ଆସିରୀୟାନମାନେ ବି ତଡ଼ା ଖାଇଲେ ଏବଂ ପର୍ସିଆରୁ ଏକ ନୂତନ ବଂଶ ଓ ନୂତନ ଲୋକେ ଆସି ଭାରତ ସୀମାନ୍ତରୁ ଇଜିପ୍ଟ ପର୍ଯ୍ୟନ୍ତ ସମସ୍ତ ମଧ୍ୟପ୍ରାଚ୍ୟ ଉପରେ ନିଜର ଶାସନ ଲଦିଲେ । ଏମାନେ ହେଉଛନ୍ତି ପର୍ସିଆର ଆଚେମେନିଦ୍— ଏମାନଙ୍କ ରାଜଧାନୀ ହେଲା ପର୍ସିପଲିସ । ଏମାନଙ୍କ ଭିତରୁ 'ମହାନ ରାଜା' ସାଇରସ, ଡାରିୟସ ଓ ଜେରକ୍ସ ଜାତ—ସେମାନେ ଗ୍ରୀସକୁ ଧମକ ଦେଲେ; କିନ୍ତୁ କବଳରେ ଆଣିପାରିଲେ ନାହିଁ । ତାପରେ ଗ୍ରୀସ ବା ମାସିଡୋନିଆର ସନ୍ତାନ ଆଲେକ୍‌ଜାଣ୍ଡରଙ୍କ ହାତରେ ପରେ ତାଙ୍କର ଭାଗ୍ୟ-ରବି ବୁଡ଼ିଲା । ଆଲେକ୍‌ଜାଣ୍ଡରଙ୍କ ଅମଳରେ ଏକ ବିଚିତ୍ର ଘଟଣା ଘଟିଥିଲା । ସେ ଏସିଆ ଓ ଇଉରୋପର ମିଳନସ୍ଥଳୀରେ ଆଗରୁ ଏକ ଯୋଜନା କରିଥିଲେ । ଯାହାକୁ ଦୁଇ ମହାଦେଶର "ବିବାହ" ବୋଲି କୁହାଯାଏ । ସେ ନିଜେ (ତାଙ୍କର ଆଗରୁ ଅନେକ ସ୍ତ୍ରୀ ଥିଲେ ସୁଦ୍ଧା) ପର୍ସିଆନ୍ ରାଜାଙ୍କ କନ୍ୟାଙ୍କୁ ବିବାହ କଲେ ଏବଂ ଆଲେକଜାଣ୍ଡରଙ୍କ ହଜାର ହଜାର କର୍ମଚାରୀ ଓ ସୈନ୍ୟଙ୍କର ବି ପର୍ସିଆନ କନ୍ୟାମାନଙ୍କ ସହିତ ବିବାହ ହେଲା ।

ଆଲେକ୍‌ଜାଣ୍ଡରଙ୍କ ପରେ ଭାରତ ସୀମାନ୍ତଠାରୁ ମଧ୍ୟପ୍ରାଚ୍ୟ ପର୍ଯ୍ୟନ୍ତ ଅନେକ ଶତାବ୍ଦୀ ଧରି ଗ୍ରୀକ୍ ସଭ୍ୟତା ଚାଲି ଆସିଥିଲା । ଏହି ସମୟରେ ରୋମ୍‌ର ଶକ୍ତି ବଢ଼ିଲା ଏବଂ ଏହା ଏସିଆ ପର୍ଯ୍ୟନ୍ତ ବିସ୍ତୃତ ହେଲା । ନୂତନ ପର୍ସିଆ ସାମ୍ରାଜ୍ୟରେ ଶସାନିଦଙ୍କଠାରୁ ଏହା ବାଧା ପାଇଲା । ପାଶ୍ଚାତ୍ୟ ଓ ପ୍ରାଚ୍ୟ ଏହି ଦୁଇ ଭାଗରେ ରୋମ୍ ସାମ୍ରାଜ୍ୟ ବିଭକ୍ତ ହେଲା ଏବଂ ପୂର୍ବଖଣ୍ଡର ରାଜଧାନୀ ହେଲା କନ୍‌ଷ୍ଟାଣ୍ଟିନୋପଲ । ପଶ୍ଚିମ ଏସିଆର ଏହି ଭୂମିରେ ପ୍ରାଚ୍ୟ ପାଶ୍ଚାତ୍ୟ ଭିତରେ ପୁରାତନ ସଂଗ୍ରାମ ଚାଲିଲା ଏବଂ ପ୍ରଧାନ ଲଢୁଆ ଦଳ ହେଲେ କନ୍‌ଷ୍ଟାଣ୍ଟିନୋପଲର ବିଜାଣ୍ଟାଇନ୍ ସାମ୍ରାଜ୍ୟ ଓ ପର୍ସିଆର ଶସାନିଦ ସାମ୍ରାଜ୍ୟ । ଏହି କାଳରେ ବହୁତ ବେପାରୀ ଓଟ ପିଠିରେ ବଣିଜ ଜିନିଷ ଲଦି ପୂର୍ବରୁ ପଶ୍ଚିମ ଓ ପଶ୍ଚିମରୁ ପୂର୍ବକୁ ଏହି ସମତଳ ଭୂମି ପାର ହୋଇ ଯାତ୍ରା କରୁଥାନ୍ତି ।—କାରଣ ମଧ୍ୟପ୍ରାଚ୍ୟ ସେତେବେଳେ ପୃଥିବୀର ସର୍ବାପେକ୍ଷା ବଡ଼ ରାଜପଥ ଥିଲା ।

ଏହି ପଶ୍ଚିମ ଏସିଆ ଭୂମିରେ ତିନୋଟି ପ୍ରଧାନ ଧର୍ମ ଦେଖାଦେଲା—ଜୁଡାଇଜମ୍ (ଇହୁଦୀମାନଙ୍କର ଧର୍ମ), ଜୋରୋଷ୍ଟ୍ରିଆନିଜମ୍ (ଆଧୁନିକ ପାର୍ସିଙ୍କର ଧର୍ମ) ଏବଂ ଖ୍ରୀଷ୍ଟଧର୍ମ । ଆରବ ମରୁଭୂମିରେ ଚତୁର୍ଥ ଧର୍ମ ଏବେ ଦେଖାଦେଲା ଏବଂ ଏହା ଶୀଘ୍ର ପୃଥିବୀର ଅନ୍ୟ ତିନି

ଅଞ୍ଚଳରେ ପ୍ରାଧାନ୍ୟଲାଭ କଲା । ତାପରେ ଆସିଲା ବାଗଦାଦର ଆରବ ସାମ୍ରାଜ୍ୟ ଏବଂ ପୁରୁଣା ସଂଗ୍ରାମ ନୂତନ ଆକାରରେ—ଆରବମାନେ ବିଜାଣ୍ଟାଇନ ବିରୁଦ୍ଧରେ । ଏକ ଦୀର୍ଘ ଓ ସଙ୍କଟ କାଳ ପରେ ସେଲଜୁକ୍ ତୁର୍କିମାନଙ୍କ ଆଗମନରେ ଆରବ ସଭ୍ୟତା ମଳିନ ପଡ଼ିଲା ଏବଂ ମଙ୍ଗୋଲ ଚେଙ୍ଗିଜ ଖାଁର ଉତ୍ତରାଧିକାରୀମାନଙ୍କ ଦ୍ୱାରା ସେ ସଭ୍ୟତାକୁ ପୁରାପୁରି ଦମନ କରାଗଲା ।

କିନ୍ତୁ ମଙ୍ଗୋଲମାନେ ପଶ୍ଚିମକୁ ଆସିବା ପୂର୍ବରୁ ଖ୍ରୀଷ୍ଟିୟାନ ପାଶ୍ଚାତ୍ୟ ଓ ମୁସଲମାନ ପ୍ରାଚ୍ୟ ଭିତରେ ପଶ୍ଚିମ ଏସିଆ ଉପକୂଳରେ ଏକ ଭୀଷଣ ସଂଗ୍ରାମ ଆଗରୁ ଆରମ୍ଭ ହୋଇଯାଇଥିଲା । ଏହା ହେଉଛି କ୍ରୁଜେଡ଼—ଏହା ଥରକୁ ଥର ହୋଇ ୧୫୦ ବର୍ଷ ପର୍ଯ୍ୟନ୍ତ ପ୍ରାୟ ୧୩ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଲାଗି ରହିଥିଲା । ଏହି କ୍ରୁଜେଡ଼କୁ ଧର୍ମଯୁଦ୍ଧ ବୋଲି କୁହାଯାଏ ଏବଂ ଏଗୁଡ଼ିକ ତାହା ଥିଲା । କିନ୍ତୁ ଯୁଦ୍ଧ ସକାଶେ ଧର୍ମ ଏକ ଛଳନା, ମାତ୍ର କାରଣ ନୁହେଁ । ପ୍ରାଚ୍ୟ ତୁଳନାରେ ସେତେବେଳର ଇଉରୋପର ଲୋକେ ଅନୁନ୍ନତ ଥିଲେ । ଇଉରୋପର ଏହା ଅନ୍ଧକାର ଯୁଗ । କିନ୍ତୁ ଇଉରୋପ ଜାଗି ଉଠୁଥିଲା ଏବଂ ଚୁମ୍ବକ ପରି ଅଧିକ ଉନ୍ନତ ଓ ସମ୍ପତ୍ତିସମ୍ପନ୍ନ ପ୍ରାଚ୍ୟ ତାକୁ ଟାଣିନେଲା । ପୂର୍ବର ଏହି ଆକର୍ଷଣ ଅନେକ ଆକାରରେ ହେଲା ଏବଂ ଏ ସବୁ ଭିତରେ କ୍ରୁଜେଡ଼ ହେଉଛି ସର୍ବାପେକ୍ଷା ପ୍ରଧାନ । ଏହି ଯୁଦ୍ଧ ଫଳରେ ପଶ୍ଚିମ ଏସିଆ ଦେଶଠାରୁ ଇଉରୋପ ବହୁତ ଶିଖିଲା । ସେ ଅନେକ ସୁନ୍ଦର କଳା, କାରିଗରୀ ଓ ବିଳାସ ଅଭ୍ୟାସ ସବୁ ଶିଖିଲା ଏବଂ ଆହୁରି ଶ୍ରେଷ୍ଠ ଶିକ୍ଷା ମିଳିଲା—ତାହା ହେଉଛି ବୈଜ୍ଞାନିକ କାର୍ଯ୍ୟ ଓ ଚିନ୍ତାର ପ୍ରଣାଳୀ ।

କ୍ରୁଜେଡ଼ ଶେଷ ହୋଇଛି କି ନାହିଁ ମଙ୍ଗୋଲମାନେ ପଶ୍ଚିମ ଏସିଆକୁ ମାଡ଼ି ଆସିଲେ —ଧ୍ୱଂସକୁ ସାଙ୍ଗରେ ନେଇ ଆସିଲେ । ତଥାପି ମଙ୍ଗୋଲମାନେ କେବଳ ଧ୍ୱଂସକାରୀ ବୋଲି ଆମର ଭାବିବା ଉଚିତ ନୁହେଁ । ଚୀନଠାରୁ ରୁଷ ପର୍ଯ୍ୟନ୍ତ ସେମାନଙ୍କର ଚଳାଚଳ ଫଳରେ ସୁଦୂର ଲୋକସବୁ ଏକତ୍ର ହୋଇପାରିଲେ ଏବଂ ସେମାନଙ୍କ ଭିତରେ ବେପାର ଓ ଖବର ଆଦାନ ପ୍ରଦାନ ବଢ଼ିଲା । ତାଙ୍କର ବିଶାଳ ସାମ୍ରାଜ୍ୟ ଅଧୀନରେ ମରୁଭୂମି ପଥସବୁ ଯାତ୍ରା ଲାଗି ନିରାପଦ ହୋଇଗଲା ଏବଂ ଖାଲି ବଣିକ ନୁହନ୍ତି, କୂଟନୀତିଜ୍ଞ, ଧାର୍ମିକ ପାଦ୍ରୀ ଓ ଅନ୍ୟମାନେ ମଧ୍ୟ ଘୂରିଆଡ଼େ ବିରାଟ ଯାତ୍ରାମାନ କଲେ । ଏହି ପୁରୁଣା ବିଶ୍ୱରାଜପଥରେ ପ୍ରତ୍ୟକ୍ଷ ବାଟ ହେଲା ମଧ୍ୟପ୍ରାଚ୍ୟ, ଏସିଆ ଓ ଇଉରୋପ ଭିତରେ ଏହା ଥିଲା ସଂଯୋଗସ୍ଥଳୀ ।

ତୋର ବୋଧହୁଏ ମନେଥିବ ମଙ୍ଗୋଲମାନଙ୍କ ଅମଳରେ ମାର୍କୋପୋଲୋ ତାଙ୍କର ବାସସ୍ଥଳୀ ଭେନିସ୍‌ରୁ ସମସ୍ତ ଏସିଆ ପାର ହୋଇ ଚୀନକୁ ଯାଇଥିଲେ । ସେ ଲେଖିଥିବା କିମ୍ବା ସେ ତାଙ୍କର ଯାତ୍ରା ବିବରଣୀ କହିବାରେ ଅନ୍ୟ କେହି ଲେଖିଥିବା ଏକ ପୁସ୍ତକ ଆମେ ପଢ଼ିବାକୁ ପାଉ ଏବଂ ତେଣୁ ଆମେ ତାକୁ ମନେ ରଖିଛୁ । କିନ୍ତୁ ଆହୁରି ଅନେକ ଲୋକ ହୁଏତ ଦୀର୍ଘଯାତ୍ରା କରିଥିବେ, କିନ୍ତୁ ସେ ସମ୍ବନ୍ଧରେ ଲେଖିବାର କଷ୍ଟ କରିନାହାନ୍ତି ଏବଂ

ଯଦିବା ସେମାନେ ଲେଖିଥିଲେ, ବହିଗୁଡ଼ିକ ନଷ୍ଟ ହୋଇଯାଇଛି; କାରଣ ସେତେବେଳେ ପାଣ୍ଡୁଲିପି ପୁସ୍ତକ ଥିଲା । ବଣିକମାନେ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ବରାବର ଯାଉଥିଆନ୍ତି ଏବଂ ବେପାର ପ୍ରଧାନ କାର୍ଯ୍ୟ ହେଲେ ସୁଦ୍ଧା ଅନେକ ଲୋକ ସାହସ କରି ଭାଗ୍ୟ ପରୀକ୍ଷା ଲାଗି ଯାଉଥିଲେ । ମାର୍କୋପୋଲୋଙ୍କ ପରି ଆଉ ଜଣେ ମହାନ ପରିବ୍ରାଜକ ଥିଲେ । ସେ ହେଉଛନ୍ତି ଇବନ ବାଟୁଟା, ମରକକୋର ଟାଞ୍ଜିୟର୍ସରେ ଚଉଦଶ ଶତାବ୍ଦୀର ପ୍ରଥମ ଭାଗରେ ତାଙ୍କର ଜନ୍ମ । ମାର୍କୋପୋଲୋଙ୍କର ଠିକ୍ ଏକ ପୁରୁଷ ପରେ ସେ ଆସିଲେ । ୨୧ ବର୍ଷ ବୟସରେ ସେ ବ୍ୟାପକ ଦୁନିଆରେ ଗସ୍ତ କରିବା ନିମନ୍ତେ ନିଜର ଯାତ୍ରା ଆରମ୍ଭ କଲେ— ତାଙ୍କର ସାଥିରେ ନିଜର ବୁଦ୍ଧି ଓ ମୁସଲମାନ ଢାଞ୍ଚା ଶିକ୍ଷା ଛଡ଼ା ଆଉ କିଛି ନ ଥିଲା । ମରକକୋଠାରୁ ଉତ୍ତର ଆଫ୍ରିକା ପାର ହୋଇ ସେ ଇଜିପ୍ଟ ଯାତ୍ରା କଲେ ଏବଂ ତାପରେ ଆରବୀୟସ୍ଥା, ସିରିଆ ଓ ପର୍ସିଆ ଗଲେ; ତାପରେ ସେ ଗଲେ ଆନାଟୋଲିଆ (ତୁର୍କି), ଦକ୍ଷିଣ ରୁଷ ( ଗୋଲଡେନ ହୋର୍ଡର ମଙ୍ଗୋଲ ଖାଁଙ୍କ ଅଧୀନରେ ), କନଷ୍ଟାଣ୍ଟିନୋପଲ (ତତ୍କାଳୀନ ବିଜାଣ୍ଟିଆନର ରାଜଧାନୀ ଥିଲା), ମଧ୍ୟ ଏସିଆ ଓ ଭାରତ । ସେ ଭାରତ ଉତ୍ତରରୁ ଦକ୍ଷିଣକୁ ଗଲେ, ମାଲବାର ଓ ସିଂହଳ ଯାଇଥିଲେ ଏବଂ ତାପରେ ଗଲେ ଚୀନକୁ । ଫେରିବା ବାଟରେ ସେ ଆଫ୍ରିକାରେ ବୁଲିଲେ ଏବଂ ସାହାରା ବି ଅତିକ୍ରମ କଲେ ! ଆଜି ଅନେକ ଯାନବାହନ ଥାଇ ସୁଦ୍ଧା ଏପରି ଯାତ୍ରା ବିବରଣୀ ଖୁବ୍ ବିରଳ ଦେଖାଯାଏ । ୧୪ଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଅବସ୍ଥା ଏହା ଅଦ୍ଭୁତ ଭାବରେ ଗୋଚର କରାଇଦିଏ ଏବଂ ସେକାଳରେ ସାଧାରଣ ଯାତ୍ରା ସବୁ କିପରି ଥିଲା, ତାହା ଏଥିରୁ ଜଣାପଡ଼େ । ଯାହାହେଉ ସବୁକାଳରେ ବଡ଼ ବଡ଼ ପରିବ୍ରାଜକଙ୍କ ଭିତରେ ଜଣେ ରୂପେ ଇବନ୍ ବାଟୁଟା ଅବଶ୍ୟ ଗଣ୍ୟ ହେବେ ।

ଇବନ୍ ବାଟୁଟାଙ୍କ ପୁସ୍ତକରେ ସେ ଯେଉଁସବୁ ଦେଶ ଓ ଲୋକଙ୍କୁ ପରିଦର୍ଶନ କରିଥିଲେ, ସେ ସମ୍ବନ୍ଧରେ ଆନନ୍ଦପ୍ରଦ ବର୍ଣ୍ଣନା ସବୁ ରହିଛି । ସେତେବେଳେ ଇଜିପ୍ଟ ଧନୀ ଥିଲା, କାରଣ ପଶ୍ଚିମ ଦେଶମାନଙ୍କ ସହ ଭାରତର ବାଣିଜ୍ୟ ଇଜିପ୍ଟ ମଧ୍ୟଦେଇ ଯାଉଥିଲା ଏବଂ ଏହା ଏକ ଅତି ଲାଭଦାୟକ ବେପାର ଥିଲା । ଏହି ଲାଭ ଫଳରେ କାଏରୋ ସୁନ୍ଦର ସ୍ଥାପତ୍ୟପୂର୍ଣ୍ଣ ଏକ ପ୍ରଧାନ ସହର ହୋଇପଡ଼ିଲା । ଭାରତରେ ଜାତିପ୍ରଥା, ସତୀପ୍ରଥା ଓ ପାନ ସୁପାରି ଦେବା ରୀତି ସମ୍ବନ୍ଧରେ ସେ ଲେଖିଛନ୍ତି । ତାଙ୍କର ଲେଖାରୁ ଆମେ ଜାଣିପାରୁ ଯେ, ଭାରତୀୟ ବଣିକମାନେ ବିଦେଶୀ ବନ୍ଦରରେ ବହୁଳ ବାଣିଜ୍ୟ କରୁଥିଲେ ଏବଂ ଭାରତୀୟ ଜାହାଜ ସମୁଦ୍ରରେ ଯାତାୟାତ କରୁଥିଲା । ସେ ଯେଉଁଠି ସୁନ୍ଦରୀ ସ୍ତ୍ରୀ ଦେଖିଥିଲେ, ସେମାନଙ୍କ ପୋଷାକ ବିନ୍ୟାସ, ସୁବାସ ବ୍ୟବହାର ଓ ଅଳଙ୍କାର ସମ୍ବନ୍ଧରେ ବିଶେଷ ଭାବରେ ଲେଖି ଯାଇଛନ୍ତି । ସେ ଦିଲ୍ଲୀ ସହର ଭାରତର ରାଜଧାନୀ, ଏକ ବିଶାଳ ଓ ଚିତ୍ତାକର୍ଷକ ସହର ଓ ଦୃଢ଼ତା ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟ ବି ରହିଛି ବୋଲି ବର୍ଣ୍ଣନା କରି ଯାଇଛନ୍ତି । ଏହା ହେଉଛି ଉନ୍ମତ୍ତ ସୁଲତାନ ମହମ୍ମଦ ଟୋଗଲକଙ୍କ ବେଳ; ସେ ହଠାତ୍ କ୍ରୋଧବଶ ହୋଇ ତାଙ୍କ ରାଜଧାନୀକୁ ଦିଲ୍ଲୀରୁ ଦକ୍ଷିଣରେ ଦୌଲତାବାଦ ନେଇଗଲେ ଏବଂ

ସେହି ଅନୁସାରେ ଏହି 'ବିଶାଳ ଓ ଚିତ୍ତାକର୍ଷକ ସହର'କୁ ଏକ 'ଶୂନ୍ୟ ଓ ଅଳ୍ପ କେତେକ ବାସିନ୍ଦାଙ୍କ ଛଡ଼ା ଲୋକବସତିହୀନ' ମରୁଭୂମିରେ ପରିଣତ କଲେ । ଏହି ଅଳ୍ପ କେତେକ ଅଧିବାସୀ ମଧ୍ୟ ଅନେକ ଦିନ ପରେ ଆସିଥିଲେ ।

ଇବନ୍ ବାଟୁଟାଙ୍କ କଥା ବର୍ଣ୍ଣନା କରିବାରେ ମୁଁ ଟିକିଏ ଭାସିଗଲି । ପୁରାତନ କାଳର ଏହି ଯାତ୍ରା କାହାଣୀ ସବୁ ମୋତେ ମନ୍ତ୍ରମୁଗ୍ଧ କରି ପକାଏ । ତେଣୁ ଆମେ ଦେଖୁ ଯେ, ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ମଧ୍ୟପ୍ରାଚ୍ୟ ବା ପଶ୍ଚିମ ଏସିଆ ବିଶ୍ୱ ବ୍ୟାପାରରେ ବଡ଼ ଭାଗ ନେଇ ଏବଂ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ପ୍ରଧାନ ସଂଯୋଗସ୍ଥଳୀ ଥିଲା । ତତ୍ପରେ ଏକ ଶହ ବର୍ଷ ଭିତରେ ପରିବର୍ତ୍ତନ ହେଲା । ଅଟୋମାନ ତୁର୍କି କନ୍‌ଷ୍ଟାଣ୍ଟିନୋପଲ ଦଖଲ କଲେ ଏବଂ ଇଜିପ୍ଟ ସମେତ ମଧ୍ୟପ୍ରାଚ୍ୟର ସମସ୍ତ ଦେଶମାନଙ୍କରେ ପ୍ରଭାବ ବିସ୍ତାର କଲେ । ସେମାନେ ମହାଦେଶୀୟ ବେପାରକୁ ଉତ୍ସାହିତ କଲେ ନାହିଁ—ଏହାର ଏକ କାରଣ ହେଉଛି ସେମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ଭିଏନା ଓ ଜେନେଭାବାଲଙ୍କ ହାତରେ ଭୂମଧ୍ୟସାଗରରେ ଏହି ବେପାର ଥିଲା । ବେପାର ମଧ୍ୟ ନୂଆ ଧରଣର ହେଲା । କାରଣ ନୂତନ ସମୁଦ୍ର ପଥ ଖୋଲା ହୋଇଥିଲା ଏବଂ ପୁରୁଣା ମରୁଭୂମି ପଥର ସ୍ଥାନ ଏହି ସମୁଦ୍ର ପଥ ଦଖଲ କଲା । ତେଣୁ ପଶ୍ଚିମ ଏସିଆର ଏହି ଯେଉଁ ସ୍ଥଳପଥ ସହସ୍ର ସହସ୍ର ବର୍ଷ ପର୍ଯ୍ୟନ୍ତ ଖୁବ୍ ଭଲ କାର୍ଯ୍ୟରେ ଲାଗିଥିଲା, ତାହା ଅକାମୀ ହୋଇଗଲା ଏବଂ ଯେଉଁ ଭୂମି ଦେଇ ତାହା ଅତିକ୍ରମ କଲା, ତାହା ମଧ୍ୟ ଅପ୍ରଧାନ ହୋଇପଡ଼ିଲା ।

୪୦୦ ବର୍ଷ ପର୍ଯ୍ୟନ୍ତ ୧୬ଶ ଶତାବ୍ଦୀ ଆରମ୍ଭରୁ ୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ସମୁଦ୍ର ପଥ ଖୁବ୍ ପ୍ରଧାନ ଥିଲା ଏବଂ ବିଶେଷତଃ ଯେଉଁଠି ରେଲପଥ ନ ଥିଲା, ସେଠି ସ୍ଥଳପଥ ଅପେକ୍ଷା ଏହାର ଗୁରୁତ୍ୱ ବେଶୀ ହେଲା । ପଶ୍ଚିମ ଏସିଆରେ ରେଲପଥ ନ ଥିଲା । ପୃଥିବୀ ଯୁଦ୍ଧ ଆରମ୍ଭର ଅଳ୍ପ ପୂର୍ବରୁ ଜର୍ମାନ ସରକାରର ସମର୍ଥନ ପାଇ କନ୍‌ଷ୍ଟାଣ୍ଟିନୋପଲ ସହ ବାଗ୍‌ଦାଦକୁ ସଂଯୋଗ କରି ଏକ ରେଲପଥ ନିର୍ମାଣର ପ୍ରସ୍ତାବ ହୋଇଥିଲା । ଜର୍ମାନୀ ଏହା କରିବାରେ ଅନ୍ୟ ଶକ୍ତିମାନେ ଖୁବ୍ ଈର୍ଷା କରୁଥିଲେ, କାରଣ ଏତଦ୍ୱାରା ମଧ୍ୟପ୍ରାଚ୍ୟରେ ଜର୍ମାନ ପ୍ରଭାବ ବଢ଼ିଥାନ୍ତା । ଯୁଦ୍ଧ ଆସି ମଝିରେ ପହଞ୍ଚିଗଲା ।

୧୯୧୮ରେ ଯୁଦ୍ଧ ଶେଷ ହେଲାବେଳକୁ ପଶ୍ଚିମ ଏସିଆରେ ବ୍ରିଟେନ ସର୍ବେସର୍ବା ଥିଲା ଏବଂ ମୁଁ ତ ତତେ କହିଛି କ୍ଷଣକାଳ ଲାଗି ଭାରତରୁ ତୁର୍କି ପର୍ଯ୍ୟନ୍ତ ଏକ ମଧ୍ୟପ୍ରାଚ୍ୟ ସାମ୍ରାଜ୍ୟ ଗଠନର ଚିତ୍ର ବ୍ରିଟିଶ ରାଜନୀତିଜ୍ଞମାନଙ୍କ ଆଖି ଆଗରେ ନାଚୁଥିଲା । ଏହା ହୋଇପାରିଲା ନାହିଁ । ଏହା ହେବାରେ ବଲସେଭିକ ରୁଷ କେମାଲ ପାଶା ଓ ଅନ୍ୟ ବିଷୟ ସବୁ ବାଧା ଦେଲା, ତଥାପି ଅନେକ ପରିମାଣରେ ବ୍ରିଟେନ କର୍ତ୍ତୃତ୍ୱ କରିପାରିଲା । ଇରାକ୍ ଓ ପାଲେଷ୍ଟାଇନ୍ ବ୍ରିଟିଶ ପ୍ରଭାବ ବା କର୍ତ୍ତୃତ୍ୱ ଅଧୀନରେ ରହିଥିଲା । ତେଣୁ ବ୍ରିଟିଶ ସେମାନଙ୍କର ବିରାଟ ଅଭିଳାଷ ପୂର୍ଣ୍ଣ କରି ନ ପାରିଲେ ସୁଦ୍ଧା ଭାରତକୁ ରାସ୍ତା ଓ ଦ୍ୱାର ସବୁ ଆୟତ୍ତରେ ରଖିବାର ପୁରୁଣା ନୀତି ତାଙ୍କର ରହିଲା । ଏହି ଉଦ୍ଦେଶ୍ୟରେ ଯୁଦ୍ଧ କାଳରେ ବ୍ରିଟିଶ ସେନା

ମେସୋପଟାମିଆ ଓ ପାଲେଷ୍ଟାଇନରେ ଲଢ଼ାଇ କରିଥିଲେ ଏବଂ ତୁର୍କି ବିରୁଦ୍ଧରେ ଆରବ ବିଦ୍ରୋହକୁ ସାହାଯ୍ୟ ଓ ଉତ୍ସାହିତ କଲେ । ଏହି କାରଣରୁ ମସୁଲ ପ୍ରଶ୍ନ ନେଇ ଇଂଲଣ୍ଡ ଓ ତୁର୍କି ଭିତରେ ବଡ଼ ବିବାଦ ଜାତ ହେଲା । ସୋଭିଏଟ ରୁଷ ଇଂଲଣ୍ଡ ଭିତରେ କଳିଆ ହେବାର ଏହାହିଁ ଏକ ମୁଖ୍ୟ କାରଣ—କାରଣ ରୁଷ ପରି ଏକ ପ୍ରଧାନ ଶକ୍ତି ଭାରତ ପଥରେ ଥିବା ଉଦ୍ୟାନ ପ୍ରାଚୀର ନିକଟରେ ବସି ରହିବାଟାକୁ ଇଂଲଣ୍ଡ ଘୃଣା କରୁଥିଲା ।

ଯୁଦ୍ଧ ପୂର୍ବେ ଯେଉଁ ବାଗଦାଦ ରେଲପଥ ଓ ହେଜାଜ ରେଲପଥ ଯେତିକି ଏତେ କଳିଆ ହୋଇଥିଲା ଏବେ ତାହା ତିଆରି ହେଲା । ହେଜାଜ ରେଲପଥ ଆରବିଆସ୍ଥାରେ ମେଦିନାକୁ ଆଲେପୋଠାରେ ବାଗଦାଦ ରେଲ ସହିତ ଯୋଗ କରେ । (ହେଜାଜ୍ ହେଉଛି ଆରବିଆସ୍ଥାର ସର୍ବଶ୍ରେଷ୍ଠ ଅଞ୍ଚଳ—ଇସଲାମର ପବିତ୍ର ସହର ମକ୍କା ମେଦିନା ଏଥିରେ ରହିଛି) । ତେଣୁ ପଶ୍ଚିମ ଏସିଆର ଅନେକ ପ୍ରଧାନ ସହର ଆଜି ରେଲପଥ ଜରିଆରେ ଇଉରୋପ ଓ ଇଜିପ୍ଟ ସହିତ ସଂଯୁକ୍ତ ହୋଇ ପାରିଛନ୍ତି ଏବଂ ତେଣୁ ସହଜରେ ସେଠିକି ଯାଇପାରିବ । ଆଲେପୋ ସହର ଏକ ପ୍ରଧାନ ରେଲ ଜଙ୍କସନ୍ ହୋଇ ଉଠୁଛି, କାରଣ ତିନି ମହାଦେଶର ରେଲପଥ ସେଠି ମିଳୁଛି; ଇଉରୋପରୁ ରେଲ ଲାଇନ ଏସିଆରୁ ବାଗଦାଦ ଦେଇ ଓ ଆଫ୍ରିକାରୁ କାଏରୋ ଦେଇ ରେଲପଥ ଏଠି ମିଳୁଛି । ଏସିଆ ଓ ଆଫ୍ରିକାରେ ଏହି ପଥକୁ ଆସ୍ତୃତ କରିବା ନିମନ୍ତେ ଅନେକଦିନରୁ ବ୍ରିଟିଶ ନୀତିର ଲକ୍ଷ୍ୟ ହୋଇ ଆସିଛି । ଏସିଆ ପଥକୁ ବାଗଦାଦ ପର୍ଯ୍ୟନ୍ତ ବିସ୍ତୃତ କରି ଦେଲେ ଭାରତରେ ପହଞ୍ଚି ଯାଇପାରେ । ଆଫ୍ରିକା ପଥ କାଏରୋଠାରୁ ଦକ୍ଷିଣରେ କେପ୍‌ଟାଉନ ପର୍ଯ୍ୟନ୍ତ ଆଫ୍ରିକା ମହାଦେଶ ଅତିକ୍ରମ କରିଯିବା ଉଦ୍ଦେଶ୍ୟରେ ହୋଇଛି । କେପ୍‌ଠାରୁ କାଏରୋ ପର୍ଯ୍ୟନ୍ତ 'ସମଗ୍ର ଲାଲ' ରେଲପଥ କରିବା ଅନେକଦିନରୁ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ସ୍ୱପ୍ନ ହୋଇ ରହିଛି ଏବଂ ଏବେ ଏହା ଉପଲବ୍ଧି ହେବା ଉପରେ । ସମଗ୍ର ଲାଲ ଅର୍ଥ ସମସ୍ତ ପଥଟି ବ୍ରିଟିଶ ରାଜ୍ୟ ଦେଇ ଯିବ । ମାନଚିତ୍ରରେ ବ୍ରିଟିଶ ଅଧିକୃତ ରାଜ୍ୟ ସବୁ ଲାଲ ରଙ୍ଗରେ ଚିହ୍ନିତ ।

କିନ୍ତୁ ଭବିଷ୍ୟତରେ ଏ ସବୁ ଗୁରୁତର ହୋଇପାରେ ବା ନ ହୋଇ ବି ପାରେ; କାରଣ ଏବେ ମଟରଗାଡ଼ି ଓ ଉଡ଼ାଜାହାଜ ରେଲପଥର ବଡ଼ ପ୍ରତିଦ୍ୱନ୍ଦୀ ହୋଇ ଉଠିଆ ହେଲାଣି । ଇତ୍ୟବସରେ ଏହା ମନେ ରଖିବା ଦରକାର ଯେ ବାଗଦାଦ ଓ ହେଜାଜ— ପଶ୍ଚିମ ଏସିଆର ଏହି ନୂତନ ରେଲପଥ ଦୁଇଟି ଅଧିକ ଭାବରେ ବ୍ରିଟିଶ ଆୟତ୍ତାଧୀନରେ ରହିଛି ଏବଂ ସେମାନଙ୍କ କର୍ତ୍ତୃତ୍ୱ ଅଧୀନରେ ଭାରତକୁ ଏକ ନୂତନ ଓ ନାତିଦୀର୍ଘ ପଥ ଖୋଲି ଦେଇଛି । ବାଗଦାଦ ରେଲପଥର ଏକ ଅଂଶ ସିରିଆ ଦେଇ ଯାଇଛି—ଏହା ଫରାସୀ ଅଧୀନରେ । ଏହି ଅଧୀନତାଟାକୁ ଭଲ ନ ପାଇ ବ୍ରିଟିଶ ପାଲେଷ୍ଟାଇନ ଦେଇ ଏକ ନୂତନ ପଥ ତିଆରି କରିବାର ଇଚ୍ଛା କରିଛନ୍ତି ଏବଂ ଲୋହିତ ସାଗର ବନ୍ଦର ଜେଡ୍‌ଡ଼ା ଓ ମକ୍କା

ଭିତରେ ଆଉ ଗୋଟିଏ ଶ୍ରେଷ୍ଠ ରେଳପଥ ନିର୍ମାଣ ହେଉଛି । ମକ୍‌କାକୁ ପ୍ରତିବର୍ଷ ଯେଉଁ ହଜାର ହଜାର ଯାତ୍ରୀ ଯାଆନ୍ତି, ତାଙ୍କ ପକ୍ଷରେ ଏହା ଖୁବ୍ ସୁବିଧାଜନକ ହେବ ।

ପଶ୍ଚିମ ଏସିଆର ଏହି ସବୁ ଦେଶକୁ ପୃଥିବୀ ପାଇଁ ଉନ୍ମୁକ୍ତ କରିବା ରେଳପଥ ସମ୍ବନ୍ଧରେ ଏତିକି । ତଥାପି ଏହାର କାର୍ଯ୍ୟ ପୂରା ନ ହେଉଣୁ ଏହାର ଗୁରୁତ୍ୱ ହ୍ରାସ ହେଲାଣି ଏବଂ ମଟରଗାଡ଼ି ଓ ଉଡ଼ାଜାହାଜ ଯୋଗୁଁ ଏହା ପଛକୁ ପଡ଼ିଗଲାଣି । ମଟରଗାଡ଼ି ବଡ଼ ଦ୍ରୁତ ଗତିରେ ମରୁଭୂମିରେ ଚାଲିଯାଏ ଏବଂ ଯେଉଁ ପୁରୁଣା ମରୁଭୂମି ପଥରେ ହଜାର ହଜାର ବର୍ଷ ଧରି ଓଟମାନେ ଯାଉଥିଲେ ସେହି ପଥରେ ଧାବମାନ ହୁଏ । ରେଳପଥ ବଡ଼ ବ୍ୟୟସାପେକ୍ଷ ଏବଂ ଏହା ତିଆରି କରିବାକୁ ସମୟ ଲାଗେ । ମଟର ବଡ଼ ଶସ୍ତା ଏବଂ ଦରକାର ହେଲେ ସଙ୍ଗେ ସଙ୍ଗେ କାର୍ଯ୍ୟରେ ଲାଗି ପାରିବ । କିନ୍ତୁ ମଟରକାର ଓ ଲରି ସବୁ ସାଧାରଣତଃ ବହୁଦୂର ଯାଏ ନାହିଁ, ସେ ଖୁବ୍ ବେଶୀ ହେଲେ ୧୦୦ ମାଇଲ ଭିତରେ ଆଗକୁ ପଛକୁ ଯାଆନ୍ତି ।

ବହୁ ଦୂର ପାଇଁ ଅବଶ୍ୟ ଉଡ଼ାଜାହାଜ ଅଛି—ଏହା ରେଲଠାରୁ ଶସ୍ତା ଓ ଅତ୍ୟନ୍ତ ଦ୍ରୁତଗାମୀ ଏଥିରେ ସନ୍ଦେହ ନାହିଁ । ଗମନାଗମନ ପାଇଁ ଉଡ଼ାଜାହାଜର ବ୍ୟବହାର ଦ୍ରୁତ ଗତିରେ ବଢ଼ି ଚାଲିବ । ବହୁ ଉନ୍ନତି ହୋଇଗଲାଣି ଏବଂ ବଡ଼ ବଡ଼ ଉଡ଼ାଜାହାଜ ସବୁ ଏକ ଦେଶରୁ ଅନ୍ୟ ଦେଶକୁ ଯିବାକୁ ଆରମ୍ଭ କଲେଣି । ଏହି ଆକାଶପଥର ମିଳନସ୍ଥଳୀ ପ୍ରଣି ପଶ୍ଚିମ ଏସିଆ ହୋଇଛି ଏବଂ ବାଗଦାଦ ବିଶେଷ ଭାବରେ ଏହାର କେନ୍ଦ୍ର ହୋଇଛି । ଲଣ୍ଡନରୁ ଭାରତ ଓ ଅଷ୍ଟ୍ରେଲିଆକୁ ବ୍ରିଟିଶ ଇମ୍ପିରିଆଲ ଆକାଶପଥ ବାଗଦାଦ ଅତିକ୍ରମ କରିଯାଏ; ଆହୁରି ମଧ୍ୟ କେ. ଏଲ୍. ଏମ୍. ଡଚ୍ ଲାଇନ ଆମଷ୍ଟରଡାମରୁ ବାଟେଭିଆ, ଫରାସୀ ଲାଇନ ପାରିସରୁ ଇଣ୍ଡୋ-ଚୀନ ପର୍ଯ୍ୟନ୍ତ ଯାଇଛି । ମସ୍କୋ ଓ ଇରାନ ମଧ୍ୟ ବାଗଦାଦ ସହ ଆକାଶପଥରେ ସମ୍ପୃକ୍ତ । ବାଗଦାଦରୁ ଉଡ଼ାଜାହାଜ ବି କାଏରୋ ଯାଏ—ଆଫ୍ରିକା ଓ କେପଟାଉନ ସହ ସମ୍ପର୍କ କରେ ।

ଅଧିକାଂଶ ଆକାଶପଥରେ ଲାଭ ହୁଏ ନା ଏବଂ ସମ୍ପୃକ୍ତ ସରକାରମାନେ ବହୁ ଆର୍ଥିକ ସାହାଯ୍ୟ ଦିଅନ୍ତି, କାରଣ ଉଡ଼ାଜାହାଜ ଶକ୍ତି ଆଜି ସାମ୍ରାଜ୍ୟ ପକ୍ଷରେ ସବୁଠାରୁ ଶ୍ରେଷ୍ଠ । ଉଡ଼ାଜାହାଜ ଶକ୍ତି ବୃଦ୍ଧି ସଙ୍ଗେ ସଙ୍ଗେ, ସମୁଦ୍ର ପଥର ଗୁରୁତ୍ୱ ବହୁତ କମିଯାଇଛି । ଇଂଲଣ୍ଡ ନିଜର ନୌବାହିନୀ ସକାଶେ ଏତେ ଗର୍ବ କରୁଥିଲା ଏବଂ ବାହାର ଆକ୍ରମଣରୁ ନିରାପଦ ରହିଛି ବୋଲି ବିଚାରୁଥିଲା; କିନ୍ତୁ ରାଜ୍ୟ ରକ୍ଷା ଦୃଷ୍ଟିରୁ ଆଉ ସେପରି ନିରାପଦ ଦ୍ୱୀପ ହୋଇ ନାହିଁ । ଫ୍ରାନ୍‌ସ ଓ ଅନ୍ୟ ଯେକୌଣସି ଦେଶପରି ଆକାଶରୁ ଏହା ଆକ୍ରମଣୋପଯୋଗୀ ହୋଇ ରହିଛି । ତେଣୁ ସମସ୍ତ ପ୍ରଧାନ ଶକ୍ତିଗୁଡ଼ିକ ଉଡ଼ାଜାହାଜରେ ଶକ୍ତିଶାଳୀ ହେବା ନିମନ୍ତେ ବଡ଼ ବ୍ୟଗ୍ର ଏବଂ ସମୁଦ୍ର ପଥରେ ପୁରୁଣା ପ୍ରତିଯୋଗିତା ସ୍ଥାନରେ ଆକାଶପଥରେ ପ୍ରତିଯୋଗିତା ସ୍ଥାନ ପାଇଛି । ଉଡ଼ାଜାହାଜରେ ପାସେଞ୍ଜର ନେବାକୁ

ଉତ୍ସାହିତ କରାଯାଉଛି ଏବଂ ଶାନ୍ତି କାଳରେ ପ୍ରତ୍ୟେକ ଦେଶ ଏଥିକ ଅର୍ଥ ସାହାଯ୍ୟ କରୁଛନ୍ତି, କାରଣ ଏଥିରେ ଶିକ୍ଷିତ ଉଡ଼ାଜାହାଜ ଚାଳକ ଅନେକ ରହିଯାଆନ୍ତି । ସେମାନେ ଯୁଦ୍ଧବେଳେ ବଡ଼ କାମରେ ଆସିବେ । ବେସାମରିକ ଉଡ଼ାଜାହାଜ ଚାଳନାକୁ ସାମରିକ ଚାଳନା ବୃଦ୍ଧି କରେ । ତେଣୁ ବେସାମରିକ ଉଡ଼ାଜାହାଜ ଚାଳନା ଦ୍ରୁତ ବେଗରେ ଚାଲିଛି ଏବଂ ଇଉରୋପ ଓ ଆମେରିକାରେ ଶହ ଶହ ଉଡ଼ାଜାହାଜ ସର୍ଭିସ ଖୋଲିଛି । ସମ୍ଭବତଃ ଯୁକ୍ତରାଷ୍ଟ୍ର ଆମେରିକାରେ ସର୍ବାପେକ୍ଷା ଅଧିକ ଉନ୍ନତ ହୋଇଛି; ସୋଭିଏଟ ଇଉନିୟନରେ ମଧ୍ୟ ଖୁବ୍ ଉନ୍ନତ ହୋଇଛି ଏବଂ ବିଶାଳ ରାଜ୍ୟ ଦେଇ ଅନେକ ଉଡ଼ାଜାହାଜ ସର୍ଭିସ ଖୋଲିଗଲାଣି ।

ଏହି ଆକାଶ-ଶକ୍ତି ଯୁଗରେ ପଶ୍ଚିମ ଏସିଆ ଅତିକ୍ରମ କରି ବହୁଦୂର ପଥ ଯାଇଥିବାରୁ ଏହା ନୂତନ ଗୁରୁତ୍ୱ ପାଇଛି । ଏହା ପୁନର୍ବାର ବିଶ୍ୱ ରାଜନୀତିରେ ପ୍ରବେଶ କଲା ଏବଂ ଅନ୍ତର୍ମହାଦେଶର ଏହା କେନ୍ଦ୍ର ହୋଇଛି । ଏହାର ଅର୍ଥ ଏହା ପ୍ରଧାନ ଶକ୍ତିଙ୍କ ଭିତରେ ବିବାଦ ଓ ସଂଘର୍ଷର ଦୃଶ୍ୟ ହୋଇଛି—କାରଣ ସେମାନଙ୍କର ପରସ୍ପରର ଅଭିଳାଷର ସଂଘର୍ଷ ହୁଏ ଏବଂ ପ୍ରତ୍ୟେକ ଅପରକୁ ଟପିବାକୁ ଚେଷ୍ଟା କରେ । ଆମେ ଯଦି ଏହାକୁ ମନରେ ରଖୁ, ତେବେ ମଧ୍ୟପ୍ରାଚ୍ୟ ଓ ଅନ୍ୟତ୍ର ଯେଉଁ ନୀତି ଫଳରେ ବ୍ରିଟିଶର କାର୍ଯ୍ୟକଳାପ ଓ ଅନ୍ୟାନ୍ୟ କାର୍ଯ୍ୟ ସବୁ କରାଯାଇଛି, ତାହା ବୁଝି ହେବ ।

ଭାରତର ଏହି ନୂତନ ରାଜପଥରେ ମଫସଲ ଅବସ୍ଥିତ । ଏଥିରେ ମଧ୍ୟ ତେଲ ଅଛି ଏବଂ ଆକାଶ-ଶକ୍ତି ଯୁଗରେ ପୂର୍ବାପେକ୍ଷା ତେଲ ଅଧିକ ଗୁରୁତର ହୋଇ ଉଠିଛି । ଇରାକରେ ବଡ଼ ବଡ଼ ତେଲଖଣି ରହିଛି ଏବଂ ଆମେ ଦେଖିଛେ ଏହାହିଁ ଅନ୍ତର୍ମହାଦେଶୀୟ ଆକାଶ ପଥର ପ୍ରକୃତ ମର୍ମସ୍ଥଳୀ । ତେଣୁ ଇରାକ ନିୟନ୍ତ୍ରଣ କରିବା ବ୍ରିଟିଶ ପକ୍ଷରେ ଏତେ ଗୁରୁତର ହୋଇ ପଡ଼ିଛି । ପର୍ସିଆରେ ବିରାଟ ତେଲଖଣି ରହିଛି- ଅନେକଦିନୁଁ ଆଙ୍ଗ୍ଲୋ-ପର୍ସିଆନ ତେଲ କମ୍ପାନୀ ଏହାକୁ ଶୋଷଣ କରୁଛି—ଆଂଶିକ ଭାବରେ ବ୍ରିଟିଶ ସରକାର ଏହାର ମାଲିକ । ତେଲ ଓ ପେଟ୍ରୋଲର ଗୁରୁତ୍ୱ ବଢ଼ୁଛି ଏବଂ ସାମ୍ରାଜ୍ୟବାଦୀ ନୀତିରେ ଏହା ଅଂଶ ବଜାଏ । ବାସ୍ତବିକ ବେଳେ ବେଳେ ଆଧୁନିକ ସାମ୍ରାଜ୍ୟବାଦକୁ "ତେଲ ସାମ୍ରାଜ୍ୟବାଦ" ବୋଲି କୁହାଯାଏ ।

ଯେଉଁ ସବୁ ଘଟଣା ଫଳରେ ମଧ୍ୟପ୍ରାଚ୍ୟ ନୂତନ ଗୁରୁତ୍ୱ ଲଭିଲା ଏବଂ ଏହା ପୁଣି ବିଶ୍ୱ ରାଜନୀତିର ଘୂର୍ଣ୍ଣନ ଭିତରକୁ ଫେରି ଆସିଲା, ତାହା ଆମେ ଏହି ଠିଠିରେ ବିଚାର କଲେ । କିନ୍ତୁ ଏହା ପଶ୍ଚାତ୍ରେ ସମଗ୍ର ଏସିଆ ପ୍ରାଚ୍ୟର ଜାଗରଣ ରହିଛି ।

## ୧୭୭ : ଆରବଦେଶ ସମୂହ—ସିରିଆ

ମେ ୨୮, ୧୯୩୩

ଆମେ ଦେଖିଲେ ବିଭିନ୍ନ ଦେଶରେ ଏକ ଭାଷା ଓ ପରମ୍ପରା ମାନି ବାସ କରୁଥିବା ଲୋକ ସମଷ୍ଟିକୁ ଦୃଢ଼ କରିବାରେ ଓ ଏକତ୍ର ବାନ୍ଧି ରଖିବାରେ ଜାତୀୟତା କିପରି ପ୍ରଭାବଶାଳୀ ଶକ୍ତି ରୂପେ କାର୍ଯ୍ୟ କରିଛି । ଏହି ଜାତୀୟତା ଏପରି ଏକ ସମଷ୍ଟିକୁ ଏକତ୍ର ବାନ୍ଧିବା ସଙ୍ଗେ ସଙ୍ଗେ ଏହାକୁ ଅନ୍ୟ ସମଷ୍ଟିଠାରୁ ଆହୁରି ସ୍ୱତନ୍ତ୍ର କରିଦିଏ ଏବଂ ନିର୍ଦ୍ଦିଷ୍ଟ କରି ପକାଏ । ଏହିରୂପେ ଜାତୀୟତା ବଳରେ ଫ୍ରାନ୍‌ସ ଏକ ବଳିଷ୍ଠ ଦେଶ, ଏକ ଦୃଢ଼ ଜାତୀୟ ଅଙ୍ଗ ହୋଇଛି—ଘନିଷ୍ଠ ଭାବରେ ଏକତ୍ର ବାନ୍ଧିହୋଇ ରହିଛି ଏବଂ ପୃଥିବୀର ଅବଶିଷ୍ଟ ଦେଶ ଆଗରେ ସ୍ୱତନ୍ତ୍ର ଦେଖାଯାଉଛି; ସେହିପରି ବିଭିନ୍ନ ଜର୍ମାନ ଲୋକେ ମଧ୍ୟ ଏକ ଶକ୍ତିଶାଳୀ ଜର୍ମାନ ଜାତିରେ ମିଳିତ ହୋଇଛନ୍ତି । କିନ୍ତୁ ପୃଥକ ଭାବରେ ଏହି ଜର୍ମାନ ଓ ଫ୍ରାନ୍‌ସ ଜାତି ଏକତ୍ର ହେବା ଫଳରେ ପରସ୍ପରଠାରୁ ସେମାନେ ଆହୁରି ଅଧିକ ଅଲଗା ହୋଇଯାଇଛନ୍ତି ।

ଯେଉଁ ଦେଶରେ ସ୍ୱତନ୍ତ୍ର ଜାତୀୟ ଗୋଷ୍ଠି ସବୁ ରହିଛି, ସେଠାରେ ଅନେକ ସମୟରେ ଜାତୀୟବାଦ ଏକ କଳହଜାତକାରୀ ଶକ୍ତି ରୂପେ କାର୍ଯ୍ୟ କରିଛି- ଦେଶକୁ ଏକତ୍ର ମିଳିତ କରି ବାନ୍ଧିବା ପରିବର୍ତ୍ତେ ପ୍ରକୃତରେ ଦୁର୍ବଳ କରିଛି ଏବଂ ଏହା ଭାଙ୍ଗି ପଡ଼ିବା ଉପରେ ରହିଛି । ପୃଥିବୀ ଯୁଦ୍ଧ ପୂର୍ବରୁ ଅଷ୍ଟ୍ରୋହଙ୍ଗେରୀ ସାମ୍ରାଜ୍ୟ ସେହିପରି ଅନେକ ଜାତିବିଶିଷ୍ଟ ଏକ ଦେଶ ଥିଲା । ସେମାନଙ୍କ ଭିତରେ ଜର୍ମାନ-ଅଷ୍ଟ୍ରିଆନ୍ ଓ ହଙ୍ଗେରୀଅନ୍ ଏହି ଦୁଇଟି ଜାତିହିଁ ପ୍ରଧାନ ଥିଲେ ଏବଂ ଅନ୍ୟମାନେ ଏହାର ଅଧୀନସ୍ଥ ଥିଲେ । କ୍ରମେ ଜାତୀୟତା ବୃଦ୍ଧିରେ ଅଷ୍ଟ୍ରିଆହଙ୍ଗେରୀ ଦୁର୍ବଳ ହୋଇପଡ଼ିଲା, ଏହା ଏହିସବୁ ଜାତିମାନଙ୍କ ଭିତରେ ପୃଥକ ଭାବରେ ନୂତନ ଜୀବନ ସଞ୍ଚାର କଲା ଏବଂ ଏହା ସଙ୍ଗେ ସଙ୍ଗେ ସ୍ୱାଧୀନ ହେବାର ଆକାଂକ୍ଷା ଜାତ ହେଲା । ଯୁଦ୍ଧ ଅବସ୍ଥାକୁ ଆହୁରି ଖରାପ କଲା ଏବଂ ଯୁଦ୍ଧରେ ପରାଜୟ ହେବାରୁ ଏହି ଦେଶ ଭିନ୍ନଭିନ୍ନ ଖଣ୍ଡରେ ବିଭକ୍ତ ହୋଇଗଲା ପ୍ରତ୍ୟେକ ଜାତିର ଅଞ୍ଚଳ ସବୁ ଗୋଟିଏ ଗୋଟିଏ ପୃଥକ ରାଜ୍ୟ ହୋଇଗଲା । ( ଏହି ବିଭାଗ ସେତେ ଭଲ ବା ନ୍ୟାୟମୂଳକ ହୋଇ ନ ଥିଲା, କିନ୍ତୁ ସେ ବିଷୟ ଆମେ ଏଠି ଆଲୋଚନା କରିବା ନାହିଁ ) । ଅନ୍ୟ ପକ୍ଷରେ ଜର୍ମାନୀ ଗୁରୁତର ପରାଜୟ ସତ୍ତ୍ୱେ ଛୋଟ ଛୋଟ ଖଣ୍ଡରେ ଭାଙ୍ଗି ପଡ଼ିଲା ନାହିଁ । ବିପଦ ପଡ଼ିବାବେଳେ ସୁଦ୍ଧା ଜାତୀୟତାର ପ୍ରଭାବଶାଳୀ ଗୁପ ବଳରେ ଏହା ଏକତ୍ର ହୋଇ ରହିଲା ।

ଅଷ୍ଟ୍ରିଆ-ହଙ୍ଗେରୀ ସାମ୍ରାଜ୍ୟ ପରି ପୃଥିବୀ ଯୁଦ୍ଧ-ପୂର୍ବରୁ ତୁର୍କି ସାମ୍ରାଜ୍ୟ ମଧ୍ୟ ଅନେକ ଜାତିର ସମଷ୍ଟି ଥିଲା । ବଲକନ ଜାତି ବ୍ୟତୀତ ସେଠି ଆରବ, ଆର୍ମେନିୟାନ୍ ପ୍ରଭୃତି ଥିଲେ । ଏହି ସାମ୍ରାଜ୍ୟରେ କ୍ରମେ ଜାତୀୟତା ଏକ ଭାଙ୍ଗିବା ଶକ୍ତି ଭାବରେ କାର୍ଯ୍ୟ କଲା । ବଲକାନ୍

ରାଜ୍ୟକୁ ଏହା ପ୍ରଥମେ ସ୍ପର୍ଶ କଲା ଏବଂ ଊନବିଂଶ ଶତାବ୍ଦୀ ସାରା ଗ୍ରୀସଠାରୁ ଆରମ୍ଭ କରି ଗୋଟିକ ପରେ ଗୋଟିଏ ବଳବାନ୍ ଜାତି ସହ ତୁର୍କିକୁ ସଂଗ୍ରାମ କରିବାକୁ ପଡ଼ିଲା । ପ୍ରଧାନ ଶକ୍ତି ସବୁ ଏବଂ ବିଶେଷ ଭାବରେ ଜାରଶାସିତ ରୁଷ ଏହି ଜାଗ୍ରତ ଜାତୀୟତାରେ ଫାଇଦା ଉଠାଇବାକୁ ଚେଷ୍ଟା କଲେ ଏବଂ ଚକ୍ରାନ୍ତ ଆରମ୍ଭ କଲେ । ସେମାନେ ଅଟୋମାନ ସାମ୍ରାଜ୍ୟ ଉପରେ ଆଘାତ କରି ତାକୁ ଦୁର୍ବଳ କରିଦେବା ପାଇଁ ଆର୍ମେନିଆନ୍‌ମାନଙ୍କୁ ଏକ ଖେଳନା ପରି ବ୍ୟବହାର କଲେ ଏବଂ ସେହି ହେତୁ ତୁର୍କି ସରକାର ଓ ଆର୍ମେନିଆନ-ମାନଙ୍କ ଭିତରେ ପୁନଃ ପୁନଃ ସଂଘର୍ଷ ହେଲା—ଫଳରେ ରକ୍ତାକ୍ତ ହତ୍ୟାକାଣ୍ଡ ଚାଲିଲା । ଏହି ଆର୍ମେନିଆନମାନଙ୍କୁ ଶୋଷଣକରି ପ୍ରଭୃତ ଉଦ୍ଦେଶ୍ୟରେ ପ୍ରଧାନ ଶକ୍ତି ସବୁ ବ୍ୟବହାର କଲେ, କିନ୍ତୁ ପୃଥିବୀ-ଯୁଦ୍ଧ ପରେ ଯେତେବେଳେ ଏହାର ଆଉ କୌଣସି ଉପଯୋଗିତା ରହିଲା ନାହିଁ ସେତେବେଳେ ନିଜ ଭାଗ୍ୟ ଉପରେ ନିର୍ଭର କରିବାକୁ ଏହାକୁ ଛାଡ଼ି ଦେଇ-ଗଲେ । ଆର୍ମେନିଆ ତୁର୍କିର ପୂର୍ବକୁ କୃଷ୍ଣ ସାଗରକୁ ସ୍ପର୍ଶ କରି ଅବସ୍ଥିତ । ପରେ ଏହା ସୋଭିଏଟ ପ୍ରଜାତନ୍ତ୍ର ହେଲା ଏବଂ ରୁଷୀୟ ସୋଭିଏଟ ଇଉନିୟନରେ ଯୋଗ ଦେଲା ।

ଆରବ ଓ ତୁର୍କି ବାସୀଙ୍କ ଭିତରେ ବିଶେଷ ଭଲ ନପଡ଼ୁଥିଲେ ସୁଦ୍ଧା ତୁର୍କି ଅଧୀନରେ ଥିବା ଆରବ ଲୋକେ ଜାଗ୍ରତ ହେବା କ୍ରମକ୍ରେ ବେଶି ଦିନ ଲାଗିଲା । ପ୍ରଥମେ ଗୋଟାଏ ସାଂସ୍କୃତିକ ଜାଗରଣ ହେଲା ଏବଂ ଆରବୀ ଭାଷା ଓ ସାହିତ୍ୟର ପୁନରୁଦ୍ଧାର ହେଲା । ଏହା ୧୮୬୦ ବେଳକୁ ପ୍ରଥମେ ସିରିଆରେ ଆରମ୍ଭ ହେଲା ଏବଂ ତାପରେ ଇଜିପ୍ଟ ଓ ଅନ୍ୟ ଆରବଭାଷୀ ଦେଶମାନଙ୍କରେ ବିସ୍ତାର ଲଭିଲା । ୧୯୦୮ରେ ଯୁବକ ତୁର୍କି ବିପ୍ଳବ ଏବଂ ସୁଲତାନ ଅବଦୁଲ ହାମିଦ୍‌ଙ୍କ ପତନ ପରେ ରାଜନୀତିକ ଆନ୍ଦୋଳନ ସବୁ ବୃଦ୍ଧି ପାଇଲା । ମୁସଲମାନ ଓ ଖ୍ରୀଷ୍ଟିୟାନ ସବୁ ଆରବୀୟଙ୍କ ଭିତରେ ଜାତୀୟବାଦୀ ଭାବଧାରା ବ୍ୟାପିଲା ଏବଂ ତୁର୍କି ଶାସନରୁ ଆରବ ଦେଶମାନଙ୍କୁ ମୁକ୍ତ କରିବା ଓ ସେଗୁଡ଼ିକୁ ଏକ ରାଜ୍ୟରେ ଏକତ୍ର କରିବାର ଧାରଣା ରୂପ ଧାରଣ କଲା । ଇଜିପ୍ଟ-ଆରବଭାଷୀ ଦେଶ ହୋଇ ସୁଦ୍ଧା ଅଳ୍ପେ ଅଧିକେ ରାଜନୀତିକ ଦୃଷ୍ଟିରେ ଅଲଗା ଥିଲା ଏବଂ ଆରବୀୟା, ସିରିଆ, ପାଲେଷ୍ଟାଇନ ଓ ଇରାକକୁ ନେଇ ଯେଉଁ ଆରବ ରାଜ୍ୟ ଗଢ଼ିବାର ପ୍ରସ୍ତାବ ହେଉଥିଲା ସେଥିରେ ଯୋଗ ଦେବବୋଲି ଆଶା କରାଯାଉ ନ ଥିଲା । ଆରବମାନେ ମଧ୍ୟ ଅଟୋମାନ୍ ସୁଲତାନଠାରୁ ଖାଲିଫା ପଦ କୌଣସି ଆରବ ବଂଶଧରକୁ ନେଇ ଆସି ଇସଲାମର ଧାର୍ମିକ ନେତୃତ୍ୱ ଫେରାଇ ଆଣିବାକୁ ଚାହୁଁଥିଲେ । ଏହା ମଧ୍ୟ ଏକ ଜାତୀୟ କାର୍ଯ୍ୟ ରୂପେ ଗ୍ରହଣ କରାଯାଉଥିଲା— ଧାର୍ମିକ ଅପେକ୍ଷା ଏ ଦିଗରେ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଆରବଙ୍କ ପକ୍ଷରେ ଗୌରବ ବୋଲି ମନେ ହେଉଥିଲା ଏବଂ ଏପରିକି ସିରିଆର ଖ୍ରୀଷ୍ଟିୟାନ ଆରବୀୟମାନେ ଏହା ସପକ୍ଷରେ ଥିଲେ ।

ପୃଥିବୀ-ଯୁଦ୍ଧ ପୂର୍ବରୁ ଆରବ ଜାତୀୟବାଦୀ ଆନ୍ଦୋଳନ ସହ ବ୍ରିଟେନ୍ ଚକ୍ରାନ୍ତ କରିବାକୁ ଆରମ୍ଭ କଲା । ଯୁଦ୍ଧ କାଳରେ ମହାନ ଆରବ ରାଜ୍ୟ ବିଷୟରେ ସମସ୍ତ ପ୍ରକାର ପ୍ରତିଶ୍ରୁତି ଦିଆଗଲା ଏବଂ ମକ୍‌କାର ସେରିଫ ହୋସେନ ଏକ ବଡ଼ ଶାସକ ହେବା ଆଶାରେ

ଏବଂ ଖାଲିଫା ହେବାର ଉଜ୍ଜ୍ୱଳ ଆକାଂକ୍ଷାରେ ବ୍ରିଟିଶଙ୍କ ସହ ଯୋଗ ଦେଲେ ଏବଂ ତୁର୍କି ବିରୁଦ୍ଧରେ ଏକ ଆରବ ବିପ୍ଳବ ଉଠାଇଲେ । ସିରିଆର ଉଭୟ ମୁସଲମାନ ଓ ଖ୍ରୀଷ୍ଟିୟାନ ଆରବୀୟମାନେ ହୋସେନଙ୍କୁ ତାଙ୍କ ବିଦ୍ରୋହପାଇଁ ସମର୍ଥନ କଲେ ଏବଂ ଅନେକ ନେତାଙ୍କୁ ଏଥିପାଇଁ ଜୀବନ ଦେବାକୁ ପଡ଼ିଥିଲା । କାରଣ ତୁର୍କିର ଲୋକେ ସେମାନଙ୍କୁ ଫାଶୀ ଦେଲେ । ଡାମାସ୍କସ ଓ ବିରୁଟରେ ମେ ୬ ତାରିଖ ଦିନ ସେମାନେ ଫାଶୀ ପାଇବାର ଥାଏ ଏବଂ ଜାତୀୟ ଶହୀଦମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଆଜି ସୁଦ୍ଧା ସିରିଆରେ ଏହି ଦିବସ ପାଳିତ ହୋଇ ଆସୁଛି ।

ଏହି ଆରବ ବିଦ୍ରୋହକୁ ବ୍ରିଟିଶ ଅର୍ଥ ସାହାଯ୍ୟ ଦେଉଥିଲା । ବିଶେଷ ଭାବରେ ଏକ ବିଚକ୍ଷଣ ରହସ୍ୟପୂର୍ଣ୍ଣ ବ୍ରିଟିଶ ଲୋକ ଏବଂ ଗୁପ୍ତ ବିଭାଗ ଏଜେଣ୍ଟ କର୍ଣ୍ଣେଲ ଲରେନସଙ୍କ ସାହାଯ୍ୟ ହେତୁ ଏହା କୃତକାର୍ଯ୍ୟ ହେଲା । ଯୁଦ୍ଧ ଶେଷ ହେଲାବେଳକୁ ତୁର୍କି ଅଧୀନରେ ଥିବା ପ୍ରାୟ ସମସ୍ତ ଆରବ ରାଜ୍ୟ ବ୍ରିଟିଶ ଅଧୀନକୁ ଆସିଯାଇଥିଲା । ତୁର୍କି ସାମ୍ରାଜ୍ୟ ଖଣ୍ଡବିଖଣ୍ଡ ହୋଇ ଯାଇଥିଲା । ମୁଁ ତଳେ କହିଛି ଯେ ତୁର୍କିର ସ୍ୱାଧୀନତା ପାଇଁ ଯୁଦ୍ଧ କରୁଥିବାବେଳେ ମୋସ୍ତାଫା କେମାଲ କେବେ ହେଲେ ଅ-ତୁର୍କି ଅଞ୍ଚଳ ସବୁ (କେବଳ କୁର୍ଦ୍ଦ ସ୍ଥାନର ଏକ ଅଂଶ ଛଡ଼ା) ବିଜୟ କରିବା ନିମନ୍ତେ ଲକ୍ଷ୍ୟ କରି ନ ଥିଲେ । ଅତି ବୁଦ୍ଧିମାନ ରୂପେ ସେ ଖାସ୍ ତୁର୍କିକୁ ରକ୍ଷାକଲେ ।

ବିଶ୍ୱ ଯୁଦ୍ଧରେ ଆରବ ଦେଶଗୁଡ଼ିକର ଭବିଷ୍ୟତ ନିଷ୍ପତ୍ତି ହେବାର ଥିଲା । ବିଜେତା ମିତ୍ରପକ୍ଷ ଅଥବା ବ୍ରିଟିଶ ଓ ଫରାସୀ ସରକାର ବଡ଼ ପବିତ୍ର ଭାବରେ ଘୋଷଣା କଲେ ଯେ ସେମାନଙ୍କ ଲକ୍ଷ୍ୟ ହେଉଛି "ତୁର୍କି ଦ୍ୱାରା ଏପର୍ଯ୍ୟନ୍ତ ଅତ୍ୟାଚାରିତ ହୋଇ ରହିଥିବା ଲୋକ-ମାନଙ୍କୁ ପୂର୍ଣ୍ଣ ଓ ନିର୍ଦ୍ଦିଷ୍ଟ ରୂପେ ସ୍ୱାଧୀନ କରିବା ଏବଂ ଜାତୀୟ ସରକାର ଓ ଶାସନ ପ୍ରତିଷ୍ଠା କରିବା । ଏହି ସରକାର ସ୍ଥାନୀୟ ଅଧିବାସୀଙ୍କ ଦ୍ୱାରା ନିର୍ବାଚିତ ହେବ ।" ଏହି ଦୁଇଟିଯାକ ସରକାର ଆରବ ଅଞ୍ଚଳର ଅଧିକାଂଶ ଭାଗ ନିଜ ଭିତରେ ବାଣ୍ଟି ନେଇ ଏହି ମହତ୍ ଉଦ୍ଦେଶ୍ୟ ହାସଲ କରିବାରେ ଲାଗିଲେ । ସାମ୍ରାଜ୍ୟବାଦୀ ଶକ୍ତିମାନେ ରାଜ୍ୟ ଦଖଲ କରିବାର ନୂତନ ଉପାୟ ବାହାର କଲେ ଏବଂ ଲିଗ୍ ଅଫ ନେସନ୍ସର ଆଶୀର୍ବାଦରେ ଫ୍ରାନ୍ସ ଓ ଇଂଲଣ୍ଡକୁ 'ମାଣ୍ଡେଟ' ବା ଶାସିତ ଦେଶ ଦିଆଗଲା । ଫ୍ରାନ୍ସ ସିରିଆ ପାଇଲା; ଇଂଲଣ୍ଡ ପାଲେଷ୍ଟାଇନ ଓ ଇରାକ ପାଇଲା । ଆରବୀୟା ସବୁଠାରୁ ଶ୍ରେଷ୍ଠ ଅଞ୍ଚଳ ହେଜାଜ୍ ବ୍ରିଟେନର ଶରଣାପନ୍ନ ମକ୍କାର ଶେରିଫ. ହୋସେନକୁ ଦିଆହେଲା । ଏହି ରୂପେ ଗୋଟିଏ ଆରବ ରାଜ୍ୟ ସୃଷ୍ଟି କରିବାର ପ୍ରତିଶ୍ରୁତି ସତ୍ତ୍ୱେ, ବିଭିନ୍ନ ମାଣ୍ଡେଟ୍ ଅଧୀନରେ ଆରବ ରାଜ୍ୟ ଅଲଗା ଅଲଗା ଅଞ୍ଚଳ ରୂପେ ବିଭକ୍ତ ହୋଇଗଲା—କେବଳ ଗୋଟିଏ ଷ୍ଟେଟ ହେଜାଜ୍ ବାହାରକୁ ସ୍ୱାଧୀନ ହେଲା, କିନ୍ତୁ ପ୍ରକୃତରେ ବ୍ରିଟିଶ ଅଧୀନରେ ଥିଲା । ଏହି ସବୁ ବିଭାଗରେ ଆରବମାନେ ବଡ଼ ହତାଶ ହୋଇ ପଡ଼ିଲେ ଏବଂ ଏହା ଶେଷ କଥା ବୋଲି ଗ୍ରହଣ କରିବାକୁ ସେମାନେ ଅସ୍ୱୀକାର କଲେ; କିନ୍ତୁ ତାଙ୍କ ହୃଦୟରେ ଆତୁର ବିସ୍ମୟ ଓ ହତାଶାପୂର୍ଣ୍ଣ ହୋଇଥିଲା ।

କାରଣ ପ୍ରତ୍ୟେକ ମାଣ୍ଡେଟ ଅଞ୍ଚଳ ଭିତରେ ମଧ୍ୟ ଅତି ସହଜରେ ଶାସନ କରିବା ନିମନ୍ତେ ପୁରୁଣା ସାମ୍ରାଜ୍ୟବାଦୀ ନୀତି ଅନୁସାରେ ବିଭାଗ ଗ୍ରହଣ କଲା । ଏବେ ଏସବୁ ଦେଶ ସମ୍ବନ୍ଧରେ ଅଲଗା ଭାବରେ ବିଚାର କରିବା ସହଜ ହେବ । ତେଣୁ ମୁଁ ପ୍ରଥମେ ଫ୍ରାନ୍‌ସ ମାଣ୍ଡେଟ ସିରିଆ ବିଷୟ ଲେଖିବି ।

୧୯୨୦ ଆରମ୍ଭରେ ବ୍ରିଟିଶ ସାହାଯ୍ୟରେ ଏମିର ଫଏଜଲ (ହେଜାଜର ରାଜା ହୋସେନଙ୍କ ପୁତ୍ର) ଅଧୀନରେ ଗୋଟିଏ ଆରବ ସରକାର ସ୍ଥାପିତ ହେଲା । ଏକ ସିରିଆ ଜାତୀୟ କଂଗ୍ରେସ ହେଲା ଏବଂ ମିଳିତ ସିରିଆ ଲାଗି ଏକ ଗଣତାନ୍ତ୍ରିକ ଶାସନ ବିଧାନ ଗୃହୀତ ହେଲା । କିନ୍ତୁ ଏସବୁ ଅଳ୍ପ କେତେ ମାସ ପାଇଁ ଏବଂ ୧୯୨୦ ଗ୍ରୀଷ୍ମ ଋତୁରେ ଲିଗ୍ ଅଫ୍ ନେସନ୍‌ସରୁ ପାଇଥିବା 'ମାଣ୍ଡେଟ୍' ଧରି ଫରାସୀ ଆସିଲେ, ଫଏଜଲଙ୍କୁ ବାହାର କରିଦେଲେ ଏବଂ ଦେଶକୁ ବଳପୂର୍ବକ ଦଖଲ କଲେ । ସିରିଆ ସର୍ବମୋଟ ଗୋଟିଏ ଛୋଟ ଦେଶ— ଲୋକସଂଖ୍ୟା ୩,୦୦୦,୦୦୦ରୁ କିଛି କମ୍ । କିନ୍ତୁ ଫରାସୀଙ୍କ ପକ୍ଷରେ ଏହା ବିରୁଦ୍ଧ ବିଷୟ ହେଲା, କାରଣ ସିରିଆର ଆରବମାନେ, ମୁସଲମାନ ଓ ଖ୍ରୀଷ୍ଟିୟାନ ଉଭୟେ ସ୍ୱାଧୀନତା ଲାଗି ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ଅନ୍ୟ ଶକ୍ତିର ପ୍ରାଧାନ୍ୟ ଏତେ ସହଜରେ ମାନିନେବାକୁ ଅସ୍ୱୀକାର କଲେ । ବରାବର ଗୋଳମାଳ ହେଲା ଓ ସ୍ଥାନୀୟ ବିଦ୍ରୋହ ସବୁ ହେଲା ଏବଂ ସିରିଆରେ ଫରାସୀ ଶାସନ ଚଳାଇବା ନିମନ୍ତେ ପ୍ରକାଣ୍ଡ ଫରାସୀ ସେନା ରଖିବା ଦରକାର ପଡ଼ିଲା । ତା'ପରେ ଫରାସୀ ସରକାର ଚିରାଚରିତ ସାମ୍ରାଜ୍ୟବାଦୀ କୌଶଳ ପ୍ରୟୋଗ କଲା ଏବଂ ସେ ଦେଶକୁ ଅତି ଛୋଟ ଛୋଟ ରାଜ୍ୟରେ ବିଭକ୍ତ କରି ଏବଂ ଧାର୍ମିକ ଓ ସଂଖ୍ୟାଲଘିଷ୍ଠ ଭେଦକୁ ଗୁରୁତ୍ୱ ଦେଇ ସିରିଆ ଜାତୀୟବାଦକୁ ଦୁର୍ବଳ କରିବାକୁ ଲାଗିଲା । ଜାଣି ଶୁଣି ଏହି ନୀତି ପ୍ରୟୋଗ କରାଗଲା; "ଶାସନ କରିବା ସକାଶେ ବିଭାଗ କରିବା ଦରକାର" (Divide and rule) ଏହା ମଧ୍ୟ ସରକାରୀ ଭାବରେ ଘୋଷିତ ହେଲା ।

ସିରିଆ ତ ଅତି ଛୋଟ ରାଜ୍ୟ—ତାହା ପୁଣି ଏବେ ପାଞ୍ଚଟି ପୃଥକ ରାଜ୍ୟରେ ବିଭକ୍ତ ହେଲା । ପଶ୍ଚିମ ସମୁଦ୍ରକୂଳରେ ଓ ଲେବାନନ୍ ପର୍ବତ ନିକଟରେ ଲେବାନନ୍ ରାଜ୍ୟ ସୃଷ୍ଟି କରାଗଲା । ଏଠାର ଅଧିବାସୀଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ଖ୍ରୀଷ୍ଟିୟାନ ଜାତିର ଏକ ଗୋଷ୍ଠୀ ମାରୋନାଇଟ ଏବଂ ସିରିଆନ୍ ଆରବମାନଙ୍କ ବିରୁଦ୍ଧରେ ତାଙ୍କୁ ନିଜ ଆଡ଼କୁ ଆଣିବା ପାଇଁ ଫରାସୀ ଏହାକୁ ଏକ ବିଶେଷ ସ୍ଥାନ ଦେଲେ ।

ଲେବାନନର ଉତ୍ତରକୁ ସମୁଦ୍ର ନିକଟସ୍ଥ ପର୍ବତରେ ଆଉ ଏକ ରାଜ୍ୟ ସୃଷ୍ଟି କରାଗଲା —ଏଠାରେ ଆଲବିସ୍ ( Alawis ) ନାମକ ଏକ ମୁସଲମାନ ଜାତି ବାସ କରନ୍ତି । ଆହୁରି ଉତ୍ତରକୁ ଆଲେକ୍‌ଜାଣ୍ଡ୍ରେଟା ନାମକ ଏକ ତୃତୀୟ ରାଜ୍ୟ ସ୍ଥାପିତ ହେଲା; ଏହା ତୁର୍କିର ସଂଲଗ୍ନ ଏବଂ ତୁର୍କିଭାଷୀ ଲୋକେ ଅଧିକ ପରିମାଣରେ ଏଠି ବାସ କରୁଛନ୍ତି ।

ବାକି ଯାହା ରହିଲା ଖାସ ସିରିଆ—ଏଥିରୁ ଅନେକ ଉର୍ବର ଜମି ଗୁଲିଗଲା ଏବଂ ଆହୁରି ଖରାପ ହେଲା—ଏହା ସମୁଦ୍ରରୁ ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଗଲା । ହଜାର ହଜାର ବର୍ଷ ହେଲା ସିରିଆ ଗୋଟିଏ ମହାନ୍ ଭୂମଧ୍ୟସାଗର ଦେଶ ହୋଇଥିଲା ଏବଂ ଏବେ ଏହି ପୁରାତନ ସମ୍ବନ୍ଧ ଭାଙ୍ଗି ଦିଆଗଲା ଓ ଏହା ଏକ ଅନୁର୍ବର ମରୁଭୂମି ଦେଶ ହୋଇ ରହିଗଲା । ଏହି ସିରିଆରୁ ବି ଆଉ ଏକ ପାହାଡ଼ିଆ ଅଞ୍ଚଳ କାଟି ନିଆଗଲା ଓ ଅଲଗା ରାଜ୍ୟ କରାଗଲା । ଏହା ହେଉଛି ଜେବେଲ ଏଡ୍ ଡ୍ରୁଜ । ଏଠାରେ ଡ୍ରୁଜ ନାମକ ପାହାଡ଼ିଆ ଜାତି ବାସ କରନ୍ତି ।

ଆରମ୍ଭରୁ ଫରାସୀ "ମାଣ୍ଡେଟ୍"କୁ ସିରିଆ ଲୋକେ ଆଗ୍ରହ ସହକାରେ ଗ୍ରହଣ କରି ନ ଥିଲେ । ସେଠାରେ ସଂଘର୍ଷ ହେଲା ଓ ବଡ଼ ବଡ଼ ପ୍ରଦର୍ଶନମାନ ବି ହୋଇଥିଲା—ଏଥିରେ ନାରୀମାନେ ବି ଯୋଗ ଦେଇଥିଲେ ଏବଂ ଅତି କଠୋରତା ସହକାରେ ଫରାସୀ ଏହା ଦମନ କରିଥିଲେ । ଦେଶକୁ ବିଭାଗ କରିବା ଏବଂ ଜାଣିଶୁଣି ଧାର୍ମିକ ଓ ସଂଖ୍ୟାଲଘିଷ୍ଠ ସମସ୍ୟା ଉଠାଇବା ଦ୍ୱାରା ଅବସ୍ଥା ଖରାପ ଆଡ଼କୁ ଗଲା ଓ ଅସନ୍ତୋଷ ବୃଦ୍ଧି ପାଇଲା । ଏହା ଦବାଇବା ନିମନ୍ତେ ଭାରତରେ ବ୍ରିଟିଶ କଲାପରି ଫରାସୀ ବ୍ୟକ୍ତିଗତ ଓ ରାଜନୀତିକ ସ୍ୱାଧୀନତା ସବୁ ଦମନ କଲେ ଏବଂ ଦେଶରେ ତାଙ୍କ ଗୁଇନ୍ଦା ଓ ଗୁପ୍ତ ବିଭାଗ ଲୋକେ ଭର୍ତ୍ତି ହୋଇଗଲେ । ସେମାନେ "ରାଜଭକ୍ତ" ସିରିଆନ୍‌ମାନଙ୍କୁ କର୍ମଚାରୀରୂପେ ନିଯୁକ୍ତ କଲେ—ସେମାନଙ୍କର ଲୋକଙ୍କ ଉପରେ ଆଦୌ ପ୍ରଭାବ ନ ଥିଲା ଏବଂ ଦେଶର ଲୋକେ ତାଙ୍କୁ ଦେଶଦ୍ରୋହୀ ବୋଲି ସାଧାରଣତଃ ଭାବୁଥିଲେ । ଏ ସବୁ କାର୍ଯ୍ୟ ଅବଶ୍ୟ ଅତି ପବିତ୍ର ଉଦ୍ଦେଶ୍ୟରେ କରାଯାଉଥିଲା ଏବଂ ଫରାସୀ ଘୋଷଣା କଲା ଯେ ସେମାନେ "ରାଜନୀତିକ ପୋଖତ ପଣିଆ ଓ ସ୍ୱାଧୀନତା ଦିଗରେ ସିରିଆନ୍‌ଙ୍କୁ ଶିକ୍ଷା ଦେବା ନିଜର କର୍ତ୍ତବ୍ୟ" ବୋଲି ବିଚାର କରୁଛନ୍ତି । ଭାରତରେ ଏପରି ବାକ୍ୟର ବହୁ ସାମଞ୍ଜସ୍ୟ ରହିଛି ।

ଅବସ୍ଥା ସଙ୍କଟପୂର୍ଣ୍ଣ ହେଲା—ବିଶେଷତଃ ଜେବେଲ ଏଡ୍ ଡ୍ରୁଜର ଲଢ଼ୁଆ ଓ ଏକପ୍ରକାର ଆଦିମ ଲୋକଙ୍କ ଭିତରେ ଅସନ୍ତୋଷ ହେଲା (ଏମାନେ ଆମର ଉତ୍ତର-ପଶ୍ଚିମ ସୀମାନ୍ତ ଲୋକଙ୍କ ପରି) । ଏହି ଡ୍ରୁଜ ନେତାମାନଙ୍କ ସହ ଫରାସୀ ଗଭର୍ଣ୍ଣର ଏକ କଦର୍ଯ୍ୟ କୌଶଳ ଖେଳିଲା । ସରକାର ସେମାନଙ୍କୁ ନିମନ୍ତ୍ରଣ କଲା ଓ ତାପରେ ବନ୍ଦୀ କରିଦେଲା ଏବଂ ସର୍ତ୍ତି ଭିତରେ ରଖିଦେଲା । ଏହା ୧୯୨୫ ଗ୍ରୀଷ୍ମକାଳର ଘଟଣା ସଙ୍ଗେ ସଙ୍ଗେ ଜେବେଲ ଏଡ୍ ଡ୍ରୁଜରେ ଏକ ବିଦ୍ରୋହ ଜାତ ହେଲା । ଏହି ସ୍ଥାନୀୟ ବିଦ୍ରୋହ ସାରା ଦେଶରେ ବ୍ୟାପିଗଲା ଏବଂ ସିରିଆର ସ୍ୱାଧୀନତା ଓ ଏକତା ନିମନ୍ତେ ଏକ ସାଧାରଣ ବିଦ୍ରୋହରେ ପରିଣତ ହେଲା ।

ସିରିଆର ଏହି ସ୍ୱାଧୀନତା ଲଢ଼ାଇ ଏକ ଅଲୌକିକ ବ୍ୟାପାର । ଭାରତର ଦୁଇ ତିନିଟି ଜିଲ୍ଲା ସମାନ ଏକ କ୍ଷୁଦ୍ର ଦେଶ ପୃଥିବୀର ସେତେବେଳେ ସର୍ବାପେକ୍ଷା ଶ୍ରେଷ୍ଠ ସାମରିକ ଶକ୍ତି ଫ୍ରାନସ ସହିତ ଲଢ଼ାଇ କରିବା ନିମନ୍ତେ ଆଗଭର ହେଲା । ଅବଶ୍ୟ ପ୍ରକାଣ୍ଡ ଓ ସୁସଜ୍ଜିତ

ଫରାସୀ ସେନାସହ ଏକ ଉନ୍ମୁକ୍ତ ସଂଗ୍ରାମ କରି ପାରିଲା ନାହିଁ, କିନ୍ତୁ ମଫସଲ ଅଞ୍ଚଳରେ ଶାସନ କରିବା ସେମାନଙ୍କ ପକ୍ଷରେ କଷ୍ଟକର ହୋଇ ଉଠିଲା । କେବଳ ବଡ଼ ବଡ଼ ସହର ଫରାସୀ ଦଖଲରେ ଥିଲା ଏବଂ ଏସବୁ ବି ସିରିଆନ୍‌ମାନେ ଆକ୍ରମଣ କରୁଥିଲେ । ବହୁସଂଖ୍ୟକ ଲୋକଙ୍କୁ ଗୁଳି କରି ଓ ଅସଂଖ୍ୟ ଗ୍ରାମ ପୋଡ଼ି ଦେଇ ଫରାସୀ ଲୋକଙ୍କୁ ଆତଙ୍କିତ କରିବା ନିମନ୍ତେ ସେମାନେ ଯଥାସମ୍ଭବ ଉଦ୍ୟମ କଲେ । ପ୍ରସିଦ୍ଧ ପୁରାତନ ସହର ଡାମାସ୍କସ ଉପରେ ବୋମା ନିକ୍ଷେପ କରି ୧୯୨୫ ଅକ୍ଟୋବର ମାସରେ ଏହା ବହୁପରିମାଣରେ ଧ୍ୱଂସ କରି ଦିଆଗଲା । ସମଗ୍ର ସିରିଆ ଏକ ସାମରିକ ଶିବିର ଥିଲା । ଏସବୁ ସତ୍ତ୍ୱେ ଦୁଇବର୍ଷ ପର୍ଯ୍ୟନ୍ତ ଏହି ବିଦ୍ରୋହ ଦମନ କରାଯାଇ ପାରିଲା ନାହିଁ । ଶେଷରେ ବିରାଟ ଫରାସୀ ମିଲିଟାରୀ ମେସିନ୍ ଦ୍ୱାରା ଏହାକୁ ଦମନ କରାଗଲା, କିନ୍ତୁ ସିରିଆନମାନଙ୍କର ମହାନ ତ୍ୟାଗ ବୃଥା ହୋଇ ନାହିଁ । ସେମାନେ ତାଙ୍କର ସ୍ୱାଧୀନତା ଲାଗି ଅଧିକାର ସାବ୍ୟସ୍ତ କରି ଦେଇଛନ୍ତି ଏବଂ ସେମାନେ କିପରି ଧାତୁରେ ଗଢ଼ା ତାହା ସାରା ଦୁନିଆ ଜାଣିଯାଇଛି ।

ଆହୁରି ମଜାର କଥା ହେଉଛି ଫରାସୀ ଯେତେବେଳେ ଏହି ବିଦ୍ରୋହକୁ ଏକ ଧର୍ମ ରୂପ ଦେଇ ଖ୍ରୀଷ୍ଟିୟାନ୍‌ମାନଙ୍କୁ ଡ୍ରୁଜଙ୍କ ବିରୁଦ୍ଧରେ ଲଗାଇବାକୁ ଉଦ୍ୟମ କରୁଥିଲେ, ସେତେବେଳେ ସିରିଆନ୍‌ମାନେ ପରିଷ୍କାର କରିଦେଲେ ଯେ ସେମାନେ ଜାତୀୟ ସ୍ୱାଧୀନତା ପାଇଁ ଲଢ଼ାଇ କରୁଛନ୍ତି; ଧାର୍ମିକ ଉଦ୍ଦେଶ୍ୟ ହାସଲ ପାଇଁ ନୁହେଁ । ବିଦ୍ରୋହ ଆରମ୍ଭରେ ଡ୍ରୁଜ ଦେଶରେ ଏକ ଅସ୍ଥାୟୀ ସରକାର ସ୍ଥାପନ କରାଗଲା ଏବଂ ଏହି ସରକାର ଏକ ଘୋଷଣା ପ୍ରକାଶ କଲା । ସେଥିରେ ସ୍ୱାଧୀନତା ଯୁଦ୍ଧରେ ଯୋଗ ଦେବା ନିମନ୍ତେ ଏବଂ "ଏକ ଓ ଅବିଚ୍ଛେଦ୍ୟ ସିରିଆ ପାଇଁ ପୂର୍ଣ୍ଣ ସ୍ୱାଧୀନତା ଶାସନ ଖସଡ଼ା ତିଆରି କରିବା ନିମନ୍ତେ ଏକ ଗଣପରିଷଦର ମୁକ୍ତ ନିର୍ବାଚନ, ବିଦେଶୀ ସେନାର ବହିଷ୍କାର ଏବଂ ନିରାପଦତା ପାଇଁ ଜାତୀୟସେନା ସୃଷ୍ଟି ଏବଂ ଫରାସୀ ବିପ୍ଳବର ନୀତି ଓ ମଣିଷର ଅଧିକାର" ହାସଲ ନିମନ୍ତେ ଲୋକଙ୍କୁ ନିବେଦନ କଲେ । ତେଣୁ ଯେଉଁ ଲୋକ ଫରାସୀ ବିପ୍ଳବର ନୀତି ହାସଲ ଲାଗି ଏବଂ ଫରାସୀ ଜାତି ଯେଉଁ ଅଧିକାର ଘୋଷଣା କରିଥିଲା, ତାହା ପ୍ରାପ୍ତି ନିମନ୍ତେ ଦୃଢ଼ ହୋଇ ଛିଡ଼ା ହେଲେ, ତାକୁ ଫରାସୀ ସରକାର ଓ ଫରାସୀ ସେନା ଜବତ୍ କରିବାକୁ ଚେଷ୍ଟା କରିଥିଲା ।

୧୯୨୮ ଆରମ୍ଭ ବେଳକୁ ସିରିଆରେ ସାମରିକ ଆଇନ ଓ ମୁଦ୍ରାଯନ୍ତ୍ର ଯାଞ୍ଚ ପ୍ରଥା ଉଠିଗଲା । ଅନେକ ରାଜବନ୍ଦୀ ଖଲାସ ହୋଇଗଲେ । ଜାତୀୟବାଦୀମାନଙ୍କ ଦାବୀ ଅନୁସାରେ ଏକ ଶାସନ ଖସଡ଼ା ଗଢ଼ିବା ନିମନ୍ତେ ଏକ ଗଣପରିଷଦ ଡକା ହେଲା । କିନ୍ତୁ ଏଥିରେ ପୃଥକ୍ ଧାର୍ମିକ ନିର୍ବାଚନମଣ୍ଡଳୀ ବ୍ୟବସ୍ଥା କରି ଫ୍ରାନ୍ସ ଗଣ୍ଡଗୋଳ ବୀଜ ବପନ କଲା (ଭାରତରେ ଏବେ ଯେପରି ହୋଇଛି) । ମୁସଲମାନ୍, ଗ୍ରୀକ୍ କାଥଲିକ୍, ଗ୍ରୀକ୍ ଅର୍ଥୋଡକ୍ସ ଚର୍ଚ୍ଚ ଓ ଇହୁଦୀମାନଙ୍କ ପାଇଁ ଅଲଗା ବିଭାଗ ସୃଷ୍ଟି କରାଗଲା ଏବଂ ତାର ନିଜ ଧର୍ମ ଗୋଷ୍ଠୀର ଲୋକଙ୍କୁ ଭୋଟ ଦେବା ନିମନ୍ତେ ପ୍ରତ୍ୟେକ

ଭୋଟର ବାଧ୍ୟ ହେଲ । ଡାମାସ୍କସରେ ଏକ ବିଚାର ପରିଷଦ ଉପୁଜିଲ । ଜାତୀୟବାଦୀଙ୍କର ନେତା ଥିଲେ ଜଣେ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟିୟାନ । ସେ ପ୍ରୋଟେଷ୍ଟାଣ୍ଟ ହୋଇଥିବାରୁ କୌଣସି ବିଶେଷ ନିର୍ବାଚନ ମଣ୍ଡଳୀ ଭିତରେ ଆସି ପାରିଲେ ନାହିଁ ଏବଂ ତେଣୁ ସେ ଡାମାସ୍କସର ଜଣେ ଶ୍ରେଷ୍ଠ ଜନପ୍ରିୟ ଲୋକ ହୋଇ ସୁଦ୍ଧା ନିର୍ବାଚିତ ହୋଇ ପାରିଲେ ନାହିଁ । ପ୍ରୋଟେଷ୍ଟାଣ୍ଟମାନଙ୍କୁ ଗୋଟିଏ ସ୍ଥାନ ଦେବାପାଇଁ ମୁସଲମାନମାନେ ଦଶଟି ସ୍ଥାନରୁ ଗୋଟିଏ ଛାଡ଼ି ଦେବାକୁ କହିଲେ, କିନ୍ତୁ ଫରାସୀ ସରକାର ରାଜି ହେଲନାହିଁ ।

ଫରାସୀମାନଙ୍କର ଏହି ସବୁ ପ୍ରଚେଷ୍ଟା ସତ୍ତ୍ୱେ ଜାତୀୟବାଦୀମାନେ ଗଣ ପରିଷଦରେ ପ୍ରାଧାନ୍ୟଲାଭ କଲେ ଏବଂ ସେମାନେ ଏକ ସ୍ୱାଧୀନ ଓ ସାର୍ବଭୌମ୍ୟ ରାଜ୍ୟ ନିମନ୍ତେ ଶାସନଖସଡ଼ା ତିଆରି କଲେ । ସେଥିରେ ଥିଲା ସିରିଆ ଏକ ପ୍ରଜାତନ୍ତ୍ର ହେବ, ସମସ୍ତ କ୍ଷମତା ଲୋକଙ୍କଠାରେ ରହିବ । ଏହି ନୂତନ ଶାସନ ଖସଡ଼ାରେ ଫରାସୀ ବା ତାଙ୍କ ମାଣ୍ଡେଟ୍ ବିଷୟ କିଛି ଉଲ୍ଲେଖ ନ ଥିଲା । ଏଥିରେ ଫରାସୀମାନେ ପ୍ରତିବାଦ କଲେ, କିନ୍ତୁ ଆସେମ୍ବ୍ଲି ଏକ ଇଞ୍ଚ ସୁଦ୍ଧା ଟଳିଲା ନାହିଁ ଏବଂ ଅନେକ ମାସ ପର୍ଯ୍ୟନ୍ତ ଗୋଟାଏ ସଂଘର୍ଷ ଚାଲିଲା । ଶେଷରେ ଫରାସୀ ହାଇକମିସନର ପ୍ରସ୍ତାବ କଲେ ଯେ ନୂତନ ଶାସନଖସଡ଼ା ଗୃହୀତ ହେଉ ମାତ୍ର ସେଥିରେ ଗୋଟିଏ ଦଫା ରହିବ ଯେ ମାଣ୍ଡେଟ୍ ରହିଥିବା ପର୍ଯ୍ୟନ୍ତ 'ମାଣ୍ଡେଟ୍' ଅନୁସାରେ ଫରାସୀର ଦାୟିତ୍ୱ ତୁଲାଇବାରେ ସଂଘର୍ଷ ଜାତ କଲାପରି ଶାସନ ଖସଡ଼ାର କୌଣସି ଦଫା ପ୍ରୟୋଗ କରାଯିବ ନାହିଁ । ଏହା ଏକପ୍ରକାରର ଅସ୍ପଷ୍ଟ ଥିଲା, କିନ୍ତୁ ତଥାପି ଫରାସୀ ଏଥିରେ ବହୁତ ବଳକୁ ଗଲା । ଯାହାହେଉ ଗଣ-ପରିଷଦ ଏଥିରେ ସୁଦ୍ଧା ସମ୍ମତ ହେଲନାହିଁ । ତେଣୁ ୧୯୩୦ ମେ ମାସରେ ଫରାସୀ ସରକାର ଗଣ-ପରିଷଦ ଭାଙ୍ଗିଦେଲା ଏବଂ ସେମାନଙ୍କ ପ୍ରସ୍ତାବିତ ଅସ୍ଥାୟୀ ଦଫା ସମ୍ବଳିତ କରି ଆସେମ୍ବ୍ଲିରେ ଗୃହୀତ ଶାସନଖସଡ଼ାକୁ ଘୋଷଣା କଲା ।

ତେଣୁ ଖାସ ସିରିଆ ଯାହା ଚାହୁଁଥିଲା ସେଥିରୁ ଅନେକ ଜିନିଷ ପାଇ ପାରିଲା ଏବଂ ତଥାପି ଏହା ଆପୋଷ ମୀମାଂସା କରି ନାହିଁ କିମ୍ବା ନିଜର ଦାବୀରୁ ଗୋଟିଏ ହେଲେ ଛାଡ଼ି ଦେଇ ନାହିଁ । ଦୁଇଟି କଥା ରହିଲା—'ମାଣ୍ଡେଟ୍' ରଦ୍ଦ କରିବା—ଏହା ହେଲେ ଅସ୍ଥାୟୀ ଦଫାଟି ବି ଯିବ ଏବଂ ଦ୍ୱିତୀୟ ହେଉଛି ସିରିଆ ଏକତାର ବ୍ୟାପକ ପ୍ରଶ୍ନ । ନଚେତ୍ ଶାସନଖସଡ଼ାଟି ଏକ ପ୍ରଗତିମୂଳକ ଏବଂ ସମ୍ପୂର୍ଣ୍ଣ ସ୍ୱାଧୀନ ଦେଶପ୍ରତି ପ୍ରଯୁଜ୍ୟ । ବିରାଟ ବିଦ୍ରୋହବେଳେ ସିରିଆନମାନେ ନିଜକୁ ସାହସୀ ଓ ପ୍ରତିଜ୍ଞାବଦ୍ଧ ଯୋଦ୍ଧାରୂପରେ ପରିଚୟ ଦେଲେ ଏବଂ ପରେ ମିଳାମିଶା କଥାବାର୍ତ୍ତାବେଳେ ସେହିପରି ନିଷ୍ଠପ୍ରତା ଓ ଦୃଢ଼ତା ଦେଖାଇଥିଲେ ମଧ୍ୟ ପୂର୍ଣ୍ଣ ସ୍ୱାଧୀନତା ଦାବୀକୁ କୌଣସି ପ୍ରକାର ହ୍ରାସ ବା ସଂଶୋଧନ କରିବାକୁ ଅସ୍ୱୀକାର କଲେ ।

୧୯୩୩ ନଭେମ୍ବର ମାସରେ ସିରିଆ 'ଚ୍ୟାମ୍ବର ଅଫ୍ ଡେପୁଟି' ସହିତ ଏକ ସନ୍ଧି କରିବା

ନିମନ୍ତେ ଫରାସୀ କହିଲା । ଏହି ଦ୍ୱନ୍ଦ୍ୱରେ ଫରାସୀ ସରକାର ସପକ୍ଷବାଦୀ ନରମପନ୍ଥୀମାନେ ଭର୍ତ୍ତି ହୋଇଛନ୍ତି । ଏହା ସତ୍ତ୍ୱେ ଦ୍ୱନ୍ଦ୍ୱର ସନ୍ଧି ସର୍ତ୍ତକୁ ପ୍ରତ୍ୟାଖ୍ୟାନ କଲା । ଏହାର କାରଣ ହେଉଛି ଫ୍ରାନ୍ସ ସିରିଆ ଯେଉଁ ପାଞ୍ଚଟି ରାଜ୍ୟରେ ବିଭକ୍ତ ହୋଇଥିଲା ତାହା ରକ୍ଷା କରିବା ନିମନ୍ତେ ଏବଂ ସିରିଆରେ ଶିବିର ବାରାକ୍ ଉଡ଼ାଜାହାଜ ଘାଟୀ ଓ ସାମରିକ ଶକ୍ତି ରଖିବା ନିମନ୍ତେ ଦାବୀ କରୁଥିଲା ।

ନୋଟ (ଅକ୍ଟୋବର) ୧୯୩୮—

ଚେକୋସ୍ଲୋଭେକିଆରେ ନାତ୍ସି ବିଜୟ ଏବଂ ଇଉରୋପରେ ଜର୍ମାନୀର ପ୍ରାଧାନ୍ୟ ଓ ଉପନିବେଶ ପାଇଁ ତାର ଦାବୀ ଫଳରେ ସମଗ୍ର ଦୁନିଆରେ ଏକ ନୂତନ ପରିସ୍ଥିତି ଉପୁଜିଛି । ଫ୍ରାନ୍ସ ଦ୍ୱିତୀୟ ଶ୍ରେଣୀର ଶକ୍ତି ହୋଇଛି ଏବଂ ଏକ ବିଶାଳ ଉପନିବେଶ ସାମ୍ରାଜ୍ୟ ଦୀର୍ଘଦିନ ପାଇଁ ରକ୍ଷା କରିପାରିବ ନାହିଁ । ପାଲେଷ୍ଟାଇନର ଗୋଳମାଳିଆ ପରିସ୍ଥିତି ହେତୁ ଅନୁମାନ କରାଯାଉଛି ଯେ ସିରିଆ-ପାଲେଷ୍ଟାଇନ ଓ ଟ୍ରାନ୍ସ-ଜୋର୍ଡାନ ଏକତ୍ର ହୋଇ ଏକ ଆରବ ରାଷ୍ଟ୍ର ସଂଘ ଗଢ଼ା ହୋଇପାରେ ।

---

## ୧୬୭ : ପାଲେଷ୍ଟାଇନ ଓ ଟ୍ରାନ୍ସ-ଜୋର୍ଡାନ

ମେ ୨୯, ୧୯୩୩

ସିରିଆକୁ ଲାଗି ପାଲେଷ୍ଟାଇନ ରହିଛି—ଏଥିପାଇଁ ବ୍ରିଟିଶ ସରକାର ଲିଗ୍ ଅଫ୍ ନେସନ୍ସରୁ ଏକ 'ମାଣ୍ଡେଟ' ପାଇଛି । ଏହା ଆହୁରି ଏକ ଶ୍ରେଷ୍ଠ ଦେଶ—ଲୋକସଂଖ୍ୟା ୧୦ଲକ୍ଷରୁ କମ୍, କିନ୍ତୁ ଏହାର ପୁରୁଣା ଇତିହାସ ଓ ସଂହତି ସକାଶେ ଏହା ବହୁ ଦୃଷ୍ଟି ଆକର୍ଷଣ କରେ । କାରଣ ଏହା ଇହୁଦୀ ଓ ଖ୍ରୀଷ୍ଟିୟାନ ଉଭୟଙ୍କର ପୁଣ୍ୟସ୍ଥଳୀ ଏବଂ କେତେକ ପରିମାଣରେ ମୁସଲମାନମାନଙ୍କର ମଧ୍ୟ । ଏଠାରେ ବାସ କରୁଥିବା ଲୋକେ ପ୍ରଧାନତଃ ଆରବୀୟ ମୁସଲମାନ ଏବଂ ସେମାନେ ତାଙ୍କର ସିରିଆ ଭାଇଙ୍କ ପରି ସ୍ୱାଧୀନତା ଓ ଏକତା ଦାବୀ କରୁଛନ୍ତି । କିନ୍ତୁ ବ୍ରିଟିଶ ନୀତି ଏଠାରେ ଏକ ବିଶେଷ ସଂଖ୍ୟାଲଘିଷ୍ଠ ସମସ୍ୟା—ଇହୁଦୀଙ୍କ ସମସ୍ୟା ସୃଷ୍ଟି କରିଛି ଏବଂ ଇହୁଦୀମାନେ ବ୍ରିଟିଶ ପକ୍ଷ ଗ୍ରହଣ କରନ୍ତି ଓ ପାଲେଷ୍ଟାଇନ ସ୍ୱାଧୀନତାର ବିରୋଧ କରନ୍ତି, କାରଣ ସେମାନେ ଭୟ କରନ୍ତି ଯେ ଏହାର ଅର୍ଥ ଆରବ ଶାସନ । ଦୁହେଁ ବିଭିନ୍ନ ରାସ୍ତାକୁ ଟାଣନ୍ତି ଓ ତେଣୁ ସଂଘର୍ଷ ଘଟେ ।

ଆରବଙ୍କ ସଂଖ୍ୟା ବେଶି, ଅନ୍ୟ ପକ୍ଷରେ ବହୁ ଅର୍ଥ ସମ୍ପଦ ଏବଂ ଇହୁଦୀମାନଙ୍କ ପୃଥିବୀବ୍ୟାପୀ ସଙ୍ଗଠନ ରହିଛି । ତେଣୁ ଆରବ ଜାତୀୟତା ବିରୁଦ୍ଧରେ ଇଂଲଣ୍ଡ ଇହୁଦୀ ଧାର୍ମିକ ଜାତୀୟତାକୁ ଲଗାଏ ଏବଂ ଏକ ପଞ୍ଚାୟତ ଭାବରେ କାର୍ଯ୍ୟ କରିବା ନିମନ୍ତେ ଓ ଦୁହିଁଙ୍କ ଭିତରେ ଶାନ୍ତିରକ୍ଷା ନିମନ୍ତେ ଇଂଲଣ୍ଡର ଉପସ୍ଥିତି ଦରକାର ବୋଲି ଯେପରି ଜଣାପଡ଼େ । ଏହି ଏକାଭଳିଆ ପୁରୁଣା ଖେଳ ଆମେ ସାମ୍ରାଜ୍ୟବାଦୀ କର୍ତ୍ତୃତ୍ୱରେ ଥିବା ଅନ୍ୟ ସବୁ ଦେଶରେ ଦେଖିବାକୁ ପାଉ; ଏହା କିପରି ପୁନଃ ପୁନଃ ଘଟେ ତାହାହିଁ ବିଚିତ୍ର କଥା ।

ଇହୁଦୀମାନେ ଅଲୌକିକ ଜାତି । ମୂଳରୁ ସେମାନେ ପାଲେଷ୍ଟାଇନରେ ଗୋଟିଏ ବା କେତୋଟି ପାହାଡ଼ିଆ ଜାତି ଥିଲେ—ଏବଂ ବାଇବେଲ୍ ଓଲ୍ଡ଼ ଟେଷ୍ଟାମେଣ୍ଟରେ ତାଙ୍କର ଆଦିମ କାହାଣୀସବୁ ବର୍ଣ୍ଣିତ ଅଛି । ସେମାନେ ନିଜକୁ ଭଗବାନଙ୍କ ବଛା ଲୋକ ବୋଲି ଭାବି ଟିକିଏ ଅହଂକାରୀ ପରି କାର୍ଯ୍ୟ କରନ୍ତି । କିନ୍ତୁ ଏପରି ଅହଙ୍କାର ପ୍ରାୟ ସବୁ ଜାତି କରିଥାଆନ୍ତି । ବାରମ୍ବାର ସେମାନଙ୍କୁ ଜୟ କରାଗଲା, ଦମନ କରାଗଲା ଓ ଦାସ କରାଗଲା ଏବଂ ଇଂରେଜୀରେ ଏହି ଇହୁଦୀଙ୍କର ଶୋକ ସଙ୍ଗୀତସବୁ ସୁନ୍ଦର ଓ ହୃଦୟସ୍ପର୍ଶୀ କବିତା ହୋଇ ରହିଛି—ବାଇବେଲରେ ଏହାର ଠିକ୍ ଅନୁବାଦ ରହିଛି । ମୋର ମନେ ହୁଏ ଏହା ମୂଳ ହିବ୍ରୁ ଭାଷାରେ ସେହିପରି ସୁନ୍ଦର କିମ୍ବା ତାହା ଅପେକ୍ଷା ବେଶି ହୋଇଥିବ । ମୁଁ କେତେକ ଧାଡ଼ିମାତ୍ର ଏଠି ଦେଉଛି :—

"ବେବିଲୋନ ସଲିଳ ସୀମାନ୍ତେ କାନ୍ଦୁଥିଲୁ ତୁମ ସ୍ମୃତିଭାବି,
ହେ ସାୟନ, ଆମ ବୀଣାସବୁ ବୃକ୍ଷ ପରେ ରହିଥିଲା ଝୁଲି ।
ଆମକୁ ଯେ ବନ୍ଦୀ କଲା ଦାବୀ କଲା ଶୁଣିବାକୁ ଗୀତ,
ବୀଣା ସାଥେ ବିଷଣ୍ଣ ଅନ୍ତରେ ଗାଇବାକୁ ତୁମର ସଙ୍ଗୀତ
କିପରି ସେ ଅଜ୍ଞାତ ଦେଶରେ ?

ପ୍ରଭୁଙ୍କର ଗୀତ ଗାଇଥାନ୍ତୁ, ଅକୁଣ୍ଠିତ ଅଖେଦ ଚିତ୍ତରେ ।
ହେ ଜେରୁଜେଲମ !

ଯଦି ମୁଁ ଯାଏ ତତେ ଭୁଲି—ପଙ୍ଗୁ ହେଉ ସବ୍ୟେତର ମମ ।
ମୂକ ହେଉ ଜିହ୍ୱା ମୋର ତୋତେ ଯେବେ କରେ ମୁଁ ବିସ୍ମୃତ
ମୋ ଉତ୍ସବ, ସଙ୍ଗୀତ ଆନନ୍ଦେ ତୋତେ ଯଦି ନ ଗଣେ ଶ୍ରେଷ୍ଠ ।"

(ଅନୁବାଦକ—ଚିତ୍ତରଞ୍ଜନ ଦାସ)

ଏହି ଇହୁଦୀମାନେ ସମଗ୍ର ଜଗତରେ ବାଣ୍ଟି ହୋଇ ରହିଛନ୍ତି । ସେମାନଙ୍କର କୌଣସି ଘର ବା ଦେଶ ନାହିଁ ଏବଂ ସେମାନେ ଯେଉଁଠିକି ଯାଇଛନ୍ତି ସେଠି ଅନାହୂତ ଓ ଅବାଞ୍ଛିତ ଅପରିଚିତ ଲୋକ ଭାବରେ ବ୍ୟବହାର ପାଇଛନ୍ତି । ସେମାନଙ୍କୁ ସହରର ନିର୍ଦ୍ଦିଷ୍ଟ

ଅଞ୍ଚଳରେ ଅନ୍ୟମାନଙ୍କଠାରୁ ଅଲଗା ରହିବାକୁ ଦିଆଯାଏ—ଏହି ଅଞ୍ଚଳକୁ "ଘେଟୋ"ବୋଲି କହନ୍ତି—ତାହାହେଲେ ସେମାନେ ଅନ୍ୟଙ୍କୁ ଦୂଷିତ କରି ପାରିବେ ନାହିଁ । ବେଳେବେଳେ ବିଶେଷ ପୋଷାକ ପିନ୍ଧିବା ନିମନ୍ତେ ତାଙ୍କୁ ଆଦେଶ ଦିଆଯାଏ । ସେମାନେ ଅପମାନିତ, ଲାଞ୍ଛିତ, ଅତ୍ୟାଚାରିତ ଓ ନିହତ ହୋଇଥିଲେ; "ଇହୁଦୀ" ଶବ୍ଦଟି ଗୋଟାଏ ଗାଳି ଶବ୍ଦ ହୋଇଯାଇଛି; ଏକ କୃପଣ ଓ ସଞ୍ଚୟ କରିବା ମହାଜନର ଅପରନାମ ହୋଇଛି । ତଥାପି ଏହି ଅଦ୍ଭୁତ ଲୋକେ ଯେ ଏ ସବୁରୁ ଖାଲି ବର୍ତ୍ତିଯାଇଛନ୍ତି ତାହା ନୁହେଁ, ସେମାନଙ୍କର ଜାତିଗତ ଓ ସଂସ୍କୃତିଗତ ଆଚରଣ ସବୁ ଠିକ୍ ରଖିପାରିଛନ୍ତି ଏବଂ ନିଜେ ସମୃଦ୍ଧିଶାଳୀ ହୋଇ ଅନେକ ମହାନ୍ ଲୋକ ବି ଏଥିରୁ ବାହାରିଛନ୍ତି । ଆଜି ବିଜ୍ଞାନବେତ୍ତା, ରାଜନୀତିକ, ସାହିତ୍ୟିକ, ଅର୍ଥନୀତିଜ୍ଞ ବ୍ୟବସାୟୀ ହିସାବରେ ତାଙ୍କ ଭିତରେ ମୁଖ୍ୟ ଲୋକ ରହିଛନ୍ତି ଏବଂ ଏପରିକି ପ୍ରଧାନ ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ମଧ୍ୟ ଇହୁଦୀ ଥିଲେ । ସେମାନଙ୍କ ଭିତରୁ ଅଧିକାଂଶ ଅବଶ୍ୟ ସମୃଦ୍ଧିସମ୍ପନ୍ନ ନୁହନ୍ତି; ସେମାନେ ପୂର୍ବ ୟୁରୋପର ସହରମାନଙ୍କରେ ରୁଣ୍ଡ ହୁଅନ୍ତି ଏବଂ ଥରକୁ ଥର "ପୋଗ୍ରମ" ବା ହତ୍ୟା କରାଯାଏ । ଗୃହ ବା ଦେଶବିହୀନ ଏହି ଲୋକେ ଏବଂ ବିଶେଷତଃ ତାଙ୍କ ଭିତରେ ଥିବା ଦରିଦ୍ର ଲୋକେ ପୁରୁଣା ଜେରୁଜେଲମ ସ୍ୱପ୍ନ ଏବେ ବି ଦେଖନ୍ତି; ଏହା ତାଙ୍କର କଳ୍ପନାରେ ଆଗ ଅପେକ୍ଷା ଅଧିକ ମହାନ୍ ବୋଲି ମନେ ହୁଏ । ଜେରୁଜେଲମକୁ ସେମାନେ ଜିଅନ ବୋଲି କହନ୍ତି—ଏକପ୍ରକାର ଲବ୍ଧ ଭୂମି; ଅତୀତର ଜିଓନିଜମ ହିଁ ତାଙ୍କୁ ଜେରୁଜେଲମ ଓ ପାଲେଷ୍ଟାଇନ ଆଡ଼କୁ ଟାଣି ନିଏ ।

୧୯ଶ ଶତାବ୍ଦୀ ଶେଷବେଳକୁ ଏହି ଜିଓନିଷ୍ଟ ଆନ୍ଦୋଳନ ଏକ ବସତି କରିବା ଆନ୍ଦୋଳନ ରୂପ ଧାରଣ କଲା ଏବଂ ଅନେକ ଇହୁଦୀ ପାଲେଷ୍ଟାଇନରେ ବସତି କରିବାକୁ ଗଲେ । ହିବ୍ରୁ ଭାଷାର ମଧ୍ୟ ପୁନରୁଦ୍ଧାର ହେଲା । ପୃଥିବୀ ଯୁଦ୍ଧ ବେଳେ ବ୍ରିଟିଶ ସେନା ପାଲେଷ୍ଟାଇନ ଆକ୍ରମଣ କଲେ ଏବଂ ସେମାନେ ଜେରୁଜେଲମରେ ଅଗ୍ରସର ହେଉଥିବା-ବେଳେ ୧୯୧୭ ନଭେମ୍ବର ମାସରେ ବ୍ରିଟିଶ ସରକାର ଏକ ଘୋଷଣା କଲେ । ଏହାକୁ ବେଲଫୋର ଘୋଷଣା ବୋଲି କୁହାଯାଏ । ସେମାନେ ଘୋଷଣା କଲେ ଯେ, ତାଙ୍କର ଉଦ୍ଦେଶ୍ୟ ହେଉଛି ପାଲେଷ୍ଟାଇନରେ ଏକ "ଇହୁଦୀ ଜାତୀୟ ଗୃହ" ସ୍ଥାପନ କରିବା । ଆନ୍ତର୍ଜାତୀୟ ଇହୁଦୀ ସଂପ୍ରଦାୟର ସଦିଚ୍ଛା ପାଇବା ନିମନ୍ତେ ଏହି ଘୋଷଣା କରାଗଲା ଏବଂ ଅର୍ଥ ଦୃଷ୍ଟିରୁ ଏହାର ଗୁରୁତ୍ୱ ଥିଲା । ଇହୁଦୀମାନେ ଏହାକୁ ସ୍ୱାଗତ କଲେ । କିନ୍ତୁ ଏଥିରେ ଗୋଟିଏ ପ୍ରମାଦ ରହିଗଲା—ଗୋଟିଏ ଗୁରୁତର କଥା ପ୍ରତି ସେମାନେ ଦୃଷ୍ଟି ଦେଇପାରି ନ ଥିଲେ । ପାଲେଷ୍ଟାଇନ କିଛି ଏକ ଅରଣ୍ୟ ବା ଶୂନ୍ୟ, ଲୋକ ବସତି ନ ଥିବା ସ୍ଥାନ ନୁହେଁ । ଏଥିରେ ଆଗରୁ ଅନ୍ୟମାନେ ବାସ କରୁଥିଲେ । ତେଣୁ ବ୍ରିଟିଶ ସରକାରର ଏହି ଉଦାରତାଦ୍ୱାରା ପ୍ରକୃତରେ ପାଲେଷ୍ଟାଇନରେ ଆଗରୁ ବାସ କରୁଥିବା ଲୋକଙ୍କ ବିନିମୟରେ ଏହା କରିବାକୁ ସ୍ଥିର ହୁଥିଲା ଓ ଆରବ, ଅନ-ଆରବ, ମୁସଲମାନ, ଖ୍ରୀଷ୍ଟିୟାନ

ସମସ୍ତେ ଏବଂ ପ୍ରକୃତରେ ପ୍ରତ୍ୟେକ ଲୋକ ଯେଉଁମାନେ ଇହୁଦୀ ନୁହନ୍ତି ଏହି ଘୋଷଣାର ତୀବ୍ର ପ୍ରତିବାଦ କଲେ । ଏହା ପ୍ରକୃତରେ ଏକ ଆର୍ଥିକ ପ୍ରଶ୍ନ ଥିଲା । ଏମାନେ ଅନୁମାନ କଲେ ତାଙ୍କର ସମସ୍ତ କାର୍ଯ୍ୟରେ ଇହୁଦୀମାନେ ପ୍ରତିଯୋଗିତା କରିବେ ଏବଂ ତାଙ୍କ ପାଖରେ ଥିବା ବିଶାଳ ଧନ ସାହାଯ୍ୟରେ ଦେଶର ଆର୍ଥିକ ପ୍ରଭୁ ହୋଇଯିବେ; ସେମାନେ ଭୟ କରୁଥିଲେ ଯେ, ଇହୁଦୀମାନେ ତାଙ୍କ ଦାନାରେ ଧୂଳି ପକାଇବେ ଏବଂ କୃଷକ-ମାନଙ୍କଠାରୁ ଭୂମି ଛଡ଼ାଇ ନେବେ ।

ଯେତେଦିନୁ ପାଲେଷ୍ଟାଇନରେ ଆରବ ଓ ଇହୁଦୀଙ୍କ ଭିତରେ ସଂଘର୍ଷ ଚାଲିଛି; ସୁବିଧା ଦେଖି ବ୍ରିଟିଶ ସରକାର କୌଣସି ଏକ ପକ୍ଷ ସମର୍ଥନ କରୁଛି; କିନ୍ତୁ ସାଧାରଣତଃ ଇହୁଦୀଙ୍କୁ ସମର୍ଥନ କରେ । ଏହି ଦେଶକୁ ଏକ ବ୍ରିଟିଶ ବସତି ପରି ବ୍ୟବହାର କରାଯାଉଛି, ଏଠାରେ ସ୍ୱାୟତ୍ତଶାସନ ନାହିଁ । ଖ୍ରୀଷ୍ଟିୟାନ ଓ ଅନ୍ୟ ଅଣ-ଇହୁଦୀ ଲୋକଙ୍କ ସମର୍ଥନ ପାଇ ଅରବମାନେ ଆତ୍ମନିୟନ୍ତ୍ରଣ ଓ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଦାବୀ କରି ଆସିଛନ୍ତି । ସେମାନେ 'ମାଣ୍ଡେଟ' କଥାକୁ ବଡ଼ ଆପତ୍ତି କରନ୍ତି ଏବଂ ସେଠାରେ ଆଉ ସ୍ଥାନ ନାହିଁ ବୋଲି ନୂଆ ଲୋକ ବସତି ସ୍ଥାପନ କରିବାରେ ଆପତ୍ତି କରୁଛନ୍ତି । ନୂଆ ଇହୁଦୀ ଲୋକ ଆସିବା ସଙ୍ଗେ ସଙ୍ଗେ ସେମାନଙ୍କର କ୍ରୋଧ ଓ ଭୟ ବୃଦ୍ଧି ପାଉଛି । ଆରବମାନେ ଘୋଷଣା କରିଛନ୍ତି ଯେ, "ଜିଓନିଜମ ହେଉଛି ବ୍ରିଟିଶ ସାମ୍ରାଜ୍ୟବାଦର ପାପ-ସହାୟକ; ଦାୟିତ୍ୱପୂର୍ଣ୍ଣ ଜିଓନିଷ୍ଟ ନେତାମାନେ ବରାବର କହି ଆସିଛନ୍ତି ବଳିଷ୍ଠ ଇହୁଦୀ ଜାତୀୟ ଗୃହ ହେଲେ ଭାରତର ପଥ ଜଗିବା ନିମନ୍ତେ ଇଂରେଜମାନଙ୍କ ପକ୍ଷରେ ସୁବିଧାଜନକ ହେବ, କାରଣ ଏହା ଆରବ ଜାତୀୟ ଆକାଂକ୍ଷାର ପ୍ରତିରୋଧ କରିପାରିବ ।" ଅଖାଡ଼ୁଆ ଜାଗାରେ କପରି ଭାରତକୁ ବ୍ୟବହାର କରାଯାଉଛି ।

ବ୍ରିଟିଶ ସରକାର ସହି ଅସହଯୋଗ କରିବା ନିମନ୍ତେ ଏବଂ ବ୍ରିଟିଶ ଯେଉଁ ବ୍ୟବସ୍ଥାପରିଷଦ ଗଢ଼ୁଛନ୍ତି, ତାହାର ନିର୍ବାଚନ ବର୍ଜନ କରିବା ନିମନ୍ତେ ଆରବ କଂଗ୍ରେସ ସ୍ଥିର କଲା । ଏହି ବର୍ଜନ ବଡ଼ ସଫଳ ହେଲା ଏବଂ କାଉନସିଲ ଗଢ଼ା ହୋଇପାରିଲା ନାହିଁ । ଗୋଟାଏ ପ୍ରକାର ଅସହଯୋଗ ନୀତି କେତେକ ବର୍ଷ ପର୍ଯ୍ୟନ୍ତ ଚାଲିଲା; ତାପରେ କେତେକ ପରିମାଣରେ ଆରବ କଂଗ୍ରେସ ଦୁର୍ବଳ ହୋଇପଡ଼ିଲା ଏବଂ କେତେକ ଦଳ ବ୍ରିଟିଶଙ୍କୁ ଆଂଶିକ ସହଯୋଗ ଦେଲେ । ଏହା ହୋଇ ସୁଦ୍ଧା ବ୍ରିଟିଶ ଏକ ନିର୍ବାଚିତ କାଉନସିଲ ଗଢ଼ିପାରିଲେ ନାହିଁ ଏବଂ ହାଇକମିସନର ଜଣେ ସର୍ବଶକ୍ତିମାନ ସୁଲତାନ ପରି ଶାସନ କଲା ।

୧୯୨୮ରେ ଆରବ ଦଳସବୁ ପୁନର୍ବାର ଆରବ କଂଗ୍ରେସରେ ଏକତ୍ର ହେଲେ ଏବଂ "ଅଧିକାର ସ୍ୱରୂପ" ଗଣତାନ୍ତ୍ରିକ ପାର୍ଲିମେଣ୍ଟ ଶାସନ ଦାବୀ କଲେ । ସେମାନେ ଆହୁରି ଖୁବ୍ ସାହସର ସହିତ କହିଲେ ଯେ, "ପାଲେଷ୍ଟାଇନର ଲୋକେ ପ୍ରଚଳିତ ଏକଚ୍ଛତ୍ର ଉପନିବେଶ ପ୍ରଥା ଶାସନକୁ ଆଉ ସହ୍ୟ କରିପାରିବେ ନାହିଁ ।" ଆରବ ଜାତୀୟତାର

ଏହି ନୂତନ ଗଠନରେ ଏକ ମଜାର କଥା ହେଉଛି ସେମାନେ ଆର୍ଥିକ ପ୍ରଶ୍ନ ଉପରେ ବେଶି ଜୋର ଦେଉଥିଲେ । ସର୍ବଦା ଏହି ପରିସ୍ଥିତି ବାସ୍ତବତା କମେ ଉପଲବ୍ଧି କରିପାରିବାର ସଙ୍କେତ ଅଟେ ।

୧୯୨୯ରେ ବଡ଼ ଆରବ-ଇହୁଦୀ ଦଙ୍ଗାମାନ ହେଲା । ଏହାର ପ୍ରକୃତ କାରଣ ହେଉଛି ଆରବ ଚକ୍ରତା ଏବଂ ଇହୁଦୀମାନଙ୍କ ଧନ ଓ ଲୋକସଂଖ୍ୟା ବୃଦ୍ଧି ଭୟ ଓ ଆରବଙ୍କର ସ୍ୱାଧୀନତା ଦାବୀ ପ୍ରତି ବିରୋଧଭାବ । ଯାହାହେଉ ଜରୁରୀ କାରଣ ହେଲା (Wailing wall) "କ୍ରନ୍ଦନ ପ୍ରାଚୀର" ପେନ ବିବାଦ ଯୋଗୁ । ପୂର୍ବକାଳରେ ହେରଡ଼ଙ୍କ ମନ୍ଦିର ଚତୁର୍ଦ୍ଦିଗରେ ବେଷ୍ଟିତ ପ୍ରାଚୀରର ଏହା ଏକ ଅଂଶ ଏବଂ ଏହିରୂପେ ଏହା ଇହୁଦୀଙ୍କ ପକ୍ଷରେ ପବିତ୍ର – ସେମାନଙ୍କର ପୂର୍ବ ମୁକ୍ତିକାଳର ଏହା ସ୍ମୃତିସ୍ତମ୍ଭ ବୋଲି ସେମାନେ ବିଶ୍ୱାସ କରନ୍ତି । ପରେ ସେଠାରେ ଏକ ମସଜିଦ ତିଆରି ହେଲା ଏବଂ ଏହି ପ୍ରାଚୀର ତାର ଏକ ଅଂଶ ହେଲା । ଇହୁଦୀ ତାଙ୍କର ପ୍ରାର୍ଥନା ଏହି ପ୍ରାଚୀର ନିକଟରେ କରନ୍ତି ଏବଂ ବିଶେଷ ଭାବରେ ଉଚ୍ଚ ସ୍ୱରରେ ସେମାନଙ୍କର କରୁଣ କ୍ରନ୍ଦନ କରନ୍ତି– ତେଣୁ ଏହାର ନାମ ହେଉଛି "କ୍ରନ୍ଦନ ପ୍ରାଚୀର" । ମୁସଲମାନମାନେ ତାଙ୍କର ଏକ ପ୍ରସିଦ୍ଧ ମସଜିଦ ନିକଟରେ ଏପରି କାର୍ଯ୍ୟକୁ ଆପତ୍ତି କରନ୍ତି ।

ଦଙ୍ଗା ଦମନ ହେଲା ପରେ ଅନ୍ୟ ଭାବରେ ସଂଗ୍ରାମ ଚାଲିଲା ଏବଂ ଏଥିରେ ବିଚିତ୍ର କଥା ହେଉଛି ପାଲେଷ୍ଟାଇନର ସବୁ ଖ୍ରୀଷ୍ଟିୟାନ ଗିର୍ଜାର ପୂର୍ଣ୍ଣ ସମର୍ଥନ ଆରବମାନେ ପାଉଥିଲେ । ମୁସଲମାନ ଓ ଖ୍ରୀଷ୍ଟିୟାନ ଏହିରୂପେ ବଡ଼ ବଡ଼ ଧର୍ମଘଟ ଓ ପ୍ରଦର୍ଶନରେ ଏକାଠି ମିଳିଗଲେ । ଏପରି କି ସ୍ତ୍ରୀଲୋକମାନେ ସୁଦ୍ଧା ମୁଖ୍ୟ ଭାଗ ନେଲେ । ଏଥିରୁ ଦେଖାଯାଏ ଯେ, ପ୍ରକୃତ ଗଣ୍ଡଗୋଳ ଧର୍ମଯୋଗୁଁ ନୁହେଁ, ନବାଗତ ଓ ପୁରାତନ ଅଧିବାସୀଙ୍କ ଭିତରେ ଆର୍ଥିକ ସଂଘର୍ଷ ଯୋଗୁ । ବ୍ରିଟିଶ ଶାସନ ତାର "ମାଣ୍ଡେଟ" ନିର୍ଦ୍ଧାରିତ କର୍ତ୍ତବ୍ୟସବୁ ପାଳନ କରିବାରେ ବିଫଳ ହେବାରୁ ଲିଗ ଅଫ୍ ନେସନସ ଏହାର କଡ଼ା ସମାଲୋଚନା କରିଥିଲା ଏବଂ ବିଶେଷତଃ ୧୯୨୮ ମସିହା ଦଙ୍ଗା ପ୍ରତିରୋଧ କରି-ପାରିଲା ନାହିଁ ବୋଲି ନିନ୍ଦା କଲା ।

ଏହିରୂପେ ପାଲେଷ୍ଟାଇନ ବ୍ୟାବହାରିକ ଦୃଷ୍ଟିରେ ବ୍ରିଟିଶ ଉପନିବେଶ ହୋଇ ରହିଛି ଏବଂ କେତେକ ଭାବରେ ପୂର୍ଣ୍ଣ ଉପନିବେଶ ଅପେକ୍ଷା ଆହୁରି ଖରାପ ଏବଂ ଇହୁଦୀଙ୍କ ବିରୁଦ୍ଧରେ ଲଗାଇ ବ୍ରିଟିଶ ଏହି ଖେଳ ଚଳାଇଛନ୍ତି । ଏଥିରେ ବ୍ରିଟିଶ କର୍ମଚାରୀ ଭର୍ତ୍ତି ହୋଇଛନ୍ତି ଏବଂ ସମସ୍ତ ଉଚ୍ଚ ଚାକିରୀ ସେମାନେ ଦଖଲ କରିଛନ୍ତି । ବ୍ରିଟିଶ ଅଧୀନସ୍ଥ ଦେଶମାନଙ୍କର ସାଧାରଣତଃ ଯାହା ହୁଏ, ଆରବମାନଙ୍କର ଶିକ୍ଷା ନିମନ୍ତେ ପ୍ରବଳ ଆକାଂକ୍ଷା ଥିଲେ ସୁଦ୍ଧା ଶିକ୍ଷା ଦିଗରେ ବିଶେଷ କିଛି କରାଯାଇ ନାହିଁ । ଇହୁଦୀମାନେ ପ୍ରଚୁର ଅର୍ଥ ବଳରେ ନିଜର ସ୍କୁଲ ଓ କଲେଜ ସବୁ ସ୍ଥାପନ କରିଛନ୍ତି । ଇହୁଦୀ ଲୋକ-

ସଂଖ୍ୟା ମୁସଲମାନ ଲୋକସଂଖ୍ୟାର ପ୍ରାୟ ଏକ-ଚତୁର୍ଥାଂଶ ହେବ ଏବଂ ସେମାନଙ୍କର ଆର୍ଥିକ କ୍ଷମତା ଆହୁରି ବଡ଼ । ସେମାନେ ପାଲେଷ୍ଟାଇନରେ ପ୍ରଧାନ ସଂପ୍ରଦାୟ ହେବାର ଦିନକୁ ଅନାଇ ରହିଛନ୍ତି । ଆରବମାନେ ତାଙ୍କର ଜାତୀୟ ସ୍ୱାଧୀନତା ଓ ଗଣତାନ୍ତ୍ରିକ ସରକାର ପାଇଁ ହେଉଥିବା ସଂଗ୍ରାମରେ ସେମାନଙ୍କର ସହଯୋଗ ପାଇବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ସେମାନେ ଏହା ଗ୍ରହଣ କରି ନାହାନ୍ତି । ସେମାନେ ବିଦେଶୀ ଶାସକ-ଶକ୍ତିର ପକ୍ଷ ଗ୍ରହଣ କରିବା ପସନ୍ଦ କରିଛନ୍ତି ଏବଂ ଏହିରୂପେ ଅଧିକ ସଂଖ୍ୟକ ଲୋକଙ୍କଠାରୁ ସ୍ୱାଧୀନତା ବଞ୍ଚିତ କରିବାରେ ତାକୁ ସାହାଯ୍ୟ କରିଛନ୍ତି । ତେଣୁ ଏହି ଅଧିକସଂଖ୍ୟକ ଲୋକ ମୁଖ୍ୟତଃ ଆରବ ଓ ଖ୍ରୀଷ୍ଟିୟାନ ଯେ ଇହୁଦୀଙ୍କର ଏପରି ମନୋଭାବ ପ୍ରତି ଅତ୍ୟନ୍ତ ଅସନ୍ତୋଷ ପ୍ରକାଶ କରୁଛନ୍ତି, ଏଥିରେ ବିସ୍ମୟ କିଛି ନାହିଁ ।

## ଟ୍ରାନସ ଜୋର୍ଡ଼ାନ

ପାଲେଷ୍ଟାଇନକୁ ଲାଗି ଜୋର୍ଡ଼ାନ ନଦୀ ସେପାରିରେ ଆଉ ଏକ ଛୋଟ ରାଜ୍ୟ ଅଛି —ଏହା ଯୁଦ୍ଧ ପରେ ବ୍ରିଟିଶ ସୃଷ୍ଟି କରିଛି । ଏହା ଏକ ଛୋଟ ଅଞ୍ଚଳ, ମରୁଭୂମି ସୀମାରେ ଏବଂ ସିରିଆ ଓ ଆରେବିଆ ମଧ୍ୟରେ ଅବସ୍ଥିତ । ଏହାର ମୋଟ ଲୋକସଂଖ୍ୟା ପ୍ରାୟ ୩,୦୦,୦୦୦—ଆଧୁନିକ ନଗର ସହିତ ବି ସମାନ ନୁହେଁ । ବ୍ରିଟିଶ ସରକାର ଏହାକୁ ଅକ୍ଳେଶରେ ପାଲେଷ୍ଟାଇନରେ ଯୋଗ କରିପାରିଥାନ୍ତା । କିନ୍ତୁ ସାମ୍ରାଜ୍ୟନୀତି ସର୍ବଦା ଏକତ୍ରୀକରଣ ଅପେକ୍ଷା ବିଭାଜନକୁ ପସନ୍ଦ କରେ । ଉକ୍ତ ଭୂମିକୁ ଏକ ପାହାଚରୂପେ ଓ ଭାରତକୁ ଆକାଶ ପଥରେ ଏହା ଏକ ପ୍ରଧାନ ସ୍ଥଳୀ । ମରୁଭୂମି ଓ ପଶ୍ଚିମରେ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଉର୍ବର ଭୂମି ଭିତରେ ଏହା ଏକ ଦରକାରୀ ସୀମାନ୍ତ ରାଜ୍ୟରୂପେ ରହିଛି ।

ଏହି ରାଜ୍ୟଟି ଛୋଟ ହୋଇଥିବାରୁ ଅନ୍ୟ ବଡ଼ ସଭ୍ୟ ଅଞ୍ଚଳ ପରି ଏଠି ଘଟଣା ପରେ ଘଟଣା ବି ଘଟିଯାଇଛି । ଏଠାରେ ମଧ୍ୟ ଗଣତାନ୍ତ୍ରିକ ପାର୍ଲିମେଣ୍ଟ ପାଇଁ ଲୋକେ ଦାବୀ କରୁଛନ୍ତି । ଏଥିରେ ସରକାର ସମ୍ମତ ହେଉ ନାହିଁ, ପ୍ରଦର୍ଶନ ସବୁ ଦବାଇ ଦିଆଯାଉଛି ଯାଞ୍ଚ ପ୍ରଥା ନେତାମାନଙ୍କୁ ଦେଶାନ୍ତର, ସରକାରୀ ଆଇନ ଅମାନ୍ୟ ଇତ୍ୟାଦି ଚାଲିଛି । ବ୍ରିଟିଶ ଚତୁରପଣିଆ କରି ଅମୀର ଅବଦୁଲ୍ଲା (ହେଜାଜର ରାଜା ହୋସେନଙ୍କ ଆଉ ଗୋଟିଏ ପୁତ୍ର ଓ ଫଇଜଲଙ୍କ ଭାଇ)ଙ୍କୁ ଟ୍ରାନସ ଜୋର୍ଡ଼ାନର ଶାସକରୂପେ ନିଯୁକ୍ତ କଲେ —ସେ ତାଙ୍କ ଅଧୀନରେ ଏକ କଣ୍ଢେଇ ସରକାର ହୋଇ ରହିଲା । ତାକୁ ଆଳ କରି ବ୍ରିଟିଶ ସବୁ ଦୋଷ ଘୋଡ଼ାଇ ପକାନ୍ତି । ଯାହା କିଛି ହୁଏ ତାକୁ ଦୋଷୀ କରାଯାଏ ଏବଂ ସେ ବଡ଼ ଅପ୍ରିୟ ହୋଇପଡ଼ନ୍ତି । ପ୍ରକୃତରେ ଅବଦୁଲ ଅଧୀନରେ ଟ୍ରାନସ ଜୋର୍ଡ଼ାନ ଭାରତର ଅନେକ ଛୋଟ ଦେଶୀୟ ରାଜ୍ୟ ପରି ହୋଇରହିଛି ।

କାଗଜରେ ସେ ରାଜ୍ୟ ସ୍ୱାଧୀନ; କିନ୍ତୁ ୧୯୨୮ରେ ବ୍ରିଟିଶ ସହ ଅବଦୁଲ୍ଲା ଯେଉଁ

ସନ୍ଧିପତ୍ର ସ୍ୱାକ୍ଷର କଲ, ତାହା ଅନୁସାରେ ସମସ୍ତ ପ୍ରକାର ସାମରିକ ଓ ଅନ୍ୟ ବିଶେଷ ଅଧିକାର ବ୍ରିଟେନକୁ ଦିଆଯାଇଛି । କାର୍ଯ୍ୟତଃ ଟ୍ରାନସ ଜୋର୍ଡାନ ବ୍ରିଟିଶ ସାମ୍ରାଜ୍ୟର ଅଙ୍ଗବିଶେଷ ହୋଇଛି । ଶ୍ରେଷ୍ଠ ଆକାରରେ ବ୍ରିଟିଶ ଅଧୀନରେ ନୂତନ ପ୍ରକାର ସ୍ୱାଧୀନତା କିପରି କାର୍ଯ୍ୟ କରେ ଏହା ତାର ଆଉ ଏକ ଦୃଷ୍ଟାନ୍ତ । ଉଭୟ ମୁସଲମାନ ଓ ଖ୍ରୀଷ୍ଟିୟାନ-ମାନେ ଏହି ସନ୍ଧି ଏବଂ ସାଧାରଣତଃ ପ୍ରଚଳିତ ବ୍ୟାପାରରେ ବଡ଼ ଅସନ୍ତୋଷ ପ୍ରକାଶ କରନ୍ତି । ସନ୍ଧି ବିରୁଦ୍ଧରେ ଆନ୍ଦୋଳନ ରୋଧି ଦିଆଯାଇଛି ଏବଂ ଏପରି କି ଏହାକୁ ସମର୍ଥନ କରିବା ସମ୍ବାଦପତ୍ର ସବୁକୁ ନିଷେଧ କରାଯାଇଛି ଏବଂ ମୁଁ ଶୁଣିଛି ନେତାମାନେ ଦେଶାନ୍ତର ହୋଇଛନ୍ତି । ତେଣୁ ବିରୋଧ ବଢ଼ିଲା; ଏକ ଜାତୀୟ କଂଗ୍ରେସ ବୈଠକ ହେଲା —ଏହା ଏକ ଜାତୀୟ ଚୁକ୍ତି ଗ୍ରହଣ କଲା ଏବଂ ସନ୍ଧିକୁ ନିନ୍ଦା କଲା । ଯେତେବେଳେ ନୂତନ ନିର୍ବାଚନ ପାଇଁ ଭୋଟର ତାଲିକା ପ୍ରସ୍ତୁତ ହେଉଥିଲା, ଲୋକଙ୍କ ଭିତରୁ ଅଧିକାଂଶ ଏହା ବର୍ଜନ କଲେ । ଯାହାହେଉ ଅବଦୁଲା ଓ ବ୍ରିଟିଶ ଏହି ସନ୍ଧିକୁ ମଞ୍ଜୁର କରାଯାଉଛି ବୋଲି ଦେଖାଇବା ନିମନ୍ତେ କେତେକ ସମର୍ଥକଙ୍କୁ ଠିକ କରିପାରିଲେ ।

୧୯୨୯ରେ ପାଲେଷ୍ଟାଇନରେ ଗୋଲମାଲବେଳେ ବ୍ରିଟିଶ ଓ ବେଲଫୋର ଘୋଷଣା ବିରୁଦ୍ଧରେ ଟ୍ରାନସ ଜୋର୍ଡାନରେ ବଡ଼ ବଡ଼ ପ୍ରଦର୍ଶନୀମାନ ହୋଇଥିଲା ।

ବିସ୍ତୃତ ଭାବରେ ମୁଁ ତତେ ବିଭିନ୍ନ ଦେଶର ଘଟଣା ସମ୍ବନ୍ଧରେ ଲେଖି ଗ୍ଲାନିଛି ଏବଂ ଏକା କାହାଣୀ ପୁନଃ ପୁନଃ କୁହାଯାଉଥିଲା ପରି ମନେହେଉଛି । ମୁଁ ଏହା କହିବାର କାରଣ ହେଉଛି ତୋତେ ବୁଝାଇଦେବ ଯେ ଆମକୁ କିଛି ଅମର ଜାତୀୟ ବିଶେଷତ୍ୱ ଯେନ କାର୍ଯ୍ୟ କରିବାକୁ ପଡ଼ିବ ନାହିଁ—ବିଭିନ୍ନ ଦେଶ ବିଷୟରେ ଆମେ ଏପରି ଭାବିବା ସ୍ୱାଭାବିକ- କିନ୍ତୁ ପୃଥିବୀ ଶକ୍ତି ସହ ଲଢ଼ିବାକୁ ପଡ଼ିବ—ସମଗ୍ର ପ୍ରାଚ୍ୟ ଦେଶରେ ଜାଗ୍ରତ ଜାତୀୟତା ପୃଥିବୀ ଶକ୍ତି ସହିତ ଲଢ଼ୁଛି ଏବଂ ସାମ୍ରାଜ୍ୟବାଦ ତାହା ସହିତ ଲଢ଼ିବା ପାଇଁ ଏକାପରି କୌଶଳ ପ୍ରୟୋଗ କରୁଛି । ଜାତୀୟତା ବୃଦ୍ଧି ପାଇ ଅଗ୍ରସର ହେବା ସଙ୍ଗେ ସଙ୍ଗେ, ସାମ୍ରାଜ୍ୟବାଦର କୌଶଳ ସାମାନ୍ୟ ପରିବର୍ତ୍ତିତ ହୁଏ; ଠିକଏ ସନ୍ତୁଷ୍ଟ କରିବାକୁ ଓ ସେହିପରି ଆଚରଣ ଦେଖାଇବାର ବାହ୍ୟ ପ୍ରଚେଷ୍ଟା ହୁଏ । ଇତ୍ୟବସରେ ବିଭିନ୍ନ ଦେଶରେ ଜାତୀୟ ସଂଗ୍ରାମ ଉନ୍ନତି ଲାଭ କଲାରୁ ସାମାଜିକ ସଂଗ୍ରାମ, ପ୍ରତ୍ୟେକ ଦେଶରେ ବିଭିନ୍ନ ଶ୍ରେଣୀ ଭିତରେ ଶ୍ରେଣୀସଂଘର୍ଷ ବୃଦ୍ଧି ପାଇ ଅତ୍ୟନ୍ତ ସ୍ପଷ୍ଟ ହୋଇପଡ଼େ ଏବଂ ସାମନ୍ତ-ବାଦୀ ଓ କେତେକ ପରିମାଣରେ ସମ୍ପତ୍ତିବାନ ଶ୍ରେଣୀ ଅଧିକରୁ ଅଧିକ ଭାବରେ ସାମ୍ରାଜ୍ୟ-ବାଦୀ ଶକ୍ତିର ପକ୍ଷ ଗ୍ରହଣ କରନ୍ତି ।

ନୋଟ (ଅକ୍ଟୋବର) ୧୯୩୮—

ପାଲେଷ୍ଟାଇନରେ ଆରବ ଜାତୀୟବାଦ, ଇହୁଦୀ ଜିଓନିଜିମ ଓ ବ୍ରିଟିଶ ସାମ୍ରାଜ୍ୟ-ବାଦ ଏହି ତିନିଙ୍କ ଭିତରେ ସଂଗ୍ରାମ ଅଧିକରୁ ଅଧିକ ଗୁରୁତର ହୋଇପଡ଼ୁଛି । ଜର୍ମାନୀରେ

ନାଜୀ ବିଜୟ ଫଳରେ ବହୁସଂଖ୍ୟକ ଇହୁଦୀ ମଧ୍ୟ ଇଉରୋପରୁ ତଡ଼ା ଖାଇଲେ ଏବଂ ପାଲେଷ୍ଟାଇନରେ ଇହୁଦୀ ସ୍ରୋତ ବଢ଼ିଲା । ଏଥିରେ ପାଲେଷ୍ଟାଇନର ଆଶଙ୍କା ବୃଦ୍ଧି ପାଇଲା ଯେ; ଇହୁଦୀଙ୍କ ବନ୍ୟାରେ ତାହା ବୁଡ଼ିଯିବ ଏବଂ ପାଲେଷ୍ଟାଇନରେ ଇହୁଦୀମାନଙ୍କର ପ୍ରାଧାନ୍ୟ ବିସ୍ତାର ବଢ଼ିବ । ଆରବମାନେ ଏହା ବିରୁଦ୍ଧରେ ଲଢ଼ାଇ କଲେ ଏବଂ କେତେକ ଆତଙ୍କବାଦ କାର୍ଯ୍ୟରେ ଲାଗିଲେ । ପରେ କେତେକ ଉକ୍ତ ଜିଓନିଷ୍ଟ ବି ସେହିପରି ତାର ପ୍ରତିଶୋଧ ନେଲେ ।

୧୯୩୬ରେ ପାଲେଷ୍ଟାଇନର ଆରବମାନେ ଏକ ସାଧାରଣ ଧର୍ମଘଟ ଘୋଷଣା କଲେ । ବ୍ରିଟିଶ କର୍ତ୍ତୃପକ୍ଷ ସାମରିକ ଶକ୍ତି ଓ ଅତ୍ୟାଚାରଦ୍ୱାରା ଏହା ଦମନ କରିବା ନିମନ୍ତେ ଅନେକ ଉଦ୍ୟମ କରିବା ସତ୍ତ୍ୱେ ଏହା ପ୍ରାୟ ଛ'ମାସ ପର୍ଯ୍ୟନ୍ତ ଚାଲିଲା । ଜଣାଶୁଣା ନାଜି ଢଙ୍ଗରେ ପ୍ରକାଣ୍ଡ ବନ୍ଦୀ ଶିବିର ସବୁ ହେଲା । ଏହି ପ୍ରଚେଷ୍ଟାରେ ଅକୃତକାର୍ଯ୍ୟ ହୋଇ ପାଲେଷ୍ଟାଇନ ବ୍ୟାପାର ତଦନ୍ତ କରିବା ନିମନ୍ତେ ସରକାର ଏକ ରୟଲ କମିଶନ ନିଯୁକ୍ତ କଲା । ଏହି କମିସନ ସୁପାରିଶ କଲା ଯେ "ମାଣ୍ଡେଟ" ନିଷ୍ଫଳ ହୋଇଛି ଏବଂ ଏହା ଉଠିଯିବା ଉଚିତ । ସେମାନେ ଦେଶକୁ ତିନୋଟି ଅଞ୍ଚଳ—ଆରବ ଅଧୀନରେ ବଡ଼ ଭାଗ, ଇହୁଦୀଙ୍କ ଅଧୀନରେ ସମୁଦ୍ର ନିକଟସ୍ଥ ଶ୍ରେଷ୍ଠ ଭାଗ ଏବଂ ଜେରୁଜେଲମ ସମେତ ବ୍ରିଟିଶର ପ୍ରତ୍ୟକ୍ଷ ପରିଚାଳନାରେ ତୃତୀୟ ଭାଗ ଏହିରୂପେ ବିଭକ୍ତ କରିବା ନିମନ୍ତେ ସୁପାରିଶ କଲେ । ଆରବ, ଇହୁଦୀ ଏବଂ ପ୍ରାୟ ପ୍ରତ୍ୟେକ ଲୋକ ଏହି ବିଭାଗ କରିବା ଯୋଜନାରେ ଆପତ୍ତି ଦର୍ଶାଇଲେ; କିନ୍ତୁ ଅନେକ ଇହୁଦୀ ଏହାକୁ ଚଳାଇବା ପାଇଁ ପ୍ରସ୍ତୁତ ଥିଲେ । ଆରବ-ମାନେ ଯାହାହେଉ ଏଥି ସହିତ କିଛି ସମ୍ପର୍କ ରଖିଲେ ନାହିଁ ଏବଂ ସେମାନଙ୍କର ଜାତୀୟ ପ୍ରତିରୋଧ ବଢ଼ିଲା । ଗତ କେତେମାସ ହେଲା ଏହା ଏକ ବିରାଟ ଜାତୀୟ ଆନ୍ଦୋଳନ ରୂପ ଧାରଣ କରିଛି—ବ୍ରିଟିଶ ଶାସନର ତୀବ୍ର ବିରୋଧ କରୁଛି ଏବଂ କ୍ରମେ ପାଲେଷ୍ଟାଇନର ଅନେକ ଅଞ୍ଚଳରୁ ଏହାକୁ ତଡ଼ି ଦେଉଛି—ଏହିସବୁ ଅଞ୍ଚଳ ଆରବ ଜାତୀୟବାଦୀଙ୍କ ଅଧୀନକୁ ଚାଲିଯାଉଛି । ଦେଶ ପୁନର୍ଦଖଲ କରିବା ପାଇଁ ବ୍ରିଟିଶ ସରକାର ନୂତନ ସେନାବାହିନୀ ପଠାଇଛି ଏବଂ ଏକ ଆତଙ୍କ ଓ ଭୀତି ସଞ୍ଚାର ସେଠି ହୋଇଛି ।

ଦୁର୍ଭାଗ୍ୟବଶତଃ ଆରବମାନେ ବହୁ ପରିମାଣରେ ଆତଙ୍କବାଦରେ ସଂଶ୍ଳିଷ୍ଟ ଥିଲେ । କେତେକ ପରିମାଣରେ ଆରବଙ୍କ ବିରୁଦ୍ଧରେ ଇହୁଦୀମାନେ ବି ସେଇପରି କଲେ । ବ୍ରିଟିଶ ସରକାର ନିର୍ମମ ଧ୍ୱଂସ ଓ ହତ୍ୟା ନୀତି ଅନୁସରଣ କରିଥିଲେ ଓ କରିଛନ୍ତି । ଏହିଭାବରେ ସ୍ୱାଧୀନତା ପାଇଁ ହେଉଥିବା ଜାତୀୟ ସଂଗ୍ରାମ ଦମନ କରିବାର ଚେଷ୍ଟା କରିଛନ୍ତି । ଆୟାର୍ଲାଣ୍ଡରେ "ବାକ ଓ ଟାନ" ଯୁଗରେ ଯେପରି ପ୍ରଣାଳୀସବୁ ପ୍ରୟୋଗ କରାଯାଇଥିଲା । ପାଲେଷ୍ଟାଇନରେ ତାହା କରାଗଲା, କିନ୍ତୁ ଗୁରୁତର ଯାଞ୍ଚ ପ୍ରଥା ଯୋଗୁଁ ଏହା ବାହାର ଦୁନିଆଁ ଜାଣିପାରିଲା ନାହିଁ; ତଥାପି ଯାହା ଟିକିଏ ଆସେ ତାହା ଅତ୍ୟନ୍ତ ଖରାପ । ମୁଁ ଏବେ ପଢ଼ୁଛି "ସନ୍ଦେହ କରାଯାଉଥିବା ଆରବମାନଙ୍କୁ" ବ୍ରିଟିଶ ସାମରିକ ବାହିନୀ ଏକାଠି

କରି ତାର ଯେଉଁ ପ୍ରକାଣ୍ଡ ଲୁହା ପିଞ୍ଜରାରେ ପୂରାଉଛନ୍ତି—ପ୍ରତ୍ୟେକ 'ପିଞ୍ଜରାରେ' ୫୦ରୁ ୪୦୦ ପର୍ଯ୍ୟନ୍ତ ବନ୍ଦୀ ରହନ୍ତି । ସେମାନଙ୍କ ନିକଟର ଆତ୍ମୀୟ ଲୋକ ଖାଇବାକୁ ଦିଅନ୍ତି । ଠିକ୍ ପିଞ୍ଜରାରେ ଥିବା ପଶୁପରି ଏହା କରାଯାଏ ।

ଇତ୍ୟବସରରେ ସମଗ୍ର ଆରବ ଦୁନିଆଁ କ୍ରୋଧାନଳ ହୋଇ ଉଠିଛି ଏବଂ ସ୍ୱାଧୀନତା ଲାଗି ସଂଗ୍ରାମ କରୁଥିବା ଲୋକଙ୍କୁ ଦମନ କରିବାର ଏହି ପାଶବିକ ଉଦ୍ୟମଦ୍ୱାରା ପ୍ରାଚ୍ୟ ଦେଶରେ ମୁସଲମାନ ଓ ଅଣ-ମୁସଲମାନ ସମସ୍ତଙ୍କ ହୃଦୟକୁ ଏହା ଗଭୀର ଭାବରେ ସ୍ପର୍ଶ କରିଛି । ଏହି ଲୋକେ ଅନେକ ଅନ୍ୟାୟ ଓ ଆତଙ୍କଯୁକ୍ତ କାର୍ଯ୍ୟ କରିଛନ୍ତି, କିନ୍ତୁ ଏହା ମନେ ରଖିବା ଦରକାର ଯେ, ଏମାନେ ଜାତୀୟ ସ୍ୱାଧୀନତା ଲାଗି ଲଢ଼ାଇ କରୁଛନ୍ତି ଏବଂ ବ୍ରିଟିଶ ସାମ୍ରାଜ୍ୟବାଦ ଶକ୍ତି ନିଷ୍ଠୁର ଭାବରେ ଏହାକୁ ଦମନ କରିଛି ।

ଆରବ ଓ ଇହୁଦୀ—ଏହି ଦୁଇ ଅତ୍ୟାଚରିତ ଜାତି ପରସ୍ପର ସହିତ ସଂଘର୍ଷ କରିବା ଏକ ଶୋଚନୀୟ ବ୍ୟାପାର । ଇଉରୋପରେ ଇହୁଦୀମାନେ ଯେପରି ଭୟାନକ ଦୁର୍ଦ୍ଦଶା ଭିତର ଦେଇ ଯାଉଛନ୍ତି, ସେଥିରେ ପ୍ରତ୍ୟେକ ଲୋକର ସହାନୁଭୂତି ହେବ—ଏଠାରେ ବହୁ ସଂଖ୍ୟକ ଗୃହହୀନ ଫକୀର ହୋଇଛନ୍ତି, କୌଣସି ଦେଶ ତାଙ୍କୁ ଗ୍ରହଣ କରୁନାହିଁ । ସେମାନେ ପାଲେଷ୍ଟାଇନ ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ଏହା ମଧ୍ୟ ସତ୍ୟ ଯେ, ସେଠାରେ ଇହୁଦୀମାନେ ଦେଶକୁ ଉନ୍ନତ କରିଛନ୍ତି, ଶିଳ୍ପ ପ୍ରଚଳନ କରିଛନ୍ତି ଏବଂ ଜୀବନ ନିର୍ବାହ ଷ୍ଟାଣ୍ଡାର୍ଡ଼ ବଢ଼ାଇଛନ୍ତି । କିନ୍ତୁ ଆମର ମନେ ରଖିବା ଦରକାର ପାଲେଷ୍ଟାଇନ ପ୍ରକୃତରେ ଏକ ଆରବ ଦେଶ ଏବଂ ତାହା ହିଁ ରହିବ ଏବଂ ଆରବମାନଙ୍କୁ ନିଜର ମାତୃଭୂମିରେ ଦବାଇଦେବା ବା ଦମନ କରିବା ଉଚିତ୍ ନୁହେଁ । ସ୍ୱାଧୀନ ପାଲେଷ୍ଟାଇନରେ ଦୁଇ ଜାତି ପରସ୍ପରର ନ୍ୟାୟସଙ୍ଗତ ସ୍ୱାର୍ଥରେ ଆଘାତ ନ ପହଞ୍ଚାଇ ଭଲ ଭାବରେ ସହଯୋଗ କରି-ପାରନ୍ତି ଏବଂ ଏକ ପ୍ରଗତିଶୀଳ ଦେଶ ତିଆରି କରିବାରେ ସାହାଯ୍ୟ କରିପାରନ୍ତି ।

ଦୁର୍ଭାଗ୍ୟବଶତଃ ଭାରତ ଓ ପୂର୍ବ ଖଣ୍ଡର ସମୁଦ୍ର ଓ ଆକାଶ ପଥରେ ପାଲେଷ୍ଟାଇନ ଥିବାରୁ ବ୍ରିଟିଶ ସାମ୍ରାଜ୍ୟ ଯୋଜନାରେ ଏହା ଏକ ମର୍ମସ୍ଥଳୀ ହୋଇ ରହିଛି ଓ ଏହି ଯୋଜନାକୁ ଆଗେଇବା ନିମନ୍ତେ ଇହୁଦୀ ଓ ଆରବ ଉଭୟଙ୍କୁ ଶୋଷଣ କରାଯାଉଛି । ଭବିଷ୍ୟତ ଅନିଶ୍ଚିତ । ପୁରୁଣା ବିଭାଗ ଭାଙ୍ଗି ପଡ଼ିବାର ସମ୍ଭାବନା ଅଛି ଏବଂ ଇହୁଦୀମାନଙ୍କ ସ୍ୱତନ୍ତ୍ର ତନ୍ତ୍ର ସହ ଏକ ବ୍ୟାପକ ଆରବ ରାଷ୍ଟ୍ରସଂଘ କଥା ଉଠିଛି । ଯାହାହେଉ ଏହା ନିଶ୍ଚିତ ଯେ, ପାଲେଷ୍ଟାଇନରେ ଆରବ ଜାତୀୟତାବାଦ ଧ୍ୱଂସ ହେବ ନାହିଁ ଏବଂ କେବଳ ଆରବ-ଇହୁଦୀ ସହଯୋଗର ଦୃଢ଼ ଭିତ୍ତି ଓ ସାମ୍ରାଜ୍ୟବାଦର ଲୋପ ସାଧନରେ ହିଁ ଦେଶର ଭବିଷ୍ୟତ ନିର୍ମାଣ କରାଯାଇପାରେ ।

# ୧୬୮ . ମଧ୍ୟଯୁଗରୁ ଆରବର ଲମ୍ଫପ୍ରଦାନ

ଜୁନ ୩, ୧୯୩୩

ମୁଁ ତୋ ପାଖକୁ ଆରବ ଦେଶ ସମ୍ବନ୍ଧରେ ଲେଖିଛୁ, କିନ୍ତୁ ଏ ପର୍ଯ୍ୟନ୍ତ ଆରବ ଭାଷା ଓ ସଂସ୍କୃତିର ଉତ୍ପତ୍ତି ସ୍ଥଳ ଓ ଇସଲାମର ଜନ୍ମସ୍ଥାନ ଆରବ ସମ୍ବନ୍ଧରେ ଲେଖି ନାହିଁ । ଏହିଠାରୁ ଆରବ ସଭ୍ୟତା ଆସିଥିଲେ ସୁଦ୍ଧା ଏହା ଅନୁନ୍ନତ ଓ ମଧ୍ୟକାଳୀନ ଅବସ୍ଥାରେ ରହିଛି ଏବଂ ଆଧୁନିକ ସଭ୍ୟତା ମାପ ଅନୁସାରେ ଇଜିପ୍ଟ, ସିରିଆ, ପାଲେଷ୍ଟାଇନ୍ ଓ ଇରାକ୍ ପ୍ରଭୃତି ପଡ଼ୋଶୀ ଆରବ ଦେଶମାନ ବହୁଦୂର ଆଗେଇ ଯାଇଛନ୍ତି । ଆରବୀସ୍ଥା ଏକ ପ୍ରକାଣ୍ଡ ଦେଶ, ଆକାର ଓ ପରିମାଣରେ ଏହା ଭାରତର ଦୁଇ-ତୃତୀୟାଂଶ ହେବ । ଅଥଚ ସମଗ୍ର ଦେଶର ଲୋକ ସଂଖ୍ୟା ୪,୦୦୦,୦୦୦ କିମ୍ବା ୫,୦୦୦,୦୦୦ ହେବ ବୋଲି ହିସାବ କରାଯାଇଛି—ଏହାର ଅର୍ଥ ଭାରତ ଲୋକସଂଖ୍ୟାର ଶତକଡ଼ା ୭୦ ବା ୮୦ ଭାଗ । ଏଥିରୁ ବେଶ୍ ଜଣାପଡ଼ୁଛି ଯେ, ଏହାର ଲୋକସଂଖ୍ୟା ବଡ଼ କମ୍; ପ୍ରକୃତରେ ଏହାର ଅଧିକ ଅଞ୍ଚଳ ମରୁଭୂମି ଏବଂ ଏହି କାରଣରୁ ଅତୀତରେ ଲୋଭୀ ଦୁଃସାହସିକ ଲୋକଙ୍କ ଦୃଷ୍ଟିରେ ଏହା ପଡ଼ି ନ ଥିଲା ଏବଂ ପରିବର୍ତ୍ତିତ ଦୁନିଆଁ ମଧ୍ୟରେ ମଧ୍ୟକାଳୀନ ଯୁଗର ସ୍ମୃତିଚିହ୍ନ ରୂପେ ରହିଛି । ଏଠାରେ ରେଳପଥ, ଟେଲିଗ୍ରାମ ଓ ଟେଲିଫୋନ ଆଦି ନାହିଁ । ଭ୍ରମି ଯାଯାବର ପାହାଡ଼ିଆ ଜାତି ଏଠି ଅଧିକ ପରିମାଣରେ ବାସ କରନ୍ତି—ଏମାନଙ୍କୁ ବେଡୋଇନ କହନ୍ତି ଏବଂ ସେମାନେ ନିଜର ଦ୍ରୁତଗାମୀ ଓଟମାନଙ୍କଦ୍ୱାରା ମରୁଭୂମିର ବାଲୁକା ଅତିକ୍ରମ କରି ଯାତ୍ରା କରନ୍ତି । ଏହି ଓଟକୁ "ମରୁଭୂମିର ଜାହାଜ" ବୋଲି କୁହାଯାଏ । ସୁନ୍ଦର ଆରବ ଘୋଡ଼ାରେ ମଧ୍ୟ ଚଢ଼ିଯାଆନ୍ତି । ଏହି ଘୋଡ଼ା ପୃଥିବୀପ୍ରସିଦ୍ଧ । ପରିବାର କୁଳବୃଦ୍ଧ କଥା ମାନି ଚଳିବା ପରି ସମାଜ ଏଠାରେ ଥିଲା । ଏହା ଏକ ହଜାର ବର୍ଷ ଭିତରେ କିଛି ବଦଳି ନାହିଁ । ପୃଥିବୀ ଯୁଦ୍ଧ ଅନେକ ଜିନିଷ ବଦଳାଇଲା ପରି ଏ ସବୁକୁ ମଧ୍ୟ ପରିବର୍ତ୍ତନ କରିଦେଲା ।

ମାନଚିତ୍ରକୁ ଚାହିଁଲେ ଦେଖିପାରିବ ଆରବୀସ୍ଥା ରାଜ୍ୟ ଲୋହିତ ସାଗର ଓ ପର୍ସିଆନ୍ ହ୍ରଦ ମଝିରେ ଅବସ୍ଥିତ । ଏହାର ଦକ୍ଷିଣରେ ଆରବ ସାଗର, ଉତ୍ତରରେ ପାଲେଷ୍ଟାଇନ୍, ଟ୍ରାନ୍ସ-ଜୋର୍ଡ଼ାନ ଓ ସିରିଆନ ମରୁଭୂମି ଏବଂ ଉତ୍ତର ପୂର୍ବରେ ସବୁଜ ଓ ଉର୍ବର ଇରାକ୍ ଉପତ୍ୟକା । ପଶ୍ଚିମ ଉପକୂଳରେ ଲୋହିତ ସାଗର ସୀମାନ୍ତରେ ହେଜାଜ୍ ଦେଶ ରହିଛି । ଏହା ଇସଲାମ ପୀଠସ୍ଥଳ—ପୁଣ୍ୟ ସହର ମକ୍କା, ମଦିନା ଓ ଜେଡ଼ା ବନ୍ଦର ଏଥିରେ ଅଛି । ମକ୍କା ପଥରେ ଯାଉଥିବା ହଜାର ହଜାର ଯାତ୍ରୀ ପ୍ରତିବର୍ଷ ଏହି ବନ୍ଦରରେ ଓହ୍ଲାନ୍ତି ।

ଆରବୀୟାର ମଧ୍ୟସ୍ଥଳୀରେ ଏବଂ ପୂର୍ବକୁ ପର୍ସିଆନ ହ୍ରଦ ଅଞ୍ଚଳକୁ ନେଜଦ ରହିଛି । ହେଜାଜ ଓ ନେଜଦ ହେଉଛି ଆରବୀୟାର ଦୁଇଟି ପ୍ରଧାନ ଉପଜନ । ଦକ୍ଷିଣ-ପଶ୍ଚିମରେ ଅଛି ୟେମେନ—ପୁରାତନ ରୋମାନ ଅମଳରୁ ଆରବୀୟା ଫେଲିକସ ନାମରେ ଜଣା—ଏହାର ଅର୍ଥ ଭାଗ୍ୟବାନ ଓ ସୁଖୀ ଆରବୀୟା । କାରଣ ଅନ୍ୟ ସବୁ ଅଞ୍ଚଳ ଅପେକ୍ଷା ଏହା ଉର୍ବର ଓ ଫଳଦାୟକ ଥିଲା । ଅନ୍ୟ ଅଂଶସବୁ ଅଧିକ ଭାବରେ ଅନୁର୍ବର ଓ ମରୁଭୂମି ଥିଲା । ଏହି ଅଂଶଟିରେ ଲୋକ ଗହଳି । ଆରବୀୟାର ପ୍ରାନ୍ତ ଦକ୍ଷିଣ-ପଶ୍ଚିମ ଅଗ୍ରଭାଗକୁ ଅଛି ଏଡ଼େନ । ଏହା ବ୍ରିଟିଶ ଦଖଲରେ ଏବଂ ପ୍ରାଚ୍ୟ ପାଶ୍ଚାତ୍ୟ ଭିତରେ ଗମନାଗମନ କରୁଥିବା ଜାହାଜ ଏଇଠାରେ ଫୁରୁସତ ନିଅନ୍ତି ।

ପୃଥିବୀ ଯୁଦ୍ଧ ପୂର୍ବରୁ ପ୍ରାୟ ସମଗ୍ର ଦେଶ ତୁର୍କି କର୍ତ୍ତୃତ୍ୱାଧୀନରେ ଥିଲା ଅଥବା ତୁର୍କିର ପ୍ରଭୁତ୍ୱ ସ୍ୱୀକାର କରୁଥିଲା । କିନ୍ତୁ ନେଜଦରେ ଅମୀର ଇବନ ସାଉଦ କ୍ରମେ ଜଣେ ସ୍ୱାଧୀନ ଶାସକ ହେଉଛନ୍ତି ଏବଂ ଜୟଲାଭ କରି କ୍ରମେ ପର୍ସିଆନ ହ୍ରଦ ଆଡ଼କୁ ରାଜ୍ୟ ବିସ୍ତାର କରୁଛନ୍ତି । ଏହା ଯୁଦ୍ଧ ପୂର୍ବ ବର୍ତ୍ତମାନଙ୍କ କଥା । ଇବନ ସାଉଦ ଓ୍ୟାହାବୀ ନାମକ ଏକ ବିଶେଷ ମୁସଲମାନମାନେ ସଂପ୍ରଦାୟ ବା ଗୋଷ୍ଠୀର ମୁଖିଆ—ଏହି ସଂପ୍ରଦାୟକୁ ୧୮ଶ ଶତାବ୍ଦୀରେ ଅବଦୁଲ ଓ୍ୟାହାବ ସ୍ଥାପନା କରିଥିଲେ । ଏହା ପ୍ରକୃତରେ ଇସଲାମରେ ସଂସ୍କାର ଆନ୍ଦୋଳନ ଥିଲା— ଖ୍ରୀଷ୍ଟଧର୍ମରେ ପିଉରିଟାନ (Puritan) ପରି । ଓ୍ୟାହାବୀମାନେ ଅନେକ ଉତ୍ସବ ଏବଂ ମହାପୁରୁଷ ପୂଜା ବିରୁଦ୍ଧରେ—ପୁଣ୍ୟାତ୍ମାଙ୍କର ସ୍ମୃତି ବୋଲି ଧରି ଯାଉଥିବା କବର ପୂଜା ମୁସଲମାନ ଜନତା ଭିତରେ ଅତ୍ୟନ୍ତ ଆଦର ପାଇ ପ୍ରଚଳିତ ହୋଇଥିଲା । ମହାପୁରୁଷଙ୍କର ମୃତାବଶେଷ ଓ ମୂର୍ତ୍ତିକୁ ପୂଜା କରୁଥିବାରୁ ରୋମାନ୍ କାଥଲିକମାନଙ୍କୁ ଇଉରୋପରେ ପିଉରିଟାନମାନେ ଯେପରି ପୌତ୍ତଳିକ ବୋଲି କହୁଥିଲେ, ସେମିତି ଓ୍ୟାହାବୀମାନେ ଏହାକୁ ପିତୃଳାପୂଜା ବୋଲି କହିଲେ । ସୁତରାଂ ରାଜନୀତିକ ପ୍ରତିଯୋଗିତା ଛଡ଼ା ଓ୍ୟାହାବୀ ଓ ଆରବୀୟାର ଅନ୍ୟ ମୁସଲମାନ ଗୋଷ୍ଠୀଙ୍କ ଭିତରେ ଧାର୍ମିକ କଳହ ବି ଲାଗିଗଲା ।

ପୃଥିବୀ ଯୁଦ୍ଧ କାଳରେ ଆରବୀୟା ବ୍ରିଟିଶ ଚକ୍ରାନ୍ତର କ୍ରୀଡ଼ାଭୂମି ହେଲା ଏବଂ ବିଭିନ୍ନ ଆରବ ଶାସକମାନଙ୍କୁ ଲାଞ୍ଚ ଓ ଅର୍ଥ ସାହାଯ୍ୟ ଦେବା ନିମନ୍ତେ ବ୍ରିଟିଶ ଓ ଭାରତୀୟ ଅର୍ଥ ପ୍ରଚୁର ପରିମାଣରେ ବ୍ୟୟ କରାଗଲା । ସେମାନଙ୍କୁ ସକଳ ପ୍ରକାର ପ୍ରତିଶ୍ରୁତି ଦିଆଗଲା ଏବଂ ତୁର୍କି ବିରୁଦ୍ଧରେ ବିଦ୍ରୋହ କରିବା ନିମନ୍ତେ ଉତ୍ସାହିତ କରାଗଲା । ବେଳେବେଳେ ପରସ୍ପର ସହିତ ଲଢ଼ାଇ କରୁଥିବା ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ଶାସକ ବି ବ୍ରିଟିଶ ଅର୍ଥ ସାହାଯ୍ୟ ପାଇ ଯାଉଥିଲେ । ଆରବ ବିଦ୍ରୋହ ଉଠାଇବା ନିମନ୍ତେ ବ୍ରିଟିଶ ମକକାର ଶେରିଫ ହୋସେନଙ୍କୁ ପାଇଗଲେ । ହୋସେନ ମହମ୍ମଦଙ୍କର ବଂଶଧର ବୋଲି ତାଙ୍କର ଗୁରୁତ୍ୱ ଥିଲା ଏବଂ ସେଥିଲାଗି ବଡ଼ ସମ୍ମାନିତ ହେଉଥିଲେ । ମିଳିତ ଆରବୀୟା ରାଜ୍ୟର ପ୍ରତିଶ୍ରୁତି ହୋସେନ୍ ବ୍ରିଟିଶଙ୍କଠାରୁ ପାଇଲେ ।

ଇବନ ସାଉଦ ଚତୁର ଲୋକ । ସେ ବ୍ରିଟିଶଙ୍କଦ୍ୱାରା ନିଜକୁ ଜଣେ ସ୍ୱାଧୀନ ଶାସକ ରୂପେ ସ୍ୱୀକୃତ କରାଇନେଲେ ଏବଂ ସେମାନଙ୍କ ଠାରୁ ମାସକୁ ୫୦୦୦ ପାଉଣ୍ଡ ବା ଟ ୭୦୦୦୦ ଙ୍କା ନେବାରେ ସନ୍ତୁଷ୍ଟ ହୋଇଗଲେ ଏବଂ ନିରପେକ୍ଷ ରହିବେ ବୋଲି ପ୍ରତିଶ୍ରୁତି ଦେଲେ । ତେଣୁ ଅନ୍ୟମାନେ ଯୁଦ୍ଧ କରୁଥିବାବେଳେ ସେ ନିଜର ସ୍ଥିତି ଦୃଢ଼ କଲେ ଏବଂ ବଳବତ୍ତର ହେଲେ । କେତେକ ପରିମାଣରେ ଏହା ବ୍ରିଟିଶ ଧନ ସାହାଯ୍ୟରେ କଲେ । ଭାରତ ସମେତ ସବୁ ଇସଲାମିୟ ଦେଶମାନଙ୍କରେ ଶେରିଫ ହୋସେନ ଅପ୍ରିୟ ହୋଇଉଠିଲେ—ସେତେବେଳେ ଖଲିଫା ଥିବା ତୁର୍କି ସୁଲତାନ ବିରୁଦ୍ଧରେ ବିଦ୍ରୋହ କରିବାରୁ ସେ ଏପରି ହେଲେ । ନୀରବରେ ନିରପେକ୍ଷ ରହି ଇବନ ସାଉଦ ପରିବର୍ତ୍ତିତ ଅବସ୍ଥାର ପୂର୍ଣ୍ଣ ସୁବିଧା ଉଠାଇଲେ ଏବଂ ଇସଲାମ ଭିତରେ ଜଣେ ବଳିଷ୍ଠ ଲୋକ ହିସାବରେ ନିଜର ଖ୍ୟାତି ଧୀରେ ଧୀରେ ଅର୍ଜନ କଲେ ।

ଦକ୍ଷିଣରେ ଥିଲି ୟେମେନ । ୟେମେନର ଇମାମ ବା ଶାସକ ଯୁଦ୍ଧକାଳ ସାରା ତୁର୍କି ପକ୍ଷରେ ଥିଲି । କିନ୍ତୁ ଏହା କାର୍ଯ୍ୟକ୍ଷେତ୍ରରୁ ବିଚ୍ଛିନ୍ନ ହୋଇଗଲା ଏବଂ ବିଶେଷ କିଛି କରିପାରିଲା ନାହିଁ । ତୁର୍କିର ପରାଜୟ ପରେ ଏହା ସ୍ୱାଧୀନ ଦେଶ ହୋଇ ରହିଛି ।

ଯୁଦ୍ଧ ଶେଷରେ ଦେଖାଗଲା ଇଂଲଣ୍ଡ ଆରବୀୟା ଉପରେ ପ୍ରାଧାନ୍ୟ କରୁଛି ଏବଂ ଉଭୟେ ହୋସେନ ଓ ଇବନ ସାଉଦଙ୍କୁ ଖେଳନାରୂପେ ବ୍ୟବହାର କରିବା ନିମନ୍ତେ ଚେଷ୍ଟା କରୁଛନ୍ତି । ଇବନ ସାଉଦ ବଡ଼ ଚତୁର—ସେ ନିଜକୁ ଶୋଷିତ ହେବାକୁ ଦେଲେ ନାହିଁ; ଯାହାହେଉ ବ୍ରିଟିଶ ସେନାର ସମର୍ଥନ ହେତୁ ଶେରିଫ ହୋସେନଙ୍କ ପରିବାର ହଠାତ୍ ପୂର୍ଣ୍ଣ ଗୌରବ ଅର୍ଜନ କଲେ । ହୋସେନ ନିଜେ ହେଜାଜର ରାଜା ହେଲେ । ତାଙ୍କର ଏକ ପୁଅ ଫୟୁଜଲ ସିରିଆର ଶାସକ ହେଲା, ଆଉ ଏକ ପୁଅ ଅବଦୁଲ୍ଲାକୁ ବ୍ରିଟିଶ ନୂତନ ଗ୍ରେଟ ରାଜ୍ୟ ଟ୍ରାନ୍ସ ଜୋର୍ଡାନର ଶାସକ କଲେ । ଏ ଗୌରବ ଅଳ୍ପକ୍ଷଣ ସ୍ଥାୟୀ ହେଲା, କାରଣ ଆମେ ଦେଖିଛେ ଫରାସୀମାନେ ଫୟୁଜଲଙ୍କୁ ସିରିଆରୁ ତଡ଼ିଦେଲେ ଏବଂ ଇବନ ସାଉଦଙ୍କ ଅଗ୍ରଗାମୀ ଓ୍ୟାହାବୀଙ୍କ ଆଗରେ ହୋସେନଙ୍କର ରାଜତ୍ୱ ଲୋପ ହୋଇଗଲା । ଫୟୁଜଲ ପୁଣି ଅକର୍ମା ହୋଇଯିବାରୁ ବ୍ରିଟିଶ ତାକୁ ଇରାକର ଶାସକ ରୂପେ ନିଯୁକ୍ତ କଲେ । ସେଠି ସେ ନିଜର ପୃଷ୍ଠ-ପୋଷକଙ୍କ ଅନୁଗ୍ରହରେ ରାଜତ୍ୱ କଲା ।

ହେଜାଜରେ ହୋସେନ୍‌ଙ୍କ ସଂକ୍ଷିପ୍ତ ରାଜତ୍ୱ ବେଳେ ୧୯୨୪ରେ ଆଙ୍ଗୋରାଠାରେ ତୁର୍କି ପାର୍ଲିମେଣ୍ଟ ଖଲିଫାକୁ ଉଠାଇ ଦେଲା । କୌଣସି ଖଲିଫା ନ ଥିଲେ ଏବଂ ଖୁବ୍ ସାହସ କରି ହୋସେନ ଶୂନ୍ୟ ସିଂହାସନକୁ ଡେଇଁ ପଡ଼ିଲେ ଏବଂ ଇସଲାମର ଖଲିଫାରୂପେ ନିଜକୁ ଘୋଷଣା କଲେ । ଇବନ ସାଉଦ୍ ଦେଖିଲେ ଯେ ତାଙ୍କ ବେଳ ଆସି ପହଞ୍ଚିଛି ଓ ହୋସେନ ବିରୁଦ୍ଧରେ ଆରବ ଜାତୀୟତା ଓ ମୁସଲମାନ ଅନ୍ତର୍ଜାତୀୟତା ଉଭୟଙ୍କୁ ନିବେଦନ କଲେ । ଏକ ଉଚ୍ଚାଭିଳାଷୀ ଲୁଣ୍ଠନକାରୀ ବିରୁଦ୍ଧରେ ଇସଲାମର ରକ୍ଷକରୂପେ ସେ ବାହାରିଲେ ଏବଂ

ଯତ୍ନର ସହ ପ୍ରଚାର ଫଳରେ ଅନ୍ୟ ଦେଶର ମୁସଲମାନମାନଙ୍କର ସଦିଚ୍ଛା ଅର୍ଜନ କରିପାରିଲେ । କେଉଁ ଅଡ଼କୁ ପବନ ବୋହୁଛି ଦେଖିପାରି ଏବଂ ଯେଉଁ ଘୋଡ଼ାକୁ ସେମାନେ ଏ ପର୍ଯ୍ୟନ୍ତ ପୋଷି ଆସିଥିଲେ ତାହା ଆଉ ଜିତିପାରିବ ନାହିଁ ବୋଲି ବୁଝିପାରି ବ୍ରିଟିଶ ସରକାରରେ ହୋସେନଠାରୁ ସମର୍ଥନ ପ୍ରତ୍ୟାହାର କରି ନେଲେ । ଅର୍ଥ ସାହାଯ୍ୟ ବନ୍ଦ ହୋଇଗଲା ଏବଂ ଯେଉଁ ବିଚରା ହୋସେନ ଏତେ ପ୍ରତିଶ୍ରୁତି ପାଇଥିଲା, ତାକୁ ଏକ ଶକ୍ତିଶାଳୀ ଓ ଅଗ୍ରଗାମୀ ଶତ୍ରୁ ଆଗରେ ବନ୍ଧୁହୀନ ଓ ନିଃସହାୟ କରି ଛାଡ଼ି ଚାଲିଗଲେ ।

କେତେ ମାସ ଭିତରେ ୧୯୨୪ ଅକ୍ଟୋବର ମାସରେ ଓ୍ୱାହାବୀମାନେ ମକ୍କାରେ ପ୍ରବେଶ କଲେ ଏବଂ ସେମାନଙ୍କର ପିଉରିଟାନ୍ ବିଶ୍ୱାସ ଅନୁସାରେ କେତେକ କବର ଧ୍ୱଂସ କଲେ । ଏହି ଧ୍ୱଂସଯୋଗୁଁ ମୁସଲମାନ ଦେଶମାନଙ୍କରେ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି ହେଲା । ଭାରତରେ ମଧ୍ୟ ଖୁବ୍ ବିରୋଧ ହୋଇଥିଲା । ତତ୍ପରବର୍ଷ ମେଦନା ଓ ଜେଡ୍ଡା ଇବନ୍ ସାଉଦ୍‌ଙ୍କ ହାତରେ ପଡ଼ିଲା ଏବଂ ହୋସେନ ଓ ତାଙ୍କ ପରିବାରକୁ ହେଜାଜ୍‌ରୁ ତଡ଼ି ଦିଆଗଲା । ୧୯୨୬ ପ୍ରଥମ ଭାଗରେ ଇବନ ସାଉଦ୍ ନିଜକୁ ହେଜାଜ୍ ରାଜାରୂପେ ଘୋଷଣା କଲେ । ନିଜର ନୂତନ ସ୍ଥିତିକୁ ଦୃଢ଼ କରିବା ନିମନ୍ତେ ଓ ବିଦେଶରେ ମୁସଲମାନମାନଙ୍କ ସହାନୁଭୂତି ପାଇବା ନିମନ୍ତେ ସେ ୧୯୨୬ ଜୁନ୍ ମାସରେ ମକ୍କାଠାରେ ବିଶ୍ୱ ଇସଲାମୀୟ କଂଗ୍ରେସ କଲେ—ସେଠିକି ଅନ୍ୟ ଦେଶମାନଙ୍କରୁ ପ୍ରତିନିଧି ନିମନ୍ତ୍ରିତ ହେଲେ । ଆପାତତଃ ତାଙ୍କର ଖାଲିଫା ହେବାର ଆକାଙ୍‌କ୍ଷା ନ ଥିଲା ଏବଂ ସେ ଯାହାହେଉ, ତାଙ୍କର ଓ୍ୱାହାବୀ ଧର୍ମ ଯୋଗୁଁ ବହୁ ସଂଖ୍ୟକ ମୁସଲମାନ ତାଙ୍କୁ ଏହି ପଦରେ ଗ୍ରହଣ କରି ନ ଥାନ୍ତେ । ଇଜିପ୍ଟର ରାଜା ଫୁଆଡ଼ର ଜାତୀୟତା ବିରୋଧୀ ଓ ସ୍ୱେଚ୍ଛାଚାରିତା ବିବରଣ ଆମେ ଦେଖିଛେ । ସେ ଖାଲିଫା ହେବା ନିମନ୍ତେ ବଡ଼ ଆଗ୍ରହୀ ଥିଲା; ମାତ୍ର କେହି ତାଙ୍କୁ ଚାହିଁଲେ ନାହିଁ ଏପରି କି ନିଜ ଦେଶ ଇଜିପ୍ଟର ଲୋକ ବି ନୁହନ୍ତି । ତାଙ୍କର ପରାଜୟ ପରେ ହୋସେନ ଯେଉଁ ଖାଲିଫା ହୋଇଥିଲେ ସେ ସିଂହାସନ ତ୍ୟାଗ କଲେ ।

ମକ୍କାଠାରେ ହୋଇଥିବା ଇସଲାମୀୟ କଂଗ୍ରେସରେ ବିଶେଷ କିଛି ଗୁରୁତର ସିଦ୍ଧାନ୍ତ ହୋଇ ନ ଥିଲା—ସମ୍ଭବତଃ ଏଥିପାଇଁ ଏହା ହୋଇ ନ ଥିଲା । ଇବନ ସାଉଦ ନିଜର ସ୍ଥିତି ଦୃଢ଼ କରିବା ପାଇଁ ଏବଂ ବିଶେଷ ଭାବରେ ବିଦେଶୀ ଶକ୍ତି ଆଗରେ ଦେଖାଇବା ଲାଗି ନୂତନ ଉପାୟ ବାହାର କରିଥିଲା । ଖିଲାଫତ୍ କମିଟିର ଭାରତୀୟ ପ୍ରତିନିଧି ଏବଂ ମୋର ମନେହୁଏ ମୌଲାନା ମହମ୍ମଦ ଅଲ୍ଲୀ ତାଙ୍କ ଭିତରୁ ଜଣେ ଥିଲେ ସେଠୁ ହତାଶ ହୋଇ ଇବନ ସାଉଦ୍ ଉପରେ ରାଗି ଫେରିଲେ । କିନ୍ତୁ ଏଥିରେ ତାଙ୍କର କିଛି ଯାଏଆସେ ନା । ସେ (ଇବନ ସାଉଦ୍) ଯେତେବେଳେ ଦରକାର ହେଲା ଭାରତୀୟ ଖିଲଫତ କମିଟିକୁ ଉପଯୋଗ କଲେ ଏବଂ ଏବେ ତାର ସଦିଚ୍ଛା ବିନା ବି କାମ ଚଳିପାରେ ।

ଅତିଶୀଘ୍ର ଇବନ ସାଉଦ ପ୍ରାୟ ସମଗ୍ର ଦେଶରେ ପ୍ରଭୁ ହୋଇଗଲେ । କେବଳ

ସ୍ୱେମେନ ପୂର୍ବତନ ଇମାମ ଅଧୀନରେ ସ୍ୱାଧୀନ ଦେଶ ହୋଇ ରହିଥିଲା । ଦକ୍ଷିଣ-ପଶ୍ଚିମରେ ଏହି ଟିକିଏ ସ୍ଥାନ ଛଡ଼ା ସେ ଆରବୀଆରେ ପ୍ରଭୁ ହେଲେ ଏବଂ ସେ ନେଜଦ୍‌ର ରାଜା ଉପାଧି ଗ୍ରହଣ କଲେ ତେଣୁ ସେ ଡବଲ ରାଜା ହେଲେ—ହେଜାଜ୍‌ର ରାଜା ଓ ନେଜଦର ରାଜା । ବିଦେଶୀ ଶକ୍ତିମାନେ ତାଙ୍କର ସ୍ୱାଧୀନତା ସ୍ୱୀକାର କଲେ ଏବଂ ଇଜିପ୍ଟରେ ବିଦେଶୀମାନେ ଯେପରି ବିଶେଷାଧିକାର ଭୋଗୁଥିଲେ ଏଠି କୌଣସି ବିଶେଷ ସୁବିଧା ସେମାନଙ୍କୁ ଦିଆଗଲା ନାହିଁ । ବାସ୍ତବିକ ସେମାନଙ୍କୁ ମଦ ଓ ନିଶାଦ୍ରବ୍ୟ ସେବନ ବି ମନା ହୋଇଗଲା ।

ଏକ ସୈନିକ ଓ ଲଢୁଆ ଭାବରେ ଇବନ ସାଉଦ କୃତକାର୍ଯ୍ୟ ହେଲେ । ସେ ଏବେ ତାଙ୍କ ରାଜ୍ୟକୁ ଆଧୁନିକ ଅବସ୍ଥାନୁସାରେ ଗଢ଼ିବାରେ କଠିନ କାର୍ଯ୍ୟରେ ଲାଗିଲେ । ଧର୍ମ ସମ୍ବନ୍ଧୀୟ ଅବସ୍ଥାରୁ ଏହାକୁ ଆଧୁନିକ ଦୁନିଆଁକୁ ଲମ୍ଫ ଦେବାକୁ ହେଲା । ଦେଖାଗଲା ଏଥିରେ ମଧ୍ୟ ଇବନ ସାଉଦ ଖୁବ୍ ସଫଳ ହେଲେ ଏବଂ ସେ ଜଣେ ଦୂରଦ୍ରଷ୍ଟା ରାଜନୀତିଜ୍ଞ ବୋଲି ଏହିରୂପେ ଦୁନିଆ ଆଗରେ ଦେଖାଇ ଦେଲେ ।

ଆଭ୍ୟନ୍ତରୀଣ ବିଶୃଙ୍ଖଳା ଦବାଇ ଦେବାରେ ପ୍ରଥମେ ସେ କୃତକାର୍ଯ୍ୟ ହେଲେ । ଖୁବ୍ ଅଳ୍ପକାଳ ଭିତରେ ବିରାଟ ମରୁଭୂମି ଓ ଯାତ୍ରୀପଥ ସବୁ ସମ୍ପୂର୍ଣ୍ଣ ନିରାପଦ ହୋଇଗଲା । ଏହା ଏକ ବିରାଟ ବିଜୟ ଏବଂ ଯେଉଁ ବହୁସଂଖ୍ୟକ ତୀର୍ଥଯାତ୍ରୀ ରାଜପଥରେ ବାରମ୍ବାର ଡକାୟତି କବଳରେ ପଡ଼ୁଥିଲେ ସେମାନେ ଏହାର ସ୍ୱାଗତ କଲେ ।

ଯାଯାବର ବେଡ଼ୋଇନ୍‌ମାନଙ୍କୁ ବସତି ବାନ୍ଧି ରଖିବାଟା ଆହୁରି ଏକ ଅପୂର୍ବ ସାଫଲ୍ୟ । ସେ ତାଙ୍କ ହେଜାଜ ବିଜୟ ପୂର୍ବରୁ ଏହି ବସତି ଆରମ୍ଭ କରି ନେଇଥିଲେ ଏବଂ ଏହିପରି ଭାବରେ ସେ ଆଧୁନିକ ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ଅସ୍ଥିର ବୁଲି ଓ ସ୍ୱାଧୀନତା ପ୍ରିୟ ବେଡ଼ୋଇନମାନଙ୍କର ବସତି କରାଇବା କିଛି ସହଜ କଥା ନୁହେଁ; କିନ୍ତୁ ଇବନ ସାଉଦ ଅନେକ ପରିମାଣରେ କୃତକାର୍ଯ୍ୟ ହେଲେ । ରାଜ୍ୟର ଶାସନ ଅନେକ ଭାବରେ ଉନ୍ନତ ହୋଇଛି ଏବଂ ଉଡ଼ାଜାହାଜ, ମଟର, ଟେଲିଫୋନ ଓ ଆଧୁନିକ ସଭ୍ୟତାର ଆହୁରି ଅନେକ ପ୍ରତୀକ ଦେଖାଦେଇଛି । ଆସ୍ତେ ଅଥଚ ନିଶ୍ଚିତ ଭାବରେ ହେଜାଜ୍ ଆଧୁନିକ ଧରଣରେ ହୋଇଯାଉଛି । କିନ୍ତୁ ମଧ୍ୟ ଯୁଗରୁ ବର୍ତ୍ତମାନ କାଳକୁ ଡେଇଁବା କିଛି ସହଜ କଥା ନୁହେଁ ଏବଂ ପ୍ରଧାନ ଅସୁବିଧା ହେଉଛି ଲୋକଙ୍କ ଭାବ ପରିବର୍ତ୍ତନ କରିବା । ଏହି ନୂତନ ପ୍ରଗତି ଓ ପରିବର୍ତ୍ତନ ଅନେକ ଆରବଙ୍କ ମନଲାଖି ହୋଇ ନ ଥିଲା । ପାଶ୍ଚାତ୍ୟର ନୂତନ ଉଦ୍ଭାବିତ ଯନ୍ତ୍ର, କଳ, ମଟର ଓ ଉଡ଼ାଜାହାଜ ସବୁ ଏକ ଅନ୍ୟାୟ ଆବିଷ୍କାର ବୋଲି ସେମାନେ ମନେ କଲେ । ଏହିସବୁ ପରିବର୍ତ୍ତନରେ ସେମାନେ ପ୍ରତିବାଦ କଲେ ଏବଂ ଏପରିକି ୧୯୨୯ରେ ଇବନ୍ ସାଉଦ ବିରୁଦ୍ଧରେ ସେମାନେ ଗଲେ । ଇବନ ସାଉଦ କୌଶଳ ଓ ଯୁକ୍ତି ବଳରେ ସେମାନଙ୍କୁ ହାତ କରିବାକୁ ଚେଷ୍ଟା କଲେ ଓ

ଅନେକଙ୍କୁ କରିପାରିଲେ । କେତେକ ସେହିପରି ବିଦ୍ରୋହ ଚଳାଇଲେ ଏବଂ ଇବନ ସାଉଦଙ୍କଦ୍ୱାରା ପରାଜିତ ହେଲେ ।

ତା'ପରେ ଇବନ ସାଉଦଙ୍କ ସମ୍ମୁଖରେ ଆଉ ଏକ ଅସୁବିଧା ପଡ଼ିଥିଲା ମାତ୍ର ଏ ଅସୁବିଧାର ସମ୍ମୁଖୀନ ସମଗ୍ର ଜଗତକୁ ହେବାକୁ ପଡ଼ିଥିଲା । ୧୯୩୫ଠାରୁ ପ୍ରତ୍ୟେକ ସ୍ଥାନରେ ପ୍ରଚୁର ଭାବରେ ବେପାର ମାନ୍ଦା ହୋଇ ଯାଇଥିଲା । ପାଶ୍ଚାତ୍ୟର ବଡ଼ ଶିଳ୍ପୋନ୍ନତ ଦେଶରେ ଏହା ଅଧିକ ଅନୁଭୂତ ହୋଇଥିଲା ଏବଂ ଏହାର ସଦା-ଶକ୍ତ ବନ୍ଧନରେ ପଡ଼ି ସେମାନେ ଏବେ ସୁଦ୍ଧା ଲଢ଼ୁଛନ୍ତି । ପୃଥିବୀ ବେପାର ସହିତ ଆରବୀସ୍ଥାର କିଛି ସମ୍ପର୍କ ନ ଥିଲା; କିନ୍ତୁ ଦୁର୍ଗତି ଆଉ ଏକ ଭାବରେ ଦେଖାଦେଲା । ମକ୍କାକୁ ବାର୍ଷିକ ବିଗ୍ରହ ତୀର୍ଥଯାତ୍ରୀଙ୍କଠାରୁ ହିଁ ଇବନ ସାଉଦଙ୍କ ରାଜସ୍ୱ ଆଦାୟର ପ୍ରଧାନ ଉପାୟ ଥିଲା । ପ୍ରତିବର୍ଷ ବିଦେଶରୁ ପ୍ରାୟ ଏକ ଲକ୍ଷ ଯାତ୍ରୀ ମକ୍କାଦର୍ଶନ ପାଇଁ ଆସନ୍ତି । ୧୯୩୦ରେ ଏହା ହଠାତ୍ କମି ଚାଳିଶ ହଜାର ହେଲା ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ମଧ୍ୟ ଏହା ଚାଲିଲା । ଏହା ଫଳରେ ଆର୍ଥିକ ଗଠନ ଏକଦମ ଓଲଟପାଲଟ ହୋଇଗଲା ଏବଂ ଆରବୀସ୍ଥାର ଅନେକ ଅଞ୍ଚଳରେ ଘୋର ଦୁର୍ଦ୍ଦଶା ଦେଖାଗଲା । ଅର୍ଥ ଅଭାବରୁ ଇବନ ସାଉଦ ନାନା ଭାବରେ ହଇରାଣ ହେଲେ ଏବଂ ତାଙ୍କର ଅନେକ ସଂସ୍କାର ଯୋଜନା ସେ ବନ୍ଦ କରିଦେଲେ । ସେ ବିଦେଶୀମାନଙ୍କୁ ସୁବିଧା ଦେଲେ ନାହିଁ କାରଣ ସେ ଯଥାର୍ଥରେ ଭୟ କରୁଥିଲେ ଯେ ଦେଶର ସମ୍ପଦରୁ ଉପଯୋଗ କରିବା ନିମନ୍ତେ ବିଦେଶୀଙ୍କୁ ଦେଲେ ବିଦେଶୀଙ୍କ ପ୍ରଭାବ ଦେଶରେ ବୃଦ୍ଧି ହେବ । ଏହାର ଅର୍ଥ ବିଦେଶୀ ହସ୍ତକ୍ଷେପ ଓ ସ୍ୱାଧୀନତା କମ୍ ହୋଇଯିବ । ତାଙ୍କର ଭୟ ସଂପୂର୍ଣ୍ଣ ଯଥାର୍ଥ କାରଣ ପରାଧୀନ ଉପନିବେଶ ଦେଶମାନଙ୍କରେ ଯାହା କିଛି ଅସୁବିଧା ଭୋଗିଛନ୍ତି, ତାହା ବିଦେଶୀ ଶୋଷଣ ହେତୁ ଘଟିଛି । ଇବନ ସାଉଦ ସ୍ୱାଧୀନତାହୀନ ଧନ ଓ ପ୍ରଗତିଠାରୁ ସ୍ୱାଧୀନତାପୂର୍ଣ୍ଣ ଦାରିଦ୍ର୍ୟକୁ ବେଶି ପସନ୍ଦ କଲେ ।

ଯାହାହେଉ ମାନ୍ଦା ବେପାରର ଚାପ ହେତୁ ଇବନ ସାଉଦଙ୍କୁ ତାଙ୍କ ମତ ଟିକିଏ ବଦଳାଇବାକୁ ପଡ଼ିଲା ଏବଂ ସେ ବିଦେଶୀଙ୍କୁ କିଛି ସୁବିଧା ଦେବାକୁ ଆରମ୍ଭ କଲେ । କିନ୍ତୁ ତାହା ସତ୍ତ୍ୱେ ସେ ନିଜର ସ୍ୱାଧୀନତା ରକ୍ଷା କରିବାରେ ଯତ୍ନଶୀଳ ଥିଲେ ଏବଂ ଏଥି-ପାଇଁ ସର୍ତ୍ତମାନ ରଖିଥିଲେ । ବର୍ତ୍ତମାନ ପାଇଁ କେବଳ ବିଦେଶୀ ମୁସଲମାନ ଗୋଷ୍ଠୀଙ୍କୁ ସୁବିଧା ଦିଆଗଲା । ତେଣୁ ପ୍ରଥମେ ଜେଡ୍ଡା ବନ୍ଦର ଓ ମକ୍କା ଭିତରେ ଗୋଟିଏ ରେଲବାଇ ତିଆରି କରିବା ନିମନ୍ତେ ଏକ ଭାରତୀୟ ପୁଞ୍ଜିବାଦୀ ମୁସଲମାନ ଦଳଙ୍କୁ ସୁବିଧା ଦିଆଗଲା । ଆରବୀସ୍ଥାରେ ଏହି ରେଲପଥ ଏକ ପ୍ରକାଣ୍ଡ ଜିନିଷ; କାରଣ ବାର୍ଷିକ ତୀର୍ଥଯାତ୍ରାରେ ଏହା ବିପ୍ଳବ ଆଣି ଦେଲା । ଏହା ଖାଲି ଯାତ୍ରୀଙ୍କୁ ସୁବିଧା ହେଲା ନାହିଁ ଆରବର ଦୃଷ୍ଟିକୋଣକୁ ଆଧୁନିକ କରିବାରେ ଖୁବ୍ ସାହାଯ୍ୟ କଲା ।

ମୁଁ ପୂର୍ବ ଚିଠିରେ ଆରବୀସ୍ଥାନରେ ଗୋଟିଏ ରେଳପଥ ଥିବା କଥା ତୁମକୁ ଲେଖିଛି—ଏହା ହେଉଛି ହେଜାଜ ରେଳପଥ—ଏହା ମେଦିନାକୁ ସିରିଆରେ ବାଗଦାଦ ରେଳୱେ ରେ ଆଲେପୋ ସହ ସଂଯୋଗ କରେ ।

ଏହି ଚିଠିର ପ୍ରଥମ ଭାଗରେ ମୁଁ ଉଲ୍ଲେଖ କରିଛି ଯେ ଦକ୍ଷିଣ-ପଶ୍ଚିମରେ ଯୁରୋପୀୟମାନେ ଆରବୀସ୍ଥା ଫେଲିକ୍ସ ବୋଲି କହୁଥିଲେ । ପ୍ରକୃତରେ କହିବାକୁ ଗଲେ ଦକ୍ଷିଣ ଆରବୀସ୍ଥାନର ଅଧିକ ଭାଗ ଅର୍ଥାତ୍ ପ୍ରାୟ ପର୍ସିଆନ ହ୍ରଦ ବ୍ୟାପୀ ଅଞ୍ଚଳ ପ୍ରତି ଏହି ନାମ ପ୍ରୟୋଗ କରିଯାଏ । କିନ୍ତୁ ଏ ନାମ ଏହି ଅଞ୍ଚଳ ଲାଗି ସଂପୂର୍ଣ୍ଣ ଅନୁପଯୋଗୀ; କାରଣ ଏହା ଏକ ନିତାନ୍ତ ମରୁଭୂମି । ସମ୍ଭବତଃ ଅତୀତକାଳରେ ଏହା ଅଧିକ ଭାବରେ ଜଣା ନ ଥିଲା ଏବଂ ତେଣୁ ଏପରି ଏକ ଭୁଲ ହୋଇଗଲା । ଅତି ଅଳ୍ପଦିନ ପର୍ଯ୍ୟନ୍ତ ଏହା ଅଜଣା ରାଜ୍ୟ ହୋଇଥିଲା । ପୃଥିବୀ ପୃଷ୍ଠରେ ଯେଉଁ ଅଳ୍ପ କେତେକ ଅଞ୍ଚଳ ମାପ ହୋଇ ନଥିଲା କିମ୍ବା ମାନଚିତ୍ରଭୁକ୍ତ ହୋଇ ନଥିଲା ସେଥିଭିତରୁ ଏହା ଥିଲା ଗୋଟିଏ ।

## ୧୬୯ : ଆକାଶରୁ ବୋମାବର୍ଷଣ ଏବଂ ଇରାକ୍

ଜୁନ୍ ୭, ୧୯୩୩

ଆମକୁ ଆଉ ଏକ ଆରବ ଦେଶ କଥା ବିଚାର କରିବାକୁ ହେବ । ଏହା ଇରାକ୍ ବା ମେସୋପଟାମିଆ—ଟାଇଗ୍ରିସ ଓ ଇଉଫ୍ରେଟିସ୍ ଦୁଇ ନଦୀ ମଧ୍ୟବର୍ତ୍ତୀ ଏକ ସମ୍ପଦ-ଶାଳୀ ଓ ଉର୍ବର ଭୂମି ବାଗଦାଦ ହାରୁନାଲ୍ ରସିଦ ଓ ଆରବୀସ୍ଥାନ ନାଇଟ୍ସର ପୁରାତନ କାହାଣୀ ଦେଶ । ଏହା ପର୍ସିଆ ଓ ଆରବୀୟ ମରୁଭୂମି ମଝିରେ; ଦକ୍ଷିଣରେ ପର୍ସିଆନ୍ ହ୍ରଦର ଏକ ନଦୀର ଟିକିଏ ଉପରକୁ ଏହାର ପ୍ରଧାନ ବନ୍ଦର ବାସ୍ରା ରହିଛି; ଉତ୍ତରରେ ଏହା ତୁର୍କିକୁ ସ୍ପର୍ଶ କରିଛି । ଇରାକ ଓ ତୁର୍କି କୁର୍ଦ୍ଦ ସ୍ଥାନରେ ମିଳିତ—ଏହି ଅଞ୍ଚଳରେ କୁର୍ଦ୍ଦମାନେ ବାସ କରନ୍ତି । କୁର୍ଦ୍ଦଙ୍କ ଭିତରୁ ଅଧିକାଂଶ ଏବେ ତୁର୍କି ଭିତରେ ରହିଛନ୍ତି ଏବଂ ତୁର୍କିଙ୍କ ବିରୁଦ୍ଧରେ ସେମାନଙ୍କର ମୁକ୍ତି ସଂଗ୍ରାମ ବିଷୟରେ ମୁଁ ତୁମକୁ କହିଛି । କିନ୍ତୁ ଇରାକ୍ ଭିତରେ ବି ଅନେକ କୁର୍ଦ୍ଦ ଅଛନ୍ତି ଏବଂ ସେଠାରେ ସେମାନେ ଏକ ମୁଖ୍ୟ ସଂଖ୍ୟାନ୍ୟୂନ ସଂପ୍ରଦାୟ ହୋଇ ରହିଛନ୍ତି । ଯେଉଁ ମସୁଲ ଅନେକ ଦିନ ପର୍ଯ୍ୟନ୍ତ ତୁର୍କି ଓ ଇଂଲଣ୍ଡ ଭିତରେ ବିବାଦସ୍ଥଳୀ ହୋଇଥିଲା ତାହା ଏବେ ଇରାକ୍‌ର ଉତ୍ତର କୁର୍ଦ୍ଦିସ ଅଞ୍ଚଳରେ ଅବସ୍ଥିତ—ଏହାର ଅର୍ଥ ଏହା ବ୍ରିଟିଶ ଅଧୀନରେ ରହିଛି । ମସୁଲ ନିକଟରେ ଆସିରିଆନ୍‌ମାନଙ୍କର ପୁରାତନ ନିନେଭ ସହରର ଧ୍ୱଂସାବଶେଷ ରହିଛି ।

ଇରାକ୍ ପାଇଁ ବ୍ରିଟିଶ ସରକାର ଲିଗ୍ ଅଫ୍ ନେସନ୍‌ସରୁ "ମାଣ୍ଡେଟ୍" ପାଇଥିଲା—ଲିଗ୍‌ର ପବିତ୍ର ଭାଷାରେ "ମାଣ୍ଡେଟ" ଅର୍ଥ ଲିଗ୍ ଅଫ୍ ନେସନସ ତରଫରୁ ସଭ୍ୟତାର "ପବିତ୍ର ମାରଫତଦାରି" । ଏହା ପଛରେ ଧାରଣା ହେଉଛି ଯେ "ମାଣ୍ଡେଟ" ଅଞ୍ଚଳର ଲୋକେ ନିଜର ସ୍ୱାର୍ଥରକ୍ଷା କରିବା ନିମନ୍ତେ ସମର୍ଥ ବା ଯଥେଷ୍ଟ ଉନ୍ନତ ନୁହନ୍ତି ଏବଂ ତେଣୁ ପ୍ରଧାନ ଶକ୍ତିମାନଙ୍କଦ୍ୱାରା ତାଙ୍କୁ ସାହାଯ୍ୟ କରିବା ଦରକାର । ତୁଳନାତ୍ମକ ନୀତି ଅନୁସାରେ ଗୋରୁ ବା ହରିଣ ଗୋଠର ସ୍ୱାର୍ଥ ରକ୍ଷା ନିମନ୍ତେ ଗୋଟିଏ ବାଘ ନିଯୁକ୍ତ କରିବା । ଯଥୋକ୍ତ ଦେଶର ଲୋକମାନଙ୍କ ଇଚ୍ଛାନୁସାରେ ଏହି "ମାଣ୍ଡେଟ" ଅଞ୍ଚଳ ସେମାନଙ୍କୁ ଦେଇ ଦିଆଯିବ ବୋଲି ଧରାଯାଉଥିଲା । ପଶ୍ଚିମ ଏସିଆରେ ତୁର୍କି ଶାସନରୁ ମୁକ୍ତ ଦେଶମାନଙ୍କର "ମାଣ୍ଡେଟ" ଭାର ଇଂଲଣ୍ଡ ଓ ଫ୍ରାନ୍‌ସ ଭାଗ୍ୟରେ ପଡ଼ିଲା । ମୁଁ ତତେ ଆଗରୁ କହିଛି ଏହି ଦୁଇ ଦେଶର ସରକାର ସବୁ ଘୋଷଣା କଲେ ଯେ ତାଙ୍କର ପ୍ରଧାନ ଲକ୍ଷ୍ୟ ହେଉଛି "ଏହିସବୁ ଲୋକଙ୍କର ପୂର୍ଣ୍ଣ ଓ ନିର୍ଦ୍ଦିଷ୍ଟ ମୁକ୍ତି ··ଜାତୀୟ ସରକାର ଓ ଶାସନ ପ୍ରତିଷ୍ଠା । ଏହାର କର୍ତ୍ତୃତ୍ୱ ରହିବ ସ୍ଥାନୀୟ ଅଧିବାସୀଙ୍କଠାରେ ସେମାନେ ଏହା ବାଛିବାକୁ ସ୍ୱାଧୀନ ।" ଏହି ମହତ୍ ଲକ୍ଷ୍ୟ ହାସଲ କରିବା ନିମନ୍ତେ ଗଲା ୧୨ ବର୍ଷ ଭିତରେ କଣ ସବୁ କରାଯାଇଛି ଆମେ ଏ ପର୍ଯ୍ୟନ୍ତ ସିରିଆ ପାଲେଷ୍ଟାଇନ ଓ ଟ୍ରାନ୍‌ସ ଜୋର୍ଡାନରେ ଦେଖିଲେ—ଏଠାରେ ସବୁ ବାରମ୍ବାର ଗଣ୍ଡଗୋଳ, ଅସହଯୋଗ, ବର୍ଜନ ଚାଲିଲା । ଲୋକମାନଙ୍କର "ଆଗୁଆ ହେବା ଓ ମୁକ୍ତ ନିର୍ବାଚନ ଭାବ"କୁ ସେମାନଙ୍କୁ ଗୁଳି କରିବା ତାଙ୍କ ନେତାମାନଙ୍କୁ ଦେଶାନ୍ତର ଓ ନିର୍ବାସନ କରିବା, ସମ୍ବାଦପତ୍ରମାନଙ୍କୁ ଦମନ କରିବା, ସହର ଓ ଗ୍ରାମମାନଙ୍କୁ ଧ୍ୱଂସ କରିବା ଏବଂ ପ୍ରାୟ ସାମରିକ ଆଇନ ଘୋଷଣା କରିବାଦ୍ୱାରା ଉତ୍ସାହିତ କରାଗଲା । ଏହିସବୁ ଘଟଣାରେ ନୂତନତ୍ୱ କିଛି ନାହିଁ । ଐତିହାସିକ ଯୁଗ ଆରମ୍ଭରୁ ସାମ୍ରାଜ୍ୟବାଦୀ ଶକ୍ତିସବୁ ହିଂସା, ଧ୍ୱଂସ ଓ ଆତଙ୍କବାଦ ପ୍ରୟୋଗ କରି ଆସିଛନ୍ତି । ଆଧୁନିକ ଧରଣର ସାମ୍ରାଜ୍ୟବାଦମାନଙ୍କର ଏକ ନୂତନ ଲକ୍ଷଣ ଦେଖାଯାଇଛି । ସେମାନେ "ମାରଫତଦାରି" "ଜନତାର ମଙ୍ଗଳ" ଓ "ଅନୁନ୍ନତ ଅଧିବାସୀଙ୍କୁ ସ୍ୱାୟତ୍ତ ଶାସନରେ ଶିକ୍ଷିତ କରାଇବା" ଇତ୍ୟାଦ ପବିତ୍ର ବାକ୍ୟର ଆବରଣରେ ଏହି ଆତଙ୍କବାଦ ଓ ହିଂସାକୁ ଲୁଚାଇ ଦେବାକୁ ଚେଷ୍ଟା କରନ୍ତି । ଯେଉଁ ଲୋକ ଗୁଳି ଖାଆନ୍ତି କେବଳ ତାଙ୍କର ମଙ୍ଗଳ ନିମନ୍ତେ ସେମାନେ ତାଙ୍କୁ ଗୁଳି କରନ୍ତି, ମାରନ୍ତି ଓ ଧ୍ୱଂସ କରନ୍ତି । ଏହି ଶଠତା ହୁଏତ ଏକ ଉନ୍ନତର ଚିହ୍ନ ହୋଇପାରେ କାରଣ ଶଠତା ସଦ୍‌ଗୁଣର ପରିଚୟ—ଏଥିରୁ ଦେଖାଯାଉଛି ସତ୍ୟକୁ ଭଲ ପାଆନ୍ତି ନାହିଁ । ତେଣୁ ସ୍ୱଚ୍ଛନ୍ଦ ଓ ଲୋକଭୁଲାଣିଆ ବାକ୍ୟାବଳୀରେ ଏହାକୁ ଲୁଚାଇ ଦିଆ ହୁଏ । କିନ୍ତୁ କୌଣସି ପ୍ରକାରର ପବିତ୍ର ଶଠତା ନିରାଟ ସତ୍ୟ ଅପେକ୍ଷା ଅତ୍ୟନ୍ତ ଖରାପ ପରି ବୋଧହୁଏ ।

ଆମେ ଏବେ ଦେଖିବା ଇରାକରେ ସେଠା ଅଧିବାସୀଙ୍କର ଇଚ୍ଛା କିପରି ପୂରଣ ହେଲା ଏବଂ ବ୍ରିଟିଶ "ମାଣ୍ଡେଟ" ଅଧୀନରେ ଏହି ଦେଶ କିପରି ସ୍ୱାଧୀନତା ପଥରୁ ଅଗ୍ରସର

ହେଲା । ପ୍ରଥମ ବିଶ୍ୱଯୁଦ୍ଧବେଳେ ଇରାକକୁ (ସେତେବେଳେ ଏହାକୁ ମେସୋପଟାମିଆ ବୋଲି କୁହାଯାଉଥିଲା) ତୁର୍କି ବିରୁଦ୍ଧରେ ଯୁଦ୍ଧକ୍ଷେତ୍ର କରିଥିଲେ । ବ୍ରିଟିଶ ଓ ଭାରତୀୟ ସେନା ଦେଶରେ ଭର୍ତ୍ତି କରିଦେଲେ । ୧୯୧୬ ଅପ୍ରେଲରେ ସେମାନଙ୍କର ଭୀଷଣ ପରାଜୟ ହେଲା—ଜେନେରାଲ ଟାଉନ ଶେଣ୍ଡ ଅଧୀନରେ ଥିବା ବ୍ରିଟିଶ ସେନାଙ୍କୁ କୁଟାଲ-ଆମାରାଠାରେ ତୁର୍କିକୁ ସମର୍ପଣ କରିବାକୁ ପଡ଼ିଲା । ମେସୋପଟାମିଆ ଅଭିଯାନରେ ଭୀଷଣ ଅର୍ଥବ୍ୟୟ ଓ ଅବ୍ୟବସ୍ଥା ହୋଇଥିଲା ଏବଂ ଭାରତ ସରକାର ଏଥିପାଇଁ ବିଶେଷ ଦାୟୀ ଥିବାରୁ, ଅପାରେଗପଣିଆ ଓ ନିର୍ବୋଧତା ସକାଶେ ଏହାର ଖୁବ୍ କଡ଼ା ସମାଲୋଚନା କରାଗଲା । ଯାହାହେଉ ଶେଷରେ ବ୍ରିଟିଶଙ୍କର ବିଶାଳ ସମ୍ପଦ ଜୟଲାଭ କଲା ଏବଂ ସେମାନେ ତୁର୍କିକୁ ଉତ୍ତରକୁ ତଡ଼ିଦେଲେ, ବାଗଦାଦ ଦଖଲ କଲେ ଏବଂ ପ୍ରାୟ ମସୁଲରେ ପହଞ୍ଚିଥିଲେ । ଯୁଦ୍ଧ ଶେଷ ବେଳକୁ ସମଗ୍ର ଇରାକ୍ ବ୍ରିଟିଶ ସାମରିକ ଦଖଲ ଅଧୀନରେ ଆସିଗଲା ।

୧୯୨୦ ପ୍ରଥମ ଭାଗରେ ଇରାକ୍‌ର 'ମାଣ୍ଡେଟ' ଇଂଲଣ୍ଡକୁ ଦେବାର ପ୍ରଥମ ପ୍ରତିକ୍ରିୟା ଦେଖାଦେଲା । ଏହା ବିରୁଦ୍ଧରେ ଦୃଢ଼ ପ୍ରତିବାଦ ହେଲା ଏବଂ ପ୍ରତିବାଦ ଶୀଘ୍ର ଗଣ୍ଡଗୋଳରେ ପରିଣତ ହେଲା । ଗଣ୍ଡଗୋଳରୁ ହେଲା ବିଦ୍ରୋହ—ଏହା ସମସ୍ତ ଦେଶରେ ବ୍ୟାପିଗଲା । ଏକ ବିଚିତ୍ର ଓ ମଜାର କଥା ଯେ, ୧୯୨୦ ଖ୍ରୀଷ୍ଟାବ୍ଦରେ ଅଳ୍ପେ ଅଧିକେ ଏକା ସମୟରେ ତୁର୍କି, ସିରିଆ, ଇଜିପ୍ଟ, ପାଲେଷ୍ଟାଇନ, ଇରାକ୍ ଓ ପର୍ସିଆରେ ଗଣ୍ଡଗୋଳ ଉପୁଜିଲା, ଏପରି କି ସେତେବେଳେ ଭାରତରେ ବି ଅସହଯୋଗ ଦେଖାଦେଲା । ଶେଷରେ ଅଧିକ ଭାବରେ ଭାରତର ସୈନ୍ୟ ସାହାଯ୍ୟରେ ଇରାକ୍ ବିଦ୍ରୋହ ଦମନ କରାଗଲା । ଅନେକ କାଳ ହେଲା ଭାରତୀୟ ସେନାଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦର କୁତ୍ସିତ କାର୍ଯ୍ୟ ସବୁ କରିବାକୁ ପଡ଼ୁଛି ଏବଂ ଏହି କାରଣରୁ ମଧ୍ୟପ୍ରାଚ୍ୟରେ ଓ ଅନ୍ୟତ୍ର ଆମ ଦେଶ ଯଥେଷ୍ଟ ଅପ୍ରିୟ ହୋଇପଡ଼ୁଛି ।

ଆଂଶିକରୂପେ ବଳ ପ୍ରୟୋଗ କରି ଏବଂ ଆଂଶିକ ଭାବରେ ଭବିଷ୍ୟତ ସ୍ୱାଧୀନତା ପାଇଁ ନିର୍ଭରତା ଶୁଣାଇ ବ୍ରିଟିଶ ଇରାକ ବିଦ୍ରୋହ ଦମନ କରିପାରିଲେ । ସେମାନେ ଆରବ ମନ୍ତ୍ରୀ ସହ ଏକ ଅସ୍ଥାୟୀ ସରକାର ସ୍ଥାପନ କଲେ, କିନ୍ତୁ ପ୍ରତ୍ୟେକ ମନ୍ତ୍ରୀ ପଛରେ ଜଣେ ବ୍ରିଟିଶ ପରାମର୍ଶଦାତା ଥିଲେ—ସେଇ ହିଁ ଥିଲା ପ୍ରକୃତ ଶକ୍ତି । ଏହି ପୋଷା ଓ ମନୋନୀତ ମନ୍ତ୍ରୀ ବି ବ୍ରିଟିଶ ମନଲାଖି ହେଲେ ନାହିଁ—ତାଙ୍କ ପକ୍ଷରେ ବହୁତ ଉଚିତ ପରି ମନେହେଲେ । ବ୍ରିଟିଶ ଯୋଜନା ଅନୁସାରେ ସେମାନେ ଇରାକ୍‌ର ପୂର୍ଣ୍ଣ ବଶ୍ୟତା ଚାହୁଁଥିଲେ ଏବଂ କେତେକ ମଧ୍ୟ ଏପରି କାର୍ଯ୍ୟରେ ଭାଗୀଦାର ହେବାକୁ ଅସ୍ୱୀକାର କଲେ । ତେଣୁ ୧୯୨୧ ଅପ୍ରେଲ ମାସରେ ଜଣେ ମୁଖ୍ୟମନ୍ତ୍ରୀ ସୟଦ୍ ତାଲିବ୍ ସାହାଙ୍କୁ ବ୍ରିଟିଶ ଗିରଫ କରି ନିର୍ବାସନ କଲେ—ସେ ସମସ୍ତଙ୍କ ଭିତରେ ଦକ୍ଷ ଥିଲେ । ଏହିରୂପେ ଦେଶକୁ ସ୍ୱାଧୀନ କରିବା ପାଇଁ ପ୍ରସ୍ତୁତ କରିବା ଦିଗରେ ଆଉ ଏକ କାର୍ଯ୍ୟ କରାଗଲା ।

୧୯୨୧ ଖ୍ରୀଷ୍ଟକାଳରେ ହେଜାଜ୍ ରାଜା ହୋସେନଙ୍କ ପୁତ୍ର ଫୟ୍ସଲଙ୍କୁ ବ୍ରିଟିଶ ଆଣିଲେ ଏବଂ ଇରାକ ରାଜାରୂପେ ବସାଇଲେ । ତୋର ମନେଥିବ, ଫୟ୍ସଲ—ସେତେବେଳେ ବେକାର ଥିଲେ—ତାଙ୍କ ସିରିଆର ପତନ ଫରାସୀ ଆକ୍ରମଣରେ ହୋଇ ଯାଇଥିଲା । ସେ ବ୍ରିଟିଶର ଉତ୍ତମ ବନ୍ଧୁ ଥିଲେ ଏବଂ ପୃଥିବୀ ଯୁଦ୍ଧବେଳେ ତୁର୍କି ବିରୁଦ୍ଧରେ ଆରବ ବିଦ୍ରୋହରେ ଖୁବ୍ ଭାଗ ନେଇଥିଲେ । ତେଣୁ ଏ ପର୍ଯ୍ୟନ୍ତ ସ୍ଥାନୀୟ ମନ୍ତ୍ରୀମାନଙ୍କ ଅପେକ୍ଷା ସେ ବ୍ରିଟିଶ ଯୋଜନାରୂପ ଅଧିକ କାର୍ଯ୍ୟ କରିବାର ସମ୍ଭାବନା ଥିଲା । "ମୁଖ୍ୟ ଲୋକେ", ଧନୀ ମଧ୍ୟବିତ୍ତ ଶ୍ରେଣୀ ଓ ଅନ୍ୟ ପ୍ରଧାନ ବ୍ୟକ୍ତିସବୁ ଫୟ୍ସଲଙ୍କୁ ରାଜାରୂପେ ସ୍ୱୀକାର କରିବା ନିମନ୍ତେ ସମ୍ମତ ହେଲେ—କେବଳ ସର୍ତ୍ତ ରହିଲା ଯେ, ଏକ ଶାସନତାନ୍ତ୍ରିକ ସରକାର ହେବ ଓ ଗଣତାନ୍ତ୍ରିକ ପାର୍ଲିମେଣ୍ଟ ହେବ । ଏଥିରେ ସେମାନଙ୍କର କିଛି ହାତ ନ ଥିଲା । ସେମାନେ ପ୍ରକୃତ ପାର୍ଲିଆମେଣ୍ଟ ଚାହୁଁଥିଲେ ଏବଂ ଯେହେତୁ ଯେ କୌଣସି ମତେ ଫୟ୍ସଲ ରାଜା ହେବାର ହେଲା, ତେଣୁ ସେମାନେ ପାର୍ଲିମେଣ୍ଟକୁ ଏକ ସର୍ତ୍ତ ଭାବରେ ଉପସ୍ଥାପିତ କଲେ । ସାଧାରଣତଃ ଲୋକଙ୍କ ମତ ନିଆଯାଇ ନଥିଲା । ତେଣୁ ୧୯୨୧ ଅଗଷ୍ଟ ମାସରେ ଫୟ୍ସଲ ରାଜା ହେଲେ ।

କିନ୍ତୁ ଏଥିରେ ସମସ୍ୟାର ସମାଧାନ ହେଲା ନାହିଁ, କାରଣ ଇରାକ୍ ଲୋକେ ବ୍ରିଟିଶ "ମାଣ୍ଡେଟ୍"ର ଅତ୍ୟନ୍ତ ବିରୋଧୀ ଥିଲେ ଏବଂ ପୂର୍ଣ୍ଣ ସ୍ୱାଧୀନତା ଓ ତାପରେ ଅନ୍ୟ ଆରବ ଦେଶ ସହ ଏକତା ଚାହୁଁଥିଲେ । ଆନ୍ଦୋଳନ ଓ ପ୍ରଦର୍ଶନ ଚାଲିଲା ଏବଂ ୧୯୨୨ ଅଗଷ୍ଟରେ ବର୍ଷକ ପରେ ଅବସ୍ଥା ସାଂଘାତକ ହେଲା । ତାପରେ ବ୍ରିଟିଶ କର୍ତ୍ତାମାନେ ଇରାକୀମାନଙ୍କୁ ସ୍ୱାଧୀନତା ପାଠରେ ଆଉ ଏକ ଅଧ୍ୟାୟ ଶିଖାଇଲେ । ବ୍ରିଟିଶ ହାଇକମିଶନର ସାର ପର୍ସି କକ୍ସ ରାଜାର (ଯେ କି ସେତେବେଳେ ପୀଡ଼ିତ ଥିଲେ) କ୍ଷମତା ଏବଂ ଇରାକ୍‌କୁ ଯେଉଁ କାଉନ୍‌ସିଲ ଓ ମନ୍ତ୍ରୀ ଗଠନ ଅଧିକାର ଦିଆଯାଇଥିଲା, ତାକୁ ଲୋପ କଲେ ଏବଂ ସରକାରର ପୂର୍ଣ୍ଣ ପରିଚାଳନା ଭାର ନିଜ ହାତକୁ ନେଲେ । ପ୍ରକୃତରେ ସେ ସ୍ୱେଚ୍ଛାଚାରୀ ଡିକ୍‌ଟେଟର ହେଲେ ଏବଂ ସେ ନିଜ କଥାକୁ ବଳପୂର୍ବକ କାର୍ଯ୍ୟକାରୀ କଲେ । ବ୍ରିଟିଶ ସେନା ଓ ବିଶେଷ ଭାବରେ ବ୍ରିଟିଶ ଉଡ଼ାଜାହାଜ ଶକ୍ତି ସାହାଯ୍ୟରେ ଗଣ୍ଡଗୋଳ ଦମନ କଲେ । ଇଜିପ୍ଟ, ଭାରତ, ସିରିଆ ପ୍ରଭୃତିରେ ଘଟିଥିବା ସେହି ପୁରୁଣା କାହାଣୀ ପୁନର୍ବାର ଏଠାରେ ଆମେ ଦେଖିଲେ । ଜାତୀୟବାଦୀ ସମ୍ବାଦପତ୍ର ଦମନ କରାଗଲା; ଦଳ ସବୁ ଭାଙ୍ଗି ଦିଆଗଲା; ନେତାମାନଙ୍କୁ ନିର୍ବାସିତ କରାଗଲା ଏବଂ ବ୍ରିଟିଶ ଉଡ଼ାଜାହାଜ ସବୁ ବୋମାବର୍ଷଣ କରି ବ୍ରିଟିଶ ସାମ୍ରାଜ୍ୟର ଶକ୍ତି ପ୍ରତିଷ୍ଠା କଲେ ।

ଏଥିରେ ବି ସମସ୍ୟାର ସମାଧାନ ହେଲା ନାହିଁ । କେତେକ ମାସ ପରେ ସାର ପର୍ସି କକ୍ସ ବାହାର ଦେଖାଣିଆ ଭାବରେ ରାଜା ଓ ମନ୍ତ୍ରୀ କାର୍ଯ୍ୟ କରିବାକୁ ଅନୁମତି

ହେଲେ ଏବଂ ସେମାନେ ବ୍ରିଟେନ ସହିତ ଏକ ସନ୍ଧିପତ୍ର ସ୍ୱାକ୍ଷରରେ ସମ୍ମତ ହେଲେ । ପୁନର୍ବାର ପ୍ରତିଶ୍ରୁତି ଦିଆଗଲା ଯେ, ଇରାକ୍ ସ୍ୱାଧୀନତା ପାଇବାରେ ଇଂଲଣ୍ଡ ତାକୁ ସାହାଯ୍ୟ କରିବ ଏବଂ ଏପରି କି ତାକୁ ଲିଗ୍ ଅଫ୍ ନେସନ୍‌ସର ସଭ୍ୟ କରି ଦେବ । ଏହିସବୁ ସୁନ୍ଦର ଓ ସୁମଧୁର ପ୍ରତିଶ୍ରୁତି ପଶ୍ଚାତରେ ବ୍ରିଟିଶ କର୍ମଚାରୀଙ୍କୁ କିମ୍ବା ବ୍ରିଟିଶ ମନୋନୀତ କର୍ମଚାରୀଙ୍କ ସାହାଯ୍ୟରେ ଶାସନ ଚଳାଇବା ପାଇଁ ଇରାକ୍ ସରକାରକୁ ରାଜି କରାଗଲା । ଲୋକଙ୍କୁ ନ ଜଣାଇ ୧୯୨୨ ଅକ୍ଟୋବର ମାସରେ ଏହି ସନ୍ଧି କରାଗଲା ଏବଂ ସେମାନେ ଏହାକୁ ନିନ୍ଦା କଲେ । ସେମାନେ ଦର୍ଶାଇଲେ ଇରାକ ସରକାର ଏକ କୃତ୍ରିମ ଜିନିଷ ଏବଂ ବ୍ରିଟିଶ କର୍ତ୍ତୃତ୍ୱ ହିଁ ପ୍ରକୃତ କ୍ଷମତାପନ୍ନ ହୋଇ ରହିଛି । ଦେଶର ଭବିଷ୍ୟତ ଶାସନ ଖସଡ଼ା ଗଢ଼ିବା ନିମନ୍ତେ ଯେଉଁ ଜାତୀୟ ଗଣପରିଷଦ ଆହୂତ ହୋଇଥିଲା ତାହାର ନିର୍ବାଚନ ବର୍ଜନ କରିବା ନିମନ୍ତେ ନେତାମାନେ ନିଷ୍ପତ୍ତି କଲେ । ଏହି ଅସହଯୋଗ କୃତକାର୍ଯ୍ୟ ହେଲା ଏବଂ ଆସେମ୍ବ୍ଲି ବସିପାରିଲା ନାହିଁ; ଟିକସ ଆଦାୟରେ ମଧ୍ୟ ଅସୁବିଧା ଓ ଗଣ୍ଡଗୋଳ ହେଲା ।

୧୯୨୩ ସାରା ବର୍ଷକରୁ ଅଧିକ କାଳ ଏହି ଗୋଳମାଳ ଚାଲିଲା । ଶେଷରେ ସନ୍ଧିରେ ଇରାକ୍‌ର କେତେକ ଅନୁକୂଳ ପରିବର୍ତ୍ତନ ହେଲା ଏବଂ କେତେକ ମୁଖ୍ୟ ଆନ୍ଦୋଳନକାରୀଙ୍କୁ ନିର୍ବାସିତ କରାଗଲା । ଆନ୍ଦୋଳନ କମିଗଲା ଏବଂ ୧୯୨୪ ପ୍ରଥମ ଭାଗ ବେଳକୁ ଗଣପରିଷଦକୁ ନିର୍ବାଚନ ହୋଇପାରିଲା । ଏହି ଆସେମ୍ବ୍ଲି ବ୍ରିଟିଶ ସନ୍ଧିର ବିରୋଧ କଲା । ବ୍ରିଟିଶ ଏହା ଉପରେ ଗୁରୁ ଚାପ ପକାଇଲେ ଏବଂ ଶେଷରେ ସଭ୍ୟ ସଂଖ୍ୟାର ଏକତୃତୀୟାଂଶରୁ ଅଳ୍ପ ବେଶୀ ସଭ୍ୟ ସନ୍ଧି ମଞ୍ଜୁର କଲେ—ବହୁସଂଖ୍ୟକ ଡେପୁଟି ଅଧିବେଶନରେ ଯୋଗ ବି ଦେଇ ନ ଥିଲେ ।

ଇରାକ ଲାଗି ଗଣପରିଷଦ ଏକ ନୂତନ ଖସଡ଼ା ତିଆରି କଲା ଏବଂ କାଗଜରେ ଏହା ଭଲ ବୋଲି ମନେ ହେଲା; ଏଥିରେ ଧାର୍ଯ୍ୟ କରାଗଲା ଯେ, ଇରାକ୍ ଏକାଧିପତ୍ୟ ବିସ୍ତାର କରିବ ଏବଂ ସ୍ୱାଧୀନ ମୁକ୍ତ ରାଜ୍ୟ ହେବ—ବଂଶାନୁକ୍ରମେ ଶାସନତାନ୍ତ୍ରିକ ରାଜତନ୍ତ୍ର ଏ ପାର୍ଲିମେଣ୍ଟ ଆକାର ଶାସନ ରହିବ । ପାର୍ଲିମେଣ୍ଟ ଦୁଇଟି ଭିତରୁ ସିନେଟକୁ ରାଜା ମନୋନୀତ କରିବେ । ଏହିରୂପେ ରାଜାଙ୍କର ବହୁତ କ୍ଷମତା ରହିଲା ଏବଂ ରାଜାଙ୍କ ପଛରେ ବ୍ରିଟିଶ କର୍ମଚାରୀ ରହି ଅସଲ ଘାଟିସ୍ଥଳ ସବୁ ଦଖଲ କରି ବସିଲେ । ୧୯୨୫ ମାର୍ଚ୍ଚ ମାସରେ ଏହି ଶାସନ ଖସଡ଼ା କାର୍ଯ୍ୟକାରୀ ହେଲା ଏବଂ କେତେ ବର୍ଷ ପର୍ଯ୍ୟନ୍ତ ନୂତନ ପାର୍ଲିମେଣ୍ଟ ଚାଲିଲା, କିନ୍ତୁ 'ମାଣ୍ଡେଟ' ବିରୁଦ୍ଧରେ ପ୍ରତିବାଦ ଲାଗି ରହିଲା । ଇଂଲଣ୍ଡ ଓ ତୁର୍କି ଭିତରେ ମସୁଲ ଯୋଗେ ବିବାଦ ପ୍ରତି ବହୁ ପରିମାଣରେ ଦୃଷ୍ଟି ଦିଆଗଲା, କାରଣ ଇରାକ୍ ମଧ୍ୟ ଏହି ଅଞ୍ଚଳ ଦାବୀ କରୁଥିଲା । ୧୯୨୬ ଜୁନ୍ ମାସରେ ଏହି ବିବାଦ ନିଷ୍ପତ୍ତି ହେଲା—ଇଂଲଣ୍ଡ, ଇରାକ୍ ଓ ତୁର୍କି ଭିତରେ ମିଳିତ ସନ୍ଧି ହେଲା । ମସୁଲ ଇରାକ୍‌ରେ

ମିଶିଲା ଏବଂ ଇରାକ୍ ବ୍ରିଟିଶ ସାମ୍ରାଜ୍ୟବାଦ ଗ୍ରସ୍ତ ତଳେ ରହିଥିବାରୁ ଏହିରୂପେ ବ୍ରିଟିଶ ସ୍ୱାର୍ଥ ବି ସୁରକ୍ଷିତ ହେଲା ।

୧୯୩୦ ଜୁନ୍‌ରେ ବ୍ରିଟେନ ଓ ଇରାକ ଭିତରେ ମିତ୍ରତା ସ୍ଥାପନର ଆଉ ଏକ ନୂଆ ସନ୍ଧିହେଲା । ପୁନର୍ବାର ଆଭ୍ୟନ୍ତର ଓ ବିଦେଶୀ ବ୍ୟାପାରରେ ଇରାକ୍‌ର ପୂର୍ଣ୍ଣ ସ୍ୱାଧୀନତା ସ୍ୱୀକୃତ ହେଲା । କିନ୍ତୁ 'ହାତର ପାଞ୍ଚ' ଓ ବିଶେଷ ଜିନଷ ସବୁ ଏତେ ରହିଲା ଯେ ଏ ସ୍ୱାଧୀନତାକୁ ଏକ ଲୁକ୍‌କାୟିତ ସଂରକ୍ଷଣରେ ପରିଣତ କଲା । ଭାରତ ରାସ୍ତା ରକ୍ଷା କରିବା ନିମନ୍ତେ ଏବଂ ସନ୍ଧି ଭାଷାରେ ବ୍ରିଟେନର "ଆବଶ୍ୟକୀୟ ଗମନାଗମନ ପଥ" ଲାଗି ଉଡ଼ାଜାହାଜ ଘାଟି ସକାଶେ ଇରାକ୍ ଇଂଲଣ୍ଡକୁ ସ୍ଥାନ ଛାଡ଼ିଦେବ । ବ୍ରିଟେନ୍ ମସୁଲ ଓ ଅନ୍ୟତ୍ର ସେନା ବି ରଖିଲା । ଇରାକ୍ କେବଳ ବ୍ରିଟିଶ ସାମରିକ ଶିକ୍ଷକ ରଖିବ ଏବଂ ଇରାକ୍ ସେନାରେ ବ୍ରିଟିଶ କର୍ମଚାରୀମାନେ ପରାମର୍ଶଦାତା ଭାବରେ କାର୍ଯ୍ୟ କରିବେ । ଅସ୍ତ୍ର ଶସ୍ତ୍ର, ଗୋଲା ବାରୁଦ, ଉଡ଼ାଜାହାଜ ଆଦି ବ୍ରିଟେନରୁ ଆସିବ । ଯୁଦ୍ଧ ଲାଗିଲେ ଶତ୍ରୁ ବିରୁଦ୍ଧରେ ଯୁଦ୍ଧକାଳୀନ ବ୍ୟବସ୍ଥା ଚଳାଇବା ନିମନ୍ତେ ଦେଶ ଭିତରେ ବ୍ରିଟେନ ସବୁ ସୁବିଧା ପାଇବ । ତେଣୁ ମସୁଲ ଚତୁର୍ଦ୍ଦିଗସ୍ଥ ଘାଟି ସ୍ଥଳମାନଙ୍କରୁ ଇଂଲଣ୍ଡ ତୁର୍କି, ପର୍ସିଆ କିମ୍ବା ଆଜରବୈଜାନର ସୋଭିଏଟମାନଙ୍କ ଉପରେ ସହଜରେ ଆକ୍ରମଣ କରିପାରେ ।

ଏହି ସନ୍ଧି ପରେ ୧୯୩୧ରେ ବ୍ରିଟେନ ଓ ଇରାକ ଭିତରେ ଏକ ଜୁଡ଼ିସିଆଲ ଚୁକ୍ତିନାମା ହେଲା—ତାହା ଅନୁସାରେ ଇରାକ ବ୍ରିଟିଶ ଜୁଡ଼ିସିଆଲ ପରାମର୍ଶଦାତା, ଅପୀଲ ଅଦାଲତର ଜଣେ ବ୍ରିଟିଶ ପ୍ରେସିଡେଣ୍ଟ ଓ ବାଗଦାଦ, ବାସରା, ମସୁଲ ଓ ଅନ୍ୟ ସ୍ଥାନମାନଙ୍କରେ ବ୍ରିଟିଶ ପ୍ରେସିଡେଣ୍ଟ ନିଯୁକ୍ତ ପାଇଁ ରାଜିହେଲା ।

ଏହି ସବୁ ବ୍ୟବସ୍ଥା ଛଡ଼ା ବ୍ରିଟିଶ କର୍ମଚାରୀମାନେ ଆହୁରି ଅନେକ ଉଚ୍ଚ ଚାକିରିରେ ରହିଲେ । ତେଣୁ କାର୍ଯ୍ୟତଃ ଏହି "ସ୍ୱାଧୀନ" ଦେଶଟି ବ୍ୟାବହାରିକ ଦୃଷ୍ଟିରେ ଇଂଲଣ୍ଡର ଏକ ସଂରକ୍ଷଣ ଏବଂ ୧୯୩୦ର ଯେଉଁ ମିତ୍ରତା ଚୁକ୍ତି ଅନୁସାରେ ଏହା ହୋଇଥିଲା ତାହା ୨୫ ବର୍ଷ ପର୍ଯ୍ୟନ୍ତ ସ୍ଥାୟୀ ହେବ ।

ଯଦିଓ ୧୯୨୫ରେ ନୂତନ ଶାସନ ଖସଡ଼ା ଗ୍ରହଣ ପରେ ନୂତନ ପାର୍ଲିମେଣ୍ଟ ଚାଲୁ ହେଲା, ଲୋକେ ସନ୍ତୁଷ୍ଟ ହୋଇ ନ ଥିଲେ ଏବଂ ସଂଲଗ୍ନ ସ୍ଥାନମାନଙ୍କରେ ବେଳେ-ବେଳେ ଗଣ୍ଡଗୋଳ ଦେଖାଦେଲା । ବିଶେଷଭାବରେ କୁର୍ଦ୍ଦ ଅଞ୍ଚଳରେ ଏହା ହୋଇଥିଲା—ସେଠାରେ ବାରମ୍ବାର ଗୋଳମାଳ ହେଲା; ବ୍ରିଟିଶ ବିମାନ ବାହିନୀ ଦ୍ୱାରା 'ମୃଦୁ' ବୋମା ବ୍ୟବହାର ଓ ସମଗ୍ର ଗ୍ରାମସବୁ ଧ୍ୱଂସ କରିବାଦ୍ୱାରା ଏହା ସବୁ ଦମନ କରାଗଲା । ୧୯୩୦ ସନ୍ଧି ପରେ ବ୍ରିଟିଶ ଆନୁକୂଲ୍ୟରେ ଇରାକ ଲିଗ୍ ଅଫ୍ ନେସନ୍‌ସର ସଭ୍ୟ ହେବା କଥା ଉଠିଲା । କିନ୍ତୁ ଦେଶରେ ଶାନ୍ତି ନ ଥିଲା ଓ ଗୋଳମାଳ ଲାଗିଥାଏ । ଏହା କିଛି ମାଣ୍ଡେଟସ୍

ଶିଭ ଇଂଲଣ୍ଡ କିମ୍ବା ପ୍ରଚଳିତ ରାଜା ଫୟସଲ ସରକାରର ପ୍ରଶଂସା କଥା ନୁହେଁ । କାରଣ ଏହି ସବୁ ବିଦ୍ରୋହରୁ ପ୍ରମାଣ ହେଉଥିଲା ଯେ ବ୍ରିଟିଶ ଇରାକ ଉପରେ ଯେଉଁ ସରକାର ଲଦିଛି ସେଥିରେ ସେମାନେ ସନ୍ତୁଷ୍ଟ ନୁହନ୍ତି । ଏହି ସବୁ ବ୍ୟାପାର ଯେ ଲୋକରେ ଆଲୋଚିତ ହେବ ଏହା ବାଞ୍ଛନୀୟ ବୋଲି ମନେ କରାଗଲା ନାହିଁ ଏବଂ ତେଣୁ ବଳ ପ୍ରୟୋଗ ଓ ଆତଙ୍କବାଦ ଦ୍ୱାରା ଏହି ସବୁ ଗଣ୍ଡଗୋଳ ଶେଷ କରିବା ନିମନ୍ତେ ବିଶେଷ ଉଦ୍ୟମ ହେଲା । ଏହି ଉଦ୍ଦେଶ୍ୟରେ ବ୍ରିଟିଶ ଆକାଶବାହିନୀ ବ୍ୟବହୃତ ହେଲା ଏବଂ ଜଣେ ଖ୍ୟାତନାମା ଇଂରେଜ କର୍ମଚାରୀଙ୍କ ବର୍ଣ୍ଣନାରୁ ଏହାର ଶାନ୍ତି ଓ ଶୃଙ୍ଖଳା ଆଣିବାର ଉଦ୍ୟମ କେତେକ ପରିମାଣରେ ପରିଦ୍ଧ କରାଯାଇପାରେ । ୧୯୩୨ ଜୁନ ତା ୮ ରିଖରେ ଲଣ୍ଡନରେ ରୟାଲ ଏସିୟାନ ସୋସାଇଟିରେ ବାର୍ଷିକ ବକ୍ତୃତା ଦେଉ ଦେଉ ଲେଫ୍ଟେନାଣ୍ଟ କର୍ଣ୍ଣେଲ ସାର ଆର୍ନଲ୍ଡ଼ ଉଇଲସନ୍ "ଯେପରି ଜିଦ୍ ଧରି ( କେନେବା ଘୋଷଣା ପ୍ରତି ଖାତିର ନ କରି ) ରାଜକୀୟ ଆକାଶବାହିନୀ ଗତ ଦଶ ବର୍ଷ ହେଲା ଏବଂ ବିଶେଷତଃ ଗଲା ୬ ମାସ ହେଲା କୁର୍ଦ୍ଦିର ଲୋକମାନଙ୍କ ଉପରେ ବୋମା ନିକ୍ଷେପ କରୁଛନ୍ତି" ତାହା ଉଲ୍ଲେଖ କରିଥିଲେ । ସେ କହିଥିଲେ, "ଦି ଟାଇମ୍ସ କାଗଜର ସ୍ୱତନ୍ତ୍ର ସମ୍ବାଦଦାତାଙ୍କ ଭାଷାରେ ବିଧ୍ୱସ୍ତ ଗ୍ରାମ, ନିହତ ଗୋରୁ, ବିକଳାଙ୍ଗ ନାରୀ ଓ ପିଲା ଏକ ଏକ ଢଙ୍ଗର ସଭ୍ୟତା ପ୍ରସାରର ସାକ୍ଷୀ ସ୍ୱରୂପ ରହିଛି ।"

ଉଡ଼ାଜାହାଜ ଆସିବା ଦେଖି ଗ୍ରାମର ଲୋକେ ଅନେକ ସମୟରେ ଦୌଡ଼ି ଯାଉଛନ୍ତି ଏବଂ ନିଜକୁ ଲୁଚାଇ ନେଉଛନ୍ତି ଓ ବୋମା ସେମାନଙ୍କୁ ହତ୍ୟା କରିବା ପର୍ଯ୍ୟନ୍ତ ଅପେକ୍ଷା କରୁନାହାନ୍ତି ଦେଖି ଏକ ନୂଆ ପ୍ରକାର ବୋମା ବ୍ୟବହୃତ ହେଲା । ଏହାକୁ ଡେରିରେ ଫୁଟିବା ବୋମା ( Time delayed Bomb ) କହନ୍ତି । ଏହା ପଡ଼ିବା ସାଙ୍ଗେ ସାଙ୍ଗେ ଫୁଟେ ନା, ଏପରି ତିଆରି ହୋଇଥାଏ ଯେ ନିର୍ଦ୍ଦିଷ୍ଟ ସମୟ ପରେ ଫୁଟେ । ଏହି ପୈଶାଚିକ କୌଶଳର ଅର୍ଥ ହେଲା ଉଡ଼ାଜାହାଜ ଚାଲି ଗଲା ପରେ ପରେ ଲୋକେ ନିଜ ଘରକୁ ଫେରି ଆସିଲେ ବୋମା ଫୁଟିଲେ ଆଘାତ ପାଇ ମରିବେ; ଯେଉଁମାନେ ମଲେ ସେମାନେ ଅପେକ୍ଷାକୃତ ଭାଗ୍ୟବାନ । ଯେଉଁମାନେ ବିକଳାଙ୍ଗ ହୋଇଗଲେ, ଅଙ୍ଗ ପ୍ରତ୍ୟଙ୍ଗ ଛିଣ୍ଡିଗଲା ବା ଗୁରୁତର ଆଘାତ ପାଇଲେ, ସେମାନେ ବଡ଼ ଅଭାଗା—କାରଣ ସେହି ସୁଦୂର ଗ୍ରାମରେ କିଛି ଚିକିତ୍ସାର ବ୍ୟବସ୍ଥା ନ ଥିଲା ।

ଏହିରୂପେ ଶାନ୍ତି ଓ ଶୃଙ୍ଖଳା ଫେରାଇ ଅଣାଗଲା ଏବଂ ଇରାକ୍ ସରକାର, ବ୍ରିଟିଶ ଆନୁକୂଲ୍ୟରେ ଲିଗ୍ ଅଫ ନେସନ୍ସରେ ଇରାକକୁ ଉପସ୍ଥାପିତ କରାଗଲା ଏବଂ ଏକ ସଭ୍ୟରୂପେ ତାକୁ ଗ୍ରହଣ କରାଗଲା । ଠିକ୍ ଭାବରେ କୁହାହୋଇଛି ଯେ ଇରାକ୍ ଲିଗ୍ ଭିତରକୁ "ବୋମା" କରାଗଲା ।

ଇରାକ୍ ଲିଗର ଏକ ସଭ୍ୟ-ଦେଶ ହେଲା ପରେ ବ୍ରିଟିଶ "ମାଣ୍ଡେଟ" ଶେଷ ପାଇଗଲା । ଏହା ବଦଳରେ ୧୯୩୦ର ସନ୍ଧି ରହିଲା—ଏଥିରେ ରାଜ୍ୟ ଶାସନରେ ପ୍ରଚୁର ବ୍ରିଟିଶ କର୍ତ୍ତୃତ୍ୱ ରହିଥିଲା । ଏହି ଅବସ୍ଥା ଯୋଗୁଁ ଅସନ୍ତୋଷ ଲାଗି ରହିଛି, କାରଣ ଇରାକ୍‌ର ଲୋକେ ପୂର୍ଣ୍ଣ ସ୍ୱାଧୀନତା ଓ ଆରବ ଜାତିମାନଙ୍କର ଏକତା ଚାହାନ୍ତି । ଲିଗ ଅଫ ନେସନ୍‌ସରେ ସଭ୍ୟପଦ ପାଇବାରେ ସେମାନେ ବେଶୀ ଆଗ୍ରହୀ ନୁହଁନ୍ତି । କାରଣ ସେମାନେ ବିଶ୍ୱାସ କରନ୍ତି ଏବଂ ପ୍ରାଚ୍ୟର ଅଧିକାଂଶ ଅତ୍ୟାଚାରିତ ଲୋକେ ବି ସେହିପରି ମନେକରନ୍ତି ଯେ ନିଜର ଉପନିବେଶ ଓ ଅନ୍ୟ ଉଦ୍ଦେଶ୍ୟ ହାସଲ ନିମନ୍ତେ ପ୍ରଧାନ ଇଉରୋପୀୟ ଶକ୍ତି ସବୁ ହାତରେ ଲିଗ୍ ଏକ ଯନ୍ତ୍ର ପରି ରହିଛି ।*

ଆମେ ଏବେ ଆମର ଆରବ ଦେଶର ଆଲୋଚନା ଶେଷ କରିଛେ । ତୁ ଦେଖି ପାରିବୁ ଭାରତ ଓ ଅନ୍ୟ ପ୍ରାଚ୍ୟ ଦେଶ ପରି ଏସବୁ କିପରି ପୃଥିବୀ ଯୁଦ୍ଧ ପରେ ଜାତୀୟତା ତରଙ୍ଗରେ ପ୍ରବାହିତ ହୋଇଛନ୍ତି । ଏହା ଏକ ବିଦ୍ୟୁତ୍ ଶକ୍ତି ପରି ସମସ୍ତଙ୍କଠାରେ ଏକ ସମୟରେ ଚାଳିତ ହେଲା । ଆଉ ଏକ ଅପୂର୍ବ ଲକ୍ଷଣ ହେଉଛି ଯେପରି ଏକାଭଳି କୌଶଳ ପ୍ରୟୋଗ କରାଗଲା । ଏଥିରୁ ଅନେକ ଦେଶରେ ବିଦ୍ରୋହ ଓ ହିଂସାତ୍ମକ ବିପ୍ଳବସବୁ ହେଲା, କିନ୍ତୁ କ୍ରମେ ସେମାନେ ଅଧିକ ଭାବରେ ଅସହଯୋଗ ଓ ବର୍ଜନ ନୀତି ଉପରେ ନିର୍ଭର କରିବାକୁ ଲାଗିଲେ । ଏଥିରେ ସନ୍ଦେହ ନାହିଁ ଯେ ଏହି ନୂଆ ଧରଣର ପ୍ରତିରୋଧ ୧୯୨୦ରେ ଭାରତରେ ଆରମ୍ଭ ହୋଇଥିଲା—କଂଗ୍ରେସ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱ ଅନୁସରଣ କଲା । ଅସହଯୋଗ ଓ ବ୍ୟବସ୍ଥା ସଭା ବର୍ଜନ ଭାବ ଭାରତରୁ ଅନ୍ୟ ପ୍ରାଚ୍ୟଦେଶମାନଙ୍କରେ ବ୍ୟାପି ଯାଇଛି ଏବଂ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଏକ ସୁପରିଚିତ ଓ ବାରମ୍ବାର ବ୍ୟବହୃତ ପନ୍ଥା ହୋଇ ଯାଇଛି ।

ଇଂରେଜ ଓ ଫରାସୀ ସାମ୍ରାଜ୍ୟବାଦୀ କର୍ତ୍ତୃତ୍ୱ ପନ୍ଥାର ଅତି ମଜାଦାର ପ୍ରଭେଦ ପ୍ରତି ମୁଁ ତୋର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ଇଂଲଣ୍ଡ ତାର ସମସ୍ତ ଉପନିବେଶ ଦେଶରେ ସାମନ୍ତ ଭୂସ୍ୱାମୀ, ଅତ୍ୟନ୍ତ ରକ୍ଷଣଶୀଳ ଓ ଅନୁନ୍ନତ ଶ୍ରେଣୀଙ୍କ ସହ ମିତ୍ରତା ବାନ୍ଧିବାକୁ ଚେଷ୍ଟା କଲା । ଆମେ ଇଜିପ୍ଟ, ଭାରତ ଓ ଅନ୍ୟତ୍ର ଏହା ଦେଖିଲେ । ତାହା ଉପନିବେଶ ଦେଶମାନଙ୍କରେ ଦୁର୍ବଳ ସିଂହାସନ ସବୁ ସୃଷ୍ଟି କଲା ଏବଂ ସେଥିରେ ପ୍ରତିଗାମୀ ଶାସକ ସବୁ ବସାଇଲା—ସେମାନେ ଯେ ତାକୁ ସମର୍ଥନ କରିବେ, ଏହା ଭଲରୂପେ ଜାଣିପାରିଲେ । ଏହିରୂପେ ତାହା ଇଜିପ୍ଟରେ ଫୁଆଡ଼୍, ଇରାକ୍‌ରେ ଫୟୁଜଲ, ଟ୍ରାନ୍‌ସ ଜୋର୍ଡାନରେ ଅବଦୁଲାଙ୍କୁ ବସାଇଲା ଏବଂ ହେଜାଜରେ ହୋସେନଙ୍କୁ ବସାଇବାକୁ ଚେଷ୍ଟା କଲା । ଅନ୍ୟ ପକ୍ଷରେ ଫ୍ରାନ୍‌ସ ଏକ ବିଶେଷ ବୁର୍ଜୋୟା ଦେଶ ଥିବାରୁ

* ୧୯୩୩ ସେପ୍ଟେମ୍ବରରେ ରାଜା ଫୟୁଜଲ ମଲେ—ତାଙ୍କ ପରେ ରାଜା ହେଲେ ତାଙ୍କ ପୁଅ ପ୍ରଥମ ଗାଜୀ । ସେ ୧୯୩୯ରେ ଏକ ଦୁର୍ଘଟଣାରେ ମଲେ ଏବଂ ତା ପରେ ତାଙ୍କ ଶିଶୁ ପୁଅ ରାଜା ହୋଇଛନ୍ତି ।

ଉପନିବେଶ ଦେଶମାନଙ୍କରେ ବୁର୍ଜୋୟାମାନଙ୍କର—ଜାଗ୍ରତ ମଧ୍ୟବିତ୍ତ ଶ୍ରେଣୀର—ସମର୍ଥନ କେତେକ ପାଇବାର ଚେଷ୍ଟା କଲା । ଦୃଷ୍ଟାନ୍ତ ସ୍ୱରୂପ ସିରିଆରେ ତାହା ଖ୍ରୀଷ୍ଟିୟାନ ମଧ୍ୟବିତ୍ତ ଶ୍ରେଣୀର ସମର୍ଥନ ପାଇବାକୁ ଚେଷ୍ଟା କଲା । ଇଂଲଣ୍ଡ ଓ ଫ୍ରାନ୍ସ ଉଭୟେ ତାଙ୍କ ଅଧୀନରେ ଥିବା ସବୁ ଉପନିବେଶ ରାଜ୍ୟରେ ସେମାନଙ୍କୁ ବିରୋଧ କରୁଥିବା ଜାତୀୟତା ଶକ୍ତିକୁ ବିଭକ୍ତ କରିଦେବାରେ ଏବଂ ସଂଖ୍ୟାଲଘୁ, ଜାତିଗତ ଓ ଧର୍ମସମ୍ବନ୍ଧୀୟ ସମସ୍ୟାସବୁ ସୃଷ୍ଟି କରିବାକୁ ପ୍ରଧାନ ନୀତି ସ୍ୱରୂପ ଗ୍ରହଣ କରିଥିଲେ । ଯାହାହେଉ ସମଗ୍ର ପ୍ରାଚ୍ୟରେ ଜାତୀୟତା କ୍ରମେ ଏସବୁ ଭେଦଭାବକୁ ଅତିକ୍ରମ କରି ଯାଉଛି ଏବଂ ଏକ ସାଧାରଣ ଜାତୀୟତା ସମ୍ମୁଖରେ ଧାର୍ମିକ ଗୋଷ୍ଠୀସବୁ ମଧ୍ୟ-ପ୍ରାଚ୍ୟର ଆରବ ଦେଶମାନଙ୍କରେ ଯେପରି ଦୁର୍ବଳ ହୋଇଗଲା, ସମ୍ଭବତଃ ଅନ୍ୟ କୁତ୍ରାପି ସେପରି ହୋଇ ନାହିଁ ।

ମୁଁ ଉପରେ ତୋତେ ଇରାକରେ ବ୍ରିଟିଶ ଆର. ଏ. ଏଫ୍. (ରାଜକୀୟ ବିମାନବାହିନୀ) କାର୍ଯ୍ୟକଳାପ ସମ୍ବନ୍ଧରେ କହିଛି । ଗତ ୧୬ ବର୍ଷ କି ତାର ପାଖାପାଖି ବ୍ରିଟିଶ ଗଭର୍ଣ୍ଣମେଣ୍ଟ ତାର ଅଣ ଉପନିବେଶ ଦେଶମାନଙ୍କରେ 'ପୋଲିସ କାମ' କରିବା ପାଇଁ ଉଡ଼ାଜାହାଜ ବ୍ୟବହାର କରିବା ତାର ନିର୍ଦ୍ଦିଷ୍ଟ ନୀତି ହୋଇଯାଇଛି । ବିଶେଷତଃ ଯେଉଁଠାରେ କେତେକ ପରିମାଣରେ ସ୍ୱାୟତ୍ତ ଶାସନ ଦିଆଯାଇଥାଏ ଏବଂ ଶାସନ ଅଧିକ ପରିମାଣରେ ସ୍ଥାନୀୟ ହୋଇଥାଏ, ସେଠାରେ ଏପରି ଦେଖାଯାଏ । ଦଖଲ କରିବା ସେନା (Armies of Occupation) ଏବେ ସାଧାରଣତଃ ଏ ସବୁ ଦେଶରେ ରହନ୍ତି ନାହିଁ କିମ୍ବା ସେମାନଙ୍କ ସଂଖ୍ୟା ବହୁତ କମାଇ ଦିଆଯାଏ । ଏଥିରେ ଅନେକ ସୁବିଧା ରହିଛି । ପ୍ରଚୁର ପରିମାଣରେ ଅର୍ଥ ରକ୍ଷା ହୋଇଯାଏ ଏବଂ ଦେଶରେ ସାମରିକ ଦଖଲ କମ୍ ପରିଲକ୍ଷିତ ହୁଏ । ଏହା ସଙ୍ଗେ ସଙ୍ଗେ ଉଡ଼ାଜାହାଜ ଓ ବୋମା ସାହାଯ୍ୟରେ ସେମାନେ ପରିସ୍ଥିତିକୁ ପୂର୍ଣ୍ଣ ଆୟତ୍ତରେ ରଖନ୍ତି । ଏହିରୂପେ ସ୍ୱାଧୀନ ଅଞ୍ଚଳମାନଙ୍କରେ ଉଡ଼ାଜାହାଜରୁ ବୋମା ବର୍ଷଣ ବହୁତ ବଢ଼ିଯାଇଛି ଏବଂ ଅନ୍ୟ କାହା ଅପେକ୍ଷା ବୋଧହୁଏ ବ୍ରିଟିଶ ଏହା ବେଶି ବ୍ୟବହାର କରନ୍ତି । ମୁଁ ତତେ ଇରାକ ବିଷୟରେ କହିଛି । ଭାରତର ଉତ୍ତର ପଶ୍ଚିମ ସୀମାନ୍ତରେ ସେହି କାହାଣୀ ଦେଖାଯାଏ—ସେଠି ଏ ପ୍ରକାର ବୋମାବର୍ଷଣ ଏକ ବିଧିବଦ୍ଧ ଓ ବରାବର ଘଟଣା ହୋଇଗଲାଣି ।

ପୁରୁଣା ସେନା ପଠାଇବା ପନ୍ଥା ଅପେକ୍ଷା ଏହା ଅଧିକ ଶସ୍ତା ଓ ଦ୍ରୁତ ହୋଇପାରେ । କିନ୍ତୁ ଏହା ଅତ୍ୟନ୍ତ କ୍ରୂର ଓ ପୈଶାଚିକ ପ୍ରଣାଳୀ । ବାସ୍ତବିକ ବୋମା ବର୍ଷଣ ଏବଂ ବିଶେଷତଃ (Time dalayed) ଡେରିରେ ଫୁଟିବା ବୋମା ବର୍ଷଣ ଅପେକ୍ଷା ଆଉ ବିରକ୍ତିସୂଚକ ବର୍ବର ପନ୍ଥା ଅନୁମାନ କରାଯାଇପାରେ ନା । ଏହା ସମଗ୍ର ଗ୍ରାମରେ ନିକ୍ଷେପ କରାଯାଏ ଏବଂ ଦୋଷୀ ଓ ନିର୍ଦ୍ଦୋଷ ସମସ୍ତଙ୍କୁ ଏକାପରି ହତ୍ୟା କରେ । ଏହି ଉପାୟ ଅନୁସାରେ ଏକ ଦେଶ ପକ୍ଷରେ ଅନ୍ୟ ଦେଶ ଆକ୍ରମଣ କରିବା ଅତି ସହଜ

ହୋଇପାରେ । ତେଣୁ ଏହା ବିରୁଦ୍ଧରେ ଗୋଟାଏ ଚିତ୍କାର ଉଠିଛି ଏବଂ ଉଡ଼ାଜାହାଜରୁ ବେସାମରିକ ଲୋକଙ୍କୁ ଆକ୍ରମଣ କରିବାର ବର୍ବରତା ବିରୁଦ୍ଧରେ ଜେନେଭାରେ ଲିଗ୍ ଅଫ୍ ନେସନ୍‌ସରେ ଜ୍ୱାଳାମୟୀ ଭାଷଣମାନ ହୁଏ । ସଂଯୁକ୍ତ ରାଷ୍ଟ୍ର ସମେତ ସବୁ ଜାତି ଆକାଶବୋମା ବର୍ଷଣ ପ୍ରଥା ଉଠାଇଦେବା ସପକ୍ଷରେ ମତ ଦେଇଥିଲେ । କିନ୍ତୁ ଉପନିବେଶମାନଙ୍କରେ "ପୁଲିସ ଉଦ୍ଦେଶ୍ୟ" (ଜଗୁଆଳୀ କାର୍ଯ୍ୟ)ରେ ଉଡ଼ାଜାହାଜ ବ୍ୟବହାର କରିବା ଅଧିକାର ରକ୍ଷା କରିବା ବିଷୟରେ ବ୍ରିଟିଶ ଜୋର ଦେଲେ ଏବଂ ଏହି ହେତୁ ଲିଗ୍ ଏବଂ ୧୯୩୩ରେ ଯେଉଁ ନିରସ୍ତ୍ରୀକରଣ ସମ୍ମିଳନୀ ହେଲା, ସେଥିରେ କୌଣସି ରାଜିନାମା ହୋଇପାରିଲା ନାହିଁ ।

## ୧୭୦ : ଆଫଗାନିସ୍ଥାନ ଓ ଏସିଆର ଅନ୍ୟ କେତେକ ଦେଶ

ଜୁନ ୮, ୧୯୩୩

ଇରାକ୍ ପୂର୍ବକୁ ଇରାନ ବା ପର୍ସିଆ ଏବଂ ପର୍ସିଆ ପୂର୍ବ ଦିଗକୁ ଆଫଗାନିସ୍ଥାନ ଅବସ୍ଥିତ । ଉଭୟେ ପର୍ସିଆ ଓ ଆଫଗାନିସ୍ଥାନ ଭାରତର ପଡ଼ୋଶୀ, କାରଣ ପର୍ସିଆର ସୀମାନ୍ତ କେତେ ଶହ ମାଇଲ ପର୍ଯ୍ୟନ୍ତ ଭାରତକୁ (ବେଲୁଚିସ୍ଥାନରେ) ସ୍ପର୍ଶ କରେ ଏବଂ ବେଲୁଚିସ୍ଥାନର ସୁଦୂର ପଶ୍ଚିମ ଅଂଶରୁ ହିନ୍ଦୁକୁଶର ଉତ୍ତରାଞ୍ଚଳ ପର୍ବତ ପର୍ଯ୍ୟନ୍ତ ୧୦୦୦ ମାଇଲ ଯାଏଁ ଭାରତ ଓ ଆଫଗାନିସ୍ଥାନ ପାଖାପାଖି ରହିଛନ୍ତି । ଏଠାରେ ମଧ୍ୟଏସିଆର ହୃଦୟ ଭିତରେ ଭାରତ ତାହାର ବରଫାଚ୍ଛାଦିତ ମସ୍ତକ ରଖେ ଏବଂ ସୋଭିଏଟ ରାଜ୍ୟପ୍ରତି ଦୃଷ୍ଟି ପକାଏ । ଏହି ତିନୋଟି ଦେଶ ଯେ କେବଳ ପଡ଼ୋଶୀ, ତାହା ନୁହେଁ, ଜାତିଗତ ଭାବରେ ମଧ୍ୟ ଏକାପରି, କାରଣ ସବୁଠାରୁ ଆର୍ଯ୍ୟ ବଂଶ ହିଁ ପ୍ରାଧାନ୍ୟ କରିଛି । ଆମେ ଦେଖିଛେ ସଂସ୍କୃତି ଦୃଷ୍ଟିରେ ଅତୀତରେ ସେମାନଙ୍କ ଭିତରେ ବହୁତ ସାମଞ୍ଜସ୍ୟ ଥିଲା । ନିକଟ ପର୍ଯ୍ୟନ୍ତ ଉତ୍ତର ଭାରତରେ ବିଦ୍ୱାନ ଲୋକଙ୍କର ଭାଷା ଥିଲା ପାର୍ସି ଏବଂ ଆଜି ମଧ୍ୟ ଏହା ବିଶେଷ ଭାବରେ ମୁସଲମାନମାନଙ୍କ ଭିତରେ ଆଦରଣୀୟ । ଆଫଗାନିସ୍ଥାନରେ ପାର୍ସି ଏବେ ଦୁଇଟା କଚେରୀ ଭାଷା ହୋଇ ରହିଛି—ଅଫଗାନିସ୍ଥାନର ପ୍ରଚଳିତ ଭାଷା ହେଉଛି ପୁସ୍ତୁ ( Pushtu ) ।

ପର୍ସିଆ ସମ୍ବନ୍ଧରେ ମୁଁ ପୂର୍ବ ଚିଠିଗୁଡ଼ିକରେ ତୋତେ ଯାହା କହିଛି ସେଥିରେ ଆଉ ଯୋଗ କରିବାକୁ ଚାହେଁ ନା । କିନ୍ତୁ ଆଫଗାନିସ୍ଥାନର ଆଧୁନିକ ଘଟଣାବଳୀ

ଉଲ୍ଲେଖଯୋଗ୍ୟ । ଆଫଗାନ୍ ଇତିହାସ ପ୍ରାୟ ଭାରତ ଇତିହାସର ଏକ ଅଂଶ, ବାସ୍ତବିକ ଦୀର୍ଘକାଳ ପର୍ଯ୍ୟନ୍ତ ଆଫଗାନିସ୍ଥାନ ଭାରତର ଅଂଶରୂପେ ଥିଲା । ଏହା ପୃଥକ୍ ହେଲାପରୁ ଏବଂ ବିଶେଷତଃ ଗଲା ୧୦୦ ବର୍ଷ ବା ଅଧିକ କାଳ ହେଲା ଏହା ରୁଷ ଓ ଇଂଲଣ୍ଡ ଦୁଇଟି ବଡ଼ ସାମ୍ରାଜ୍ୟ ମଧ୍ୟରେ ଏକ ମଧ୍ୟବର୍ତ୍ତୀ ( Buffer ) ରାଜ୍ୟ ହୋଇ ରହିଛି । ରୁଷ ସାମ୍ରାଜ୍ୟ ଯାଇଛି ଏବଂ ତା ସ୍ଥଳରେ ସୋଭିଏଟ୍ ଇଉନିୟନ କାଏମ୍ ହୋଇଛି, କିନ୍ତୁ ଆଫଗାନିସ୍ଥାନ ସେହିପରି ମଧ୍ୟବର୍ତ୍ତୀ ଦେଶ ହୋଇ ରହିଛି । ଏଠି ଇଂରେଜ ଓ ରୁଷୀୟ ଲୋକେ ଚକ୍ରାନ୍ତ କରନ୍ତି ଏବଂ ପ୍ରଭୁତ୍ୱ ପାଇବାକୁ ଚେଷ୍ଟା କରନ୍ତି । ୧୯ଶ ଶତାବ୍ଦୀରେ ଏହି ସବୁ ଚକ୍ରାନ୍ତ ବୃଦ୍ଧି ପାଇ ଇଂଲଣ୍ଡ ଓ ଆଫଗାନିସ୍ଥାନ ଭିତରେ ଯୁଦ୍ଧ ଲାଗିଲା । ଏଥିରେ ବ୍ରିଟିଶ ବଡ଼ କ୍ଷତିଗ୍ରସ୍ତ ହେଲା, କିନ୍ତୁ ଶେଷରେ ବ୍ରିଟିଶର ପ୍ରାଧାନ୍ୟ ରହିଲା । ଅନେକ ଆଫଗାନ ଅଲ୍ପଖଣ ବନ୍ଦୀ । ଆଫଗାନ ରାଜ ପରିବାରର ଲୋକ ଏବେ ଉତ୍ତର-ଭାରତରେ ବିକ୍ଷିପ୍ତ ହୋଇ ରହିଛନ୍ତି ଏବଂ ସେଥିରୁ ଇଂଲଣ୍ଡର ଆଫଗାନିସ୍ଥାନରେ ହସ୍ତକ୍ଷେପ କରିବା ବିଷୟ ସ୍ମରଣ ହୁଏ । ବ୍ରିଟିଶ ସହ ବନ୍ଧୁ-ଭାବାପନ୍ନ ଅମୀର ସବୁ ଶାସନ କରିବାକୁ ଆସିଲେ ଏବଂ ଆଫଗାନିସ୍ଥାନର ବୈଦେଶିକ ନୀତି ନିର୍ଦ୍ଦିଷ୍ଟ ରୂପେ ବ୍ରିଟିଶ କର୍ତ୍ତୃତ୍ୱାଧୀନରେ ରହିଲା । କିନ୍ତୁ ଏହି ଅମୀରମାନେ ଯେତେ ବନ୍ଧୁ ହେଲେ ସୁଦ୍ଧା ସେମାନଙ୍କ ଉପରେ ନିର୍ଭର କରାଯାଇପାରେ ନା ଏବଂ ବ୍ରିଟିଶ ସେମାନଙ୍କୁ ବହୁ ପରିମାଣରେ ବାର୍ଷିକ ଅର୍ଥ ସାହାଯ୍ୟ ଦିଅନ୍ତି । ଅମୀର ଅବଦୁର ରହମନ ଏହିପରି ଜଣେ ଲୋକ—ତାଙ୍କର ଦୀର୍ଘକାଳ ରାଜୁତି ଥିଲା—୧୯୦୧ରେ ଏହା ଶେଷ ପାଇଲା । ତାଙ୍କ ପରେ ହେଲେ ଅମୀର ହବିବୁଲା, ସେ ମଧ୍ୟ ବ୍ରିଟିଶଙ୍କ ପ୍ରତି ଚଳିଥିଲେ ।

ଆଫଗାନିସ୍ଥାନର ଭାରତରେ ବ୍ରିଟିଶ ଉପରେ ନିର୍ଭର କରିବାର ଏକ କାରଣ ହେଉଛି ଦେଶର ଅବସ୍ଥିତି । ତୁ ମାନଚିତ୍ରରେ ଦେଖି ପାରିବୁ ଏହା ବେଲୁଚିସ୍ଥାନ ଦ୍ୱାରା ସମୁଦ୍ରରୁ ବିଚ୍ଛିନ୍ନ । ସୁତରାଂ ଏ ଦେଶରେ ଅନ୍ୟ ଦେଶର ମାଟି ନ ମାଡ଼ିଲେ ବଡ଼ ରାଜପଥ ସହି ସଂଯୋଗ କରିବା ନିମନ୍ତେ ଆଉ ବାଟ ନାହିଁ ଏବଂ ଏହା ଏକ କଷ୍ଟକର ବ୍ୟାପାର । ବାହାର ଜଗତ ସହିତ ସମ୍ବନ୍ଧ ରଖିବା ନିମନ୍ତେ ଭାରତ ଜରିଆରେହିଁ ଗୋଟିଏ ରାସ୍ତା ତାର ଅଛି । ଆଫଗାନିସ୍ଥାନ ଉତ୍ତରକୁ ରୁଷ ରାଜ୍ୟରେ ସେତେବେଳେ ଉପଯୁକ୍ତ ଯାତାୟାତ ପଥ ନ ଥିଲା । ମୋର ବିଶ୍ୱାସ ରେଲଓ୍ୱେ ନିର୍ମାଣ କରି ଏବଂ ଆକାଶ ଓ ମଟର ସର୍ଭିସକୁ ଉତ୍ସାହିତ କରି ସୋଭିଏଟ୍ ସରକାର ଏବେ ଯାତାୟାତ ପଥ ଉନ୍ନତ କରିଛି । ଆଫଗାନିସ୍ଥାନ ପକ୍ଷରେ ଏହି ରୂପେ ଭାରତହିଁ ଜଗତ ସହିତ ସମ୍ବନ୍ଧ ଲାଗି ଦୁଆରମୁହଁ ହୋଇ ଥିବାରୁ ଅନେକ ପ୍ରକାରେ ଚାପ ପକାଇ ବ୍ରିଟିଶ ସରକାର ଏହାର ପୂର୍ଣ୍ଣ ସୁବିଧା ହାସଲ କରିବା ନିମନ୍ତେ ଚେଷ୍ଟା କରିଛି । ସମୁଦ୍ରକୁ ପଥ ପାଇବାର ସୁବିଧା ଏବେ ସୁଦ୍ଧା ଦେଶ ସମ୍ମୁଖରେ ଏକ ପ୍ରଧାନ ସମସ୍ୟା ହୋଇରହିଛି ।

୧୯୧୯ ପ୍ରଥମ ଭାଗରେ ଉପରେ ଆଫଗାନ ରାଜଦରବାରର ପ୍ରତିଦ୍ୱନ୍ଦ୍ୱିତା ଓ

ଚନ୍ଦ୍ରାନ୍ତ ଭାଙ୍ଗି ପଡ଼ିଲା ଏବଂ ପରେ ପରେ ଦୁଇଟି ରାଜପ୍ରାସାଦ ବିପ୍ଳବ ହୋଇଗଲା । ଅନ୍ତରାଳରେ କଣ ହେଉଥିଲା ଏବଂ ଏହି ସବୁ ପରିବର୍ତ୍ତନ ପାଇଁ କିଏ ଦାୟୀ ଥିଲା, ତାହା ମୁଁ ଠିକ୍ ଭାବରେ ଜାଣେ ନା । ଅମୀର ହବିବୁଲାଙ୍କୁ ହତ୍ୟାକରାଗଲା ଏବଂ ତାଙ୍କ ଭାଇ ନସରୁଲ୍ଲା ଅମୀର ହେଲେ; କିନ୍ତୁ ଖୁବ୍ ଶୀଘ୍ର ନସରୁଲ୍ଲାଙ୍କୁ ତଡ଼ି ଦିଆଗଲା ଏବଂ ହବିବୁଲାଙ୍କର ସାନ ପୁଅ ଅମାନୁଲ୍ଲା ଅମୀର ହେଲେ । ସେ ୧୯୧୯ ମେ ମାସ ପର୍ଯ୍ୟନ୍ତ ଭାରତ ଉପରେ ଛୋଟ ଛୋଟ ଅକ୍ରମଣ ଚଳାଇଲେ । ପ୍ରକୃତରେ ଜରୁରୀ ଉତ୍ତେଜନା କାହିଁକି ହେଲା ବା କିଏ ଆଗରୁ ବାହାରି ପଡ଼ିଲା ମୁଁ ଜାଣେ ନା । ସମ୍ଭବତଃ ଅମାନୁଲ୍ଲା ବ୍ରିଟିଶ ଉପରେ କୌଣସି ପ୍ରକାର ନିର୍ଭର କରିବାରେ ଅସନ୍ତୋଷ ପ୍ରକାଶ କଲେ ଏବଂ ନିଜ ଦେଶରେ ପୂର୍ଣ୍ଣ ସ୍ୱାଧୀନତା ସ୍ଥାପନ କରିବାକୁ ଚାହୁଁଥିଲେ । ଆହୁରି ମଧ୍ୟ ବୋଧହୁଏ ସେ ଭାବିଲେ ସେଥିପାଇଁ ଅବସ୍ଥା ଅନୁକୂଳ ଅଛି । ତୋର ମନେଥିବ ସେତେବେଳେ ପଞ୍ଜାବରେ ସାମରିକ ଆଇନ ଜାରି ଥିଲା ଏବଂ ଭାରତରେ ଅସନ୍ତୋଷ ଥିଲା ଏବଂ ଖିଲାଫତ୍ ପ୍ରଶ୍ନ ଯୋଗୁ ମୁସଲମାନମାନଙ୍କ ଭିତରେ ଆନ୍ଦୋଳନ ବୃଦ୍ଧି ପାଉଥିଲା । ଯାହା କାରଣ ଓ ପ୍ରବର୍ତ୍ତନା ଥାଉ ପଛକେ, ବ୍ରିଟିଶସହ ଆଫଗାନ୍ ଯୁଦ୍ଧ ଏହା ଫଳରେ ହେଲା; କିନ୍ତୁ ଏହି ଯୁଦ୍ଧ ଅଳୌକିକ ଭାବରେ ଅଳ୍ପ ଦିନ ପାଇଁ ହୋଇଥିଲା ଏବଂ ବିଶେଷ କିଛି ଲଢ଼ାଇ ହୋଇ ନ ଥିଲା । ସାମରିକ ଅର୍ଥରେ ଅବଶ୍ୟ ଭାରତରେ ବ୍ରିଟିଶ ଅମାନୁଲ୍ଲା ଅପେକ୍ଷା ଅଧିକ ଦୃଢ଼ ଥିଲେ । କିନ୍ତୁ ସେମାନଙ୍କର ଯୁଦ୍ଧ କରିବା ମନୋବୃତ୍ତି ନ ଥିଲା ଏବଂ କେତେକ ଛୋଟ ଘଟଣାରେ ସେମାନେ ଆଫଗାନମାନଙ୍କ ସହ ସନ୍ଧି ବାନ୍ଧିଲେ । ଫଳ ସ୍ୱରୂପ ଏକ ସ୍ୱାଧୀନ ଦେଶ ରୂପେ ଅଫଗାନିସ୍ଥାନକୁ ସ୍ୱୀକାର କରାଗଲା । ଅନ୍ୟ ଦେଶମାନଙ୍କ ସହ ବୈଦେଶିକ ସମ୍ବନ୍ଧରେ ଏହାର ପୂର୍ଣ୍ଣ ଦାୟିତ୍ୱ ରହିଲା । ଏହି ରୂପେ ଅମାନୁଲ୍ଲା ତାଙ୍କ ଉଦ୍ଦେଶ୍ୟ ହାସଲ କଲେ ଏବଂ ୟୁରୋପ ଓ ଏସିଆ ସର୍ବତ୍ର ତାଙ୍କର ସମ୍ମାନ ବଢ଼ିଗଲା । ସ୍ୱାଭାବିକ ଭାବରେ ବ୍ରିଟିଶ ତାଙ୍କୁ ପସନ୍ଦ କରୁ ନଥିଲେ ।

ଅମାନୁଲ୍ଲା ତାଙ୍କ ଦେଶରେ ଯେଉଁ ନୂତନ ନୀତି ଗ୍ରହଣ କଲେ ସେଥିରେ ତାଙ୍କ ପ୍ରତି ଅଧିକ ଦୃଷ୍ଟି ଆକୃଷ୍ଟ ହେଲା । ପାଶ୍ଚାତ୍ୟରୀତିରେ ଶୀଘ୍ର ସଂସ୍କାର ଉଦ୍ୟମ କଲେ— ଏହାକୁ "ପାଶ୍ଚାତ୍ୟକରଣ" ବୋଲି କୁହାଯାଏ । ଏହି କାର୍ଯ୍ୟରେ ତାଙ୍କୁ ତାଙ୍କର ସ୍ତ୍ରୀ ରାଣୀ ସୋରାୟା ଖୁବ୍ ସାହାଯ୍ୟ କରିଥିଲେ । ସେ ଆଂଶିକ ଭାବରେ ୟୁରୋପରେ ଶିକ୍ଷା ପାଇଥିଲେ ଏବଂ ପରଦା ଅନ୍ତରାଳରେ ନାରୀମାନେ ଆବଦ୍ଧ ରହିବାଟାରେ ସେ ଦୁଃଖିତ ହେଲେ । ଏହି ରୂପେ ଅତିଶୀଘ୍ର ଏକ ଅତି ଅନୁନ୍ନତ ଦେଶକୁ ଅଦ୍ଭୁତରୀତିରେ ପରିବର୍ତ୍ତନ କରିବା ଆରମ୍ଭ ହେଲା—ଆଫଗାନମାନଙ୍କୁ ତାଙ୍କର ପୁରୁଣା ରାସ୍ତାରୁ ନୂତନ ପଥକୁ ଧକ୍କା ମାରି ଚଲାଇ ନେବାର ଚେଷ୍ଟା ଚାଲିଲା । ମୋସ୍ତାଫା କେମାଲ୍ ପାଶା ଅମାନୁଲ୍ଲାଙ୍କର ଆଦର୍ଶ ଥିଲେ ଏବଂ ସେ ଅନେକ ବିଷୟରେ ତାଙ୍କୁ ଅନୁକରଣ କରିବାକୁ ଲାଗିଲେ— ଏପରିକି ଆଫଗାନମାନଙ୍କୁ କୋଟ, ପାଇଜାମା ଓ ସାହେବୀ ଟୋପି ପିନ୍ଧାଇଲେ ଏବଂ

ଦାଢ଼ୀ ସବୁ ଖିଅର ହେବା ନିମନ୍ତେ କହିଲେ । କିନ୍ତୁ ଅମାନୁଲ୍ଲାଙ୍କଠାରେ ମୋସ୍ତାଫା କେମାଲଙ୍କର ଦକ୍ଷତା ବା ତେଜ ନ ଥିଲା । କେମାଲ ପାଶା ତାଙ୍କର ସର୍ବବ୍ୟାପୀ ସଂସ୍କାର ଆରମ୍ଭ କରିବା ପୂର୍ବରୁ ଆନ୍ତର୍ଜାତିକ ଓ ରାଷ୍ଟ୍ରୀୟ ଭାବରେ ନିଜ ଅବସ୍ଥିତିକୁ ସମ୍ପୂର୍ଣ୍ଣ ନିରାପଦ କରିଥିଲେ । ତାଙ୍କ ପଶ୍ଚାତ୍ତରେ ଏକ ସୁଦକ୍ଷ ଓ କଷ୍ଟଭୋଗୀ ସେନା ଥିଲେ ଏବଂ ଲୋକଙ୍କ ପାଖରେ ଅଦ୍ଭୁତ ସମ୍ମାନ ତାଙ୍କର ଥିଲା । ଏହି ସବୁ କଥା ଆଗରୁ ଯତ୍ନ ନ କରି ଅମାନୁଲ୍ଲା ଆଗକୁ ଚାଲିଲେ ଏବଂ ତାଙ୍କର କାର୍ଯ୍ୟ ଆହୁରି କଠିନ ହେଲା; କାରଣ ତୁର୍କି ଅପେକ୍ଷା ଆଫଗାନମାନେ ଆହୁରି ଅନୁନ୍ନତ ଥିଲେ ।

କିନ୍ତୁ ଘଟଣା ପରେ ଜାଣି ହେବା ସହଜ । ତାଙ୍କ ରାଜତ୍ୱର ପ୍ରଥମ ଭାଗରେ ଅମାନୁଲ୍ଲା ସବୁ ଜିନିଷରେ ସଫଳତା ଲାଭ କଲା ପରି ମନେହେଲା । ସେ ଶିକ୍ଷା ପାଇବା ପାଇଁ ଅନେକ ଆଫଗାନ ବାଲକ ବାଳିକାଙ୍କୁ ୟୁରୋପ ପଠାଇଲେ । ସେ ଶାସନରେ ବହୁତ ସଂସ୍କାର ଆରମ୍ଭ କରିଦେଲେ । ସେ ନିଜର ପଡ଼ୋଶୀ ଓ ତୁର୍କିସହ ସନ୍ଧି କରି ନିଜର ଆନ୍ତର୍ଜାତିକ ଅବସ୍ଥା ଦୃଢ଼ କଲେ । ଚୀନରୁ ତୁର୍କି ପର୍ଯ୍ୟନ୍ତ ସବୁ ପ୍ରାଚ୍ୟ ଦେଶ ପ୍ରତି ସୋଭିଏଟ୍‌ମାନେ ଜାଣିଶୁଣି ଉଦାର ଓ ବନ୍ଧୁଭାବାପନ୍ନ ନୀତି ଅନୁସରଣ କରିଥିଲେ ଏବଂ ବିଦେଶୀ କର୍ତ୍ତୃତ୍ୱରୁ ତୁର୍କି ଓ ପର୍ସିଆକୁ ମୁକ୍ତ କରିବାରେ ସୋଭିଏଟ ବନ୍ଧୁତା ଓ ସାହାଯ୍ୟ ଗୋଟାଏ ବଡ଼ ଜିନିଷ ହୋଇଥିଲା । ୧୯୧୯ରେ ଅମାନୁଲ୍ଲା ଇଂଲଣ୍ଡ ସହିତ କରିଥିବା ଗ୍ରେଟ ଯୁଦ୍ଧରେ ନିଜର ଉଦ୍ଦେଶ୍ୟ ସାଧିବା—ଏହା ଏକ ଗୁରୁତର ଜିନିଷ ହୋଇଥିବ । ପରବର୍ତ୍ତୀ ବର୍ଷମାନଙ୍କରେ ସୋଭିଏଟ୍ ରୁଷ୍, ତୁର୍କି, ପର୍ସିଆ ଓ ଆଫଗାନସ୍ଥାନ—ଏହି ଚାରି ଦେଶ ଭିତରେ ବହୁ ସଂଖ୍ୟକ ସନ୍ଧି ଓ ମିତ୍ରତା ହେଲା । ସେମାନଙ୍କ ଭିତରେ ଏକାଠି ମିଳିତ ଭାବରେ କିମ୍ବା ସେମାନଙ୍କ ଭିତରୁ କୌଣସି ତିନୋଟି ଦେଶ ଭିତରେ କିଛି ସନ୍ଧି ନଥିଲା । ଏହି ରୂପେ ମଧ୍ୟପ୍ରାଚ୍ୟର ସକଳ ଦେଶର ଅବସ୍ଥା ଦୃଢ଼ କରି ଏକ ସନ୍ଧି-ଜାଲ ବିସ୍ତାର କରାହେଲା । ମୁଁ ତଳେ ତାରିଖ ସହ ଏହି ସବୁ ସନ୍ଧିର ଏକ ତାଲିକା ଦେବି—

| | | | |
|---|---|---|---|
| ତୁର୍କି—ଆଫଗାନ | ସନ୍ଧି······ | ଫେବୃଆରୀ | ୧୯, ୧୯୨୧ |
| ସୋଭିଏଟ୍—ତୁର୍କି | ,,······ | ଡିସେମ୍ବର | ୧୭, ୧୯୨୫ |
| ତୁର୍କି – ପର୍ସିଆ | ,,······ | ଏପ୍ରିଲ | ୨୨, ୧୯୨୬ |
| ସୋଭିଏଟ୍—ଆଫଗାନ | ,,······ | ଅଗଷ୍ଟ | ୩୧, ୧୯୨୬ |
| ସୋଭିଏଟ୍—ପର୍ସିଆନ | ,,······ | ଅକ୍ଟୋବର | ୧, ୧୯୨୭ |
| ପର୍ସିଆ—ଆଫଗାନ | ,,······ | ନଭେମ୍ବର | ୨୮, ୧୯୨୭ |

ଏହି ସନ୍ଧି ହେବା ଦ୍ୱାରା ସୋଭିଏଟ୍ କୂଟନୀତି ସାଫଲ୍ୟ ଲାଭ କଲା ଏବଂ ମଧ୍ୟ ପ୍ରାଚ୍ୟରେ ବ୍ରିଟିଶ ପ୍ରଭାବ ଉପରେ ଦାରୁଣ ଆଘାତ ହେଲା । କହିବା

ଅନାବଶ୍ୟକ ଯେ ବ୍ରିଟିଶ ସରକାର ଏଗୁଡ଼ିକୁ ବଡ଼ ନାପସନ୍ଦ କଲା ଏବଂ ବିଶେଷ ଭାବରେ ଅମାନୁଲ୍ଲାଙ୍କ ସୋଭିଏଟ ରୁଷସହ ବନ୍ଧୁତା ଓ ସେହି ଭାବାପନ୍ନ ହେବାଟାକୁ ବଡ଼ ନାପସନ୍ଦ କଲା ।

୧୯୨୮ ପ୍ରଥମ ଭାଗରେ ଅମାନୁଲ୍ଲା ଓ ରାଣୀ ସୋରାୟା ୟୁରୋପରେ ବିରାଟ ଭ୍ରମଣ ନିମନ୍ତେ ଆଫଗାନିସ୍ଥାନ ଛାଡ଼ିଲେ । ସେ ଅନେକ ୟୁରୋପ ଦେଶର ରାଜଧାନୀ ରୋମ୍, ପ୍ୟାରିସ୍, ଲଣ୍ଡନ, ବର୍ଲିନ ଓ ମସ୍କୋ ଗଲେ ଏବଂ ପ୍ରତ୍ୟେକ ସ୍ଥାନରେ ତାଙ୍କୁ ବିପୁଳ ଅଭ୍ୟର୍ଥନା କରାଯାଇଥିଲା । ଏହି ସବୁ ଦେଶ ବେପାର ଓ ରାଜନୀତିକ ଉଦ୍ଦେଶ୍ୟରେ ଅମାନୁଲ୍ଲାଙ୍କୁ ହାତ କରିବା ପାଇଁ ବଡ଼ ବ୍ୟଗ୍ର ଥିଲେ । ତାଙ୍କୁ ମୂଲ୍ୟବାନ ଉପହାର ସବୁ ମଧ୍ୟ ଦିଆଗଲା । କିନ୍ତୁ ସେ କୂଟନୀତିଜ୍ଞ ଭାବରେ କାର୍ଯ୍ୟ କଲେ ଓ କୌଣସି କଥାରେ ସ୍ଥିର କଥା ଦେଇ ଆସି ନ ଥିଲେ । ଫେରିବା ବାଟରେ ସେ ତୁର୍କି ଓ ପର୍ସିଆ ଯାଇଥିଲେ ।

ତାଙ୍କର ଦୀର୍ଘ ଭ୍ରମଣଟା ଖୁବ୍ ଦୃଷ୍ଟି ଆକର୍ଷଣ କଲା । ଏହା ଅମାନୁଲ୍ଲାଙ୍କର ମର୍ଯ୍ୟାଦା ବୃଦ୍ଧିକଲା ଏବଂ ପୃଥିବୀରେ ଆଫଗାନିସ୍ଥାନର ଗୁରୁତ୍ୱ ବହୁ ପରିମାଣରେ ବୃଦ୍ଧି ହେଲା । କିନ୍ତୁ ଆଫଗାନିସ୍ଥାନର ଭିତର ଅବସ୍ଥା ଠିକ୍ ନ ଥିଲା । ବଡ଼ ବଡ଼ ପରିବର୍ତ୍ତନ ଦ୍ୱାରା ଜୀବନର ପୁରୁଣା କାର୍ଯ୍ୟକ୍ରମ ସବୁ ଓଲଟ ପାଲଟ ହେଉଥିବା ଭିତରେ ଅମାନୁଲ୍ଲା ନିଜ ଦେଶ ଛାଡ଼ିଯିବା ଦ୍ୱାରା ମହା ବିପଦ ବରଣ କରିଥିଲେ । ମୋସ୍ତାଫା କେମାଲ କେବେହେଲେ ଏପରି ବିପଦ ମୁଣ୍ଡାଇ ନଥିଲେ । ଅମାନୁଲ୍ଲାଙ୍କ ଦୀର୍ଘକାଳ ଅନୁପସ୍ଥିତି ଭିତରେ ତାଙ୍କ ବିରୁଦ୍ଧରେ ଥିବା ସବୁ ପ୍ରତିକ୍ରିୟାଶୀଳ ଲୋକେ ଓ ଶ୍ରେଣୀ ଏକଜୁଟ ହୋଇ ଆଗକୁ ବାହାରିଲେ । ତାଙ୍କୁ ବଦନାମ କରିବା ନିମନ୍ତେ ଚକ୍ରାନ୍ତ ହେଲା ଓ ଅଗଣିତ ଜନରବ ପ୍ରଚାରିତ ହେଲା । ଏହି ଅମାନୁଲ୍ଲା ବିରୋଧୀ ପ୍ରଚାର ପାଇଁ ଧନ ବୋଧହୁଏ ଆସିଲା ପରି ମନେହେଲା । କିନ୍ତୁ କେଉଁଠୁ ଆସିଲା କେହି ଜାଣେନା । ଏହି କାର୍ଯ୍ୟ ନିମନ୍ତେ ଅନେକ ମୁଲ୍ଲାଙ୍କୁ ବେତନ ଦିଆ ଯାଉଥିଲା ଏବଂ ସେମାନେ ଅମାନୁଲ୍ଲାଙ୍କୁ ଏକ କାଫେର—ଧର୍ମର ଶତ୍ରୁ ବୋଲି ସମଗ୍ର ଦେଶ ନିନ୍ଦା କରିବାରେ ଲାଗିଗଲେ । ରାଣୀ ସୋରାଆଙ୍କର ୟୁରୋପୀୟ ରାତପୋଷାକ ବା ସେହିପରି ହାଲୁକା ପୋଷାକ ପିନ୍ଧା ବିଚିତ୍ର ଛବି ସବୁ ହଜାର ହଜାର ସଂଖ୍ୟାରେ ଗ୍ରାମମାନଙ୍କରେ ବଣ୍ଟା ହେଲା—ସେ କିପରି ବେଢଙ୍ଗରେ ପୋଷାକ ପିନ୍ଧନ୍ତି ଏହା ଦେଖାଇବା ହେଲା ମତଲବ । ଏହି ସବୁ ବ୍ୟାପକ ଓ ବ୍ୟୟସାପେକ୍ଷ ପ୍ରଚାର ପାଇଁ କିଏ ଦାୟୀ ଥିଲା ? ଏଥିଲାଗି ଆଫଗାନମାନଙ୍କର ଧନ ବା ଶିକ୍ଷା ବି ନ ଥିଲା, ଏଥିପାଇଁ ସେମାନେ ଉପଯୁକ୍ତ ସାମଗ୍ରୀ ସ୍ୱରୂପ ଥିଲେ । ମଧ୍ୟପ୍ରାଚ୍ୟ ଓ ଇଉରୋପରେ ବ୍ୟାପକ ଭାବରେ ବିଶ୍ୱାସ କରାଯାଏ ଓ କୁହାହେଉଥିଲା ଯେ, ଏହି ପ୍ରଚାର ପଛରେ ବ୍ରିଟିଶ ଗୁପ୍ତ ବିଭାଗ ରହିଛି । ଏହିସବୁ ଜିନିଷ ପ୍ରାୟ ପ୍ରମାଣ କରାଯାଇପାରେନା ଏବଂ ବ୍ରିଟିଶମାନଙ୍କୁ ଏଥିରେ ଯୋଡ଼ିବା ନିମନ୍ତେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ନା—

ସନ୍ଦର୍ଭ ବୁଝାଯାଏ ଯେ, ଆଫଗାନ ବିଦ୍ରୋହୀଙ୍କ ହାତରେ ବ୍ରିଟିଶ ରାଇଫଲ ସବୁ ଥିଲା । କିନ୍ତୁ ଏହା ସୁସ୍ପଷ୍ଟ ଯେ, ଆଫଗାନସ୍ଥାନରେ ଅମାନୁଲ୍ଲାଙ୍କୁ ଦୁର୍ବଳ କରିବାରେ ସ୍ୱାର୍ଥ ଥିଲା ।

ଆଫଗାନସ୍ଥାନରେ ଜେତେବେଳେ ନଜର ଭିତ୍ତି ଭୁଷୁଡ଼ି ପଡ଼ୁଥିଲାବେଳେ ଅମାନୁଲ୍ଲା ଇଉରୋପ ଦେଶ ରାଜଧାନୀମାନଙ୍କରେ ବିରାଟ ଅଭ୍ୟର୍ଥନା ସବୁ ଗ୍ରହଣ କରୁଥାନ୍ତି । ସେ ସଂସ୍କାର ପାଇଁ ନୂତନ ଜିଦ୍, ନୂତନ ଭାବଧାରାମାନ ଘେନି ନିଜ ଦେଶକୁ ଫେରିଲେ । କେମାଲ ପାଶାଙ୍କ ସହ ସେ ଆଙ୍ଗୋରାରେ ସାକ୍ଷାତ୍ କଲେ ଏବଂ ପୂର୍ବାପେକ୍ଷା ତାଙ୍କ କାର୍ଯ୍ୟରେ ଅଧିକ ପ୍ରଭାବିତ ହେଲେ । ଏହିସବୁ ସଂସ୍କାରକୁ ଆଗେଇବା ନିମନ୍ତେ ସେ ଲାଗିଗଲେ । ସେ ସାମନ୍ତମାନଙ୍କର ଉପାଧି ଉଠାଇ ଦେଲେ ଏବଂ ଧର୍ମପତିମାନଙ୍କର କ୍ଷମତା କାଟିଦେବା ନିମନ୍ତେ ଚେଷ୍ଟା କଲେ । ସେ ଏପରି କି ସରକାରଙ୍କଠାରେ ଦାୟୀ ଏକ କାଉନ୍‌ସିଲ ଗଢ଼ିବା ପାଇଁ ଚେଷ୍ଟା କଲେ—ଏହିରୂପେ ନିଜର ଅଖଣ୍ଡ କ୍ଷମତା ବି କମାଇ ଦେଲେ । ନାରୀ ସ୍ୱାଧୀନତା ମଧ୍ୟ ଧୀରେ ଧୀରେ ଅଗ୍ରସର କରାଗଲା ।

ହଠାତ୍ ଲୁଚିରହିଥିବା ନିଆଁ ଜଳିଉଠିଲା ଏବଂ ୧୯୨୮ ଶେଷ ବେଳକୁ ବିଦ୍ରୋହ ଜାଗି ଉଠିଲା । ଜଣେ ସାଧାରଣ ଜଳବାହକ ବଚ୍ଚାଇସାକୋ ନେତୃତ୍ୱରେ ଏହି ବିଦ୍ରୋହ ବିସ୍ତାର ଲଭିଲା ଏବଂ ୧୯୨୯ରେ ଏହା ସଫଳ ହେଲା । ଅମାନୁଲ୍ଲା ଓ ରାଣୀ ପଳାଇଗଲେ ଏବଂ ଜଳବାହକ ଅମୀର ହେଲା । ପାଞ୍ଚ ମାସ ପର୍ଯ୍ୟନ୍ତ ବଚ୍ଚାଇସାକୋ କାବୁଲରେ ରାଜୁତି କଲା—ତାପରେ ଅମାନୁଲ୍ଲାଙ୍କର ଜଣେ ସେନାପତି ଓ ମନ୍ତ୍ରୀ ନାଦିର ଖାଁ ତାଙ୍କୁ ତଡ଼ିଦେଲା । ନାଦିର ଖାଁ ନିଜ କାମ କଲା ଏବଂ ସେ ଜିତିଲା ପରେ ନାଦିର ଶାହା ନାମରେ ନିଜେ ଶାସକ ହେଲା । ଦେଶରେ ବରାବର ଗୋଳମାଳ ଓ ଗଣ୍ଡଗୋଳ ଲାଗି ରହିଲା; କିନ୍ତୁ ନାଦିର ଶାହା ଶାସକ ଭାବରେ ରହିପାରିଲା । କାରଣ ସେ ଇଂଲଣ୍ଡ ପ୍ରତି ବନ୍ଧୁଭାବ ପୋଷଣ କରୁଥିଲା ଏବଂ ତାଙ୍କଠୁଁ ସାହାଯ୍ୟ ପାଉଥିଲା । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବିନା ସୁଧରେ ତାକୁ ବହୁ ଧନ ଧାର ଦେଲେ ଏବଂ ରାଇଫଲ ଓ ଗୁଳିବାରୁଦ ଦେଲେ । ଆଫଗାନସ୍ଥାନ ଦୁଇଟି ଶକ୍ତିଶାଳୀ ରାଜ୍ୟର ମଧ୍ୟବର୍ତ୍ତୀ ଦେଶ ହୋଇଥିବାରୁ ସେଠାରେ ଅଧିକ ଭାବରେ ଏପରି ଅବ୍ୟବସ୍ଥିତ ଅବସ୍ଥା ରହିଛି । (୧)

ମୁଁ ଏବେ ଆଫଗାନସ୍ଥାନ, ପଶ୍ଚିମ ଓ ଦକ୍ଷିଣ ଏସିଆ ବିଷୟ ଶେଷ କଲି । ଏସିଆର ଦକ୍ଷିଣ-ପୂର୍ବ କୋଣର କେତେକ ଘଟଣା ବିଷୟ ଏବେ ସଂକ୍ଷେପରେ କହିବି ଏବଂ ତା'ପରେ ଏ ଚିଠି ଶେଷ ହେବ ।

---

(୧) ୧୯୩୩ ନଭେମ୍ବରରେ ନାଦିର ଶାହାକୁ ହତ୍ୟା କରାଗଲା ଓ ତାର ଜ୍ୟେଷ୍ଠ ପୁଅ ରାଜା ଜାହିରଶାହା ହେଲା ।

ବର୍ମା ପୂର୍ବକୁ ଶ୍ୟାମ ଦେଶ—ପୃଥିବୀର ଏହି ଅଂଶରେ କେବଳ ଏହି ଦେଶଟି ହିଁ ନିଜର ସ୍ୱାଧୀନତା ରକ୍ଷା କରି ପାରିଥିଲା । ବ୍ରିଟିଶ ବର୍ମା ଓ ଫରାସୀ ଇଣ୍ଡୋ-ଚୀନ ଭିତରେ ଏହା ରୁଦ୍ଧ ହୋଇ ରହିଛି । ଦେଶରେ ପୁରାତନ ଭାରତୀୟ ଅବଶେଷ ସବୁ ରହିଛି ଏବଂ ଏହାର ପରମ୍ପରା, ସଂସ୍କୃତି ଓ ଉତ୍ସବମାନଙ୍କରେ ଏବେ ସୁଦ୍ଧା ପୁରାତନ ଭାରତୀୟ ଛାପ ରହିଛି । ଅଳ୍ପ କାଳ ହେଲା ଏଠାରେ ଏକଛତ୍ର ରାଜସତ୍ତା ଥିଲା ଏବଂ ସାମାଜିକ ଅବସ୍ଥା ଅଧିକ ଭାବରେ ସାମନ୍ତବାଦୀ ଥିଲା—ଏକ ଶ୍ରେଷ୍ଠ ଓ ବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ଶ୍ରେଣୀ ଥିଲେ । ମୋର ବିଶ୍ୱାସ ରାଜାମାନଙ୍କ ଉପାଧି ଥିଲା ରାମ—ଏହା ବି ଏକ ଭାରତୀୟ ନାମ । ତେଣୁ ସେମାନଙ୍କର ପ୍ରଥମ ରାମ, ଦ୍ୱିତୀୟ ରାମ ଏହିପରି ସବୁ ନାମକରଣ ଥିଲା । ପୃଥିବୀ ଯୁଦ୍ଧ ଭିତରେ ଯେତେବେଳେ ମିତ୍ର ପକ୍ଷର ଜୟ ନିଶ୍ଚିତ ବୋଲି ଜଣାପଡ଼ିଲା ସେତେବେଳେ ଶ୍ୟାମ ମିତ୍ର ପକ୍ଷରେ ଯୋଗ ଦେଲା ଏବଂ ପରେ ଏହା ଲିଗ୍ ଅଫ୍ ନେସନ୍‌ସର ସଭ୍ୟ ହେଲା ।

୧୯୩୨ ଜୁନ୍ ମାସରେ ଶ୍ୟାମ ରାଜଧାନୀ ବାଙ୍ଗକକେର ଏକ ରାଜମହଲ ବିପ୍ଳବ (Camps d'eltat) ହେଲା ଏବଂ ଏକଛତ୍ର ଶାସନ ପ୍ରଣାଳୀ ଲୋପ ପାଇଲା । ଶ୍ୟାମ ପିପୁଲସ ପାର୍ଟି (People Party) ନିୟନ୍ତ୍ରଣରେ ଗଣତନ୍ତ୍ରର ଆରମ୍ଭ ବଦଳରେ ଏହା ହେଲା । ଲୁଆଙ୍ଗ୍ ପ୍ରାଡ଼ିଟ୍ ନାମକ ଜଣେ ଓକିଲଙ୍କ ନେତୃତ୍ୱରେ ଗୋଟିଏ ଶ୍ୟାମ ଯୁବକ ସାମରିକ କର୍ମଚାରୀ ଓ ଅନ୍ୟମାନଙ୍କୁ ଦଳ ଦଳ ରାଜପରିବାରର ସଭ୍ୟ ଓ ମୁଖିଆ ମନ୍ତ୍ରୀମାନଙ୍କୁ ଗିରଫ କଲେ ଏବଂ ରାଜା ପ୍ରଜାଧିପକଙ୍କୁ ଏକ ଶାସନ ଖସଡ଼ା ଗ୍ରହଣ କରିବାକୁ ପଡ଼ିଲା । ରାଜାର କ୍ଷମତା ସୀମାବଦ୍ଧ କରି ଦିଆଗଲା ଏବଂ ଏକ ଲୋକଙ୍କ କାଉନ୍‌ସିଲ ସ୍ଥାପନ ହେଲା । ଏହି ପରିବର୍ତ୍ତନରେ ଲୋକଙ୍କ ସମର୍ଥନ ଥିଲା, କିନ୍ତୁ ଗଣ ଜାଗରଣ ଫଳରେ ଏହା ହୋଇ ନ ଥିଲା । ଯୁବକ ତୁର୍କି ଯେପରି ସାମରିକ ବିଦ୍ରୋହ କରି ସୁଲତାନ ଅବଦୁଲ ହାମିଦଙ୍କ ସ୍ୱେଚ୍ଛାଚାରିତା ଅନ୍ତ କରି ଦେଇଥିଲେ ଏହା ସେହି ପ୍ରକାର ଏକ ବିଦ୍ରୋହ ଥିଲା । ରାଜା ଶୀଘ୍ର ବଶ୍ୟତା ସ୍ୱୀକାର କଲାରୁ ସଙ୍କଟ ବେଳ ଅନ୍ତ ହୋଇଗଲା; କିନ୍ତୁ ରାଜା ନିର୍ମଳ ମନରେ ପରିବର୍ତ୍ତନ କରିବାକୁ ମାନି ନେଇ ନ ଥିଲା । ହଠାତ୍ ୧୯୩୩ ଏପ୍ରିଲ ମାସରେ ରାଜା ପ୍ରଜାଧିପକ ଆସେମ୍ବ୍ଲି ଭାଙ୍ଗି ଦେଲା ଓ ଲୁଆଙ୍ଗ ପ୍ରାଡ଼ିଟ୍‌କୁ ବାହାର କରିଦେଲା । ଦୁଇ ମାସ ପରେ ଆଉ ଏକ ବିଦ୍ରୋହ ହେଲା ଓ ଆସେମ୍ବ୍ଲି ପୁନର୍ଗଠନ ହେଲା । ଶ୍ୟାମର ନୂତନ ସରକାର ଇଂଲଣ୍ଡ ସହିତ କିଛି ଘନିଷ୍ଠ ସମ୍ପର୍କ କରି ନାହିଁ ଏବଂ ଜାପାନ ଆଡ଼କୁ ଢଳିଛି । *
(ଏହା ବର୍ତ୍ତମାନ ଜାପାନ ଅଧୀନରେ—ଅନୁବାଦକ)

* ୧୯୩୩ରେ ଏକ ଦକ୍ଷିଣପନ୍ଥୀ ବିଦ୍ରୋହ ହୋଇଥିଲା, କିନ୍ତୁ ତାହା ଦବାଇ ଦିଆଗଲା ଏବଂ ଲୁଆଙ୍ଗ ପ୍ରାଡ଼ିଟ ଶାସନ ପରିଚାଳନା କରୁଛନ୍ତି ।

ଶ୍ୟାମର ପୂର୍ବ ଦିଗକୁ ଫରାସୀ ଇଣ୍ଡୋ-ଚୀନରେ ଜାତୀୟତା ବିସ୍ତାର ଲଭୁଛି ଏବଂ ଦୃଢ଼ ହେଉଛି । ଜାତୀୟବାଦୀ ଆନ୍ଦୋଳନକୁ ଦବାଇବା ନିମନ୍ତେ ଫରାସୀ ସରକାର ଅନେକ ଷଡ଼ଯନ୍ତ୍ର ମକଦ୍ଦମା କରିଛି ଓ ବହୁ ସଂଖ୍ୟକ ଲୋକଙ୍କୁ ଦୀର୍ଘ କାରାବାସ ଦେଇଛି । ୧୯୩୩ ମାର୍ଚ୍ଚ ମାସରେ ନିରସ୍ତ୍ରୀକରଣ ସମ୍ମିଳନୀର ବୈଠକରେ ଜେନେଭାଠାରେ ଫରାସୀ ପ୍ରଧାନମନ୍ତ୍ରୀ ଏକ ଚମକପ୍ରଦ ବକ୍ତବ୍ୟ କରିଥିଲେ । ଏହି ପ୍ରଧାନମନ୍ତ୍ରୀ ଏମ୍ ସରାଉ ନିଜେ ଫରାସୀ ଇଣ୍ଡୋ-ଚୀନର ଗଭର୍ଣ୍ଣର ଥିଲେ । "ଦଖଲରେ ଥିବା ଉପନିବେଶମାନଙ୍କରେ ଜାତୀୟତା ବୃଦ୍ଧି ଯୋଗୁଁ ତାହା ଶାସନ କରିବା କିପରି କଷ୍ଟକର ହେଉଛି" ତାହା ସେ ଉଲ୍ଲେଖ କରିଥିଲେ । ସେ ଫରାସୀ ଇଣ୍ଡୋ-ଚୀନର ଦୃଷ୍ଟାନ୍ତ ଦେଲେ—ଏଠାରେ ସେ ଗଭର୍ଣ୍ଣର ଥିଲାବେଳେ ଶୃଙ୍ଖଳା ରକ୍ଷା ନିମନ୍ତେ ୧୫୦୦ ସୈନ୍ୟ ଦରକାର ପଡ଼ୁଥିଲା, ଏବେ ଦଶହଜାର ଦରକାର ହେଲାଣି ।

ଶେଷରେ ହେଉଛି ଜାଭା—ଏହା ଡଚ୍ ଇଷ୍ଟ-ଇଣ୍ଡିଜ ଭିତରେ । ଏହା ଚିନି ଓ ରବର ଲାଗି ପ୍ରସିଦ୍ଧ ଏବଂ ଏହି ଦେଶର ଆବାଦୀ ଅଞ୍ଚଳମାନଙ୍କରେ ଲୋକଙ୍କୁ ଯେପରି ଭୀଷଣ ଶୋଷଣ କରାହୁଏ, ସେଥିପାଇଁ ପ୍ରସିଦ୍ଧ । ଭାରତ ପରି ଜାତୀୟତା ବୃଦ୍ଧି ସଙ୍ଗେ ସଙ୍ଗେ କେତେକ ପରିମାଣରେ ସଂସ୍କାର ଓ ଖୁବ୍ ଦମନ ବି ହେଲା । ଜାଭାବାସୀଙ୍କ ଭିତରୁ ଅଧିକ ସଂଖ୍ୟକ ମୁସଲମାନ ଏବଂ ପୃଥିବୀ ଯୁଦ୍ଧ ଭିତରେ ଓ ପରେ ପଶ୍ଚିମ ଏସିଆର ଘଟଣାବଳୀ ତାଙ୍କୁ ସ୍ପର୍ଶ କଲା । କାଣ୍ଟନରେ ଚୀନା ବିପ୍ଳବୀ ଆନ୍ଦୋଳନ ବୃଦ୍ଧିର ବହୁତ ପ୍ରଭାବ ତାଙ୍କ ଉପରେ ପଡ଼ିଲା ଏବଂ ସେମାନେ ଭାରତର ଅସହଯୋଗ ଆନ୍ଦୋଳନର ମଧ୍ୟ ଆଗ୍ରହ ଦେଖାଇଲେ । ୧୯୧୬ରେ ଡଚ ସରକାର ଜାଭାବାସୀଙ୍କୁ ଶାସନ ସଂସ୍କାର ଦେବା ନିମନ୍ତେ ପ୍ରତିଶ୍ରୁତି ଦେଲା ଏବଂ ବାଟେଭିଆରେ ଏକ ଲୋକ-କାଉନ୍‌ସିଲ ସ୍ଥାପନ କରାଗଲା; କିନ୍ତୁ ଏଥିରେ ଅଧିକାଂଶ ସଭ୍ୟ ମନୋନୀତ ହୋଇଥିଲେ ଏବଂ ଏହାର ବିଶେଷ କିଛି କ୍ଷମତା ନ ଥିଲା ଏବଂ ଏହା ବିରୁଦ୍ଧରେ ଆନ୍ଦୋଳନ ଚାଲିଲା । ୧୯୨୫ରେ ଏକ ନୂତନ ଶାସନ ଖସଡ଼ା ଦିଆଗଲା, କିନ୍ତୁ ଏଥିରେ କିଛି ପରିବର୍ତ୍ତନ ହେଲା ନାହିଁ କି ଲୋକଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ଜାଭା ଓ ସୁମାତ୍ରାରେ ଧର୍ମଘଟ ଓ ଦଙ୍ଗା ଚାଲିଲା ଏବଂ ୧୯୨୭ରେ ଡଚ୍ ସରକାର ବିରୁଦ୍ଧରେ ଏକ ଜାଗରଣ ହେଲା । ଅତ୍ୟନ୍ତ ନିଷ୍ଠୁରତା ସହକାରେ ଏହା ଦମନ କରାଗଲା । ଯାହାହେଉ ଜାତୀୟବାଦୀ ଆନ୍ଦୋଳନ ଲାଗି ରହିଲା ଏବଂ ରଚନାତ୍ମକ କାର୍ଯ୍ୟ କରି ଅନେକ ଜାତୀୟ ବିଦ୍ୟାଳୟ ସ୍ଥାପିତ ହେଲା ଏବଂ ଭାରତ ପରି କୁଟୀର ଶିଳ୍ପ ଓ ହାତ କାରିଗରୀକୁ ଉତ୍ସାହିତ କରାଗଲା । ସ୍ୱାଧୀନତା ସଂଗ୍ରାମ ଚାଲିଛି । ପୃଥିବୀର ଆର୍ଥିକ ଦୁର୍ଗତି ହେତୁ ଏବଂ ଦେଶର ଶିଳ୍ପ ରକ୍ଷା କରିବା ନିମନ୍ତେ ଶୁଳ୍କ ବସାଯାଇ ବାହାର ବଜାର ଉପରେ କଟକଣା ହେତୁ ଜାଭାର ଚିନି କଳ ସବୁ ବଡ଼ କ୍ଷତିଗ୍ରସ୍ତ ହେଲା ।

୧୯୩୩ ପ୍ରଥମ ଭାଗରେ ଜାଭା ନିକଟସ୍ଥ ପୂର୍ବ ସାଗରରେ ଏକ ବିଚିତ୍ର ଘଟଣା ଘଟିଲା । ଡଚ୍ ଯୁଦ୍ଧ ଜାହାଜର ନାବିକ ଦରମା କଟା ହେବାର ପ୍ରତିବାଦ କରି ଜାହାଜ

ଅଧିକାର କଲେ ଓ ଜାହାଜ ନେଇ ଚାଲିଗଲେ । ସେମାନେ କିଛି କ୍ଷତି କଲେ ନାହିଁ ଏବଂ ସେମାନେ ପରିଷ୍କାର ଜଣାଇ ଦେଲେ ଯେ, ନିଜର ଦରମା ପାଇଁ କେବଳ ସେମାନେ ଏହା ଧରି ରଖିଛନ୍ତି । ଏହା ଏକ ପ୍ରକାର ଆକ୍ରମଣଶୀଳ ଧର୍ମଘଟ । ତେଣୁ ଉଚ୍ ଉଡ଼ାଜାହାଜ ସବୁ ଏହି ଯୁଦ୍ଧ ଜାହାଜ ଉପରେ ବୋମା ବର୍ଷଣ କଲେ, ଅନେକ ନାବିକ ହତ୍ୟା କଲେ ଏବଂ ଏହିରୂପେ ତାକୁ ଅଧିକାର କଲେ ।

ଆମେ ଏବେ ଏସିଆରେ ଜାତୀୟବାଦ ଓ ସାମ୍ରାଜ୍ୟବାଦ ଭିତରେ ଲାଗିଥିବା ସଂଘର୍ଷକୁ ଛାଡ଼ି ଦେବା ଏବଂ ଇଉରୋପକୁ ଯିବା; କାରଣ ଇଉରୋପକୁ ଦୃଷ୍ଟି ଦେବା ଦରକାର । ଆମେ ଏ ପର୍ଯ୍ୟନ୍ତ ଯୁଦ୍ଧୋତ୍ତର ଇଉରୋପର ଆଲୋଚନା କରିନାହେଁ ଏବଂ ତୋର ମନେ ରଖିବା ଉଚିତ, ପୃଥିବୀ ଅବସ୍ଥାର ଚାବି ରହିଛି ଇଉରୋପରେ । ତେଣୁ ଆମର ଆଗାମୀ ଚିଠି ଇଉରୋପ ସମ୍ବନ୍ଧରେ ଲେଖା ହେବ ।

ଏସିଆର ଦୁଇଟି ଅଂଶ ବିଷୟର ହେବାକୁ ବାକି ଅଛି—ଦୁଇଟିଯାକ ବିଶାଳ ଅଞ୍ଚଳ । ଚୀନ ରାଜ୍ୟ ଓ ଉତ୍ତରରେ ସୋଭିଏଟ ଦେଶ । କିଛି ସମୟ ପରେ ଆମେ ସେ ଦେଶକୁ ଫେରିଯିବା ।

## ୧୬୧ ଯେଉଁ ବିପ୍ଳବ ହେଲା ନାହିଁ

ଜୁନ୍ ୧୩, ୧୯୩୩

ଜେ. କେ. ଚେଷ୍ଟରଟନ ନାମକ ଜଣେ ବିଖ୍ୟାତ ଇଂରେଜ ଲେଖକ କହିଛନ୍ତି—୧୯ଶ ଶତାବ୍ଦୀର ସବୁଠାରୁ ବଡ଼ ଘଟଣା ହେଉଛି ଯେଉଁ ବିପ୍ଳବ ସଂଘଟିତ ହେଲା ନାହିଁ ବା ହେଉ ହେଉ ରହିଗଲା, ତୋର ମନେଥିବ ଏହି ଶତାବ୍ଦୀରେ ଅନେକ ଥର ଇଂଲଣ୍ଡ ବିପ୍ଳବ ପାଖାପାଖି ହୋଇଥିଲା—ଅର୍ଥାତ୍ ଗ୍ରେଟ ବ୍ରୁର୍ଜୋୟା ଶ୍ରେଣୀ ଓ ଶ୍ରମିକମାନେ ଏକ ସାମାଜିକ ବିପ୍ଳବ କରିଥିଲେ । କିନ୍ତୁ ସବଦା ଶେଷ ବେଳକୁ ଶାସକ ଶ୍ରେଣୀ ଟିକିଏ ନଇଁ ପଡ଼ନ୍ତି, ଭୋଟ କ୍ଷମତା ଟିକିଏ ବଢ଼ାଇ ଦେଇ ପାର୍ଲିମେଣ୍ଟ ଗଠନରେ ବାହ୍ୟ ଦୃଷ୍ଟିରେ ଅଂଶ ଦେଇ ଦିଅନ୍ତି । ବିଦେଶରେ ସାମ୍ରାଜ୍ୟବାଦୀ ଶୋଷଣରୁ ଲାଭାଂଶ ବି ଦିଅନ୍ତି । ଏହିରୂପେ ସେମାନେ ଆସନ୍ନ ବିପ୍ଳବକୁ ଦବାଇ ରଖି ପାରିଛନ୍ତି । ସେମାନଙ୍କର ବିସ୍ତୃତ ସାମ୍ରାଜ୍ୟ ଓ ସେଥିରୁ ଯେଉଁ ଧନ ପାଆନ୍ତି, ସେଥିଯୋଗୁଁ ତାଙ୍କ ପକ୍ଷରେ ଏହା କରିବା

ସମ୍ଭବ ହେଲା । ତେଣୁ ଇଂଲଣ୍ଡରେ ବିପ୍ଳବ ହେଲା ନାହିଁ, କିନ୍ତୁ ଏହାର ପ୍ରଭାବ ବରାବର ଦେଶ ଉପରେ ପଡ଼ିଥିଲା ଏବଂ ଏହାର ଉପ୍ଲବ୍ଧି ଘଟଣା ସବୁକୁ ଗଢ଼ିଲା । ତେଣୁ ପ୍ରକୃତରେ ଯେଉଁ ଜନକ୍ଷତି ଘଟିଲା ନାହିଁ, ତାହାହିଁ ଗତ ଶତାବ୍ଦୀର ସର୍ବାପେକ୍ଷା ବଡ଼ ଘଟଣା ବୋଲି ବୁଝାଯାଇଛି ।

ବୋଧହୁଏ ସେହିପରି ଭାବରେ ବୁଝାଯାଏ ଯେ, ପଶ୍ଚିମ ଇଉରୋପରେ ଯୁଦ୍ଧୋତ୍ତର କାଳର ବଡ଼ ଘଟଣା ହେଉଛି ଯେଉଁ ବିପ୍ଳବ ହେଲା ନାହିଁ । ରୁଷରେ ଯେଉଁ ଅବସ୍ଥା ଯୋଗୁଁ ବଲସେଭିକ ବିପ୍ଳବ ହେଲା, କମ୍ ପରିମାଣରେ ହେଲେ ମଧ୍ୟ ମଧ୍ୟ ଓ ପଶ୍ଚିମ ଇଉରୋପୀୟ ଦେଶମାନଙ୍କରେ ସେହିପରି ଅବସ୍ଥା ଥିଲା । ରୁଷ ଓ ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ ପ୍ରଭୃତି ପଶ୍ଚିମରେ ଶିଳ୍ପୋନ୍ନତ ଦେଶମାନଙ୍କ ଭିତରେ ପ୍ରଧାନ ପ୍ରଭେଦ ହେଉଛି ରୁଷରେ କୌଣସି ବଳିଷ୍ଠ ବୁର୍ଜୋୟା ଶ୍ରେଣୀ ନ ଥିଲେ । ପ୍ରକୃତରେ ଦେଖିବାକୁ ଗଲେ ମାର୍କସୀୟ ତଥ୍ୟ ଅନୁସାରେ ଏହିସବୁ ଶିଳ୍ପୋନ୍ନତ ଦେଶରେ ହିଁ ପ୍ରଥମେ ଶ୍ରମିକ ବିପ୍ଳବ ହେବାର କଥା, ଅନୁନ୍ନତ ରୁଷରେ ଅବଶ୍ୟ ନୁହେଁ । କିନ୍ତୁ ପୁରୁଣା ପଚରା ଜାର ସରକାର ଗଠନ ପୃଥିବୀ ଯୁଦ୍ଧରେ ଧ୍ୱଂସ ପାଇଗଲା ଏବଂ ଯେହେତୁ ପାଶ୍ଚାତ୍ୟ ଧରଣରେ ପାର୍ଲିମେଣ୍ଟ ଜରିଆରେ ଶାସନ କରିବା ଓ ନିୟନ୍ତ୍ରଣ କରିବା ନିମନ୍ତେ କୌଣସି ବଳିଷ୍ଠ ମଧ୍ୟବିତ୍ତ ଶ୍ରେଣୀ ନ ବାହାରିବାରୁ, ଶ୍ରମିକଙ୍କ ସୋଭିଏଟ୍ କ୍ଷମତା ଦଖଲ କଲେ । ତେଣୁ ବିଚିତ୍ର କଥା ରୁଷର ଅନୁନ୍ନତପଣିଆ, ତାର ଦୁର୍ବଳତାର କାରଣରେ ହିଁ ଅନ୍ୟ ଅଧିକ ଉନ୍ନତ ଦେଶ ଅପେକ୍ଷା ବଡ଼ ଏକ ପାହାଚ ଆଗକୁ ଯିବାକୁ ତା ପକ୍ଷରେ ସମ୍ଭବ ହେଲା । ଲେନିନଙ୍କ ନେତୃତ୍ୱରେ ବଲସେଭିକମାନେ ଏହା କଲେ, କିନ୍ତୁ ସେମାନଙ୍କର ମନରେ କିଛି ଭ୍ରାନ୍ତି ନ ଥିଲା । ସେମାନେ ଜାଣିଥିଲେ ଯେ, ରୁଷ ଅନୁନ୍ନତ ରହିଛି ଏବଂ ଅଧିକ ଉନ୍ନତ ଦେଶ ସହ ସମକକ୍ଷ ହେବା ନିମନ୍ତେ ସମୟ ଲାଗିବ । ସେମାନେ ଆଶା କରିଥିଲେ ଯେ, ସେମାନେ ଏକ ଶ୍ରମିକ ପ୍ରଜାତନ୍ତ୍ର ଗଠନ କରିବା ଦୃଷ୍ଟାନ୍ତ ଦେଖି ଅନ୍ୟ ଦେଶର ଶ୍ରମିକମାନେ ପ୍ରଚଳିତ ଶାସନ ବିରୁଦ୍ଧରେ ବିଦ୍ରୋହ କରି ଉଠିବେ । ସେମାନେ ବୋଧ କଲେ ଯେ, ଇଉରୋପର ଏହା ସାଧାରଣ ସାମାଜିକ ବିପ୍ଳବ ହେଲେ ହିଁ ସେମାନଙ୍କର ବଞ୍ଚି ରହିବାର ଆଶା ରହିଛି, ନଚେତ୍ ଅବଶିଷ୍ଟ ପୁଞ୍ଜିବାଦୀ ଦୁନିଆଁ ରୁଷର ଶିଶୁ ସୋଭିଏଟ ସରକାରକୁ ଦମନ କରିଦେବେ ।

ଏହି ଆଶା ଓ ବିଶ୍ୱାସ ପୋଷଣ କରି ବିପ୍ଳବ ଆରମ୍ଭରେ ସେମାନେ ଦୁନିଆଁର ଶ୍ରମିକମାନଙ୍କୁ ନିବେଦନ କଲେ । ସାମ୍ରାଜ୍ୟବାଦୀମାନଙ୍କର ଅନ୍ୟ ରାଜ୍ୟ ସଂଯୋଗ କରିବା ନୀତିକୁ ସେମାନେ ନିନ୍ଦା କଲେ; ସେମାନେ କହିଲେ ଯେ, ଜାର ଶାସିତ ରୁଷ, ଇଂଲଣ୍ଡ ଓ ଫ୍ରାନ୍ସ ଭିତରେ ହୋଇଥିବା ଗୁପ୍ତ ସନ୍ଧି ଅନୁସାରେ ସେମାନେ କୌଣସି ଦାବୀ କରିବେ ନାହିଁ; ସେମାନେ ପରିଷ୍କାର କରିଦେଲେ ଯେ, କନଷ୍ଟାଣ୍ଟିନୋପଲ ତୁର୍କିରେ ଅବଶ୍ୟ ରହିବ । ସେମାନେ ପ୍ରାଚ୍ୟ ଦେଶମାନଙ୍କୁ ଓ ଜାର ସାମ୍ରାଜ୍ୟ ଅନ୍ତର୍ଗତ ଅନେକ

ଅତ୍ୟାଗ୍ରତ ଜାତିମାନଙ୍କୁ ଅତି ଉଦାର ସନ୍ଧିମାନ ଦେଲେ । ସର୍ବୋପରି ସେମାନେ ଅନ୍ତର୍ଜାତୀୟ ଶ୍ରମିକ ଶ୍ରେଣୀର ରକ୍ଷକ ଭାବରେ କାର୍ଯ୍ୟ କଲେ; ପ୍ରତ୍ୟେକ ସ୍ଥାନର ଶ୍ରମିକମାନେ ତାଙ୍କର ଦୃଷ୍ଟାନ୍ତ ଅନୁସରଣ କରି ସାମ୍ୟବାଦୀ ପ୍ରଜାତନ୍ତ୍ର ସ୍ଥାପନ କରିବା ନିମନ୍ତେ ସେମାନେ ଆହ୍ୱାନ କଲେ । ଜାତୀୟତା ଓ ଏକ ଦେଶ ହିସାବରେ ରୁଷ ତାଙ୍କ ପାଖରେ ନିରର୍ଥକ । ଏହାକୁ ସେମାନେ ସାରା ପୃଥିବୀର ଏକ ଅଂଶରୂପେ ମଣିନ୍ତି—ସେଠି ଇତିହାସରେ ପ୍ରଥମ ଥର ପାଇଁ ଶ୍ରମିକ ସରକାର ସ୍ଥାପିତ ହେଲା ।

ଜର୍ମାନ ଓ ମିଳିତ ସରକାର ସବୁ ବଲସେଭିକ୍ ନିବେଦନର ପ୍ରଚାରକୁ ନିଷେଧ କଲେ । କିନ୍ତୁ ସେଗୁଡ଼ିକ କୌଣସି ପ୍ରକାରେ ବିଭିନ୍ନ ଯୁଦ୍ଧକ୍ଷେତ୍ର ଓ କାରଖାନା ଅଞ୍ଚଳକୁ ଚାଲିଗଲା । ପ୍ରତ୍ୟେକ ସ୍ଥାନରେ ଖୁବ୍ ପ୍ରଭାବ ପଡ଼ିଲା ଏବଂ ଫରାସୀ ସେନା ଛତ୍ରଭଙ୍ଗ ପଡ଼ିଲା ପରି ଦେଖାହେଲା । ଜର୍ମାନ ସେନା ଓ ଶ୍ରମିକମାନଙ୍କୁ ଅଧିକ ଭାବରେ ଏହା ସ୍ପର୍ଶ କଲା । ପରାଜିତ ଦେଶ ଜର୍ମାନୀ, ଅଷ୍ଟ୍ରିଆ ଓ ହଙ୍ଗେରୀରେ ବି ଜାଗରଣ ଓ ବିଦ୍ରୋହ ସବୁ ଦେଖାଦେଲା ଏବଂ ଅନେକ ମାସ ପର୍ଯ୍ୟନ୍ତ ଅଥବା ଏକ ବର୍ଷ ବା ଦୁଇ ବର୍ଷ ପର୍ଯ୍ୟନ୍ତ ଇଉରୋପରେ ଏକ ବିରାଟ ସାମାଜିକ ବିପ୍ଳବ ପୂର୍ବାବସ୍ଥାରେ ପହଞ୍ଚିଲା ପରି ମନେହେଲା । ପରାଜିତ ଦେଶମାନଙ୍କ ଅପେକ୍ଷା ବିଜେତା ମିତ୍ର ଦେଶମାନଙ୍କ ଅବସ୍ଥା ଟିକିଏ ଭଲ ଥିଲା; କାରଣ ବିଜୟ ଯୋଗୁଁ ସେମାନେ ଟିକିଏ ନିଃଶ୍ୱାସ ମାରିଲେ ଏବଂ ବିଜିତ ଦେଶଗୁଡ଼ିକର ବିନିମୟରେ ସେମାନଙ୍କର କ୍ଷତିପୂରଣ କରିପାରିବେ ବୋଲି ଆଶା (ପରବର୍ତ୍ତୀ ଘଟଣାରେ ଏହା ଫମ୍ପା ବୋଲି ଜଣାପଡ଼ିଛି) କରିଥିଲେ । କିନ୍ତୁ ମିତ୍ର ରାଜ୍ୟମାନଙ୍କରେ ବି ବିପ୍ଳବ ମନୋଭାବ ଥିଲା । ବାସ୍ତବିକ ସମଗ୍ର ଇଉରୋପ ଓ ଏସିଆରେ ଅସନ୍ତୋଷର ଘନ ବାୟୁମଣ୍ଡଳ ଥିଲା ଏବଂ ଉପର ସ୍ତର ଭିତରେ ବିପ୍ଳବ ନିଆଁ ଜୁହୁଳୁଥାଏ ଏବଂ ବେଳେବେଳେ ବିପ୍ଳବ ହେବାର ଆଶା ଦେଖାଦିଏ । ଯାହାହେଉ ଏସିଆ ଓ ଇଉରୋପ ଭିତରେ ଅସନ୍ତୋଷ ଢଙ୍ଗ ଏବଂ ଯେଉଁ ଶ୍ରେଣୀଙ୍କ ଭିତରେ ବିପ୍ଳବର ଆଶଙ୍କା ଦେଖାଯାଉଥିଲା ସେଥିରେ ପାର୍ଥକ୍ୟ ଥିଲା । ଏସିଆରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ହେଉଥିବା ଜାତୀୟ ବିଦ୍ରୋହର ନେତା ଥିଲେ ମଧ୍ୟବିତ୍ତ ଶ୍ରେଣୀ । ଇଉରୋପରେ ଶ୍ରମିକ ଶ୍ରେଣୀ ପ୍ରଚଳିତ ବୁର୍ଜୋୟା ପୁଞ୍ଜିବାଦୀ ସାମାଜିକ ବ୍ୟବସ୍ଥା ଓଲଟାଇ ଦେବା ନିମନ୍ତେ ଏବଂ ମଧ୍ୟବିତ୍ତ ଶ୍ରେଣୀ ହାତରୁ କ୍ଷମତା ଛଡ଼ାଇ ନେବା ନିମନ୍ତେ ଧମକ ଦେଲେ ।

ଏହିସବୁ ଗର୍ଜନ ଓ କୁଲକ୍ଷଣ ସତ୍ତ୍ୱେ କେନ୍ଦ୍ର ବା ପଶ୍ଚିମ ଇଉରୋପରେ ରୁଷ ବିପ୍ଳବ ପରି କିଛି ଘଟିଲା ନାହିଁ । ପୁରୁଣା ସମାଜ ଉପରେ ଯେଉଁ ଆକ୍ରମଣ ହେଲା ତାକୁ ପ୍ରତିରୋଧ କରିବା ନିମନ୍ତେ ଏହା ଖୁବ୍ ସବଳ ଥିଲା; କିନ୍ତୁ ଏହି ଆକ୍ରମଣ ସବୁ ଏହାକୁ ଦୁର୍ବଳ କରିପକାଇଲା । ସୋଭିଏଟ୍ ରୁଷକୁ ରକ୍ଷା କରିବା ନିମନ୍ତେ ଯଥେଷ୍ଟ ସୂଚନା ଦେଖାଗଲା । ତାଙ୍କ ପଶ୍ଚାତରେ ଅତି ପ୍ରଭାବଶାଳୀ ସମର୍ଥନ ନ ଥିଲେ ସମ୍ଭବତଃ ୧୯୧୯ ବା ୧୯୨୦ରେ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ସମକ୍ଷରେ ସୋଭିଏଟ ରୁଷର ପତନ ହୋଇଥାନ୍ତା ।

କ୍ରମେ ପୃଥିବୀ ଯୁଦ୍ଧର ବର୍ଷକ ପରେ ବର୍ଷ ବିତିଲା ଓ କେତେକ ପରିମାଣରେ ଅବସ୍ଥା ଶାନ୍ତ ହୋଇଆସିଲା । ଏକପକ୍ଷରେ ପ୍ରତିକ୍ରିୟାପନ୍ଥୀ ରକ୍ଷଣଶୀଳ, ରାଜସତ୍ତ୍ୱବାଦୀ ଓ ଧାମନ୍ତ ଜମିଦାର ଏବଂ ଅନ୍ୟ ପକ୍ଷରେ ନରମ୍ପା ସାମ୍ୟବାଦୀ ବା ସୋସାଲଡେମୋକ୍ରାଟ-ମାନଙ୍କର ବିଚିତ୍ର ମିଳନରେ ବିପ୍ଲବୀ ଶକ୍ତିମାନଙ୍କୁ ଦମନ କରାଯାଇ ପାରିଲା । ଏହା ବାସ୍ତବିକ ଏକ ଅଦ୍ଭୁତ ସମ୍ମିଶ୍ରଣ, କାରଣ ସୋସାଲଡେମୋକ୍ରାଟ୍‌ମାନେ ମାର୍କସବାଦ ଓ ଶ୍ରମିକ ସରକାରରେ ସେମାନଙ୍କର ବିଶ୍ୱାସ ରହିଛି ବୋଲି ଦାବୀ କରୁଥିଲେ । ତେଣୁ ଉପରେ ଦେଖିଲେ ସୋଭିଏଟ ଓ କମ୍ୟୁନିଷ୍ଟଙ୍କର ଆଦର୍ଶ ଯାହା ସେମାନଙ୍କର ତାହା । ତଥାପି ଏହି ସୋସାଲଡେମୋକ୍ରାଟ୍‌ମାନେ ପୁଞ୍ଜିପତିଙ୍କ ଅପେକ୍ଷା କମ୍ୟୁନିଷ୍ଟଙ୍କୁ ବେଶୀ ଭୟ କଲେ ଏବଂ କମ୍ୟୁନିଷ୍ଟଙ୍କୁ ଦମନ କରିବା ନିମନ୍ତେ ପୁଞ୍ଜିପତିଙ୍କ ସହିତ ସହଯୋଗ କଲେ; କିମ୍ବା ଏହା ହୋଇପାରେ ଯେ ସେମାନେ ପୁଞ୍ଜିପତିଙ୍କୁ ଏତେ ଡରୁଥିଲେ ଯେ, ତାଙ୍କ ବିରୁଦ୍ଧରେ ଯିବାକୁ ସାହସ କରୁ ନ ଥିଲେ; ସେମାନେ ଶାନ୍ତିପୂର୍ଣ୍ଣ ଓ ପାର୍ଲିଆମେଣ୍ଟାରୀ ଉପାୟରେ ନିଜର ସ୍ଥିତି ଦୃଢ଼ କରିବାକୁ ଚାହୁଁଥିଲେ ଏବଂ ଏହିରୂପେ ପ୍ରାୟ ଅଦୃଶ୍ୟ ଭାବରେ ସାମ୍ୟବାଦ ଆଣିବେ ବୋଲି କହୁଥିଲେ । ସେମାନଙ୍କର ମତଲବ ଯାହା ହୋଇଥାଉ ପଛକେ, ସେମାନେ ବିପ୍ଲବୀ ଭାବ ଦମନ କରିବା ନିମନ୍ତେ ପ୍ରତିକ୍ରିୟାପନ୍ଥୀଙ୍କୁ ସାହାଯ୍ୟ କଲେ ଏବଂ ଏହିରୂପେ ପ୍ରକୃତରେ ଇଉରୋପର ଅନେକ ରାଜ୍ୟରେ ପ୍ରତି ବିପ୍ଲବ ଆଣିଲେ । ଏହି ପ୍ରତି-ବିପ୍ଲବ ପୁଣି ଶେଷକୁ ଏହି ସୋସାଲଡେମୋକ୍ରାଟ୍ ଦଳମାନଙ୍କୁ ଦମନ କରି ଦେଲା ଏବଂ ନୂତନ ଓ ଉଗ୍ର ସାମ୍ୟବାଦୀ-ବିରୋଧୀ ଶକ୍ତିସବୁ କ୍ଷମତା ପାଇଲେ । ମୋଟାମୋଟି ପୃଥିବୀ ଯୁଦ୍ଧ ପରବର୍ତ୍ତୀ ବର୍ଷମାନଙ୍କରେ ଇଉରୋପରେ ଏପରି ଅବସ୍ଥା ହୋଇଥିଲା ।

କିନ୍ତୁ ସଂଘର୍ଷ ଶେଷ ହୋଇ ନାହିଁ ଏବଂ ଦୁଇଟି ବିରୋଧୀ ଶକ୍ତି—ପୁଞ୍ଜିବାଦ ଓ ସାମ୍ୟବାଦଙ୍କ ଭିତରେ ସଂଗ୍ରାମ ଚାଲିଛି । ଦୁହିଁଙ୍କ ଭିତରେ ସ୍ଥାୟୀ ମିଳାମିଶା ହୋଇପାରେ ନା, ଭବିଷ୍ୟତରେ ଦୁହିଁଙ୍କ ଭିତରେ ଅସ୍ଥାୟୀ ବ୍ୟବସ୍ଥା ଓ ସନ୍ଧିମାନ ହୋଇପାରେ । ରୁଷ ଓ କମ୍ୟୁନିଜିମ୍ ଏକ ମେରୁରେ ଏବଂ ପଶ୍ଚିମ ଇଉରୋପ ଓ ଆମେରିକା ପ୍ରଧାନ ଶକ୍ତିମାନେ ଅପର ମେରୁରେ ରହିଛନ୍ତି । ଏ ଦୁହିଁଙ୍କ ଭିତରେ ମାନ୍ଦା, ନରମପନ୍ଥୀ ଓ ମଧ୍ୟ ଦଳମାନେ ସବୁ ଜାଗାରେ ଲୋପପାଇ ଯାଉଛନ୍ତି । ପ୍ରକୃତରେ ସମ୍ପୂର୍ଣ୍ଣ ଆର୍ଥିକ ଓଲଟପାଲଟ ଓ ସମଗ୍ର ଜଗତରେ ବର୍ଦ୍ଧିତ ଦୁର୍ଦ୍ଦଶା ଯୋଗୁଁ ଏହି ସଂଘର୍ଷ ଓ ଅସନ୍ତୋଷ ହେଉଛି ଏବଂ ଏକ ସାମଞ୍ଜସ୍ୟ ସ୍ଥାପିତ ନ ହେବା ପର୍ଯ୍ୟନ୍ତ ଏହି ସଂଘର୍ଷ ଅବଶ୍ୟ ଚାଲିଥିବ ।

ଯୁଦ୍ଧ ପରେ ଯେତେ ନିଷ୍ଫଳ ବିପ୍ଲବ ସବୁ ହୋଇଛି, ସେଥିଭିତରେ ଜର୍ମାନ ବିପ୍ଲବ ଅତ୍ୟନ୍ତ ମଜାଦାର ଓ ଜାଜ୍ୱଲ୍ୟମାନ—ତେଣୁ ମୁଁ ସେ ବିଷୟରେ ଟିକେ କିଛି କହିବି । ମୁଁ ତତେ ଆଗରୁ କହିଛି, ଯୁଦ୍ଧ ଯେତେବେଳେ ଲାଗିଗଲା ଇଉରୋପ ରାଜ୍ୟମାନଙ୍କରେ ସାମ୍ୟବାଦୀମାନେ କିପରି ନିଜ ଆଦର୍ଶ ଓ ପ୍ରତିଶ୍ରୁତି ଅନୁସାରେ କାର୍ଯ୍ୟ କଲେ ନାହିଁ ।

ସେମାନେ ପ୍ରତି ଦେଶର ଉତ୍କଟ ଜାତୀୟତା-ସ୍ରୋତରେ ଭାସିଗଲେ ଏବଂ ଯୁଦ୍ଧର ଉନ୍ମତ୍ତ ରକ୍ତ ପିପାସାରେ ସାମ୍ୟବାଦର ଅନ୍ତର୍ଜାତୀୟ ଆଦର୍ଶକୁ ସେମାନେ ଭୁଲିଗଲେ । ଠିକ୍ ପୃଥିବୀ ଯୁଦ୍ଧ ଆରମ୍ଭ ପୂର୍ବରୁ ୧୯୧୪ ଜୁଲାଇ ୩୦ ତାରିଖରେ ଜର୍ମାନ ସୋସାଲଡେମୋକ୍ରାଟିକ ପାର୍ଟିର ନେତାମାନେ ହାପ୍‌ସବର୍ଗମାନଙ୍କର ସାମ୍ରାଜ୍ୟବାଦୀ ଉଦ୍ଦେଶ୍ୟ ହାସଲ ପାଇଁ 'ଜର୍ମାନ ସୈନ୍ୟ ଏକ ରକ୍ତବିନ୍ଦୁ' ଦାନ କରିବା ବିରୁଦ୍ଧରେ ମତ ଘୋଷଣା କରିଥିଲେ । (ସେତେ-ବେଳେ ଅଷ୍ଟ୍ରିଆର୍ ଆର୍ଚଡ୍ୟୁକ୍ ଫ୍ରାଞ୍ଜ-ଫର୍ଡ଼ିନାଣ୍ଡ ହତ୍ୟା ବିଷୟରେ ଅଷ୍ଟ୍ରିଆ ଓ ସର୍ବିଆ ଭିତରେ ବିବାଦ ଲାଗିଥାଏ ।) ପାଞ୍ଚ ଦିନ ପରେ ସେ ଦଳ ଯୁଦ୍ଧକୁ ସମର୍ଥନ କଲେ ଏବଂ ଅନ୍ୟ ଦେଶମାନଙ୍କରେ ଏହିରୂପ ଦଳସବୁ ବି ସେହିପରି କଲେ । ବାସ୍ତବିକ ଅଷ୍ଟ୍ରିଆନ ସାମ୍ୟବାଦୀ ନେତା ପ୍ରକୃତରେ ଅଷ୍ଟ୍ରିଆ ସାମ୍ରାଜ୍ୟରେ ପୋଲାଣ୍ଡ ଓ ସର୍ବିଆ ଯୋଗ କରିବା କଥା କହିଲେ ଏବଂ ମତପ୍ରକାଶ କଲେ ଯେ, ଏହାକୁ କିଛି ସଂଯୋଗ (annexation) ବୋଲି କୁହାଯିବ ନାହିଁ ।

୧୯୧୮ ପ୍ରଥମ ଭାଗରେ ଇଉରୋପର ଶ୍ରମିକମାନଙ୍କ ପ୍ରତି ବଲ୍‌ସେଭିକ୍ ନିବେଦନର ନିର୍ଦ୍ଦିଷ୍ଟ ପ୍ରଭାବ ଜର୍ମାନ ଶ୍ରମିକମାନଙ୍କ ଉପରେ ପଡ଼ିଲା ଏବଂ ଗୋଲାବାରୁଦ କାରଖାନାରେ ବଡ଼ ବଡ଼ ଧର୍ମଘଟ ହେଲା । ଜର୍ମାନ ସାମ୍ରାଜ୍ୟ ସରକାରରେ ଏହା ଏକ ଅତି ଗୁରୁତର ପରିସ୍ଥିତି ଜାତ କଲା ଏବଂ ଅତି ବିପଦ ବି ଘଟି ଯାଇଥାନ୍ତା । ତେଣୁ ସାମ୍ୟବାଦୀ ନେତା-ମାନେ ଧର୍ମଘଟ କମିଟିରେ ଯୋଗ ଦେଇ ଓ ଭିତରୁ ଧର୍ମଘଟ ଭାଙ୍ଗି ଦେଇ ପରିସ୍ଥିତି ରକ୍ଷା କଲେ ।

୧୯୧୮ ନଭେମ୍ବର ୪ ତାରିଖରେ ଉତ୍ତର ଜର୍ମାନୀର କିଏଲ୍‌ଠାରେ ଏକ ନୌ ବିଦ୍ରୋହ ହେଲା । ଜର୍ମାନ ନୌବାହିନୀର ବଡ଼ ବଡ଼ ଯୁଦ୍ଧଜାହାଜ ସବୁ ସମୁଦ୍ର ଭିତରକୁ ଯିବା ନିମନ୍ତେ ହୁକୁମ ଗଲା; କିନ୍ତୁ ନାବିକ ଓ ଇଞ୍ଜିନରେ ନିଆଁ ଲଗାଇଲାବାଲାମାନେ ତାହା କରିବା ନିମନ୍ତେ ମନା କଲେ । ସେମାନଙ୍କୁ ଦମନ କରିବା ନିମନ୍ତେ ଯେଉଁ ସେନା ପଠାଗଲା, ସେମାନେ ତାଙ୍କ ସହିତ ମିଶି ଏକା ଉଦ୍ଦେଶ୍ୟରେ ମାତିଲେ । କର୍ମଚାରୀମାନଙ୍କୁ କାର୍ଯ୍ୟରୁ ବାହାର କରାଗଲା ବା ଗିରଫ କରାଗଲା ଏବଂ ଶ୍ରମିକ ଓ ସୈନିକଙ୍କର ସମିତି (ସୋଭିଏଟ) ଗଢ଼ାହେଲା । ଏହା ଠିକ୍ ରୂପରେ ସୋଭିଏଟ ବିପ୍ଳବର ଆରମ୍ଭ ଅବସ୍ଥା ପରି ହୋଇଥିଲା ଏବଂ ଏହା ସମଗ୍ର ଜର୍ମାନୀରେ ବ୍ୟାପିଗଲା ପରି ବୋଧ ହେଲା । ତତ୍‌କ୍ଷଣାତ୍ ସୋସାଲଡେମୋକ୍ରେଟିକ୍ ନେତାମାନେ କିଏଲରେ ଉପସ୍ଥିତ ହେଲେ ଏବଂ ନାବିକ ଓ ଶ୍ରମିକଙ୍କର ମନକୁ ଅନ୍ୟ ଆଡ଼କୁ ନେଇଯିବାରେ କୃତକାର୍ଯ୍ୟ ହେଲେ । ଯାହାହେଉ ଏହି ନାବିକମାନେ ନିଜର ଅସ୍ତ୍ର ସହି କିଏଲ ଛାଡ଼ିଲେ ଏବଂ ସମଗ୍ର ଦେଶରେ ବିଦ୍ରୋହ ବୀଜ ବପନ କଲେ ।

ବିପ୍ଳବୀ ଆନ୍ଦୋଳନ ବ୍ୟାପୁଥାଏ । ବାଭେରିଆ (ଦକ୍ଷିଣ ଜର୍ମାନୀ)ରେ ଏକ ପ୍ରଜାତନ୍ତ୍ର ଘୋଷିତ ହେଲା । ତଥାପି କାଇଜର ମାଡ଼ି ରହିଲା । ନଭେମ୍ବର ୯ ତାରିଖରେ ବର୍ଲିନରେ

ଏକ ସାଧାରଣ ଧର୍ମଘଟ ହେଲା । ସମସ୍ତ କାର୍ଯ୍ୟ ବନ୍ଦ ହେଲା ଏବଂ ପ୍ରାୟ ଆଦୌ ହିଂସା ହୋଇ ନ ଥିଲା; କାରଣ ସହରର ସମସ୍ତ ପଲଟନ ବିପ୍ଳବ ତରଫକୁ ଚାଲିଗଲେ । ପୁରୁଣା ବ୍ୟବସ୍ଥାର ପ୍ରତ୍ୟକ୍ଷ ପତନ ହେଲା ଏବଂ ପ୍ରଶ୍ନ ହେଲା ଏହା ସ୍ଥାନରେ ଆଉ କଣ ରହିବ । କେତେକ କମ୍ୟୁନିଷ୍ଟ ନେତା ଏକ ସୋଭିଏଟ ବା ପ୍ରଜାତନ୍ତ୍ର ଘୋଷଣା କରିବାକୁ ଯାଉଥିଲେ —ଏପରି ସମୟରେ ଜଣେ ସୋସାଲ ଡେମୋକ୍ରାଟିକ ନେତା ପାର୍ଲିମେଣ୍ଟାରି ପ୍ରଜାତନ୍ତ୍ର ଘୋଷଣା କରି ସେମାନଙ୍କର ଆଗୁଆ ହୋଇଗଲେ ।

ଏହିରୂପେ ଜର୍ମାନ ପ୍ରଜାତନ୍ତ୍ରର ଉତ୍ପତ୍ତି ହେଲା । କିନ୍ତୁ ଏହା ଏକ ଅବାସ୍ତବ ପ୍ରଜାତନ୍ତ୍ର ଥିଲା; କାରଣ ପ୍ରକୃତରେ କିଛି ପରିବର୍ତ୍ତନ ହୋଇ ନ ଥିଲା । ଯେଉଁ ସୋସାଲ ଡେମୋକ୍ରାଟମାନେ ସେତେବେଳେ ପରିସ୍ଥିତିର ନେତା ଥିଲେ, ସେମାନେ ପ୍ରତ୍ୟେକ ଜିନିଷ ଠିକ୍ ଯେପରି ଥିଲା ସେହିପରି ରଖିଲେ; ସେମାନେ ନିଜେ କେତେକ ଉଚ୍ଚପଦବୀ, ମନ୍ତ୍ରୀତ୍ୱ ଆଦି ଗ୍ରହଣ କଲେ ଏବଂ ସେନା, ସିଭିଲ ସର୍ଭିସ, ବିଚାର ବିଭାଗ ଓ ସମଗ୍ର ଶାସନ କାଇଜରଙ୍କ ଅମଳରେ ଯେପରି ଥିଲା ସେହିପରି ରହିଲା । ତେଣୁ ଏବେ ପ୍ରକାଶିତ ଏକ ପୁସ୍ତକର ନାମ ପରି "କାଇଜର ଗଲା; ସେନାପତି ସବୁ ରହିଲେ ।" ବିପ୍ଳବ ସବୁ ଏପରି ହୁଏନା ବା ଦୃଢ଼ ହୁଏ ନା । ପ୍ରକୃତ ବିପ୍ଳବ ରାଜନୀତିକ, ସାମାଜିକ ଓ ଆର୍ଥିକ ସଂଗଠନର ଅବଶ୍ୟ ପରିବର୍ତ୍ତନ କରିବ । ଯଦି କ୍ଷମତା ବିପ୍ଳବର ଶତ୍ରୁଙ୍କ ହାତରେ ଥାଏ, ତେବେ ବିପ୍ଳବ ବଞ୍ଚିରହିବ ବୋଲି ଆଶା କରିବା ଅଳୀକ । ଯାହାହେଉ ଜର୍ମାନ ସୋସାଲଡେମୋ-କ୍ରାଟମାନେ ଏହି କଥାଟି କଲେ ଏବଂ ଏହାର ପତନ ପାଇଁ ପ୍ରସ୍ତୁତ ହେବା ନିମନ୍ତେ ଓ ସଂଗଠନ କରିବା ନିମନ୍ତେ ବିପ୍ଳବ ବିରୋଧୀମାନଙ୍କୁ ପୂର୍ଣ୍ଣ ସୁଯୋଗ ଦେଲେ ।

କିଏଲ ନାବିକମାନେ ଏପରି ଦେଶର ଚାରିଆଡ଼େ ଭୁଲ ବିପ୍ଳବର ଭାବଧାରା ପ୍ରଚାର କରିବାଟା ନୂତନ ସୋସାଲ ଡେମୋକ୍ରାଟିକ ସରକାର ପସନ୍ଦ କଲା ନାହିଁ । ସେମାନେ ବର୍ଲିନରେ ଏହି ନାବିକମାନଙ୍କୁ ଦମନ କରିବା ନିମନ୍ତେ ଚେଷ୍ଟା କଲେ ଏବଂ ୧୯୧୯ ଜାନୁୟାରି ପ୍ରଥମ ଭାଗରେ ଭୀଷଣ ସଂଘର୍ଷ ହେଲା, ତେଣୁ ଜର୍ମାନ କମ୍ୟୁନିଷ୍ଟମାନେ ଏକ ସୋଭିଏଟ ସରକାର ପ୍ରତିଷ୍ଠା କରିବାକୁ ଚେଷ୍ଟା କଲେ ଏବଂ ସାହାଯ୍ୟ ନିମନ୍ତେ ନଗରର ଜନତାକୁ ଆହ୍ୱାନ କଲେ । ସେମାନେ ଲୋକଙ୍କଠାରୁ କିଛି ସାହାଯ୍ୟ ପାଇଲେ, ସରକାରୀ କୋଠାବାଡ଼ି ଦଖଲ କରିଗଲେ ଏବଂ ଜାନୁୟାରିରେ ଏକ ସପ୍ତାହ ପର୍ଯ୍ୟନ୍ତ ସେମାନେ ସହରରେ କ୍ଷମତା ପାଇଲା ପରି ବୋଧ ହେଲା । ଏହାକୁ ବର୍ଲିନରେ 'ଲାଲ ସପ୍ତାହ' ବୋଲି କହନ୍ତି । କିନ୍ତୁ ଜନତାର ସମର୍ଥନ ଯଥେଷ୍ଟ ନ ଥିଲା—କାରଣ ଅଧିକାଂଶ ଲୋକ ବିଚଳିତ ହୋଇ ପଡ଼ିଲେ ଏବଂ କଣ କରିବାକୁ ହେବ ଜାଣିପାରି ନ ଥିଲେ । ଜର୍ମାନୀର ରକ୍ଷିତ (Regular) ସୈନ୍ୟମାନେ ବି ବିଚଳିତ ହୋଇଗଲେ ଓ ସେମାନେ ତଟସ୍ଥ ରହିଗଲେ । ଏହି ସୈନିକମାନଙ୍କ ଉପରେ ନିର୍ଭର କରିଯାଇ ପାରିବ ନାହିଁ ବୋଲି

ସୋସାଲ୍ ଡେମୋକ୍ରାଟମାନେ ଏହି ଉଦ୍ଦେଶ୍ୟରେ କେତେକ ବିଶେଷ ସ୍ୱେଚ୍ଛାସେବକସେନା ସଂଗ୍ରହ କଲେ ଏବଂ ତାଙ୍କ ସାହାଯ୍ୟରେ କମ୍ୟୁନିଷ୍ଟ ବିଦ୍ରୋହକୁ ଦମନ କଲେ । ଅତି କ୍ରୂର ଲଢ଼େଇ ହେଲା ଏବଂ ସେମାନଙ୍କର ପତ୍ତି ରଖିଲେ ନାହିଁ । ଲଢ଼େଇ ଶେଷ ହେବାର କେତେକ ଦିନ ପରେ କାର୍ଲ୍ ଲିବନ୍ ଚଟ୍ ଓ ରୋଜା ଲକ୍‌ସେମ୍ବର୍ଗ ନାମକ ଦୁଇ ଜଣ କମ୍ୟୁନିଷ୍ଟ ନେତାଙ୍କୁ ସେମାନେ ଯେଉଁଠାରେ ଲୁଚି ରହିଥିଲେ ସେଠାରୁ ଘୋଷାରି ନିଆଗଲା ଏବଂ ବିନା ଉତ୍ତେଜନାରେ ହତ୍ୟା କରାଗଲା । ଏହି ହତ୍ୟା ଏବଂ ଏଥିନିମନ୍ତେ ଦାୟୀ ଲୋକଙ୍କୁ ପରେ ଖଲାସ କରି ଦେବା ହେତୁ କମ୍ୟୁନିଷ୍ଟ ଓ ସୋସାଲ ଡେମୋକ୍ରାଟମାନଙ୍କ ଭିତରେ ଖୁବ୍ ତିକ୍ତତା ସୃଷ୍ଟି ହେଲା । କାର୍ଲ ଲିବନ ଚଟ୍ ହେଉଚନ୍ତି ଊନବିଂଶ ଶତାବ୍ଦୀର ସୁପରିଚିତ ଓ ପ୍ରସିଦ୍ଧ ସାମ୍ୟବାଦୀ ଯୋଦ୍ଧା ଉଇଲହେଲ୍ମ ଲିବନ ଚଟ୍‌ଙ୍କ ପୁଅ । ମୋର ଏକ ପୂର୍ବ ଚିଠିରେ ମୁଁ ତାଙ୍କ ନାମ ଉଲ୍ଲେଖ କରିଛି । ରୋଜା ଲକ୍‌ସେମ୍ବର୍ଗ ମଧ୍ୟ ଜଣେ ସୁପରିଚିତ କର୍ମୀ ଓ ଲେନିନଙ୍କର ପରମ ବନ୍ଧୁ । ଏପରି ପୁଣି ହେଲା ଯେଉଁ କମ୍ୟୁନିଷ୍ଟ ବିଦ୍ରୋହ ଫଳରେ ସେମାନଙ୍କର ମୃତ୍ୟୁ ଘଟିଲା ଲିବନ ଚଟ୍ ଓ ଲକ୍‌ସେମ୍ବର୍ଗ ଦୁହେଁ ତାର ବିରୋଧୀ ଥିଲେ ।

ସୋସାଲ୍ ଡେମୋକ୍ରାଟିକ ପ୍ରଜାତନ୍ତ୍ରଦ୍ୱାରା କମ୍ୟୁନିଷ୍ଟମାନଙ୍କୁ ଦମନ କରା ହେଲା ଏବଂ ଅଳ୍ପ ଦିନ ପରେ ପ୍ରଜାତନ୍ତ୍ର ପାଇଁ ଏକ ଶାସନ ଖସଡ଼ା ଓ୍ୱେମାରଠାରେ ସ୍ଥିର ହେଲା । ତେଣୁ ଓ୍ୱେମାର (Weimar) ଶାସନ ଖସଡ଼ା ବୋଲି କହନ୍ତି । ଦିନ ମାସ ଭିତରେ ପ୍ରଜାତନ୍ତ୍ରରେ ଆଉ ଏକ ପରିବର୍ତ୍ତନ ଦେଖାଦେଲା—ଏଥର ଏହା ଅନ୍ୟ ତରଫରୁ ଆସିଲା । ପ୍ରତିକ୍ରିୟାପନ୍ଥୀମାନେ ପ୍ରଜାତନ୍ତ୍ର ବିରୁଦ୍ଧରେ ଏକ ପ୍ରତିଆକ୍ରମଣ ଆରମ୍ଭ କଲେ ଏବଂ ଏଥିରେ ପୁରୁଣା ସେନାପତିମାନେ ମୁଖ୍ୟ ଭାଗ ନେଲେ । ଏହି ବିଦ୍ରୋହ 'କାପ ପୁଚସ' ନାମରେ ଜଣା—କାପ ଏହାର ନେତା ଥିଲେ ଏବଂ ଏପରି ଜାଗରଣକୁ ଜର୍ମାନ ଭାଷାରେ 'ପୁଚସ' କହନ୍ତି । ସୋସାଲ ଡେମୋକ୍ରାଟିକ ସରକାର ବର୍ଲିନରୁ ପଳାଇଗଲା, କିନ୍ତୁ ବର୍ଲିନର ଶ୍ରମିକମାନେ ହଠାତ୍ ସାଧାରଣ ଧର୍ମଘଟ କରି ଓ ସମସ୍ତ କାର୍ଯ୍ୟକଳାପ ପୂର୍ଣ୍ଣରୂପେ ବନ୍ଦ କରି ଦେଇ ଏହି 'ପୁଚସ'କୁ ଶେଷ କରିଦେଲେ । ଏଥିରେ ଏଡ଼େ ବଡ଼ ସହରର ଜୀବନ ଅଚଳ ହୋଇଗଲା । ସଂଗଠିତ ଶ୍ରମିକଙ୍କ ସମ୍ମୁଖରେ କାପ ଓ ତାଙ୍କ ବନ୍ଧୁମାନେ ବର୍ଲିନ ଛାଡ଼ି ପଳାଇଲେ ଏବଂ ପୁଣି ସରକାର ପରିଚାଳନା ଭାର ନେବା ନିମନ୍ତେ ସୋସାଲ ଡେମୋକ୍ରାଟିକ ନେତାମାନେ ଫେରିଲେ । କମ୍ୟୁନିଷ୍ଟଙ୍କ ପ୍ରତି ଯେପରି ବ୍ୟବହାର କରୁଥିଲେ ଠିକ୍ ତାର ବିପରୀତ ଅତି ଉଦାର ବ୍ୟବହାର ସରକାର କାପ ନେତାମାନଙ୍କ ପ୍ରତି କଲା । ସେମାନଙ୍କ ଭିତରୁ ଅନେକ କର୍ମଚ୍ୟୁତି ପେନସନ ଭୋଗୁଥିଲେ ଏବଂ ବିଦ୍ରୋହ ସତ୍ତ୍ୱେ ସେମାନେ ପେନସନ ପାଇଲେ ।

ବାଭେରିଆରେ ସେହିପରି ଏକ ପ୍ରତି-ବିପ୍ଳବୀ 'ପୁଚସ' ବା ଜାଗରଣ ଦେଖା-ଦେଲା । ଏହା ବିଫଳ ହେଲା, କିନ୍ତୁ ଏଥିରେ ମୁଖ୍ୟ କଥା ହେଉଛି ଏହାର ସଂଗଠକ ଥିଲା

ଜଣେ ଛୋଟ ଅଷ୍ଟ୍ରିୟାନ କର୍ମଚ୍ୟୁତ ହିଟଲର—ସେ ଆଜ ଜର୍ମାନୀର ଡ଼ିକଟେଟର ।

ଏସବୁର ଫଳ ହେଲା ଯେ ଯଦିଓ ଜର୍ମାନ ପ୍ରଜାତନ୍ତ୍ର ନାମକୁ ମାତ୍ର ଥିଲା, ଏହା ଦିନକୁ ଦିନ ଦୁର୍ବଳ ହୋଇପଡ଼ିଲା । ସୋସାଲିଷ୍ଟ, ସୋସାଲ ଡେମୋକ୍ରାଟ ଓ କମ୍ୟୁନିଷ୍ଟ-ମାନଙ୍କ ଭିତରେ ବିବାଦ ଫଳରେ ଉଭୟେ ଦୁର୍ବଳ ହୋଇଗଲେ ଏବଂ ଯେଉଁ ପ୍ରତିକ୍ରିୟା-ପନ୍ଥୀମାନେ ପ୍ରକାଶ୍ୟ ଭାବରେ ପ୍ରଜାତନ୍ତ୍ରର ନିନ୍ଦା କରୁଥିଲେ, ସେମାନେ ଅଧିକ ସଂଗଠିତ ଓ ଉନ୍ନତ ହୋଇଗଲେ । ବଡ଼ ଭୂସ୍ୱାମୀଙ୍କୁ ଜର୍ମାନୀରେ 'ଜଙ୍କର' ବୋଲି କହନ୍ତି, ସେମାନେ ଓ ବଡ଼ ବଡ଼ କାରଖାନା ମାଲିକମାନେ ସରକାରରେ ଯାହା ବା କେତେକ ସୋସାଲିଷ୍ଟ ରହିଯାଇଥିଲେ ସେମାନଙ୍କୁ କ୍ରମେ ଠେଲି ବାହାରକଲେ । ଭର୍ସେଇର ସନ୍ଧି ଜର୍ମାନ ଲୋକଙ୍କୁ ଗୁରୁତର ଭାବରେ ଆଘାତ କଲା ଏବଂ ପ୍ରତିକ୍ରିୟାପନ୍ଥୀମାନେ ନିଜର ସୁବିଧା ଲାଗି ଏହାର ଉପଯୋଗ କଲେ । ଏହି ସନ୍ଧି ଅନୁସାରେ ଜର୍ମାନୀକୁ ନିରସ୍ତ୍ର ହେବାକୁ ହେଲା ଓ ତାର ପ୍ରକାଣ୍ଡ ସେନା ଛାଡ଼ିବାକୁ ପଡ଼ିଲା । କେବଳ ୧,୦୦,୦୦୦ ସୈନ୍ୟର ଏକ ଛୋଟ ସେନା ରଖିବା ନିମନ୍ତେ ତାକୁ ଅନୁମତି ଦିଆଗଲା । ଫଳସ୍ୱରୂପ ବାହାରେ ଦେଖିବାକୁ ନିରସ୍ତ୍ରୀକରଣ ହେଲା ଏବଂ ପ୍ରକୃତରେ ବହୁ ପରିମାଣରେ ଅସ୍ତ୍ର ଲୁଚାଇ ରଖାଗଲା । ବିଶାଳ 'ଘରୋଇ ସେନା' ସବୁ ଗଢ଼ି ଉଠିଲା—ଅର୍ଥାତ୍ ବିଭିନ୍ନ ଦଳର ସ୍ୱେଚ୍ଛା-ସେବକ ବାହିନୀ ରହିଲେ । ରକ୍ଷଣଶୀଳ ଜାତୀୟତାବାଦୀ ସ୍ୱେଚ୍ଛାସେବକ ସେନାକୁ 'ଇସ୍ପାତ ଶିରସ୍ତ୍ରାଣ' (Steel helmet) ବୋଲି କହୁଥିଲେ, କମ୍ୟୁନିଷ୍ଟ ଶ୍ରମିକମାନଙ୍କର ସ୍ୱେଚ୍ଛା-ସେବକ ହେଲେ ଲାଲ୍‌ବାହିନୀ (Red front) ଏବଂ ପରେ ହିଟଲର୍‌ଙ୍କ ଅନୁଚରଙ୍କ ନାମ ହେଲା 'ନାଜୀ' ସେନା ।

ଜର୍ମାନୀର ଯୁଦ୍ଧୋତ୍ତର କାଳର ପ୍ରଥମାବସ୍ଥା ସମ୍ବନ୍ଧରେ ମୁଁ ବହୁତ ବର୍ଣ୍ଣନା କଲି ଏବଂ କିପରି ବାୟୁମଣ୍ଡଳରେ ବିପ୍ଳବ ଥିଲା ଓ ପ୍ରତିବିପ୍ଳବଦ୍ୱାରା ତାହା ସହିତ ଯୁଦ୍ଧ କରାଗଲା ସେ ବିଷୟରେ ମୁଁ ତତେ ଅନେକ କଥା କହିପାରେ । ଜର୍ମାନୀର ବିଭିନ୍ନ ଅଞ୍ଚଳରେ ବାଭେରିଆ ଓ ସାକସନୀରେ ମଧ୍ୟ ଜାଗରଣ ହେଲା । ଯେହି ଅବସ୍ଥା ଅଷ୍ଟ୍ରିଆରେ ଅନେକ ପରିମାଣରେ ଥିଲା—ଏହି ଦେଶକୁ ସନ୍ଧି ତାର ପୂର୍ବ ଆକାରରୁ ବହୁତ ଛୋଟ କରି ଦେଇଥିଲା । ଏହି ଛୋଟ ଦେଶଟିର ଏକ ପ୍ରକାଣ୍ଡ ରାଜଧାନୀ ନଗର ଥିଲା ଭିଏନା । ଏହା ସମ୍ପୂର୍ଣ୍ଣରୂପେ ଭାଷା ଓ ସଂସ୍କୃତିରେ ଜର୍ମାନ ଥିଲା । ସନ୍ଧି ହେବାର ଏକ ଦିନ ପରେ ୧୯୧୮ ନଭେମ୍ବର ୧୨ ତାରିଖରେ ଏହା ଏକ ପ୍ରଜାତନ୍ତ୍ର ହେଲା । ଏହା ଜର୍ମାନୀର ଏକ ଅଂଶ ରୂପେ ରହିବାକୁ ଚାହିଁଥିଲା । କିନ୍ତୁ ଏହା କରିବା ଏକ ସ୍ୱାଭାବିକ ଜିନିଷ ହୋଇଥିଲେ ସୁଦ୍ଧା ମିତ୍ର ଶକ୍ତିମାନେ ଦୃଢ଼ ଭାବରେ ନିଷେଧ କଲେ । ଅଷ୍ଟ୍ରିଆ ଓ ଜର୍ମାନୀର ଏହି ପ୍ରସ୍ତାବିତ ମିଳନକୁ ଜର୍ମାନ ଶବ୍ଦରେ 'ଆନଶ୍ଲସ'* କହନ୍ତି ।

* ୧୯୩୮ ମାର୍ଚ୍ଚରେ ଏହି 'ଆନଶ୍ଲସ' ଘଟିଲା ।

ଆରମ୍ଭରେ ଜର୍ମାନୀ ପର ଅଷ୍ଟ୍ରିଆରେ ବି ସୋସାଲ ଡେମୋକ୍ରାଟମାନେ କ୍ଷମତା ପାଇଲେ; କିନ୍ତୁ ନିଜ ଭିତରେ ଆସ୍ଥାର ଅଭାବ ଓ ଭୟଯୁକ୍ତ ହୋଇଥିବାରୁ ସେମାନେ ବୁର୍ଜୋୟା ଦଳମାନଙ୍କ ସହ ଗୋଟାଏ ମିଳାମିଶା ନୀତି ଅନୁସରଣ କଲେ । ଏହା ଫଳରେ ସୋସାଲ ଡେମୋକ୍ରାଟମାନେ ବଡ଼ ଦୁର୍ବଳ ହୋଇପଡ଼ିଲେ ଏବଂ ତାଙ୍କ ହାତରୁ ସରକାର ଅନ୍ତର ହୋଇଗଲା । ଜର୍ମାନୀ ପରି ଘରୋଇ ସେନା ସବୁ ବୃଦ୍ଧି ପାଇଲା ଏବଂ ଶେଷରେ ଏକ ପ୍ରତିକ୍ରିୟାଶୀଳ ଡିକଟେଟରୀ ଶାସନ ପ୍ରତିଷ୍ଠା ହେଲା । ଦୀର୍ଘକାଳ ପର୍ଯ୍ୟନ୍ତ ସାମ୍ୟବାଦୀ ନଗର ଭିଏନା ଓ ମଫସଲ ଅଞ୍ଚଳର ରକ୍ଷଣଶୀଳ ଖ୍ରୀଷ୍ଟାନମାନଙ୍କ ଭିତରେ ସଂଘର୍ଷ ଲାଗିଲା । ସାମ୍ୟବାଦୀ ଭିଏନା ମ୍ୟୁନିସିପାଲିଟି ଶ୍ରମିକ ଶ୍ରେଣୀଙ୍କ ପାଇଁ ସୁନ୍ଦର ଗୃହ ବ୍ୟବସ୍ଥା ଓ ଅନ୍ୟ ଯୋଜନା ସବୁ ଲାଗି ପ୍ରସିଦ୍ଧ ।

ଯୁଦ୍ଧ ଶେଷ ହେବାର ପାଞ୍ଚ ସପ୍ତାହ ପୂର୍ବରୁ ୧୯୧୮ ଅକ୍ଟୋବର ୩ ତାରିଖରେ ହଙ୍ଗେରୀରେ ଏକ ବିପ୍ଳବ ହେଲା । ନଭେମ୍ବର ମାସରେ ଏକ ପ୍ରଜାତନ୍ତ୍ର ଘୋଷିତ ହେଲା । ଚାରିମାସ ପରେ ୧୯୧୯ ମାର୍ଚ୍ଚ ମାସରେ ଦ୍ୱିତୀୟ ବିପ୍ଳବ ଘୋଷିତ ହେଲା । ଏହା ହେଉଛି ବେଲକୁନ ନାମକ ଜଣେ କମ୍ୟୁନିଷ୍ଟଙ୍କ ନେତୃତ୍ୱରେ ସୋଭିଏଟ ବିପ୍ଳବ । ସେ ଆଗରୁ ଲେନିନଙ୍କ ସହ ସମ୍ପୃକ୍ତ ଥିଲେ । ଏକ ସୋଭିଏଟ ସରକାର ସ୍ଥାପିତ ହେଲା ଏବଂ କେତେମାସ ଏହା କ୍ଷମତାରେ ବି ରହିଲା । ତାପରେ ଦେଶର ରକ୍ଷଣଶୀଳ ଓ ପ୍ରତିକ୍ରିୟାପନ୍ଥୀ ଶକ୍ତିସବୁ ସେମାନଙ୍କ ସାହାଯ୍ୟ କରିବା ନିମନ୍ତେ ଏକ ରୁମାନିଆନ ସେନାବାହିନୀକୁ ନିମନ୍ତ୍ରଣ କଲେ । ରୁମାନିଆମାନେ ଅତି ଆଗ୍ରହର ସହ ଆସିଲେ । ବେଲକୁନ ସରକାରକୁ ଦବାଇବାରେ ସାହାଯ୍ୟ କଲେ ଏବଂ ତାପରେ ଦେଶକୁ ଲୁଟ କରିବାରେ ଲାଗିଲେ । ଯେତେବେଳେ ମିତ୍ରଶକ୍ତି ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟବିଧାନ କରିବାର ଧମକ ଦେଲେ, ସେତେବେଳେ ଯାଇ ସେମାନେ ଗୁଞ୍ଜିଗଲେ । ରୁମାନିଆନମାନେ ଅନ୍ତର ହୋଇଗଲା ପରେ ଆଉ ପୁନର୍ବାର ବିପ୍ଳବ ଉଦ୍ୟମରେ ବାଧା ଦେବା ନିମନ୍ତେ ହଙ୍ଗେରୀର ରକ୍ଷଣଶୀଳମାନେ ସମସ୍ତ ଉଦାରନୀତିକ ବା ଅଗ୍ରଗାମୀ ମତବାଦୀଙ୍କୁ ଆତଙ୍କିତ କରିବା ନିମନ୍ତେ ଘରୋଇ ସେନା ବା ସ୍ୱେଚ୍ଛାସେବକ ବାହିନୀ ସଂଗଠିତ କଲେ । ଏହିରୂପେ ଯାହା କହନ୍ତି ହଙ୍ଗେରୀରେ ୧୯୧୯ରେ 'ଶ୍ୱେତ ଆତଙ୍କ' (White terror) ହେଲା । ଏହାକୁ "ଯୁଦ୍ଧୋତ୍ତର ଇତିହାସ ପୃଷ୍ଠାରେ ଏକ ରକ୍ତାକ୍ତ ପୃଷ୍ଠା" ବୋଲି ବିଚାର କରଯାଏ । ହଙ୍ଗେରୀ ଆଜି ସୁଦ୍ଧା ଆଂଶିକରୂପେ ସାମନ୍ତବାଦୀ ଅଛି ଏବଂ ଯୁଦ୍ଧ ଭିତରେ ପ୍ରଚୁର ଅର୍ଥ ଉପାର୍ଜନ କରିଥିବା କାରଖାନା ମାଲିକମାନଙ୍କ ସହ ଏହି ସାମନ୍ତ ଜମିଦାରମାନେ କେବଳ କମ୍ୟୁନିଷ୍ଟ ନୁହନ୍ତି, ସାଧାରଣ ଭାବରେ ଶ୍ରମିକ ଏବଂ ସୋସାଲ ଡେମୋକ୍ରାଟ୍ ଉଦାରନୀତିକ, ଶାନ୍ତିବାଦୀ ଏବଂ ଏପରି କି ଇହୁଦୀମାନଙ୍କୁ ହତ୍ୟା କରିବା ଓ ଆତଙ୍କିତ କରିବା ନିମନ୍ତେ ମିଳିତ ହୋଇଛନ୍ତି । ସେହିଦିନଠାରୁ ଜର୍ମାନୀ ଏକ ପ୍ରତିଗାମୀ ଡିକ୍ଟେଟରି ଶାସନ ଅଧୀନରେ ରହିଛି । ଦେଖାଇବା ଉଦ୍ଦେଶ୍ୟରେ ଏକ ପାର୍ଲିମେଣ୍ଟ ଅଛି, କିନ୍ତୁ

ଭୋଟନେବା ପ୍ରଥା ପ୍ରକାଶ୍ୟରେ ହୁଏ—ଏହାର ଅର୍ଥ ପାର୍ଲିମେଣ୍ଟକୁ ସଦସ୍ୟ ନିର୍ବାଚନ ସାଧାରଣରେ କରାଯାଏ ଏବଂ ପୁଲିସ ଓ ସେନା ଜଗନ୍ତି ଯେପରି ଡିକ୍‌ଟେଟସି ଶାସନକୁ ସମର୍ଥନ କରିବା ଲୋକେ କେବଳ ନିର୍ବାଚିତ ହୁଅନ୍ତି । ରାଜନୀତିକ ସମସ୍ୟା ବିଷୟରେ କୌଣସି ସାଧାରଣ ସଭା ବି ସହ୍ୟ କରି ହୁଏନା ।

କେନ୍ଦ୍ର ଇଉରୋପରେ କେତେକ ଯୁଦ୍ଧୋତ୍ତର ଘଟଣା, ଯୁଦ୍ଧର ପ୍ରତିକ୍ରିୟା, ପରାଜୟ ଏବଂ ଏକ କେନ୍ଦ୍ରଶକ୍ତିରୂପେ ପରିଚିତ ରୁଷରେ ବିପ୍ଳବ ଆଦି ସମ୍ବନ୍ଧରେ କହିଛି । ଯୁଦ୍ଧର ଅଦ୍ଭୁତ ଆର୍ଥିକ ପରିଣତି ଏବଂ ଏହା କିପରି ପୁଞ୍ଜିବାଦକୁ ତାର ବର୍ତ୍ତମାନର ଦୁର୍ଭାଗ୍ୟ ପରିସ୍ଥିତିକୁ ଆଣିଲା ସେସବୁ ବିଷୟ ଅଲଗା ଭାବରେ କହିବି । ମୋଟାମୋଟି ମୁଁ ଏହି ଚିଠିରେ ଦେଖାଇଛି ଯେ ଯୁଦ୍ଧୋତ୍ତର କାଳରେ ଇଉରୋପରେ ସାମାଜିକ ବିପ୍ଳବ ଆସନ୍ନପ୍ରାପ୍ତ ହୋଇଥିଲା । ଏହି ଜିନିଷଟି ସୋଭିଏଟ ରୁଷକୁ ସାହାଯ୍ୟ କଲା, କାରଣ ପ୍ରଧାନ ସାମ୍ରାଜ୍ୟବାଦୀ ଦେଶମାନଙ୍କର ଶ୍ରମିକଙ୍କ ଉପରେ ଖରାପ ପ୍ରଭାବ ପଡ଼ିବା ଆଶଙ୍କା କରି କୌଣସି ଶକ୍ତି ତାହା ଉପରେ ପୂର୍ଣ୍ଣ ପ୍ରାଣରେ ଆକ୍ରମଣ କରିବାକୁ ସାହସ କଲେ ନାହିଁ । ଯାହାହେଉ ବିପ୍ଳବ ହେଲା ନାହିଁ—ଯାହା ବା ସାମାନ୍ୟ ହୋଇଥିଲା, ତାହା ଦମନ କରି ଦିଆଗଲା । ସୋସାଲ୍ ଡେମୋକ୍ରାଟ ଦଳ ସାମାଜିକ ବିପ୍ଳବ ନୀତି ଉପରେ ପ୍ରତିଷ୍ଠିତ ହୋଇଥିଲେ ସୁଦ୍ଧା ଏହିସବୁ ବିପ୍ଳବକୁ ଦମନ କରିବାରେ ଓ ଏଡ଼ାଇ ଦେବାରେ ସେମାନେ ମୁଖ୍ୟ ଭାଗ ନେଇଥିଲେ । ଏହା ମଧ୍ୟ ଦେଖାଯାଏ ଯେ ଏହି ସୋସାଲ ଡେମୋକ୍ରାଟମାନେ ଆଶା ବା ବିଶ୍ୱାସ କରିଦେଲେ ଯେ, ପୁଞ୍ଜିବାଦର ସ୍ୱାଭାବିକ ମୃତ୍ୟୁ ଘଟିବ । ତେଣୁ ଦୃଢ଼ଭାବରେ ଏହାକୁ ଆକ୍ରମଣ ନ କରି ସେମାନେ କ୍ଷଣକାଳଲାଗି ଏହାକୁ ରକ୍ଷା କରିବାରେ ସାହାଯ୍ୟ କଲେ । ଅଥବା ହୋଇପାରେ ଯେ; ଏହି ପ୍ରକାଣ୍ଡ ଓ ସମ୍ପଦଶାଳୀ ଦଳ ବଡ଼ ଅସୁସୀ ହୋଇ ପଡ଼ିଥିଲା ଏବଂ ଏତେ ଅଧିକ ଭାବରେ ପ୍ରଚଳିତ ବ୍ୟବସ୍ଥା ସହ ଜଡ଼ିତ ହୋଇ ପଡ଼ିଥିଲା ଯେ ସାମାଜିକ ବିଦ୍ରୋହ ବିପଦର ସମ୍ମୁଖୀନ ହୋଇପାରିଲା ନାହିଁ । ସେମାନେ ଏକ ମଧ୍ୟମ ପନ୍ଥା ବାହାର କରିବାକୁ ଚେଷ୍ଟା କଲେ । ଫଳରେ ସେମାନେ ସମ୍ପୂର୍ଣ୍ଣରୂପେ ସବୁ ଗୋଳମାଳ କଲେ ଏବଂ ଯାହା ବି ଥିଲା ତାହା ହରାଇଲେ । ଜର୍ମାନୀର ଆଧୁନିକ ଘଟଣାରେ ଏହା ପୂର୍ବାପେକ୍ଷା ପରିଷ୍କାର ହୋଇଯାଇଛି ।

ଏ ଯୁଦ୍ଧୋତ୍ତର କାଳରେ ଆଉ ଏକ ପ୍ରାଧାନ୍ୟ ଲଭିବା ଜିନିଷ ହେଉଛି ହିଂସା ଭାବ ବୃଦ୍ଧି । ବିଚିତ୍ର କଥା ଯେ ଭାରତରେ ଅହିଂସା ନୀତି ପ୍ରଚାର ହେଉଥିଲାବେଳେ ସମଗ୍ର ଦୁନିଆରେ ହିଂସା କାର୍ଯ୍ୟ କରୁଥିଲା; ନଗ୍ନ ଓ ନିର୍ଲଜ୍ଜ ଭାବରେ ଏହାର ଗୌରବ ଗାନ କରାଯାଉଥିଲା । ଯୁଦ୍ଧ ଏଥିପାଇଁ ବହୁ ପରିମାଣରେ ଦାୟୀ ଏବଂ ତାପରେ ବିଭିନ୍ନ ଶ୍ରେଣୀ ଭିତରେ ସଂଘର୍ଷ ହେଲା । ଏହି ସବୁ ସଂଘର୍ଷ ଯେତେ ସୁସ୍ପଷ୍ଟ ଓ ଗୁରୁତର ହେଲା, ହିଂସା ତେତେ ବେଶୀ ବୃଦ୍ଧି ପାଇଲା । ଉଦାରନୀତିକ ଭାବ ପ୍ରାୟ ଲୋପ ପାଇଗଲା ଏବଂ ୧୯ଶ

ଶତାବ୍ଦୀର ପ୍ରଜାତନ୍ତ୍ର ଲୋକଚକ୍ଷୁରେ ହୀନ ହୋଇଗଲା । ଡିକ୍‌ଟେଟରମାନଙ୍କର ଆବିର୍ଭାବ ହେଲା ।

ମୁଁ ଏହି ଚିଠିରେ ପରାଜିତ ଦେଶମାନଙ୍କ ସମ୍ବନ୍ଧରେ ବର୍ଣ୍ଣନା କଲି । ବିଜେତା ଦେଶମାନଙ୍କ ଭିତରେ ବି ସେହିପରି ଗୋଳମାଳ ହେଲା । କେନ୍ତୁ ଇଉରୋପ ପରି ଇଂଲଣ୍ଡ ଓ ଫ୍ରାନ୍‌ସରେ ସେପରି ବିଦ୍ରୋହ ହୋଇ ନ ଥିଲା । ଇଟାଲିରେ ବଡ଼ ବିଦ୍ରୋହ ହେଲା । ଏଥିର ବଡ଼ ଅଦ୍ଭୁତ ପରିଣତି ହେଲା—ତାହା ଅଲଗା ଭାବରେ କୁହାଯିବ ।

# ୧୭୨ : ପୁରାତନ ଋଣ ପରିଶୋଧର ନୂତନ ପନ୍ଥା

ଜୁନ୍ ୧୫, ୧୯୩୩

ଆମେ ଦେଖିଲେ ଏହିପରି ଭାବରେ ପୃଥିବୀ ଯୁଦ୍ଧ ପରେ ଇଉରୋପ ଏବଂ କେତେକ ପରିମାଣରେ ବାସ୍ତବରେ ସମଗ୍ର ଦୁନିଆ ଏକ ଚାଉଳ କଡ଼ାପରି ହୋଇ ରହିଥିଲା । ଭର୍ସେଇ ଓ ଅନ୍ୟ ସନ୍ଧିଦ୍ୱାରା ଅବସ୍ଥାର କିଛି ଉନ୍ନତି ହେଲା ନାହିଁ । ଇଉରୋପର ନୂତନ ମାନଚିତ୍ରରେ ପୋଲଣ୍ଡ, ଚେକ୍ ଓ ବଲ୍‌ଟିକ ଦେଶକୁ ସ୍ୱାଧୀନ କରିବାଦ୍ୱାରା ପୁରାତନ ଜାତୀୟ ସମସ୍ୟାର ସମାଧାନ ହୋଇଗଲା । କିନ୍ତୁ ଏହା ସଙ୍ଗେ ସଙ୍ଗେ ଅଷ୍ଟ୍ରିଅନ୍ ଟାଇରଲ୍‌କୁ ଇଟାଲି ଅଧୀନରେ ଓ ଇଉକ୍ରେନିର ଏକ ଅଂଶକୁ ପୋଲଣ୍ଡ ଅଧୀନରେ ଏବଂ ପୂର୍ବ ଇଉରୋପରେ ଅନ୍ୟ ରାଜ୍ୟମାନଙ୍କର ବଡ଼ ହତଭାଗ୍ୟ ବଣ୍ଟନ ଫଳରେ ନୂତନ ଜାତୀୟ ସମସ୍ୟା ବି ସୃଷ୍ଟି ହେଲା । ସବୁଠାରୁ ବିଚିତ୍ର ଓ କ୍ରୋଧଜାତକାରୀ ବ୍ୟବସ୍ଥା ହେଲା ପୋଲିସ କରିଡ଼ର ଓ ଡାନ୍‌ଜିଗ୍ ସେନ । ଅନେକ ଛୋଟ ନୂତନ ରାଜ୍ୟ ସୃଷ୍ଟି କରିବାଦ୍ୱାରା କେନ୍ଦ୍ର ଓ ପୂର୍ବ ଇଉରୋପକୁ ଭାଗ ଭାଗ କରି ଦିଆଗଲା—ଏହାର ଅର୍ଥ ଅଧିକ ସୀମାନ୍ତ, ଅଧିକ ଶୁଳ୍କ ବାଧା, ଅଧିକ ପାରିବାରିକ ଦ୍ୱେଷ ହେଲା ।

୧୯୨୯ର ଏହି ସନ୍ଧି ଛଡ଼ା ରୁମାନିଆ ବେସ୍‌ସର୍ବିଆ ନେଇଗଲା—ଏହା ଦକ୍ଷିଣ-ପଶ୍ଚିମ ରୁଷର ଏକ ଅଂଶ ଥିଲା । ସେହିକାଳରୁ ଏହା ରୁମାନିଆ ଓ ସୋଭିଏଟ ଭିତରେ ଏକ ବିବାଦ ଓ ବିତର୍କର ବିଷୟ ହୋଇପଡ଼ିଛି । ବେସର୍ବିଆକୁ 'ନୀପରର ଆଲସେସ-ଲରେନ୍' ବୋଲି କୁହାଯାଏ ।

ଏହିସବୁ ଅଞ୍ଚଳ ଅଦଳ ବଦଳ ଅପେକ୍ଷା ଆହୁରି ଅତ୍ୟନ୍ତ ବଡ଼ ସମସ୍ୟା ହେଲା କ୍ଷତିପୂରଣ—ଅର୍ଥାତ୍ ଯୁଦ୍ଧ ହେବାରୁ ହୋଇଥିବା କ୍ଷତି ଓ ମୂଲ୍ୟ ରୂପେ ପରାଜିତ ଜର୍ମାନୀକୁ ବିଜେତା ମିତ୍ର ରାଜ୍ୟମାନଙ୍କୁ ଯେଉଁ ଧନ ଦେବାକୁ ପଡ଼ିଲା । ଭର୍ସେଇ ସନ୍ଧିରେ କୌଣସି ନିର୍ଦ୍ଦିଷ୍ଟ ପରିମାଣ ଉଲ୍ଲେଖ ନ ଥିଲା; କିନ୍ତୁ ପରବର୍ତ୍ତୀ ସମ୍ମିଳନୀରେ ଧାର୍ଯ୍ୟ ହୋଇଥିଲା ଯେ ବାର୍ଷିକ କିସ୍ତି ହିସାବରେ ମୋଟ କ୍ଷତିପୂରଣ ସ୍ୱରୂପ ୬,୬୦୦,୦୦୦,୦୦୦ ପାଉଣ୍ଡ ଦେବାକୁ ପଡ଼ିବ । ଏପରି ପ୍ରକାଣ୍ଡ ପରିମାଣ ଦେବା କୌଣସି ଦେଶ ପକ୍ଷରେ ଅସମ୍ଭବ; ପରାଜିତ ଓ କ୍ଳାନ୍ତ ଜର୍ମାନୀ ତ ଆହୁରି ଅକ୍ଷମ ଥିଲା । ଜର୍ମାନୀ ପ୍ରତିବାଦ କଲା, ମାତ୍ର କିଛି ଫଳ ହେଲା ନାହିଁ ଏବଂ ତା'ପରେ ଉପାୟ ନ ଦେଖି ସଂଯୁକ୍ତ ରାଷ୍ଟ୍ର (ଆମେରିକା)ଠାରୁ ଧାର କରି ଦୁଇ କି ତିନୋଟି କିସ୍ତି ଦେଲା । ସେ ସମସ୍ତ ଗଡ଼ାଇବା ପାଇଁ ଏହା କରିଥିଲା ଏବଂ ସମଗ୍ର ସମସ୍ୟାଟି ପୁନର୍ବିଚାର କରାଇପାରିବ ବୋଲି ଆଶା କରିଥିଲା । ତାକୁ ଏହା ସ୍ପଷ୍ଟରୂପେ ଜଣା ଥିଲା ଓ ଆହୁରି ଅନେକେ ବି ଜାଣିଥିଲେ ଯେ ପୁରୁଷ ପୁରୁଷ ଧରି ସେ ଏତେ ପ୍ରକାଣ୍ଡ ପରିମାଣ ଦେଇ ପାରିବ ନାହିଁ ।

ଅତିଶୀଘ୍ର ଜର୍ମାନୀର ଅର୍ଥନୀତି ପ୍ରଣାଳୀ ଭାଙ୍ଗିପଡ଼ିଲା ଏବଂ କ୍ଷତିପୂରଣ ପରି ବାହାର ଋଣ କିମ୍ବା ଆଭ୍ୟନ୍ତରୀଣ ଆବଶ୍ୟକୀୟ ବ୍ୟୟ ନିମନ୍ତେ ସରକାର ପାଖରେ ଯଥେଷ୍ଟ ଅର୍ଥ ନ ଥିଲା । ଅନ୍ୟ ଦେଶମାନଙ୍କୁ ସୁନା ଜରିଆରେ ହିଁ ପରିଶୋଧ କରାଯିବାର କଥା । ନିର୍ଦ୍ଦିଷ୍ଟ ତାରିଖରେ ଏହା ଅସୁଲ ନ ହେବାରୁ ଗଫଲତି ହେଲା । ଜର୍ମାନୀ ଭିତରେ ଅବଶ୍ୟ ସରକାର ପ୍ରଚଳିତ ନୋଟ (Currency note) ଦେଇ ଚଳାଇ ନେଇପାରେ ଏବଂ ତେଣୁ ସେମାନେ ଅଧିକରୁ ଅଧିକ କାଗଜ ନୋଟ ଛପାଇବାରେ ଲାଗିଲେ । କାଗଜ ନୋଟ ଛପାଇ ଟଙ୍କା ସୃଷ୍ଟି କରାଯାଇ ପାରେ ନା; ଏଥିରେ କେବଳ ଧାର ପରିଶୋଧ କରିବାର ବିଶ୍ୱାସ (Credit) ସୃଷ୍ଟି କରାଯାଏ । ଲୋକମାନେ ଜାଣନ୍ତି ଯେ ସେମାନେ ଚାହିଁବା ମାତ୍ରକେ ଏହି ନୋଟ ବଦଳାଇ ସୁନା ରୁପା ପାଇ ପାରିବେ—ତେଣୁ ସେମାନେ ନୋଟ ବ୍ୟବହାର କରନ୍ତି । ନୋଟ ଛପାହେବା ଅର୍ଥ ସବୁଦା ନୋଟର ମୂଲ୍ୟ ବଞ୍ଚାଇ ରଖିବା ନିମନ୍ତେ ବ୍ୟାଙ୍କରେ କେତେକ ପରିମାଣରେ ସୁନା ଜମା ରଖିବାକୁ ହୁଏ । ଏହିରୂପେ କାଗଜ ଟଙ୍କା ଦ୍ୱାରା ଅତି ଦରକାରୀ କାର୍ଯ୍ୟ ସମ୍ପନ୍ନ ହୁଏ; କାରଣ ଏହା ପ୍ରଚୁର ସୁନା ଓ ରୁପାର ଦୈନନ୍ଦିନ ବ୍ୟବହାରରୁ ରକ୍ଷା କରେ ଏବଂ ଧାରରେ ବିକ୍ରୟ ବଢ଼ାଏ । କିନ୍ତୁ ଯଦି ଗୋଟିଏ ସରକାର କାଗଜଟଙ୍କା ଛପାଇ କୌଣସି ନିର୍ଦ୍ଦିଷ୍ଟ ସୀମା ବ୍ୟତିରେକେ ଏବଂ ବ୍ୟାଙ୍କରେ କେତେ ସୁନା ରହିଛି ସେଥିପ୍ରତି ଦୃଷ୍ଟି ନ ଦେଇ ଏହିସବୁ ନୋଟ ପ୍ରଚଳନ କରି ଦିଏ, ତେବେ ଏହି ଟଙ୍କାର ମୂଲ୍ୟ ଅବଶ୍ୟ ପଡ଼ିଯିବ । ଯେତେ ଅଧିକ ନୋଟ ଛପାଯିବ ମୂଲ୍ୟ ସେତେ କମିଯିବ; ତେତେ ଏହାର ଧାରରେ କ୍ରୟବିକ୍ରୟ କାର୍ଯ୍ୟ କମ୍ ହୋଇଯିବ । ଏହି ପ୍ରଣାଳୀକୁ ମୁଦ୍ରାସ୍ଫୀତି (inflation) କହନ୍ତି । ୧୯୨୨ ଓ ୨୩ରେ ଜର୍ମାନୀରେ ଠିକ୍ ଏହାହିଁ ଘଟିଲା । ଜର୍ମାନୀ ସରକାର ନିଜର ବ୍ୟୟ ନିମନ୍ତେ ଅଧିକ ଧନ ଆବଶ୍ୟକ କରିବାରୁ

ବହୁତ ନୋଟ ଛପାଇଲା । ଏହା ଫଳରେ ପ୍ରତ୍ୟେକ ଜିନିଷର ମୂଲ୍ୟ ବଢ଼ିଗଲା, କିନ୍ତୁ ପାଉଣ୍ଡ, ଡଲର ବା ଫ୍ରାଙ୍କ (franc) ତୁଳନାରେ ଜର୍ମାନ ମାର୍କର ମୂଲ୍ୟ କମ୍ ହୋଇ-ଗଲା । ଏହି ଗତି କଳ୍ପନାତୀତ ଭାବରେ ବଢ଼ି ଚାଲିଲା; ଶେଷରେ ଏକ ଡଲାର ବା ପାଉଣ୍ଡର ମୂଲ୍ୟ ଲକ୍ଷ ଲକ୍ଷ କାଗଜ ମାର୍କ (mark)ର ମୂଲ୍ୟ ସଙ୍ଗେ ସମାନ ହୋଇଗଲା । ପ୍ରକୃତରେ କାଗଜ ମାର୍କର ପାଖ୍ରେ କିଛି ମୂଲ୍ୟ ରହିଲା ନାହିଁ । ଗୋଟିଏ ଚିଠିରେ ଡାକ ଟିକେଟ ଲଗାଇବା ନିମନ୍ତେ ଏକ ନିୟୁତ କାଗଜ ମାର୍କ ଦରକାର ହେଲା । ଅନ୍ୟ ସବୁ ମୂଲ୍ୟ ସେହିପରି ଧାରାରେ ହେଲା ଓ ବରାବର ବଦଳୁଥାଏ ।

ଏହି ଜର୍ମାନ ମୁଦ୍ରାସ୍ଫୀତି ଓ ମାର୍କର ଅଭୂତ ପତନ କିଛି ଆପଣା ଛାଏଁ ହେଲନାହିଁ । ଜର୍ମାନ ସରକାର ଆର୍ଥିକ ଅସୁବିଧାରୁ ଉଦ୍ଧରିବା ନିମନ୍ତେ ଜାଣିଶୁଣି ଏହା କରିଥିଲା ଏବଂ ଅନେକ ପଣ୍ଡିତ ଏହା କରିବାରେ ମଧ୍ୟ ସାହାଯ୍ୟ କଲେ । କାରଣ ଏହି ମୂଲ୍ୟହୀନ କାଗଜ ମାର୍କଦ୍ୱାରା ସରକାର, ମ୍ୟୁନିସିପାଲିଟି ଓ ଅନ୍ୟ ଋଣଗ୍ରହୀତାମାନେ ସେମାନଙ୍କର ଆଭ୍ୟନ୍ତରୀଣ ଜର୍ମାନ ଋଣସବୁ ସହଜରେ ଶୁଝି ପାରିଲେ । ଅବଶ୍ୟ ଏଥିରେ ସେମାନେ ବିଦେଶର ଋଣ ସବୁ ଶୁଝିପାରି ନ ଥିଲେ, କାରଣ ତାଙ୍କର କାଗଜ ମୁଦ୍ରା କେହି ସେଠି ଗ୍ରହଣ କରନ୍ତେ ନାହିଁ । ଜର୍ମାନ ଭିତରେ ହିଁ ଆଇନଦ୍ୱାରା ଏହାର ପ୍ରଚଳନକୁ ବାଧ୍ୟତାମୂଳକ କରିପାରିଲେ । ଏହିରୂପେ ସରକାର ଓ ପ୍ରତ୍ୟେକ ଖାତକ ତାଙ୍କର କଷ୍ଟଦାୟକ ଋଣଭାରରୁ ମୁକ୍ତ ହେଲେ । କିନ୍ତୁ ଏଥିରେ ପ୍ରଭୂତ କଷ୍ଟ ସହ୍ୟ କରିବାକୁ ତାଙ୍କୁ ପଡ଼ିଲା । ଏହି ମୁଦ୍ରାସ୍ଫୀତି ବେଳେ ସବୁ ଲୋକେ କଷ୍ଟ ଭୋଗିଲେ, କାରଣ ଏମାନଙ୍କ ଭିତରୁ ଅଧିକାଂଶ ନିର୍ଦ୍ଦିଷ୍ଟ ବେତନ ପାଉଥିଲେ କିମ୍ବା ସେମାନଙ୍କର ନିର୍ଦ୍ଦିଷ୍ଟ ଆୟ ଥିଲା । ଅବଶ୍ୟ ମାର୍କର ପତନ ସଙ୍ଗେ ସଙ୍ଗେ ବେତନ ବି ବୃଦ୍ଧି ହେଲା, କିନ୍ତୁ ମୂଲ୍ୟହ୍ରାସ ଘଟିଥିବା ମାର୍କସହ ସମାନରୂପେ ଏହା ବଢ଼ି ନ ଥିଲା । ଏହି ମୁଦ୍ରାସ୍ଫୀତି ଦ୍ୱାରା ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ପ୍ରାୟ ଉଚ୍ଛନ୍ନ ହୋଇଗଲେ ଏବଂ ଆମେ ପରବର୍ତ୍ତୀ ବର୍ଷମାନଙ୍କରେ ଜର୍ମାନୀରେ ଘଟିଥିବା ଅପୂର୍ବ ଘଟଣାବଳୀର ବିଚାର କଲାବେଳେ ଏହାକୁ ସ୍ମରଣ ରଖିବାକୁ ପଡ଼ିବ । କାରଣ ଏହି ଅସନ୍ତୁଷ୍ଟ ଶ୍ରେଣୀଚ୍ୟୁତ (declasse) ମଧ୍ୟବିତ୍ତ ଶ୍ରେଣୀ ଶକ୍ତିଶାଳୀ ବିଦ୍ରୋହବାହିନୀ ହେଲା - ବୈପ୍ଳବିକ ସମ୍ଭାବନା ସେମାନଙ୍କ ଭିତରେ ପୂର୍ଣ୍ଣମାତ୍ରାରେ ରହିଥିଲା । ମୁଖ୍ୟ ଦଳସବୁ ଯେଉଁସବୁ ସବୋଇ ସେନା ଗଢ଼ିଥିଲେ ଏମାନେ ସେଥିରେ ପଶିଲେ ଏବଂ ସେମାନଙ୍କ ଭିତରୁ ଅଧିକାଂଶ ହିଟଲରଙ୍କ ନୂତନ ଦଳ ନେସନାଲ୍ ସୋସାଲିଷ୍ଟ ବା ନାଜି ଦଳ ଭିତରେ ପଶିଲେ ।

ପୁରାତନ ମାର୍କ ସଂପୂର୍ଣ୍ଣରୂପେ ଅକାମୀ ହୋଇଗଲା; ତେଣୁ ତାହା ଉଠାଇ ନିଆଗଲା ଏବଂ 'ରେଣ୍ଟେନ୍‌ମାର୍କ' (Renten mark) ନାମକ ଏକ ନୂତନ ମୁଦ୍ରା ପ୍ରଚଳନ ହେଲା । ଏଥିରେ କିଛି ମୁଦ୍ରାସ୍ଫୀତି ହୋଇ ନ ଥିଲା ଏବଂ ସୁନାରେ ମଧ୍ୟ ଏହାର

ମୂଲ୍ୟ ସମାନ ଥିଲା । ତେଣୁ ଜର୍ମାନୀ ନିଜ ଦେଶର ନିମ୍ନ ମଧ୍ୟବିତ୍ତ ଶ୍ରେଣୀଙ୍କୁ ସଂପୂର୍ଣ୍ଣ ଲୋପ କରି ସାରିବା ପରେ ପୁଣି ସ୍ଥାୟୀ ମୁଦ୍ରାକୁ ଫେରିଆସିଲା ।

ଜର୍ମାନୀର ଆର୍ଥିକ ଦୁର୍ଗତି ହେତୁ ଆନ୍ତର୍ଜାତିକ କ୍ଷେତ୍ରରେ ଗୁରୁତର ପରିସ୍ଥିତି ହେଲା । ମିତ୍ରପକ୍ଷମାନଙ୍କୁ କ୍ଷତିପୂରଣ ଦେବା ବାକି ପଡ଼ି ଯାଇଥିଲା । ମିତ୍ରଶକ୍ତି ମାନଙ୍କ ଭିତରେ ଏହି କ୍ଷତିପୂରଣ ଟଙ୍କା ବଣ୍ଟା ହେଉଥିଲା—ଫ୍ରାନ୍ସ ଅଧିକ ଅଂଶ ପାଉଥିଲା । ରୁଷର ଏଥିରେ ଭାଗ ବସୁ ନ ଥିଲା; ପ୍ରକୃତରେ ତାହାର ଯାହା ବା ଦାବୀ ଥିଲା, ସେ ତ୍ୟାଗ କରି ଦେଇଥିଲା । ଜର୍ମାନୀର ବାକି ପଡ଼ିବାରୁ ଫ୍ରାନ୍ସ ଓ ବେଲଜିୟମ ଜର୍ମାନୀର ରୁର(Ruhr) ଅଞ୍ଚଳ ସାମରିକ ଦଖଲ କଲେ । ଭର୍ସେଇ ସନ୍ଧି ଅନୁସାରେ ମିତ୍ରପକ୍ଷ ଆଗରୁ ରାଇନଲାଣ୍ଡ ନେଇଥିଲେ । ୧୯୨୩ ଜାନୁୟାରୀ ମାସରେ ଆଉ ଏକ ଅଧିକ ଅଞ୍ଚଳ ଫରାସୀ ଓ ବେଲଜିୟାନମାନେ ଦଖଲ କଲେ (ଏଥିରେ ଇଂଲଣ୍ଡ ଯୋଗଦେବାକୁ ମନା କଲା) । ଏହି ରୁର ଅଞ୍ଚଳ ରାଇନଲାଣ୍ଡ ସହିତ ସଂଲଗ୍ନ ଏବଂ ଏଥିରେ ସମ୍ପଦଶାଳୀ କୋଇଲଖଣି ଓ କାରଖାନା ସବୁ ରହିଛି । ସେଠାରୁ ବାହାରୁଥିବା କୋଇଲା ଓ ଅନ୍ୟ ଜିନିଷ ଅଧିକାର କରି ଫରାସୀ ନିଜର ପାଉଣା ଆଦାୟ କରି ନେବାକୁ ବସିଥିଲେ । କିନ୍ତୁ ଏଠି ବି ଏକ ଅସୁବିଧା ପଡ଼ିଥିଲା । ଜର୍ମାନ ସରକାର ନିଷ୍କ୍ରିୟ ପ୍ରତିରୋଧଦ୍ୱାରା ଫରାସୀ ଦଖଲର ପ୍ରତିରୋଧ କରିବା ନିମନ୍ତେ ସ୍ଥିର କଲେ ଏବଂ ସେମାନେ ରୁରର ଖଣି ମାଲିକ ଓ ଶ୍ରମିକମାନଙ୍କୁ କାମ ବନ୍ଦ କରିବା ନିମନ୍ତେ ଓ ଫରାସୀଙ୍କୁ କୌଣସି ପ୍ରକାରେ ସାହାଯ୍ୟ ନ ଦେବା ନିମନ୍ତେ ଆହ୍ୱାନ କଲେ । ଏହି ମାଲିକ ଓ ଶ୍ରମିକମାନଙ୍କର ଯାହା କ୍ଷତି ହେଲା, ସେଥିଲାଗି ସେମାନଙ୍କୁ ଲକ୍ଷ ଲକ୍ଷ ମୁଦ୍ରା ଦେଇ ସାହାଯ୍ୟ କଲେ । ଉଭୟ ଫରାସୀ ଓ ଜର୍ମାନୀ ପକ୍ଷରେ ଏହା ଅତ୍ୟନ୍ତ ବ୍ୟୟସାପେକ୍ଷ ହେଲା—୯।୧୦ ମାସ ପରେ ଜର୍ମାନ ସରକାର ନିଷ୍କ୍ରିୟ ପ୍ରତିରୋଧ ଉଠାଇ ଆଣିଲା ଏବଂ ସେ ଅଞ୍ଚଳରେ ଖଣି ଓ କାରଖାନା-ମାନ ଖୋଲି କରାଇବାରେ ଫରାସୀଙ୍କୁ ସାହାଯ୍ୟ କଲା । ୧୯୨୫ରେ ଫରାସୀ ଓ ବେଲଜିୟାନ୍ ମାନେ ରୁର୍ ଛାଡ଼ିଲେ ।

ରୁରରେ ଜର୍ମାନର ନିଷ୍କ୍ରିୟ ପ୍ରତିରୋଧ ଭାଙ୍ଗି ପଡ଼ିଲା । କିନ୍ତୁ ଏପରି ଦେଖାଗଲା ଯେ, କ୍ଷତିପୂରଣ ପ୍ରଶ୍ନ ପୁନର୍ବାର ବିଚାରହେବା ଦରକାର ଓ ଯୁକ୍ତିଯୁକ୍ତ ପରିମାଣ ପାଉଣା ନିର୍ଦ୍ଦିଷ୍ଟ ହେବା ଉଚିତ । ତେଣୁ ପରେ ପରେ ସମ୍ମିଳନୀ ଓ କମିଶନ ସବୁ ବସିଲା ଏବଂ ଗୋଟିକ ପରେ ଗୋଟିଏ ନୂତନ ଯୋଜନା ତିଆରି ହେଲା । ୧୯୨୪ରେ ହେଲା ଡଜ୍ (Dawes) ଯୋଜନା, ପାଞ୍ଚ ବର୍ଷ ପରେ ୧୯୨୯ରେ ୟଙ୍ଗ୍ ପ୍ଲାନ (Young plan) ଏବଂ ତିନି ବର୍ଷ ପରେ ୧୯୩୨ରେ ସମସ୍ତ ସଂପୃକ୍ତ ଦେଶ ସ୍ୱୀକାର କଲେ ଯେ ଆଉ କ୍ଷତି ପୂରଣ ଅସୁଲ ହେବ ନାହିଁ ଏବଂ ସେ ଧାରଣା ସବୁ ଦୂର କରି ଦିଆଗଲା ।

୧୯୨୪ ଠାରୁ କେତେକ ବର୍ଷ ପର୍ଯ୍ୟନ୍ତ ଜର୍ମାନୀ ନିୟମିତ ରୂପେ କ୍ଷତିପୂରଣ

ଦେଉଥିଲା । କିନ୍ତୁ ଜର୍ମାନୀର ଧନ ଓ ସ୍ୱଚ୍ଛଳ ଅବସ୍ଥା ସେତେବେଳେ ନ ଥିଲା ସେ ଏହା କିପରି ଦେଲା ? କେବଳ ସଂଯୁକ୍ତ ରାଷ୍ଟ୍ର ଆମେରିକାରୁ ଧାର କରି କରାଗଲା । ମିତ୍ରପକ୍ଷ (ଇଂଲଣ୍ଡ, ଫ୍ରାନ୍ସ, ଇଟାଲୀ ପ୍ରଭୃତି) ଆମେରିକାଠାରୁ ଧନ ଋଣ କରିଥିଲେ—ଯୁଦ୍ଧବେଳେ ସେମାନେ କରଜ ଆଣିଥିଲେ, କ୍ଷତିପୂରଣ ସ୍ୱରୂପ ଜର୍ମାନୀର ମିତ୍ର ପକ୍ଷକୁ ତାହା ଦେବାର କଥା । ତେଣୁ ଆମେରିକା ଜର୍ମାନୀକୁ ଋଣ ଦେଲା ଏବଂ ଜର୍ମାନୀ ମିତ୍ରପକ୍ଷକୁ ଦେଲା —ପୁଣି ମିତ୍ରପକ୍ଷ ତାଙ୍କ ବାବଦକୁ ଆମେରିକାକୁ ଦେଲେ । ଏହା ଏକ ଖାସା ବନ୍ଦୋବସ୍ତ ଏବଂ ପ୍ରତ୍ୟେକେ ସନ୍ତୁଷ୍ଟ ହେଲା ପରି ବୋଧହେଲା । ବାସ୍ତବିକ ପାଉଣା ପାଇବାର ଅନ୍ୟ କିଛି ବାଟ ନ ଥିଲା । ଅବଶ୍ୟ ଧାରଦେବା ସବୁ ଜିନିଷ ଗୋଟିକ ଉପରେ ନିର୍ଭର କରୁଥିଲା—ଆମେରିକା ଜର୍ମାନୀକୁ ଧନ କରଜ ଦେବାରେ ଲଗିଥିଲା । ଏହା ଯଦି ବନ୍ଦ ହୋଇଥାନ୍ତା, ତେବେ ସମଗ୍ର ବ୍ୟବସ୍ଥା ଛାରଖାର ହୋଇ ଯାଇଥାନ୍ତା ।

ଏହି କରଜ ଦେବା ଓ ଋଣ ନେବା ବୋଇଲେ ପ୍ରକୃତ ନଗଦ ମୁଦ୍ରା କାରବାର ନୁହେଁ, ଏସବୁ ଥିଲା କାଗଜପତ୍ର କାରବାର । ଆମେରିକା ନିର୍ଦ୍ଦିଷ୍ଟ ପରିମାଣ ଜର୍ମାନୀକୁ ଧାର ଦେଲା; ଜର୍ମାନୀ ଏହାକୁ ମିତ୍ର ପକ୍ଷକୁ ଦେଲା ଏବଂ ମିତ୍ରପକ୍ଷ ପୁଣି ଏହାକୁ ଦେଲେ । ପ୍ରକୃତ ଧନ ଆଦୌ ଗତିକଲା ନାହିଁ—କେବଳ ହିସାବ ବଢ଼ୁଥିଲା । ଯେଉଁସବୁ ଦରିଦ୍ର ଦେଶ ପୂର୍ବ ଋଣର ସୁଧ ଦେବାପାଇଁ ସମର୍ଥ ନ ଥିଲେ ତାଙ୍କୁ ଆମେରିକା ପୁଣି ଧାର ଦେଉଥିଲା କାହିଁକି ? ସେମାନେ କୌଣସି ପ୍ରକାରେ ଚଳିବା ନିମନ୍ତେ ଓ ଦେବାଳିଆ ହେବାରେ ବାଧାଦେବା ନିମନ୍ତେ ଆମେରିକା ଏଗୁଡ଼ିକୁ ସାହାଯ୍ୟ କଲା, କାରଣ ଇଉରୋପର ପତନ ହେବାର ଭୟ ଆମେରିକା କରୁଥିଲା । ତାହା ହେଲେ ଆଉ ତ ଯାହା ଖରାପ ପରିଣତି ହେବ, ଆମେରିକାର ପ୍ରାପ୍ୟ ଋଣ ସବୁ ବି ବୁଡ଼ିବ । ତେଣୁ ଏକ ବୁଦ୍ଧିମାନ ଋଣଦାତା ପରି ଆମେରିକା ତାର ଖାତକମାନଙ୍କୁ ବଞ୍ଚାଇ ରଖିଲା ଓ ଚଳାଇଲା । କିନ୍ତୁ କେତେକ ବର୍ଷ ପରେ ଏପରି ବରାବର ଧାର ଦେଇ ଦେଇ ଆମେରିକା ଥକି ପଡ଼ିଲା ଏବଂ ଏସବୁ ବନ୍ଦ କରିଦେଲା । ସାଙ୍ଗେ ସାଙ୍ଗେ ଚଡ଼କ ପଡ଼ିଲା ପରି କ୍ଷତିପୂରଣ ଓ ଋଣର ସମଗ୍ର ପରିସ୍ଥିତି ଭୁଷୁଡ଼ି ପଡ଼ିଲା ଏବଂ ବାକୀ ପଡ଼ି ରହିଲା ଏବଂ ଆମେରିକା ଓ ଇଉରୋପର ସବୁ ରାଜ୍ୟ ଏକ ଦହି ଭିତରେ ପଡ଼ିଲେ ।

ତେଣୁ ଯୁଦ୍ଧ ପରେ ବାରବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଇଉରୋପକୁ ଏହି କ୍ଷତିପୂରଣ ସମସ୍ୟା ଘାରିଲା । ତାହା ସଙ୍ଗେ ସଙ୍ଗେ ଯୁଦ୍ଧଋଣ ପ୍ରଶ୍ନଥିଲା—ଅର୍ଥାତ୍ ଜର୍ମାନୀ ଛଡ଼ା ଅନ୍ୟ ଦେଶମାନଙ୍କର ଋଣ ସମସ୍ୟା । ପୃଥିବୀ ଯୁଦ୍ଧ ସମ୍ବନ୍ଧରେ ଆଗରୁ ଏକ ଚିଠିରେ ମୁଁ ତତେ ଲେଖିଛି । ପ୍ରଥମେ ଇଂଲଣ୍ଡ ଓ ଫ୍ରାନ୍ସ ଯୁଦ୍ଧକୁ ଧନ ଯୋଗାଉଥିଲେ ଏବଂ ସେମାନଙ୍କର କ୍ଷୁଦ୍ର ମିତ୍ରରାଜ୍ୟକୁ ଧନ ଧାର ଦେଉଥିଲେ; ତା ପରେ ଫ୍ରାନ୍ସର ସଂପଦ ଶେଷ ହେଲା ଏବଂ ସେ ଆଉ ଧାର ଦେଇ ପାରିଲା ନାହିଁ । ପରେ ଇଂଲଣ୍ଡର ଆର୍ଥିକ

ଅବସ୍ଥା ଖରାପ ହୋଇଗଲା ଓ ସେ ଆଉ ଧାର ଦେଇ ପାରିଲା ନାହିଁ । କେବଳ ସଂଯୁକ୍ତ ରାଷ୍ଟ୍ରହିଁ ଏହା କରି ପାରୁଥିଲା ଏବଂ ତାହା ଉଦାର ଭାବରେ ଓ ନଜର ସୁବିଧା ହେଲା ଭଳି ଇଂଲଣ୍ଡ, ଫ୍ରାନ୍ସ ଓ ଅନ୍ୟ ମିତ୍ର ରାଜ୍ୟମାନଙ୍କୁ ଦେଲା । ଏହିରୂପେ ଯୁଦ୍ଧ ଶେଷବେଳକୁ କେତେକ ଦେଶ ଫ୍ରାନ୍ସକୁ ଧନ ଦେବାର ଥିଲା । ଅନେକ ଇଂଲଣ୍ଡର ଖାତକ ଥିଲେ; ସବୁ ମିତ୍ରରାଜ୍ୟ ବହୁ ପରିମାଣରେ ଧନ ଆମେରିକାକୁ ଦେବାର କଥା ଥିଲା । ଆମେରିକା ଏକମାତ୍ର ଦେଶ ଯାହା ଆଉ କୌଣସି ଦେଶ ପାଖରେ ମୁଣ୍ଡ ବିକ ନ ଥିଲା । ସେତେବେଳେ ଏହା ଏକ ବଡ଼ ଋଣଦାତା ରାଜ୍ୟ ଥିଲା । ଏହା ଇଂଲଣ୍ଡର ପୁରାତନ ଅବସ୍ଥା ଦଖଲ କରି ପୃଥିବୀର ମହାଜନ ପାଲଟିଲା । କେତେକ ସଂଖ୍ୟା ଦେଲେ ବୋଧହୁଏ ପରିଷ୍କାର ହେବ । ଯୁଦ୍ଧ ଶେଷ ହେବା ବେଳକୁ ଏହି ଋଣ ମୂଳପୋଛ ହୋଇଥିଲା ଏବଂ ତା ପରିବର୍ତ୍ତେ ଆମେରିକା ପ୍ରଚୁର ପରିମାଣରେ ଧନ ଆଗରୁହିଁ ଦେଲା । ୧୯୨୭ ବେଳକୁ ଆମେରିକା ଋଣଦାତା ଦେଶ ଥିଲା—୨୫,୦୦୦ ନିୟୁତ ଡଲାର ଋଣ ଲାଗିଥିଲା ।

ଇଂଲଣ୍ଡ, ଫ୍ରାନ୍ସ, ଇଟାଲି ପ୍ରଭୃତି ଖାତକ ରାଜ୍ୟଙ୍କ ପକ୍ଷରେ ଏହି ଯୁଦ୍ଧ ଋଣ ଏକ ପ୍ରକାଣ୍ଡ ବୋଝ—କାରଣ ଏସବୁ ସରକାରୀ ଋଣ ଏବଂ ସରକାର ଏଥିପାଇଁ ଦାୟୀ । ସେମାନେ ଆମେରିକାରୁ କେତେକ ବିଶେଷ ଅନୁକୂଳ ସର୍ତ୍ତରେ ଆଣିବାର ଚେଷ୍ଟାକଲେ ଏବଂ କେତେକ ସୁବିଧାବି ମିଳିଲା, କିନ୍ତୁ ତଥାପି ବୋଝ ସେହିପରି ଥିଲା । ଯେପର୍ଯ୍ୟନ୍ତ ଜର୍ମାନୀ କ୍ଷତିପୂରଣ ଦେଉଥିଲା ସେପର୍ଯ୍ୟନ୍ତ (ଏହା ପ୍ରକୃତରେ ଆମେରିକା ଧନ ହୋଇଥିଲେ ସୁଦ୍ଧା) ଖାତକ ରାଜ୍ୟମାନେ ଆମେରିକାକୁ ଏହି ଧନ ପଠାଇ ଦେଉଥିଲେ । କିନ୍ତୁ ଯେତେବେଳେ କ୍ଷତିପୂରଣ ଠିକମତ ଆସିଲା ନାହିଁ ବା ବନ୍ଦ ହୋଇଗଲା, ସେତେବେଳେ ଋଣ ଦେବା କଷ୍ଟକର ହୋଇ ପଡ଼ିଲା । ଇଉରୋପର ଖାତକ ରାଜ୍ୟମାନେ କ୍ଷତିପୂରଣ ଓ ଯୁଦ୍ଧ ଋଣକୁ ମିଶାଇବାକୁ ଚେଷ୍ଟା କଲେ; ସେମାନେ କହିଲେ ଯେ ଉଭୟ କଥା ଏକତ୍ର ବିଚାର ହେବା ଦରକାର ଏବଂ ଗୋଟିକୁ ଯଦି ବନ୍ଦ କରିଦିଆଯାଏ, ତେବେ ଅନ୍ୟଟି ଆପଣାଛାଏଁ ବନ୍ଦ ହୋଇଯିବ । ଯାହାହେଉ ଆମେରିକା ଏ ଦୁଇଟିକୁ ମିଶାଇବାକୁ ଅସ୍ୱୀକାର କଲା । ସେ କହିଲା ଯେ ସେ ଟଙ୍କା ଧାର ଦେଲା ଏବଂ ଫେରି ଚାହୁଁଥିଲା —ଏହାର ଜର୍ମାନୀର କ୍ଷତିପୂରଣ ପ୍ରଶ୍ନ ସହିତ ସମ୍ପର୍କ ନାହିଁ । ଏହା ସମ୍ପୂର୍ଣ୍ଣ ଅଲଗା ହୋଇ ରହିଛି । ଆମେରିକାର ଏ ମତରେ ଇଉରୋପରେ ଘୋର ଅସନ୍ତୋଷ ପ୍ରକାଶ କରାଗଲା ଏବଂ ତାକୁ ବଡ଼ କଡ଼ା କଥାହିଁ ଶୁଣାଇଲେ । କୁହାଗଲା ଯେ ସେ ସାଇଲକ୍ ଓ ହାଡ଼େ ହାଡ଼େ ସୁଧ ଅସୁଲ କରିବାକୁ ଚାହେଁ । ବିଶେଷ ଭାବରେ ଫ୍ରାନ୍ସରେ କୁହା ହେଲା ଯୁଦ୍ଧ ଏକ ସର୍ବସାଧାରଣ କାର୍ଯ୍ୟ—ସେଥିରେ ଆମେରିକାରୁ ଧାର ଟଙ୍କା ଖରଚ କରାଯାଉଛି; ଏହାକୁ ଏକ ସାଧାରଣ ଋଣ ବୋଲି ଭାବିବା ଉଚିତ ନୁହେଁ । ଅନ୍ୟ ପକ୍ଷରେ ଆମେରିକାନମାନେ ଯୁଦ୍ଧୋତ୍ତର ପ୍ରତିଯୋଗିତା ଓ ଇଉରୋପର ଚକ୍ରାନ୍ତରେ ଅତ୍ୟନ୍ତ ବିରକ୍ତ ହୋଇ ପଡ଼ିଲେ । ସେମାନେ ଦେଖିଲେ ଫ୍ରାନ୍ସ, ଇଂଲଣ୍ଡ ଓ ଇଟାଲି ପ୍ରଚୁର ପରିମାଣରେ ଧନ, ସେନା ଓ

ଖର୍ଚ୍ଚ କରୁଛନ୍ତି ଏବଂ ଏପରିକି ଅସ୍ତ୍ରଶସ୍ତ୍ର ପାଇଁ କେତେକ ଗ୍ରେଟ ବ୍ରିଟେନକୁ ବି ଧନ ଧାର ଦେଉଛନ୍ତି । ଇଉରୋପର ଏହିସବୁ ଦେଶରେ ଯଦି ଅସ୍ତ୍ରଶସ୍ତ୍ର ପାଇଁ ଏତେ ଧନ ଅଛି, ସେତେବେଳେ ଆମେରିକାନ୍‌ମାନେ କାହିଁକି ତାଙ୍କ ଋଣ ମାଫ୍ କରିବେ ? ସେମାନେ ତାହା କଲେ ସମ୍ଭବତଃ ଏହି ଧନ ଅସ୍ତ୍ରଶସ୍ତ୍ର ତିଆରିରେ ଲାଗିଯିବ । ଆମେରିକା ଏହିପରି ଯୁକ୍ତି କଲା ଏବଂ ନିଜର ଋଣ ଦାବୀ ଛାଡ଼ିଲା ନାହିଁ ।

କ୍ଷତିପୂରଣ ପରି କୌଣସି ପ୍ରକାର ଯୁଦ୍ଧ ଋଣ ଦେବା ମଧ୍ୟ ଅତ୍ୟନ୍ତ କଷ୍ଟକର ହେଲା । ଆନ୍ତର୍ଜାତୀୟ ଋଣସବୁ କେବଳ ସୁନା ବା ମାଲ ସର୍ଭିସ (ଯଥା—ଯାନବାହନ, ଜାହାଜ ଓ ଅନ୍ୟ ଅନେକ ସର୍ଭିସ) ଦ୍ୱାରା ଆଦାୟ ହୋଇପାରେ । ଏହି ପ୍ରକାଣ୍ଡ ପରିମାଣକୁ ସୁନାରେ ଅସୁଲ୍‌ଦେବା ଅସମ୍ଭବ ଥିଲା । ଯଥେଷ୍ଟ ସୁନା ବି ମିଳୁ ନ ଥିଲା । କ୍ଷତିପୂରଣ ଓ ଋଣ ଉଭୟଥିରେ ମାଲ୍ ଓ ସର୍ଭିସ ଉଭୟ ପ୍ରକାରେ ଅସୁଲ ଦେବା ଅସମ୍ଭବ ହୋଇପଡ଼ିଲା, କାରଣ ଆମେରିକା ଓ ଇଉରୋପର ଅନ୍ୟ ଦେଶମାନେ ପ୍ରକାଣ୍ଡ ଶୁଳ୍କ ବାଧାସବୁ କଲେ—ଏଥିରେ ବିଦେଶୀ ମାଲ ଆସିପାରିଲା ନାହିଁ । ଏହା ଏକ ଅସମ୍ଭବ ପରିସ୍ଥିତି ସୃଷ୍ଟି କଲା ଏବଂ ଏହା ପ୍ରକୃତ ଅସୁବିଧା ହେଲା । ତଥାପି କୌଣସି ଦେଶ ନିଜର ପାଉଣା ବାବଦକୁ ମାଲ ଆକାରରେ ଅସୁଲ ଦେବାପାଇଁ କିମ୍ବା ଏହି ଶୁଳ୍କ ବାଧା କମାଇଦେବା ନିମନ୍ତେ ପ୍ରସ୍ତୁତ ନ ଥିଲା; କାରଣ ଏହାଦ୍ୱାରା ନିଜ ଦେଶର ଶିଳ୍ପର କ୍ଷତି ହେବ । ଏହା ଏକ ବିଚିତ୍ର ଓ ଦୂଷିତ ଅବସ୍ଥା ସୃଷ୍ଟି କଲା ।

ସଂଯୁକ୍ତ ରାଷ୍ଟ୍ର ଅମେରିକାଠାରେ କେବଳ ଇଉରୋପ ମହାଦେଶ ଋଣୀ ନ ଥିଲା । ଆମେରିକାନ ବ୍ୟାଙ୍କର ଓ ବ୍ୟବସାୟୀ ଲୋକେ କାନାଡ଼ା ଓ ଲାଟିନ୍ ଆମେରିକା (ଅର୍ଥାତ୍ ଦକ୍ଷିଣ ଓ ମଧ୍ୟ ଆମେରିକା ଏବଂ ମେକ୍‌ସିକୋ) ରେ ପ୍ରଚୁର ପରିମାଣରେ ଧନ ଖଟାଇଥିଲେ । ଆଧୁନିକ ଶିଳ୍ପ ଓ କଳାକାରଖାନାର ଶକ୍ତି ପୃଥିବୀ ଯୁଦ୍ଧ ଭିତରେ ଏହି ଲାଟିନ୍ ଆମେରିକା ଦେଶମାନଙ୍କରେ ଖୁବ୍ ପ୍ରଭାବ ପକାଇଥିଲା । ତେଣୁ ସେମାନେ ଶିଳ୍ପ ଉନ୍ନତିରେ ମନ ଲଗାଇଲେ ଏବଂ ଆମେରିକାରେ ତ ପ୍ରଚୁର ଧନ ଥିଲା ତାହା ଉଚ୍ଛୁରିରୁ ବୋହି ଆସିଲା । ସେମାନେ ଏତେ ଧାର କଲେ ଯେ, ଏହାର ସୁଧ ପ୍ରାପ୍ୟ ଦେଇ ପାରିଲେ ନାହିଁ । ପ୍ରତ୍ୟେକ ସ୍ଥାନରେ ଡିକ୍‌ଟେଟରର ଆବିର୍ଭାବ ହେଲା ଏବଂ ଯେତେଦିନ ପର୍ଯ୍ୟନ୍ତ ଧାର ଚାଲୁଥିଲା ସବୁ ଠିକ୍ ଚାଲିଲା—ଠିକ୍ ଯେମିତି ଜର୍ମାନୀକୁ ଆମେରିକା ଧାର ଦେବା ପର୍ଯ୍ୟନ୍ତ ସବୁ ଠିକ୍ ରୂପେ ଚାଲୁଥିଲା । ଲାଟିନ୍ ଆମେରିକାକୁ ଧାର ଦେବା ବନ୍ଦ ହେବାରୁ ଇଉରୋପ ପରି ଏଠାରେ ବି ସବୁ ଭୁଷୁଡ଼ି ପଡ଼ିଲା ।

ଆମେରିକା ମୂଳଧନ ଓ ଏହା ଉପରେ ପ୍ରଭାବରେ ଲାଟିନ୍ ଆମେରିକାରେ ଦ୍ରୁତ ବେଗରେ ବଢ଼ିଲା ଏହାର ଗୋଟିଏ ଧାରଣା ତୋତେ ଦେବା ନିମନ୍ତେ ମୁଁ କେତେକ ସଂଖ୍ୟା ଏଠି ଦେବି । ୧୯୧୨ରେ ଏହି ମୂଳଧନ ପରିମାଣ ଥିଲା ୪ ହଜାର ନିୟୁତ ଡଲାର । ତିନି ବର୍ଷ ପରେ ୧୯୧୯ରେ ଏହା ୫ ହଜାର ନିୟୁତ ଡଲାରରୁ ଅଧିକ ହୋଇଗଲା ।

ତେଣୁ ଯୁଦ୍ଧୋତ୍ତର ବର୍ଷରେ ନିଃସନ୍ଦେହରୂପେ ଆମେରିକା ପୃଥିବୀର ଧନୀ, ସମୃଦ୍ଧିଶାଳୀ ବ୍ୟାଙ୍କର ଥିଲା ଏବଂ ଧନରେ ଫାଟି ପଡ଼ୁଥିଲା । ସେ ଦୁନିଆଁରେ ପ୍ରାଧାନ୍ୟ କଲା ଏବଂ ତାର ଲୋକେ ଇଉରୋପ ଓ ଅଧିକରୂପେ ଏସିଆକୁ ଏକପ୍ରକାର ଘୃଣାସୂଚକ ଦୃଷ୍ଟିରେ ଦେଖିଲେ--ସେମାନେ ଏଗୁଡ଼ିକୁ ବୃଦ୍ଧାବସ୍ଥାରେ ପଡ଼ିଥିବା କଳହପ୍ରିୟ ମହାଦେଶସବୁ ବୋଲି ମନେ କଲେ । ତଳେ ଦେଇଥିବା ହିସାବରୁ ସେତେବେଳେ ସମୃଦ୍ଧିର ଉଚ୍ଚ ଅବସ୍ଥାପନ୍ନ ଆମେରିକାନ୍ ସମ୍ପଦର ଗୋଟାଏ ଧାରଣା କରିପାରିବ । ୧୯୧୨ ଠାରୁ ୧୯୨୭ ପର୍ଯ୍ୟନ୍ତ ୧୫ ବର୍ଷ ଭିତରେ ଆମେରିକାର ମୋଟ ଜାତୀୟ ସମ୍ପଦ ୧୮୭,୨୩୯,୦୦୦ରୁ ୪୦୦,୦୦୦,୦୦୦,୦୦୦ ଡଲାର ପର୍ଯ୍ୟନ୍ତ ହୋଇଥିଲା । ୧୯୨୭ରେ ଲୋକସଂଖ୍ୟା ପ୍ରାୟ ୧୧୭,୦୦୦,୦୦୦ ହେବ ଥିଲା ଏବଂ ପ୍ରତି ଜଣପିଛା ସମ୍ପଦ ହେଲା ୩୪୨୮ ଡଲାର । ଏତେ ଦ୍ରୁତ ପ୍ରଗତି ହୋଇଛି ଯେ ଏହିସବୁ ସଂଖ୍ୟାର ବର୍ଷକୁ ବର୍ଷ ପରିବର୍ତ୍ତନ ହେଉଛି । ଗୋଟିଏ ପୂର୍ବ ଚିଠିରେ ଭାରତୀୟ ଜାତୀୟ ଆୟ ସହିତ ଅନ୍ୟ ଦେଶର ତୁଳନା କଲାବେଳେ ମୁଁ ଆମେରିକାର ଏକ କମ୍ ସଂଖ୍ୟା ଦେଇଥିଲି । ଏହା ଥିଲା ବାର୍ଷିକ ଆୟର ହିସାବ, ଦେଶର ସମ୍ପଦ ନୁହେଁ ଏବଂ ସମ୍ଭବତଃ ଏହା ବହୁତ ଆଗର ହିସାବ । ଏଥିରେ ୧୯୨୭ ମସିହାର ଯେ ହିସାବ ଦେଇଛି ତାହା ୧୯୨୭ ନଭେମ୍ବର ମାସରେ ଆମେରିକାର ପ୍ରେସିଡେଣ୍ଟ କୁଲିଜଙ୍କ ଏକ ବକ୍ତୃତାରୁ ନିଆ ହୋଇଛି ।

ଆଉ କେତେକ ହିସାବରେ ତୋର ଆଗ୍ରହ ଜନ୍ମିପାରେ । ଏ ସବୁ ୧୯୨୭ ମସିହାର । ସଯୁକ୍ତ ରାଷ୍ଟ୍ରର ପରିବାର ସଂଖ୍ୟା ଥିଲା ୨୭,୦୦୦,୦୦୦ । ସେମାନଙ୍କର ୧୫, ୯୨୩,୦୦୦ ବିଜୁଳି ଆଲୁଅଲଗା ଘର ଥିଲା ଏବଂ ୧୭, ୭୦୦,୦୦୦ ଟେଲିଫୋନ । ସେଠାରେ ୧୯,୨୩୭,୧୭୧, ମଟର ଗାଡ଼ି ବ୍ୟବହୃତ ହେଉଥିଲା ଏବଂ ଏହି ସଂଖ୍ୟା ପୃଥିବୀର ମୋଟ ସଂଖ୍ୟାର ଶତକଡ଼ା ୮୧ । ପୃଥିବୀର ମଟର ସଂଖ୍ୟାର ଶତକଡ଼ା ୮୭, ପୃଥିବୀ ପେଟ୍ରୋଲର ଶତକଡ଼ା ୭୧ ଏବଂ ପୃଥିବୀ କୋଇଲାର ଶତକଡ଼ା ୪୩ ଆମେରିକା ଉତ୍ପାଦନ କରୁଥିଲା, ଅଥଚ ଆମେରିକାର ଲୋକସଂଖ୍ୟା ପୃଥିବୀ ଲୋକସଂଖ୍ୟାର କେବଳ ଶତକଡ଼ା ୬ । ତେଣୁ ସାଧାରଣ ଜୀବନଧାରଣ ମାନ ଅତି ଉଚ୍ଚରେ; ତଥାପି ଯେତେ ଉଚ୍ଚ ହେବାର କଥା ଏହା ହୋଇ ନ ଥିଲା । କାରଣ କେତେକ ଲକ୍ଷପତି ଓ କୋଟିପତିଙ୍କ ହାତରେ ସମସ୍ତ ସମ୍ପଦ ରହିଥିଲା । ଏହି "ବଡ଼ ବ୍ୟବସାୟୀ" (Big (Business) ହିଁ ଦେଶକୁ ଶାସନ କରୁଥିଲେ । ସେମାନେ ସଭାପତି ବାଛନ୍ତି, ଆଇନ ତିଆରି କରନ୍ତି ଏବଂ ଅନେକ ସମୟରେ ସେହିମାନେ ହିଁ ଆଇନ ଭଙ୍ଗ କରନ୍ତି । ଏହି ବଡ଼ ବଡ଼ ବ୍ୟବସାୟୀଙ୍କ ଭିତରେ ବହୁତ ବ୍ୟଭିଚାର ପଶିଥିଲା, କିନ୍ତୁ ଯେପର୍ଯ୍ୟନ୍ତ ସାଧାରଣ ଉନ୍ନତ ଅବସ୍ଥା ଥିଲା, ଲୋକେ ଏଥିକି ଖାତିର କରୁ ନ ଥିଲେ ।

୧୯୨୦-୩୦ ଭିତରେ ଆମେରିକାର ସମୃଦ୍ଧି ବିଷୟରେ ଦୁଇଟି ଉଦ୍ଦେଶ୍ୟରେ ମୁଁ ଏହି ସବୁ ହିସାବ ଦେଉଛି । ପ୍ରଥମ ହେଉଛି ଅନୁନ୍ନତ ଓ ଅ-ଶିଳ୍ପୋଦ୍ୟୋଗୀ ଦେଶ,

ଯଥା—ଭାରତ ଓ ଚୀନ ଇତ୍ୟାଦି ସହ ତୁଳନା କଲେ ଅଧିକନ୍ତୁ ଔଦ୍ୟୋଗିକ ସଭ୍ୟତା କେତେଦୂର ଯାଇପାରେ ଏହା ଦେଖାଇ ଦେଉଛି ଏବଂ ଦ୍ୱିତୀୟରେ ଆମେରିକାର ପରବର୍ତ୍ତୀ ସଙ୍କଟ ଓ ପତନ ସହ ଏହି ସମୃଦ୍ଧିର ପାର୍ଥକ୍ୟଟା ସ୍ପଷ୍ଟ ଜଣାପଡ଼ିଯାଏ—ଏ ସମ୍ବନ୍ଧରେ ମୁଁ ପରେ କହିବି ।

ଏହି ସଙ୍କଟ ବହୁତ ଡେରିରେ ଆସିଲା । ଇଉରୋପ ଓ ଏସିଆ ଯେଉଁସବୁ ଦୁଃଖ ଭୋଗ କରୁଥିଲେ ୧୯୨୯ ପର୍ଯ୍ୟନ୍ତ ଆମେରିକାରେ ତାହା ହୋଇ ନ ଥିଲା । ପରାଜିତ ଦେଶମାନଙ୍କ ଅବସ୍ଥା ବଡ଼ ଖରାପ ଥିଲା । ଜର୍ମାନୀର ଦୁର୍ଦ୍ଦଶା ବିଷୟରେ ମୁଁ ତତେ କିଛି କହିଛି । ମଧ୍ୟ ଇଉରୋପ ଏବଂ ବିଶେଷତଃ ଅଷ୍ଟ୍ରିଆ ପ୍ରଭୃତି କେତେକ ଛୋଟ ଦେଶର ଅବସ୍ଥା ଆହୁରି ଖରାପ ଥିଲା । ଅଷ୍ଟ୍ରିଆ ମଧ୍ୟ ମୁଦ୍ରାବୃଦ୍ଧିର କଷ୍ଟ ଭୋଗୁଥିଲା ଏବଂ ପୋଲାଣ୍ଡ ମଧ୍ୟ ସେହିପରି । ଉଭୟଙ୍କୁ ନିଜର ମୁଦ୍ରା ପରିବର୍ତ୍ତନ କରିବାକୁ ପଡ଼ିଲା ।

କିନ୍ତୁ ଏହା କେବଳ ପରାଜିତ ରାଜ୍ୟଗୁଡ଼ିକ ଭିତରେ ସୀମାବଦ୍ଧ ନଥିଲା । ଏପରି କି ବିଜେତା ଦେଶଗୁଡ଼ିକ ମଧ୍ୟ କ୍ରମେ ଏଥିରେ ଜଡ଼ିତ ହେଲେ । ଏହା ସର୍ବଦା ଜଣାଅଛି ଯେ, ଖାତକ ହେବା କିଛି ଭଲ କଥା ନୁହେଁ । ଏବେ ଏକ ନୂତନ ଓ ଅଦ୍ଭୁତ କଥା ହୃଦୟଙ୍ଗମ ହେଲା; ଋଣଦାତା ହେବା ବି ଭଲ କଥା ନୁହେଁ । କାରଣ ଯେଉଁସବୁ ବିଜେତା ଦେଶଗୁଡ଼ିକୁ ଜର୍ମାନୀକୁ କ୍ଷତିପୂରଣ ଦେବାକୁ ପଡ଼ୁଥିଲା, ସେମାନେ ଏହି କ୍ଷତିପୂରଣ ନିମନ୍ତେ ମହାନ ଅସୁବିଧାରେ ପଡ଼ିଲେ ଏବଂ ଏହା ଗ୍ରହଣ କରିବା କାର୍ଯ୍ୟରେ ହିଁ ସେମାନେ ଆହୁରି ହୀନବଳ ହେଲେ । ମୁଁ ଆଗାମୀ ଚିଠିରେ ଏ ବିଷୟରେ କହିବି ।

## ୧୭୩ : ମୁଦ୍ରାର ଅଦ୍ଭୁତ ଆଚରଣ

ଜୁନ୍ ୧୬, ୧୯୩୩

ଯୁଦ୍ଧୋତ୍ତର ଦୁନିଆଁର ଏକ ଅତି ଅପୂର୍ବ ଲକ୍ଷଣ ହେଉଛି ମୁଦ୍ରାର ଅଦ୍ଭୁତ ଆଚରଣ । ଯୁଦ୍ଧ ପୂର୍ବରୁ ପ୍ରତ୍ୟେକ ଦେଶର ମୁଦ୍ରାର ଅଳ୍ପେ ଅଧିକେ ଏକ ନିର୍ଦ୍ଦିଷ୍ଟ ମୂଲ୍ୟ ଥିଲା । ପ୍ରତ୍ୟେକ ଦେଶର ନିଜର ମୁଦ୍ରା ଥିଲା; ଯଥା—ଭାରତରେ ଟଙ୍କା, ଇଂଲଣ୍ଡରେ ପାଉଣ୍ଡ, ଆମେରିକାରେ ଡଲାର, ଫ୍ରାନ୍ସରେ ଫ୍ରାଙ୍କ୍, ଜର୍ମାନୀରେ ମାର୍କ, ରୁଷରେ ରୁବେଲ, ଇଟାଲୀରେ ଲିରା ଇତ୍ୟାଦି ଏବଂ ଏହି ମୁଦ୍ରାମାନଙ୍କର ପରସ୍ପର ସହିତ ଗୋଟାଏ ସ୍ଥିର ସମ୍ପର୍କ ଥିଲା । ପରସ୍ପର ସହିତ ଏମାନଙ୍କର ଅନ୍ତର୍ଜାତୀୟ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ ଅନୁସାରେ ସମ୍ପର୍କ ଥିଲା—ଅର୍ଥାତ୍ ପ୍ରତ୍ୟେକ ମୁଦ୍ରାର ଏକ ନିର୍ଦ୍ଦିଷ୍ଟ ସ୍ୱର୍ଣ୍ଣ ମୂଲ୍ୟ ଥିଲା ।

ପ୍ରତ୍ୟେକ ଦେଶର ସୀମା ଭିତରେ ନିଜର ମୁଦ୍ରା ଠିକ୍ ଧରିଯାଏ, କିନ୍ତୁ ବାହାରେ ସେପରି ନୁହେଁ । ଦୁହିଁଙ୍କ ଭିତରେ ସଂଯୋଜକ କାର୍ଯ୍ୟ କରୁଥିଲା ସୁନା ଏବଂ ତେଣୁ ଅନ୍ତର୍ଜାତୀୟ ନେଣଦେଣ ସବୁ ସୁନାଦ୍ୱାରା କରାଯାଉଥିଲା । ଯେ ପର୍ଯ୍ୟନ୍ତ ମୁଦ୍ରାମାନଙ୍କରେ ନିର୍ଦ୍ଦିଷ୍ଟ ସ୍ୱର୍ଣ୍ଣ ମୂଲ୍ୟ ଥିଲା, ସେ ପର୍ଯ୍ୟନ୍ତ ବିଶେଷ କିଛି ହେରଫେର ନ ଥିଲା; କାରଣ ମୂଲ୍ୟ ହିସାବରେ ଦେଖିଲେ ସୁନା ଏକ ନିର୍ଦ୍ଦିଷ୍ଟ ଧାତୁ ।

ଯାହାହେଉ, ଯୁଦ୍ଧକାଳୀନ ଆବଶ୍ୟକତା ହେତୁ ଯୁଦ୍ଧରତ ସରକାର ସବୁ ଏହି ସୁନା ଷ୍ଟାଣ୍ଡାର୍ଡ ଛାଡ଼ିଦେଲେ ଏବଂ ସେମାନଙ୍କର ମୁଦ୍ରାକୁ ଶସ୍ତା କରି ପକାଇଲେ । କେତେକ ପରିମାଣରେ ମୁଦ୍ରା ବୃଦ୍ଧି ଘଟିଲା । ବ୍ୟବସାୟ ଚାଲୁ କରିବାରେ ଏହା ସାହାଯ୍ୟ କଲା, କିନ୍ତୁ ଏହା ମୁଦ୍ରାର ଅନ୍ତର୍ଜାତୀୟ ସମ୍ବନ୍ଧକୁ ଓଲଟପାଲଟ କରିଦେଲା । ଯୁଦ୍ଧ କାଳ ଭିତରେ ପୃଥିବୀ ମିତ୍ର ପକ୍ଷ ଓ ଜର୍ମାନ ପକ୍ଷ ଏହି ଦୁଇ ଭାଗରେ ବିଭକ୍ତ ହେଲା ଏବଂ ପ୍ରତ୍ୟେକ ଶିବିର ଭିତରେ ସହଯୋଗ ଓ ସଂଯୋଗ ରହିଥିଲା ଏବଂ ଯୁଦ୍ଧ ହେତୁ ଅନ୍ୟ ସବୁ ଜିନିଷ ପଛକୁ ପକାଇ ଦିଆଯାଇଥିଲା । ଯୁଦ୍ଧ ପରେ ଅସୁବିଧା ପହଞ୍ଚିଲା ଏବଂ ପରିବର୍ତ୍ତିତ ଆର୍ଥିକ ଅବସ୍ଥା ଓ ଦେଶମାନଙ୍କ ଭିତରେ ପରସ୍ପର ଅବିଶ୍ୱାସ ଫଳରେ ବିଭିନ୍ନ ମୁଦ୍ରାର ଏପରି ଅସାଧାରଣ ଆଚରଣ ହେଲା । ଆଜି ସମଗ୍ର ମୁଦ୍ରା ପ୍ରଥା ଧାରରେ ନିସ୍ୱ ବିନିସ୍ୱ (Credit) ଉପରେ ଅଧିକ ପରିମାଣରେ ପ୍ରତିଷ୍ଠିତ; ବ୍ୟାଙ୍କ୍ ନୋଟ ଓ ଚେକ୍ ଦେବା ପାଇଁ ପ୍ରତିଶ୍ରୁତି ମାତ୍ର— ଏହି.କୁ ବାସ୍ତବିକ ଧନ ଭାବରେ ଗ୍ରହଣ କରାଯାଏ । ବିଶ୍ୱାସ ଉପରେ ଧାରରେ କାରବାର ଚଳେ ଏବଂ ବିଶ୍ୱାସ ତୁଟିଲେ ଧାର ନେବା ଦେବା ବି ଯାଏ । ଯୁଦ୍ଧୋତ୍ତର ବର୍ଷ ଭିତରେ ମୁଦ୍ରା ପ୍ରଥା ବଦ୍ଆଚରଣ କରିବାର ଏହି ହେଉଛି ଏକ କାରଣ—ଇଉରୋପର ଗୋଲମାଲିଆ ଅବସ୍ଥା ସମସ୍ତ ବିଶ୍ୱାସ ହରାଇବାରୁ ଏହା ଏପରି ହେଲା । ଆଧୁନିକ ଦୁନିଆଁ ପରସ୍ପର ଉପରେ ନିର୍ଭରଶୀଳ, ପ୍ରତ୍ୟେକ ଅଂଶ ଅନ୍ୟ ସହିତ ଘନିଷ୍ଠ ରୂପେ ଜଡ଼ିତ ଏବଂ ସର୍ବଦା ଏତେ ଅନ୍ତର୍ଜାତୀୟ କାର୍ଯ୍ୟସବୁ ବି ଚାଲିଛି । ଏହାର ଅର୍ଥ ଏକ ଦେଶରେ ଗୋଲମାଳ ଘଟିଲେ ସଙ୍ଗେ ସଙ୍ଗେ ଅନ୍ୟ ଦେଶରେ ତାର ପ୍ରତିକ୍ରିୟା ହୁଏ । ଯଦି ଜର୍ମାନ ମାର୍କର ପତନ ହୁଏ ବା ଜର୍ମାନ ବ୍ୟାଙ୍କ ଅକୃତକାର୍ଯ୍ୟ ହୋଇଯାଏ, ତେବେ ଏହା ଅନେକପ୍ରକାରେ ଲଣ୍ଡନ, ପାରିସ ଓ ନିଉୟର୍କକୁ ମଧ୍ୟ ସ୍ପର୍ଶ କରେ ।

ଏହି କାରଣ ଓ ଅନ୍ୟ କେତେକ କାରଣ (ଏ ବିଷୟ ସବୁ କହି ମୁଁ ତୋତେ ବ୍ୟସ୍ତରେ ପକାଇବି ନାହିଁ) ହେତୁ ପ୍ରାୟ ସବୁ ଦେଶରେ ମୁଦ୍ରା ବା ଅର୍ଥର ଅସୁବିଧା ଘଟିଛି ଏବଂ ଯେଉଁ ଦେଶ ଶିଳ୍ପ ଦିଗରେ ଯେତେ ଉନ୍ନତ ହେବ, ବିପଦ ସେତେ ବେଶୀ ବଢ଼ିବ । କାରଣ ଔଦ୍ୟୋଗିକ ଉନ୍ନତି ବୋଇଲେ ଏକ ଅତ୍ୟନ୍ତ ଜଟିଳ ଅନ୍ତର୍ଜାତୀୟ ଗଠନ । ଏହା ସୁସ୍ପଷ୍ଟ ଯେ, ତିବ୍ବତ ପରି ଏକ ଅନୁନ୍ନତ ଓ ଅଲଗା ରହିଥିବା ସ୍ଥାନରେ ମାର୍କ ବା ପାଉଣ୍ଡର ଆଚରଣ ଆଦୌ ସ୍ପର୍ଶ କରିବ ନାହିଁ । କିନ୍ତୁ ଡଲାରର ମୂଲ୍ୟ ପତନ ହେଲେ ତତ୍କ୍ଷଣାତ୍ ଜାପାନ ସଙ୍ଗେ ସଙ୍ଗେ ଓଲଟପାଲଟ ହୋଇଯିବ

ଆହୁରି ମଧ୍ୟ ପ୍ରତ୍ୟେକ ଶିଳ୍ପୋନ୍ନତ ଦେଶରେ ବିଭିନ୍ନ ଶ୍ରେଣୀର ସ୍ୱାର୍ଥ ଅଲଗା । ତେଣୁ କେତେକ ଚାହିଁଲେ ଶସ୍ତା ମୁଦ୍ରା ଓ ମୁଦ୍ରାସ୍ଫୀତି (ଅବଶ୍ୟ ଜର୍ମାନୀ ପରି ଏକ ସୀମାହୀନ ମୁଦ୍ରାସ୍ଫୀତି ନୁହେଁ) ଓ ଆଉ କେତେକ ଚାହିଁଲେ ମୁଦ୍ରାହ୍ରାସ (Deflation) ଅର୍ଥାତ୍ ମୁଦ୍ରାର ଖୁବ୍ ଉଚ୍ଚ ସ୍ୱର୍ଣ୍ଣମୂଲ୍ୟ । ଦୃଷ୍ଟାନ୍ତ ସ୍ୱରୂପ ଋଣଦାତାମାନେ, ବ୍ୟାଙ୍କର ଓ ସେହିପରି ଲୋକେ ଉଚ୍ଚ ମୁଦ୍ରା ମୂଲ୍ୟ ସପକ୍ଷରେ ଥିଲେ, କାରଣ ସେମାନେ ଧନ ପାଇବାର କଥା, ଖାତକମାନେ ତାଙ୍କର ଋଣ ସୁଝିବା ନିମନ୍ତେ ଶସ୍ତା ମୁଦ୍ରା ଚାହିଁବା ସ୍ୱାଭାବିକ । ଶିଳ୍ପୋଦ୍ୟୋଗୀ ଓ ମାଲ ତିଆରି କରିବାଲା ଲୋକେ ଶସ୍ତା ମୁଦ୍ରା ସପକ୍ଷରେ ଥିଲେ; କାରଣ ସେମାନେ ସାଧାରଣ ବ୍ୟକ୍ତିଙ୍କଠାରୁ ଧାର କରିଥାନ୍ତି ଏବଂ ଏହାଠୁଁ ଆହୁରି ପ୍ରଧାନ କଥା ହେଉଛି ଏଥିରେ ତାଙ୍କର ମାଲ ବିଦେଶରେ ବିକ୍ରୀ ହେବାରେ ସାହାଯ୍ୟ କରେ । ଶସ୍ତା ବ୍ରିଟିଶ ମୁଦ୍ରା ଅର୍ଥ ବିଦେଶ ବଜାରରେ ଜର୍ମାନ, ଆମେରିକାନ ବା ଅନ୍ୟ ବିଦେଶୀ ଜିନିଷ ତୁଳନାରେ ବିଳାତି ମାଲର ମୂଲ୍ୟ କମ୍ ହେବ ଏବଂ ଏହା ଫଳରେ ବ୍ରିଟିଶ କଳକାରଖାନା ମାଲିକମାନଙ୍କର ସୁବିଧା ହେବ ଏବଂ ସେମାନଙ୍କର ମାଲ ଅଧିକ ବିକ୍ରୀ ହେବ । ତେଣୁ ତୁ ଲକ୍ଷ୍ୟ କରିପାରିବୁ ଯେ, ବିଭିନ୍ନ ଗୋଷ୍ଠୀ ବିଭିନ୍ନ ବାଟରେ ଟାଣନ୍ତି ଏବଂ ପ୍ରଧାନ ଟଣାଭିଡ଼ା ଚାଲେ କଳକାରଖାନା ମାଲିକ ଓ ବ୍ୟାଙ୍କରମାନଙ୍କ ଭିତରେ । ମୁଁ ଯେତେ ସରଳ ଭାବରେ ପାରେ ଏହା ଲେଖିବା ପାଇଁ ଚେଷ୍ଟା କରୁଛି । ପ୍ରକୃତରେ ଦେଖିବାକୁ ଗଲେ ଅନେକ ଜଟିଳ ଜିନିଷ ସବୁ ଥିଲା ।

ଫ୍ରାନ୍ସ ଓ ଇଟାଲୀ ଉଭୟ ସ୍ଥାନରେ ମୁଦ୍ରାସ୍ଫୀତି ହେଲା ଏବଂ ଫ୍ରାଙ୍କ ଓ ଲିରାର ମୂଲ୍ୟ ହ୍ରାସ ହେଲା । ଫ୍ରାଙ୍କର ପୁରାତନ ମୂଲ୍ୟ ଅନୁସାରେ ୨୫ଟି ଫ୍ରାଙ୍କ ଏକ ପାଉଣ୍ଡ ଷ୍ଟର୍ଲିଙ୍ଗ (ବ୍ରିଟିଶ ପାଉଣ୍ଡର ନାମ) ସଙ୍ଗେ ସମାନ । ଏହା ୨୭୫ ହୋଇଗଲା । ପରେ ଏହା ୧୨୦ ଯାକେ ହୋଇଗଲା ।

ଯୁଦ୍ଧ ପରେ ଆମେରିକା ଇଂଲଣ୍ଡକୁ ସାହାଯ୍ୟ କରିବା ବନ୍ଦ କରିଦେବାରୁ ଏହି ପାଉଣ୍ଡର ମୂଲ୍ୟ ଟିକିଏ କମିଗଲା । ଇଂଲଣ୍ଡ ସେତେବେଳେ ଏକ ବିପଦର ସମ୍ମୁଖୀନ ହେଲା । ପାଉଣ୍ଡ ମୂଲ୍ୟର ଏହି ସ୍ୱାଭାବିକ ପତନକୁ ସେ ଗ୍ରହଣ କରି ପାଉଣ୍ଡର ନୂତନ ମୂଲ୍ୟ ନିରୂପଣ କରିବ କି ? ଏତଦ୍ଦ୍ୱାରା ମାଲ ଶସ୍ତା ହୋଇ ଶିଳ୍ପକୁ ସାହାଯ୍ୟ କରିଥାନ୍ତା, କିନ୍ତୁ ଏଥିରେ ବ୍ୟାଙ୍କର ଓ ଋଣଦାତାମାନଙ୍କର କ୍ଷତି ହୋଇଥାନ୍ତା । ଏହାଠାରୁ ଆହୁରି ଗୁରୁତର କଥା ହେଉଛି ଲଣ୍ଡନ ପୃଥିବୀରେ ଯେ, ଅର୍ଥ କେନ୍ଦ୍ର ହୋଇ ରହିଛି ଏଥିରେ ତାହା ଶେଷ ହୋଇଯାଆନ୍ତା, ନିଉୟର୍କ ଏ ସ୍ଥାନ ଦଖଲ କରିଯାଆନ୍ତା ଏବଂ ଋଣଗ୍ରହୀତାମାନେ ଲଣ୍ଡନ ଆସିବା ପରିବର୍ତ୍ତେ ସେଠିକି ଯାଆନ୍ତେ । ଆଉ ଅନ୍ୟ ବାଟ ହେଉଛି ପାଉଣ୍ଡର ମୂଳ ମୂଲ୍ୟକୁ ବଳପୂର୍ବକ ଚଳାଇବା । ଏଥିରେ ପାଉଣ୍ଡର ମାନ ବଢ଼ିବ ଏବଂ ଲଣ୍ଡନ ସେହିପରି ଆର୍ଥିକ ନେତା ହୋଇ ରହିଥିବ । କିନ୍ତୁ ଶିଳ୍ପ କ୍ଷତିଗ୍ରସ୍ତ ହେବ

ଏବଂ ଅନେକ ଅବାଞ୍ଛନୀୟ ଘଟଣା ସବୁ ଘଟିବ ଯାହା କି ପରବର୍ତ୍ତୀ ଘଟଣାରୁ ପ୍ରମାଣିତ ହୋଇଥିଲା ।

୧୯୨୫ରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଦ୍ୱିତୀୟ ପନ୍ଥା ନେଲା ଏବଂ ପାଉଣ୍ଡକୁ ତାର ପୂର୍ବ ସ୍ୱର୍ଣ୍ଣମୂଲ୍ୟକୁ ଉଠାଇଦେଲା । ତେଣୁ ଇଂରେଜମାନେ ତାଙ୍କ ବ୍ୟାଙ୍କରଙ୍କ ପାଇଁ ଶିଳ୍ପକୁ କେତେକ ପରିମାଣରେ ବଳି ଦେଲେ । ତାଙ୍କ ସମ୍ମୁଖରେ ଆଉଗୋଟିଏ ଗୁରୁତର ସମସ୍ୟା ପଡ଼ିଥିଲା; କାରଣ ତାଙ୍କର ସାମ୍ରାଜ୍ୟ ଚଳାଇବା ପକ୍ଷରେ ଏହା ଖୁବ୍ ସ୍ପର୍ଶ କରୁଥିଲା । ଲଣ୍ଡନ ଯଦି ପୃଥିବୀରେ ଆର୍ଥିକ ନେତୃତ୍ୱ ହରାଏ, ତେବେ ସାମ୍ରାଜ୍ୟର ବିଭିନ୍ନ ଅଂଶ ବା ସାହାଯ୍ୟ ପାଇଁ ତାଆଡ଼କୁ ଅନାଇବେ ନାହିଁ ଏବଂ ସାମ୍ରାଜ୍ୟ କ୍ରମେ ତରଳିପଡ଼ିବ । ତେଣୁ ଏ ପ୍ରଶ୍ନ ଏକ ସାମ୍ରାଜ୍ୟ ନୀତି ଦୃଷ୍ଟିରେ ବିଚାର ହେଲା ଏବଂ ବ୍ରିଟିଶ ଶିଳ୍ପ ଓ ତାତ୍କାଳିକ ଦେଶର ଆଭ୍ୟନ୍ତରୀଣ ସ୍ୱାର୍ଥ ବିନିମୟରେ ବ୍ୟାପକ ସାମ୍ରାଜ୍ୟବାଦର ହିଁ ଜୟ ହେଲା । ତୋର ମନେଆଇପାରେ ଏହିପରି ଭାବରେ ଏପରି କି ଲଙ୍କାଶାୟର ଓ ବ୍ରିଟିଶ ଶିଳ୍ପକୁ କେତେକ ପରିମାଣରେ ହାନି ପହଞ୍ଚାଇ ଯୁଦ୍ଧ ପରେ ସାମ୍ରାଜ୍ୟ ନୀତି ଦୃଷ୍ଟିରୁ ବ୍ରିଟେନକୁ ଭାରତରେ ଶିଳ୍ପୋଦ୍ୟୋଗକୁ ଉତ୍ସାହିତ କରିବାକୁ ପଡ଼ିଥିଲା ।

ଏହିରୂପେ ନେତୃତ୍ୱ ଓ ସାମ୍ରାଜ୍ୟ ରକ୍ଷା କରିବା ନିମନ୍ତେ ବ୍ରିଟିଶ ଏକ ସାହସିକ ଉଦ୍ୟମ କଲା; କିନ୍ତୁ ଏହି ଉଦ୍ୟମରେ ତାକୁ ବହୁତ ଦାମ୍ ଦେବାକୁ ପଡ଼ିଲା ଓ ଏହା ଅକୃତକାର୍ଯ୍ୟ ହେବାର କଥା । ଅର୍ଥନୈତିକ ଦଶାର ଅନିବାର୍ଯ୍ୟ ଅଭିବୃଦ୍ଧିକୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବା ଆଉ କୌଣସି ଗଭର୍ଣ୍ଣମେଣ୍ଟ ଆୟତ୍ତ କରି ପାରିବେ ନାହିଁ । କିଛି କ୍ଷଣ ନିମନ୍ତେ ପାଉଣ୍ଡ ତାର ପୁରାତନ ମାନ ବଜାୟ ରଖିଲା; କିନ୍ତୁ ଏହା ଶିଳ୍ପକୁ କ୍ରମେ ଅଚଳ କରି ପକାଇଲା । ଅକର୍ମୀ ବୃଦ୍ଧି ପାଇଲା ଏବଂ ବିଶେଷ ଭାବରେ କୋଇଲା ଶିଳ୍ପ ବେଶି ଆଘାତ ପାଇଲା । ପାଉଣ୍ଡର ମୁଦ୍ରାହ୍ରାସ ( Deflation ) (ସୁନା ମୂଲ୍ୟ ବୃଦ୍ଧିକୁ କହନ୍ତି) ଏଥିପାଇଁ ଅନେକ ପରିମାଣରେ ଦାୟୀ । ଆଉଗୋଟିଏ ଅନ୍ୟ କାରଣ ସବୁ ବି ଥିଲା । କ୍ଷତିପୂରଣ ପାଉଣା ବାବତରେ କେତେକ ଜର୍ମାନ କୋଇଲା ମିଳିଥିଲା ଏବଂ ଏହାର ଅର୍ଥ କମ୍ ବ୍ରିଟିଶ କୋଇଲା ଆବଶ୍ୟକ ହେଲା; ଫଳସ୍ୱରୂପ କୋଇଲା ଖଣିରେ ଅଧିକ ଅକର୍ମୀ ହେଲେ । ଏହିରୂପେ ଋଣଦାତା ଓ ବିଜେତା ଦେଶମାନେ ଉପଲବ୍ଧି କଲେ ଯେ ପରାଜିତ ଦେଶମାନଙ୍କରୁ ଏପରି କର ଆଦାୟ କରିବା ଏକ ଅମିଶ୍ରିତ ଆଶୀର୍ବାଦ ନୁହେଁ । ବ୍ରିଟିଶ କୋଇଲା ଶିଳ୍ପ ମଧ୍ୟ ଅତି ଖରାପ ଅବସ୍ଥା ଧରିଗଲା । ଏହା କେତେ ଶହ ଛୋଟ କମ୍ପାନୀରେ ବିଭକ୍ତ ହୋଇଗଲା ଏବଂ ୟୁରୋପ ମହାଦେଶ ଓ ଆମେରିକାର ଅଧିକ ଓ ଉନ୍ନତ ଧରଣର ସଙ୍ଗଠିତ ଦଳ ସହିତ ସହଜରେ ପ୍ରତିଯୋଗିତା କରିପାରିଲା ନାହିଁ ।

କୋଇଲା ଶିଳ୍ପ କ୍ରମେ ଖରାପ ଆଡ଼କୁ ଯିବାରୁ, ଖଣି ମାଲିକମାନେ ସେମାନଙ୍କ ଶ୍ରମିକଙ୍କ ମଜୁରି କମ୍ କରିଦେବା ନିମନ୍ତେ ସ୍ଥିର କଲେ । ଖଣିମଜଦୁରମାନେ ଏଥିରେ

ଘୋର ଅସନ୍ତୋଷ ପ୍ରକାଶ କଲେ ଏବଂ ଅନ୍ୟ ଶିଳ୍ପରେ ନିଯୁକ୍ତ ଶ୍ରମିକମାନଙ୍କର ସମର୍ଥନ ସେମାନେ ପାଇଲେ । ବ୍ରିଟେନର ସମଗ୍ର ଶ୍ରମିକ ଆନ୍ଦୋଳନ କୋଇଲାଖଣି ଶ୍ରମିକଙ୍କ ତରଫରୁ ଲଢ଼ାଇ କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା ଏବଂ ଏକ "କାର୍ଯ୍ୟକାରୀ ପରିଷଦ" ( Council of action ) ଗଢ଼ାହେଲା ଏବଂ ଏହା ପୂର୍ବରୁ "ତ୍ରିନାଥ ମିଳନ" ( Triple alliance ) ହୋଇଥିଲା । ଖଣିଶ୍ରମିକ, ରେଲଓ୍ୱେ ମଜଦୁର ଓ ଯାନବାହନ ଶ୍ରମିକମାନଙ୍କର ତିନୋଟି ବଡ଼ ଶ୍ରମିକ ସଙ୍ଘ ଭିତରେ ମିଳନ ହୋଇଥିଲା—ଯାନବାହନ ଶ୍ରମିକ ସଙ୍ଘରେ ଲକ୍ଷ ଲକ୍ଷ ସଙ୍ଗଠିତ ଓ ଶିକ୍ଷିତ ଶ୍ରମିକ ଥିଲେ । ଶ୍ରମିକ ଶ୍ରେଣୀର ଏହି ଉଗ୍ର ମନୋଭାବ ଦେଖି ସରକାର ଏକ ପ୍ରକାର ଭୟଭୀତ ହୋଇଗଲା ଏବଂ ଆଉ ଏକ ବର୍ଷ ନିମନ୍ତେ ପୂର୍ବତନ ମଜୁରି ହାର ମୁତାବକ ଚଳାଇବାରେ ଷମହେବା ନିମନ୍ତେ ସରକାର ଖଣି-ମାଲିକମାନଙ୍କୁ ଅର୍ଥ ସାହାଯ୍ୟ ଦେଇ ସଙ୍କଟ ବେଳ ଗଡ଼ାଇଦେଇ ପାରିଲା । କୋଟାଏ ତଦନ୍ତ କମିଶନ ବି ନିଯୁକ୍ତ ହେଲା, କିନ୍ତୁ ଏ ସବୁଥିରେ କିଛି ହେଲା ନାହିଁ ଏବଂ ତତ୍ପର ବର୍ଷ ୧୯୨୬ରେ ପୁନର୍ବାର ସଙ୍କଟ ପଡ଼ିଥିଲା—ଖଣି ମାଲିକମାନେ ମଜୁରି କମ୍ କରିଦେବା ନିମନ୍ତେ ଚାହିଁଲେ । ଏଥର କି ଶ୍ରମିକମାନଙ୍କ ସହ ଲଢ଼ାଇ କରିବା ନିମନ୍ତେ ସରକାର ପ୍ରସ୍ତୁତ ଥିଲା, ସେମାନେ ଗତ କେତେ ମାସ ଭିତରେ ଏଥିପାଇଁ ସକଳ ପ୍ରକାର ଆୟୋଜନ କରି ସାରିଥିଲେ ।

ଶ୍ରମିକମାନେ ମଜୁରି-କଟା ହେବାରେ ସମ୍ମତ ନ ହେବାରୁ କୋଇଲାଖଣି ମାଲିକମାନେ ଶ୍ରମିକମାନଙ୍କ ପାଇଁ ଖଣି ବନ୍ଦ କରି ଦେବା ସ୍ଥିର କଲେ । ଏହା ଫଳରେ ଟ୍ରେଡ଼ ୟୁନିୟନ କଂଗ୍ରେସ ଆହ୍ୱାନରେ ଇଂଲଣ୍ଡରେ ଏକ ସାଧାରଣ ଧର୍ମଘଟ ହେଲା । ଏହି ଆହ୍ୱାନକୁ ଲୋକେ ଅପୂର୍ବ ଭାବରେ ପାଳନ କଲେ ଏବଂ ଦେଶର ପ୍ରାୟ ସମସ୍ତ ସଙ୍ଗଠିତ ଶ୍ରମିକ କାମ କରିବା ବନ୍ଦ କରିଦେଲେ । ଦେଶର ଜୀବନ ପ୍ରାୟ ଅଚଳ ଧରିଗଲା—ରେଲ ଚଳିଲା ନାହିଁ, ସମ୍ବାଦପତ୍ର ଛପା ହୋଇ ପାରିଲା ନାହିଁ ଏବଂ ଆହୁରି ଅନେକ କାର୍ଯ୍ୟ ବନ୍ଦ ହୋଇଗଲା । ସ୍ୱେଚ୍ଛାସେବକଙ୍କ ସାହାଯ୍ୟରେ ସରକାର କେତେକ ଦରକାରୀ ଯାନବାହନ କୌଣସି ପ୍ରକାରେ ଚଳାଇ ନେଲା । ୧୯୨୬ ମେ ୩-୪ ତାରିଖ ରାତିଅଧରେ ସାଧାରଣ ଧର୍ମଘଟ ଆରମ୍ଭ ହେଲା । ଏ ପ୍ରକାର ବୈପ୍ଳବୀ ଧରଣର ଧର୍ମଘଟ ପ୍ରତି ଶ୍ରଦ୍ଧା ନ ଥିବା ଟ୍ରେଡ଼ ୟୁନିୟନ କଂଗ୍ରେସର ମାନ୍ଦା ନେତା କେତେକ ଅସ୍ପଷ୍ଟ ପ୍ରତିଶ୍ରୁତି ମିଳିଥିବା ବାହାନାରେ ହଠାତ୍ ଧର୍ମଘଟ ବନ୍ଦ କରିବା ଡାକରା ଦେଲେ । ଶ୍ରମିକମାନଙ୍କୁ ଅଧାବାଟରେ ଏକାକୀ ଛାଡ଼ି ଦେଲେ, କିନ୍ତୁ ସେମାନେ ଅନେକ ଦୀର୍ଘ ଓ କଷ୍ଟଦାୟକ କାଳ ଭିତର ଦେଇ କେତେ ମାସ ଚଳିଗଲେ । ସେମାନଙ୍କୁ ଖାଦ୍ୟ ଦିଆଗଲା ନାହିଁ ଏବଂ ଶେଷରେ ପରାସ୍ତ କରିଗଲା । ଏହା କେବଳ ଖଣି ଶ୍ରମିକଙ୍କର ନୁହେଁ, ସାଧାରଣ ଭାବରେ ବ୍ରିଟିଶ ଶ୍ରମିକମାନଙ୍କର ଅଦ୍ଭୁତ ପରାଜୟ । ଅନେକ ସ୍ଥଳରେ ମଜୁରି କମିଗଲା, କେତେକ କାରଖାନାରେ ଶ୍ରମ କରିବା ଘଣ୍ଟା ବଢ଼ିଗଲା ଏବଂ ଶ୍ରମିକ ଶ୍ରେଣୀର ଜୀବନ ଧାରଣ ସ୍ତର

ଖସି ପଡ଼ିଲା । ସରକାର ଏହି ବିଜୟର ସୁବିଧା ନେଇ ଶ୍ରମିକଙ୍କୁ ଦୁର୍ବଳ କରି ଦେବା ନିମନ୍ତେ ଓ ବିଶେଷତଃ ଭବିଷ୍ୟତରେ କୌଣସି ସାଧାରଣ ଧର୍ମଘଟ ବନ୍ଦ କରିଦେବା ନିମନ୍ତେ ନୂତନ ଆଇନ ପାସ୍ କଲା । ଶ୍ରମିକନେତାମାନଙ୍କ ଅନିଶ୍ଚିତତା ଓ ଦୁର୍ବଳତା ଏବଂ ସେମାନେ ଆଗରୁ ପ୍ରସ୍ତୁତ ହୋଇ ନ ଥିବାରୁ ୧୯୨୬ର ସାଧାରଣ ଧର୍ମଘଟ ବିଫଳ ହେଲା । ବାସ୍ତବିକ ସେମାନଙ୍କର ଉଦ୍ଦେଶ୍ୟ ଥିଲା ଏହାକୁ ଏଡ଼ାଇଦେବା ଏବଂ ଯେତେବେଳେ ତାହା ନ କରି ପାରିଲେ ସେତେବେଳେ ପ୍ରଥମ ସୁଯୋଗରେ ସେମାନେ ଏହାକୁ ଶେଷ କରିଦେଲେ । ଅନ୍ୟ ପକ୍ଷରେ ଗଭର୍ଣ୍ଣମେଣ୍ଟ ପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲା ଏବଂ ମଧ୍ୟବିତ୍ତ ଶ୍ରେଣୀର ସମର୍ଥନ ବି ପାଇଲା ।

ଇଂଲଣ୍ଡର ସାଧାରଣ ଧର୍ମଘଟ ଓ ଦୀର୍ଘକାଳ ପର୍ଯ୍ୟନ୍ତ କାରଖାନା ବନ୍ଦ ସୋଭିଏଟ୍ ରୁଷରେ ଖୁବ୍ ଆଗ୍ରହ ଜାତ କରାଇଲା ଏବଂ ରୁଷୀୟ ଟ୍ରେଡ଼ ୟୁନିୟନ ବହୁ ପରିମାଣରେ ଧନ ପଠାଇଲା— ଇଂରେଜ ଖଣି ଶ୍ରମିକଙ୍କୁ ସାହାଯ୍ୟ କରିବା ନିମନ୍ତେ ରୁଷର ଶ୍ରମିକମାନେ ବିଶେଷ ଭାବରେ ଏହା ଶ୍ରଦ୍ଧା ସ୍ୱରୂପ ଦେଇଥିଲେ ।

କ୍ଷଣକାଳ ପାଇଁ ଇଂଲଣ୍ଡରେ ଶ୍ରମିକମାନେ ଜବତ୍ ହେଲେ; କିନ୍ତୁ ପତନୋନ୍ମୁଖୀ ଶିଳ୍ପ ଓ ଅକର୍ମୀ ବୃଦ୍ଧି ସମସ୍ୟାର ଏହା କିଛି ସମାଧାନ ନୁହେଁ । ବେକାରି ଅର୍ଥ ଶ୍ରମିକମାନଙ୍କର ବ୍ୟାପକ କଷ୍ଟଭୋଗ, ଏହାର ଅର୍ଥ ସରକାର ଉପରେ ମହାନ ବୋଝ, କାରଣ କେତେକ ଦେଶରେ ଗୋଟାଏ ଅକର୍ମୀ ଜୀବନ ବୀମା ପ୍ରଥା ପ୍ରଚଳନ ହୋଇଥିଲା । ଏହା ସ୍ୱୀକାର କରାଗଲା ଯେ ନିଜର କୌଣସି ଦୋଷ ନ ଥାଇ ଯେତେବେଳେ ଶ୍ରମିକ ଅକର୍ମୀ ହୋଇ ବସିଛି, ତାକୁ ସାହାଯ୍ୟ କରିବା ଷ୍ଟେଟ ବା ସରକାରର କର୍ତ୍ତବ୍ୟ । ତେଣୁ ରେଜେଷ୍ଟ୍ରିଭୁକ୍ତ ଅକର୍ମୀମାନଙ୍କୁ କେତେକ ସାହାଯ୍ୟ ବା ମୁଷ୍ଟିଦାନ ଦେବାକୁ ପଡ଼ିଲା ଏବଂ ଏହାର ଅର୍ଥ ସରକାର ଓ ସ୍ୱାୟତ୍ତ ଶାସନ ଅନୁଷ୍ଠାନମାନଙ୍କୁ ପ୍ରଚୁର ପରିମାଣରେ ଅର୍ଥ ଖରଚ କରିବାକୁ ପଡ଼ିଲା ।

ଏ ସବୁ କାହିଁକି ଘଟିଲା, କାହିଁକି ବା ଶିଳ୍ପର ଅଧୋଗତି ହେଲା, ବେପାର ହ୍ରାସ ଲଭିଲା, ବେକାରି ବଢ଼ିଲା ଏବଂ ଖାଲି ଇଂଲଣ୍ଡରେ ନୁହେଁ, ପ୍ରାୟ ସବୁ ଦେଶରେ ଅବସ୍ଥା ଖରାପ ଆଡ଼କୁ ଗଲା ? ସମ୍ମିଳନୀ ପରେ ସମ୍ମିଳନୀ ହେଲା, ରାଜନୀତିଜ୍ଞ ଓ ଶାସକମାନେ ସ୍ପଷ୍ଟଭାବରେ ଅବସ୍ଥାର ଉନ୍ନତି କରିବା ନିମନ୍ତେ ବ୍ୟଗ୍ର ଥିଲେ, କିନ୍ତୁ ଆଦୌ ସଫଳ ହୋଇ ପାରିଲେ ନାହିଁ । ଭୂମିକମ୍ପ, ବନ୍ୟା ବା ବର୍ଷା ଅଭାବ ପ୍ରଭୃତି କୌଣସି ପ୍ରାକୃତିକ ବିପଦ ହେତୁ ଦୁର୍ଭିକ୍ଷ ଓ କଷ୍ଟ ଯେ ଭୋଗ କରିବାକୁ ପଡ଼ୁଥିଲା ସେପରି ନୁହେଁ । ଦୁନିଆ ଅନେକ ପରିମାଣରେ ପୂର୍ବପରି ଏକା ଭଲଆ ଚାଲିଥାଏ । ପ୍ରକୃତରେ ଅଧିକ ଖାଦ୍ୟ, ଅଧିକ କାରଖାନା ଓ ପ୍ରତ୍ୟେକ ଆବଶ୍ୟକୀୟ ଜିନିଷ ବେଶୀ ଥିଲା ଏବଂ ତଥାପି ମନୁଷ୍ୟଙ୍କର ଦୁର୍ଗତି ବଢ଼ି ଚାଲିଲା । ସ୍ପଷ୍ଟ ରୂପେ କେଉଁଠି କିଛି ଗୁରୁତର ଦୋଷ ରହି

ଯାଇଥିଲା, ଯାହାହେତୁ ଏପରି ବିପରୀତ ଫଳ ଘଟିଲା—ବୋଧହୁଏ କେଉଁଠି ସମାଜ ପରିଚାଳନାରେ ଗୁରୁତର ତ୍ରୁଟି ରହିଯାଇଥିଲା । ସୋସାଲିଷ୍ଟ ଓ କମ୍ୟୁନିଷ୍ଟମାନେ କହିଲେ ଯେ ଏହା ପୁଞ୍ଜିବାଦର ଦୋଷ—ପୁଞ୍ଜିବାଦ ଶେଷ ଅବସ୍ଥାରେ ପଡ଼ିଛି । ସେମାନେ ରୁଷ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଦେଲେ ଯେ ସେଠାରେ ଅନେକ ଗୋଳମାଳ ଓ ଅସୁବିଧା ଥାଇ ସୁଦ୍ଧା ଅନ୍ତତଃ ଅକର୍ମା ସମସ୍ୟା ନାହିଁ ।

ଏହିସବୁ ପ୍ରଶ୍ନ ମନୁଷ୍ୟର ରୋଗର ପ୍ରତିକାର ବାହାର କରିବା ବିଷୟରେ ଡାକ୍ତର ଓ ପଣ୍ଡିତମାନଙ୍କ ଭିତରେ ବହୁ ମତଭେଦ ହେଲା ପରି ଏକ ପ୍ରକାର ଜଟିଳ କଥା । ତଥାପି ଆମେ ସେଥିପ୍ରତି ଦୃଷ୍ଟିଦେବା ଏବଂ କେତେକ ବିଶେଷ ଲକ୍ଷଣ ପରୀକ୍ଷା କରିବା ।

ଆଜି ପୃଥିବୀ ଏକୀଭୂତ ହେବାକୁ ଯାଉଛି ଓ ଅନେକ ପରିମାଣରେ ହୋଇଗଲଣି—ଅର୍ଥାତ୍ ଜୀବନ, କାର୍ଯ୍ୟକଳାପ, ଉତ୍ପାଦନ, ବଣ୍ଟନ, ଶ୍ରମ ଜାତ ବସ୍ତୁର ବ୍ୟବହାର ପ୍ରଭୃତି ଅନ୍ତର୍ଜାତୀୟ ଓ ପୃଥିବୀବ୍ୟାପୀ ହୋଇ ପଡ଼ୁଛି ଏବଂ ଏହି ପ୍ରବୃତ୍ତି ବୃଦ୍ଧି ପାଉଛି । ବେପାର, ଶିଳ୍ପ ଓ ମୁଦ୍ରା ପ୍ରଥା ମଧ୍ୟ ଅନେକ ଭାବରେ ଅନ୍ତର୍ଜାତୀୟ ହୋଇଯାଇଛି । ବିଭିନ୍ନ ଦେଶ ଭିତରେ ଘନିଷ୍ଠ ସମ୍ପର୍କ ଓ ପରସ୍ପର ନିର୍ଭରଶୀଳତା ରହିଛି ଏବଂ କୌଣସି ଏକ ଦେଶର ଘଟଣାର ପ୍ରତିକ୍ରିୟା ଅନ୍ୟମାନଙ୍କ ଉପରେ ପଡ଼େ । ଏହି ସବୁ ଅନ୍ତର୍ଜାତୀୟତା ସତ୍ତ୍ୱେ ସରକାର ଓ ତାଙ୍କ ନୀତି ସଙ୍କୀର୍ଣ୍ଣ ଜାତୀୟବାଦୀ ହୋଇ ରହିଛି । ବାସ୍ତବିକ ଯୁଦ୍ଧୋତ୍ତର ବର୍ତ୍ତମାନଙ୍କରେ ଏହି ସଙ୍କୀର୍ଣ୍ଣ ଜାତୀୟତା ଅତ୍ୟନ୍ତ ଖରାପ ଓ ଅଧିକ ଉଦ୍ଧତ ହୋଇ ପଡ଼ିଛି ଏବଂ ଆଜି ଦୁନିଆରେ ଏକ ପ୍ରଧାନ ଜିନିଷ ହୋଇ ରହିଛି । ଏହା ଫଳରେ ପୃଥିବୀର ପ୍ରକୃତ ଅନ୍ତର୍ଜାତୀୟ ଘଟଣା ଓ ସରକାରମାନଙ୍କର ଜାତୀୟ ନୀତି ଭିତରେ ବରାବର ସଂଘର୍ଷ ଲାଗିଛି । ମନେକର ପୃଥିବୀର ଆନ୍ତର୍ଜାତିକ କାର୍ଯ୍ୟକଳାପ ସବୁ ଏକ ନଦୀରୂପେ ସମୁଦ୍ର ଆଡ଼କୁ ବହିଯାଉଛି, ଜାତୀୟ ନୀତିସବୁ ଏହା ବନ୍ଦ କରିବା ନିମନ୍ତେ ଏକ ଉଦ୍ୟମ—ଏହାକୁ ରୋଧ କରିବା, ଗତି ବଦଳାଇଦେବା ଏବଂ ଏପରିକି ପଛଆଡ଼କୁ ସ୍ରୋତ ବଦଳାଇ ଦେବା ନିମନ୍ତେ ଏହି ଜାତୀୟତା ଏକ ପ୍ରଚେଷ୍ଟା । ଏହା ସୁସ୍ପଷ୍ଟ ଯେ ଏହି ନଦୀ ଉଜାଣି ବହିବ ନାହିଁ କିମ୍ବା ଏହା ରୋକ ହେବ ନାହିଁ । କିନ୍ତୁ ବେଳେ ବେଳେ ଏହାର ଟିକିଏ ଗତି ବଦଳି ପାରେ, କିମ୍ବା ବନ୍ଧ ପକାଇଲେ ବନ୍ୟା ହେବ । କିନ୍ତୁ ଆଜିର ଏହି ଜାତୀୟତା ସବୁ ନଦୀର ସ୍ୱାଭାବିକ ସ୍ରୋତରେ ବାଧା ଦେଉଛି ଏବଂ ବନ୍ୟା ଉଜାଣି ପାଣି ଓ ନିଷ୍ଫଳ ପାଣିସବୁ ସୃଷ୍ଟି କରୁଛି, କିନ୍ତୁ ଏ ସବୁ ନଦୀର ଅନନ୍ତଧାର ବନ୍ଦ କରି ପାରିବ ନାହିଁ ।

ବେପାର ଓ ଆର୍ଥିକ କ୍ଷେତ୍ରରେ ଯାହା କହନ୍ତି "ଅର୍ଥନୈତିକ ଜାତୀୟବାଦ" ରହିଛି । ଏହାର ଅର୍ଥ ଏକ ଦେଶ କିଣିବା ଅପେକ୍ଷା ବେଶୀ ବିକ୍ରୀ କରିବ ଏବଂ ଖରଚ ଅପେକ୍ଷା ଅଧିକ ଉତ୍ପନ୍ନ କରିବ । ପ୍ରତ୍ୟେକ ଦେଶ ତାର ମାଲ ବିକ୍ରୀ କରିବାକୁ ଚାହେଁ;

ମାତ୍ର ତାହାହେଲେ କଣିବ କିଏ ? ପ୍ରତ୍ୟେକ ଜିନିଷ ବିକ୍ରୟ ପାଇଁ ଜଣେ ବିକେତା ଓ ଜଣେ କେତା ଥିବା ଦରକାର । କେବଳ ଗୋଟିଏ କେତାଦୁନିଆ ରହିବା ସ୍ପଷ୍ଟ ଭାବରେ ନିରର୍ଥକ । ଅଥଚ ଅର୍ଥନୈତିକ ଜାତୀୟବାଦ ଏହା ଉପରେ ପ୍ରତିଷ୍ଠିତ । ପ୍ରତ୍ୟେକ ଦେଶ ବିଦେଶୀ ଜିନିଷ ପ୍ରବେଶ ନ କରାଇଦେବା ନିମନ୍ତେ ଶୁଳ୍କ ପ୍ରାଚୀର ଓ ଅର୍ଥନୀତିକ ବାଧାସବୁ ଠିଆକରେ ଏବଂ ତାହା ସଙ୍ଗେ ସଙ୍ଗେ ନିଜର ବିଦେଶ ବେପାର ମଧ୍ୟ ବୃଦ୍ଧି କରିବାକୁ ଚାହେଁ । ଆଧୁନିକ ଜଗତ ଆନ୍ତର୍ଜାତିକ ବେପାର ଉପରେ ଗଢ଼ା—ଏହି ଶୁଳ୍କ ପ୍ରାଚୀର ସେଥିରେ ହସ୍ତକ୍ଷେପ କରେ ଓ ତାକୁ ମାରିଦିଏ । ବେପାର ହ୍ରାସ ହେବା ସଙ୍ଗେ ସଙ୍ଗେ ଶିଳ୍ପ କ୍ଷତିଗ୍ରସ୍ତ ହୁଏ ଏବଂ ଅକର୍ମା ସମସ୍ୟା ବଢ଼େ । ପୁଣି ଏହା ଫଳରେ ବିଦେଶୀ ମାଲ ପ୍ରବେଶ ନ କରାଇ ଦେବା ନିମନ୍ତେ ଭୀଷଣ ଉଦ୍ୟମ ହୁଏ । କୁଟୀର ଶିଳ୍ପରେ ଏହା ବାଧା ଦେଉଛି ବୋଲି ଧରାଯାଏ ଏବଂ ଶୁଳ୍କ ପ୍ରାଚୀରକୁ ଆହୁରି ଉଚ୍ଚକୁ ଉଠାଇ ଦିଆଯାଏ । ଅନ୍ତର୍ଜାତୀୟ ବେପାର ଆହୁରି ଅଧିକ କ୍ଷତିଗ୍ରସ୍ତ ହୁଏ ଏବଂ ଏକ ଦୂଷିତ ବାୟୁମଣ୍ଡଳ ଚାଲେ ।

ପ୍ରକୃତରେ ଆଧୁନିକ ଶିଳ୍ପୋନ୍ନତ ଦୁନିଆଁ ଜାତୀୟତା ଅବସ୍ଥା ପାର ହୋଇଯାଇଛି । ମାଲ ଉତ୍ପାଦନ ଓ ବଣ୍ଟନର ସମଗ୍ର ଯନ୍ତ୍ର ଜାତୀୟବାଦୀ ସରକାର ଓ ଦେଶର ଗଠନରେ ଖାପ ଖାଉ ନାହିଁ । ଖୋଳପା ଭିତରେ ବଢ଼ୁଥିବା ଜୀବଟି ବଡ଼ ହୋଇଯାଏ ଏବଂ ତେଣୁ ଏହା ଫାଟିପଡ଼େ ।

ବେପାରରେ ଏହି ଶୁଳ୍କ ଓ ପ୍ରତିବନ୍ଧକ ଫଳରେ ପ୍ରକୃତରେ ପ୍ରତ୍ୟେକ ଦେଶରେ କେତେକ ଶ୍ରେଣୀ ଲାଭବାନ ହୁଅନ୍ତି, କିନ୍ତୁ ନିଜ ନିଜ ଦେଶରେ ଏହିସବୁ ଶ୍ରେଣୀ ପ୍ରଧାନ ହୋଇଥିବାରୁ ସେମାନେ ହିଁ ଦେଶର ନୀତି ଗଢ଼ନ୍ତି । ତେଣୁ ପ୍ରତ୍ୟେକ ଦେଶ ଅନ୍ୟକୁ ଚିପିବାଲାଗି ଚେଷ୍ଟା କରେ ଏବଂ ଫଳସ୍ୱରୂପ ସେମାନେ ସମସ୍ତେ ଏକତ୍ର କଷ୍ଟ ଭୋଗନ୍ତି ଏବଂ ଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଓ ଈର୍ଷାଭାବ ବଢ଼େ । ସମ୍ମିଳନୀମାନ କରି ପରସ୍ପର ଭିତରେ ମତଭେଦ ଦୂର କରିବା ନିମନ୍ତେ ବାରମ୍ବାର ପ୍ରଚେଷ୍ଟା ହୁଏ ଏବଂ ବିଭିନ୍ନ ଦେଶର ରାଜନୀତିଜ୍ଞମାନେ ନିଜର ଅତି ଉଚ୍ଚ ଅଭିଳାଷ ଜ୍ଞାପନ କରନ୍ତି, କିନ୍ତୁ ସଫଳ ହୋଇପାରନ୍ତି ନାହିଁ । ଭାରତରେ ସାଂପ୍ରଦାୟିକ ସମସ୍ୟା, ହିନ୍ଦୁ-ମୁସଲମାନ-ଶିଖ ସମସ୍ୟା ସମାଧାନ ନିମନ୍ତେ ବାରମ୍ବାର ଉଦ୍ୟମ କଥା ଏହା ସ୍ମରଣ କରାଇ ଦିଏ ନାହିଁ କି ? ସମ୍ଭବତଃ ଉଭୟ କ୍ଷେତ୍ରରେ ଭୁଲ ଧାରଣା, ଭୁଲ ପରିସ୍ଥିତି ଭିତରେ ଏବଂ ଭୁଲ ଦୃଷ୍ଟିକୋଣରୁ କାର୍ଯ୍ୟ କରାଯିବା ହେତୁ ବିଫଳତା ଆସେ । ଏହି ଶୁଳ୍କ ଓ କର, ଅର୍ଥ ସାହାଯ୍ୟ, ବିଶେଷ ରେଲ୍‌ଓଏ୍ୱ କର ଆଦି ଉପାୟମାନଙ୍କ ଉତ୍ସାହିତ କରିବାଦ୍ୱାରା ଯେଉଁ ଶ୍ରେଣୀ ଲାଭ ଉଠାନ୍ତି, ସେମାନେ ହେଉଛନ୍ତି ମାଲିକ ଓ ଜିନିଷ ତିଆରି କରାଇବା ଶ୍ରେଣୀ—ସେମାନେ ଏହିସବୁ ସୁରକ୍ଷିତ ଘରୋଇ ବଜାରରେ ବି ଲାଭବାନ ହୁଅନ୍ତି । ରକ୍ଷଣ

ପ୍ରଥା ( Protection ) ଓ ଶୁଳ୍କ ହେତୁ ଏହିରୂପେ ସ୍ଥାପିତ ସ୍ୱାର୍ଥ ଗଢ଼ିଉଠେ ଏବଂ ସମସ୍ତ ସ୍ଥାପିତ ସ୍ୱାର୍ଥପର ଯେଉଁ ପରିବର୍ତ୍ତନଦ୍ୱାରା ସେମାନଙ୍କର କ୍ଷତି ହେବ ତାର ଦୃଢ଼ ବିରୋଧ କରନ୍ତି । ଶୁଳ୍କ ଥରେ ବସିଲେ ଯେ ରହିଯାଏ ତାହାର ଏକ କାରଣ ହେଉଛି ଏହା ଏବଂ ଏହି କାରଣରୁ ହିଁ ଅର୍ଥନୈତିକ ଜାତୀୟବାଦ ପ୍ରତ୍ୟେକ ଲୋକ ନିମନ୍ତେ ଖରାପ ବୋଲି ଅଧିକାଂଶ ଲୋକ ଉପଲବ୍ଧି କଲେ ସୁଦ୍ଧା ଦୁନିଆଁରେ ଏହା ଚାଲିଛି । ଥରେ ସ୍ଥାପିତ ସ୍ୱାର୍ଥ ସୃଷ୍ଟି ହୋଇଗଲେ ତାକୁ ଲୋପ କରିବା ସହଜ ନୁହେଁ ଏବଂ ଏପରି ବିଷୟରେ ଏକାକୀ ନେତୃତ୍ୱ ନେବା କୌଣସି ଦେଶ ପକ୍ଷରେ ଅଧିକ ମଧ୍ୟ କଷ୍ଟକର । ଯଦି ସମସ୍ତ ଦେଶ ଏକାଠି ମିଳିତ ହୋଇ କାର୍ଯ୍ୟ କରନ୍ତି ଏବଂ ଶୁଳ୍କକୁ ଲୋପ କରନ୍ତି ବା ଅଧିକ ଭାବରେ କମାଇ ଦିଅନ୍ତି; ତେବେ ବୋଧହୁଏ ଏହା ହୋଇପାରେ । ସେଥିରେ ବି ଅସୁବିଧା ହେବ, କାରଣ ଶିଳ୍ପ ଦିଗରେ ଅନୁନ୍ନତ ଦେଶ କଷ୍ଟ ଭୋଗିବେ—କାରଣ ସେମାନେ ଉନ୍ନତ ଦେଶମାନଙ୍କ ସହିତ ସମାନ ସର୍ତ୍ତରେ ପ୍ରତିଯୋଗିତା କରିବା ନିମନ୍ତେ ସମର୍ଥ ହେବେ ନାହିଁ । ଏକ ରକ୍ଷଣ ଶୁଳ୍କ ଦ୍ୱାରା ହିଁ ଅନେକ ସମୟରେ ନୂତନ ଶିଳ୍ପ ଗଢ଼ିଉଠେ ।

ଅର୍ଥନୈତିକ ଜାତୀୟବାଦ ବିଭିନ୍ନ ଦେଶ ଭିତରେ ବେପାରକୁ ନିରୁତ୍ସାହିତ କରେ ଓ ବାଧା ଦିଏ । ତେଣୁ ପୃଥିବୀ ବଜାର କଷ୍ଟ ଭୋଗେ । ପ୍ରତ୍ୟେକ ଦେଶ ଏହି ସୁରକ୍ଷିତ ବଜାର ଯୋଗୁଁ ଏକାଧିପତ୍ୟ ଅଞ୍ଚଳ ହୋଇଯାଏ, ମୁକ୍ତ ବଜାର ଲୋପପାଏ । ପ୍ରତ୍ୟେକ ଦେଶ ଭିତରେ ମଧ୍ୟ ଏକଚାଟିଆ ଭାବ ବଢ଼େ, ମୁକ୍ତ ଓ ଅବାଧ ବାଣିଜ୍ୟ ହଟିଯାଏ । ବଡ଼ ବଡ଼ ଟ୍ରଷ୍ଟ, କାରଖାନା ଓ ବଡ଼ ଦୋକାନ ସବୁ ଶ୍ରେଷ୍ଠ ଉତ୍ପାଦକ ଓ ଶ୍ରେଷ୍ଠ ଦୋକାନୀମାନଙ୍କୁ ଗ୍ରାସ କରନ୍ତି ଏବଂ ଏହିରୂପେ ପ୍ରତିଯୋଗିତା ଶେଷ ହୋଇଯାଏ । ଆମେରିକା, ବ୍ରିଟେନ, ଜର୍ମାନୀ, ଜାପାନ ଓ ଅନ୍ୟ ଶିଳ୍ପୋନ୍ନତ ଦେଶମାନଙ୍କରେ ଏହି ଜାତୀୟ ଏକଚାଟିଆ-ପଣ ବହୁ ପରିମାଣରେ ବୃଦ୍ଧି ହୁଏ ଏବଂ ଏହିରୂପେ କେତେକ ମୁଷ୍ଟିମେୟ ଲୋକଙ୍କଠାରେ କ୍ଷମତା କେନ୍ଦ୍ରୀଭୂତ ହୁଏ । ପେଟ୍ରୋଲ, ସାବୁନ, କେମିକାଲ ଜିନିଷ, ଅସ୍ତ୍ରଶସ୍ତ୍ର, ଇସ୍ପାତ, ବ୍ୟାଙ୍କିଙ୍ଗ ଓ ଅନ୍ୟ କେତେ ଜିନିଷ ଉପରେ ଏକଚାଟିଆ ଅଧିକାର କରାଯାଏ । ଏସବୁର ଏକ ବିଚିତ୍ର ଫଳ ହୁଏ । ଏହାସବୁ ବିଜ୍ଞାନ ବୃଦ୍ଧି ଓ ପୁଞ୍ଜିବାଦ ଅଭିବୃଦ୍ଧିର ଅନିବାର୍ଯ୍ୟ ପରିଣତି ଏବଂ ଅଥଚ ଏହି ପୁଞ୍ଜିବାଦର ମୂଳ ହିଁ ଏହା ଛେଦ କରେ । କାରଣ ପୃଥିବୀ ବଜାର ଓ ଅବାଧ ବଜାର ଯୋଗୁଁ ହିଁ ପୁଞ୍ଜିବାଦ ଆରମ୍ଭ ହେଲା । ପୁଞ୍ଜିବାଦର ଜୀବନ ପ୍ରବାହ ହେଲା ପ୍ରତିଯୋଗିତା । ଯଦି ପୃଥିବୀ ବଜାର ଯାଏ ଏବଂ ତାହା ସଙ୍ଗେ ସଙ୍ଗେ ମଧ୍ୟ ଜାତୀୟ ସୀମା ଭିତରେ ଅବାଧ ବଜାର ଓ ପ୍ରତିଯୋଗିତା ବି ଯାଏ, ତେବେ ସମାଜର ଏହି ପୁରାତନ ପୁଞ୍ଜିବାଦୀ ଗଠନ ଭିତ୍ତି ହିଁ ଭୁସୁଡ଼ି ପଡ଼େ । ଏହାର ସ୍ଥାନ କିଏ ନେବ, ତାହା ଅନ୍ୟ କଥା, କିନ୍ତୁ ମନେହୁଏ ଯେ ଏହି ପରସ୍ପର ବିରୋଧାତ୍ମକ ପ୍ରବୃତ୍ତି ଯୋଗୁଁ ପୁରାତନ ବ୍ୟବସ୍ଥା ବେଶୀ ଦିନ ରହିପାରିବ ନାହିଁ ।

ବିଜ୍ଞାନ ଓ ଶିଳ୍ପର ପ୍ରଗତି ପ୍ରଚଳିତ ସମାଜ ବ୍ୟବସ୍ଥାର ବହୁତ ଆଗକୁ ଚାଲିଯାଇଛି । ଏହା ପ୍ରଚୁର ପରିମାଣରେ ଖାଦ୍ୟ ଓ ଜୀବନର ଅନ୍ୟ ଭଲ ଜିନିଷ ସବୁ ଜାତ କରେ ଏବଂ ଏଗୁଡ଼ିକ ନେଇ କଣ କରିବ, ପୁଞ୍ଜିବାଦକୁ ବାଟ ଦିଶେ ନାହିଁ । ବାସ୍ତବିକ ଏହା ବେଳେ ବେଳେ ଏଗୁଡ଼ିକ ନଷ୍ଟ କରିଦେବା ନିମନ୍ତେ କିମ୍ବା ଉତ୍ପାଦନ ସୀମାବଦ୍ଧ କରିଦେବା ନିମନ୍ତେ ବସେ । ତେଣୁ ଆମେ ପାଖାପାଖି ପ୍ରଚୁରତା ଓ ଦାରିଦ୍ର୍ୟର ଅସାଧାରଣ ଦୃଶ୍ୟ ଦେଖିବାକୁ ପାଉଁ । ଆଧୁନିକ ବିଜ୍ଞାନ ଓ ଶିଳ୍ପ କୌଶଳ ଭିନ୍ନ ଯଦି ପୁଞ୍ଜିବାଦ ଉନ୍ନତ ନ ହୋଇଛି, ତେବେ ବିଜ୍ଞାନର ସମକକ୍ଷ ଆଉ କିଛି ପ୍ରଥା ଅବଶ୍ୟ ବାହାର କରିବାକୁ ପଡ଼ିବ । ଆଉ ଏକ ପନ୍ଥା ହୋଇଛି ବିଜ୍ଞାନର ଗଳା ରୋଧକରିବା ଏବଂ ଏହା ଅଗ୍ରସର ହେବାରେ ବାଧା ଦେବା । କିନ୍ତୁ ଏହା ଏକପ୍ରକାର ନିର୍ବୋଧତା ହେବ ଏବଂ ଯେ କୌଣସି ଅବସ୍ଥାରେ ମଧ୍ୟ ଏହା କଳ୍ପନାଯୋଗ୍ୟ ପରି ବୋଧ ହେଉ ନାହିଁ ।

ତେଣୁ ଅର୍ଥନୈତିକ ଜାତୀୟବାଦ, ଏକଘରିଆ ଓ ଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଭାବର ବୃଦ୍ଧି ଓ ପତନୋନ୍ମୁଖୀ ପୁଞ୍ଜିବାଦଦ୍ୱାରା ଅନ୍ୟ ସବୁ ଜିନିଷ ଯୋଗୁ ସମଗ୍ର ଦେଶସାରା ଗୋଳମାଳ ହେବା କିଛି ବିସ୍ମୟର କଥା ନୁହେଁ । ଆଧୁନିକ ସାମ୍ରାଜ୍ୟବାଦ ବି ଏହି ପୁଞ୍ଜିବାଦର ଏକ ରୂପ ମାତ୍ର, କାରଣ ପ୍ରତ୍ୟେକ ସାମ୍ରାଜ୍ୟବାଦୀ ଶକ୍ତି ଅନ୍ୟ ଲୋକମାନଙ୍କୁ ଶୋଷଣ କରି ନିଜର ଜାତୀୟ ସମାଧାନ କରିବାକୁ ଚେଷ୍ଟା କରେ । ଏଥିରେ ପୁଣି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଓ ସଂଘର୍ଷ ହୁଏ । ଆଜିର ଏହି ଓଲଟପାଲଟ ଦୁନିଆଁରେ ପ୍ରତ୍ୟେକ ଜିନିଷ ସଂଘର୍ଷଆଡ଼କୁ ଗତି କରୁଛି ।

ଯୁଦ୍ଧୋତ୍ତର କାଳରେ ମୁଦ୍ରା ଅଦ୍ଭୁତ ପ୍ରକାରେ ଆଚରଣ କଲା ବୋଲି ବର୍ଣ୍ଣନା କରି ମୁଁ ଏ ଚିଠି ଲେଖା ଆରମ୍ଭ କରିଥିଲି । ପ୍ରତ୍ୟେକ ଜିନିଷ ଯେତେବେଳେ ଏପରି ଅତି ଅସାଧାରଣ ଭାବରେ ଆଚରଣ କରୁଛି, ସେତେବେଳେ ଆମେ ମୁଦ୍ରାକୁ ଦୋଷ ଦେଇପାରିବା କି ?

## ୧୬୪ : କ୍ରିୟା ଓ ପ୍ରତିକ୍ରିୟା

ଜୁନ ୧୮, ୧୯୩୩

ମୋର ଗତ ଦୁଇ ଚିଠିରେ ମୁଁ ଅର୍ଥନୈତିକ ଓ ମୁଦ୍ରା ସମସ୍ୟା ବିଷୟରେ ଲେଖିଛି । ଏହି ବିଷୟଗୁଡ଼ିକ ଅତି ରହସ୍ୟଜନକ ଏବଂ ବୁଝିବା କଷ୍ଟକର ବୋଲି କୁହାଯାଏ । ଏହା ସତ୍ୟ ଯେ ସେଗୁଡ଼ିକ ସହଜ ନୁହେଁ ଏବଂ ସେଥିପାଇଁ କଠିନ ଚିନ୍ତା

ଆବଶ୍ୟକ, କିନ୍ତୁ ଯାହା ହେଉ ସେଗୁଡ଼ିକ ଏତେ ଭୀଷଣ ନୁହେଁ; ଏବଂ ଏହି ବିଷୟ-ଗୁଡ଼ିକରେ ଯେଉଁ ଗୋଟାଏ ରହସ୍ୟପୂର୍ଣ୍ଣ ବାୟୁମଣ୍ଡଳ ହୋଇଛି, ସେଥିଲାଗି ଅର୍ଥନୈତିଜ୍ଞ ଓ ବିଶେଷଜ୍ଞମାନେ ଆଂଶିକ ଭାବରେ ଦାୟୀ । ଆଗ କାଳରେ ରହସ୍ୟବାଦ ଧର୍ମାଧର୍ମମୋନଙ୍କର ଏକଚାଟିଆ ଥିଲା ଏବଂ ସେମାନେ ସକଳ ପ୍ରକାର କାଇଦା, ଗାଢ଼ମାଢ଼ ଇତ୍ୟାଦି ଦ୍ୱାରା ଅନଭିଜ୍ଞ ଜନତା ଉପରେ ନିଜର ଇଚ୍ଛାଶକ୍ତି ଲଦନ୍ତି । ଅନେକ ସମୟରେ ଏପରି ଦୁର୍ବୋଧ ଭାଷା ବ୍ୟବହାର କରନ୍ତି, ତାହା ଖୁବ୍ ଅଳ୍ପଲୋକେ ବୁଝି ପାରନ୍ତି ଏବଂ ଅଦୃଶ୍ୟଶକ୍ତି ସହିତ କଥାବାର୍ତ୍ତା କରୁଥିବାର ଛଳନା କରନ୍ତି । ପୁରୋହିତ ଶ୍ରେଣୀର ଶକ୍ତି ଆଜି ଅତ୍ୟନ୍ତ କମ୍ ହୋଇ ପଡ଼ିଛି ଏବଂ ଶିଳ୍ପୋନ୍ନତ ଦେଶଗୁଡ଼ିକରେ ଏହା ପ୍ରାୟ ଆଉ ନାହିଁ । ପୁରୋହିତମାନଙ୍କ ସ୍ଥାନରେ ଦକ୍ଷ ଅର୍ଥନୈତିଜ୍ଞ, ବ୍ୟାଙ୍କର ଓ ସେହିପରି ଲୋକ ସବୁ ଜାତ ହୋଇଛନ୍ତି—ସେମାନେ ରହସ୍ୟପୂର୍ଣ୍ଣ ଭାଷାରେ କଥାବାର୍ତ୍ତା କରନ୍ତି—ଏହା ଟେକନିକାଲ (Technical) ଶବ୍ଦରେ ପୂର୍ଣ୍ଣ ହୋଇଥାଏ—ସାଧାରଣ ଲୋକ ପକ୍ଷରେ ବୁଝିବା କଷ୍ଟକର ହୁଏ । ତେଣୁ ସାଧାରଣ ଲୋକ ଏହି ପ୍ରଶ୍ନ ସମ୍ବନ୍ଧରେ ସିଦ୍ଧାନ୍ତଟା ବିଶେଷଜ୍ଞଙ୍କୁ ଛାଡ଼ିଦିଏ । କିନ୍ତୁ ବିଶେଷଜ୍ଞମାନେ ଜ୍ଞାତ ବା ଅଜ୍ଞାତସାରରେ ଶାସକ ଶ୍ରେଣୀ ସହିତ ମିଳିଯାଆନ୍ତି ଏବଂ ସେମାନଙ୍କର ସ୍ୱାର୍ଥ ରକ୍ଷା କରନ୍ତି । ବିଶେଷଜ୍ଞଙ୍କ ଭିତରେ ବି ମତଭେଦ ଘଟେ ।

ତେଣୁ ଯେଉଁ ଅର୍ଥନୈତିକ ପ୍ରଶ୍ନ ଆଜିକାଲି ରାଜନୀତି ଓ ଅନ୍ୟ ସବୁ ଜିନିଷ ଉପରେ ପ୍ରାଧାନ୍ୟ କରୁଛି, ତାକୁ କେତେକ ପରିମାଣରେ ବୁଝିବାକୁ ଚେଷ୍ଟା କରିବା ଆମ ପକ୍ଷରେ ଭଲ । ମାନବ ଜାତିକୁ ଅନେକ ଗୋଷ୍ଠୀ ଓ ଶ୍ରେଣୀରେ ବିଭକ୍ତ କରିବାର ଅନେକ ଉପାୟ ଅଛି । ଏକ ପନ୍ଥା ଅନୁସାରେ ମଣିଷକୁ ଦୁଇ ଶ୍ରେଣୀରେ ଭାଗ କରାଯାଇ ପାରେ; ଏକ ହେଉଛି ଲକ୍ଷ୍ୟହୀନ ( Drifter )ଶ୍ରେଣୀ—ଏମାନଙ୍କର ନିଜର କିଛି ଇଚ୍ଛା ଶକ୍ତି ନାହିଁ ଏବଂ ପାଣି ଉପରେ କୁଟା ଖଣ୍ଡ ପରି ଏମାନେ ଆପଣାକୁ ଏଣେ ତେଣେ ଟାଣି ହୋଇଯିବାକୁ ଦିଅନ୍ତି ଏବଂ ଅନ୍ୟ ଶ୍ରେଣୀଟି ଜୀବନରେ ଏକ ପ୍ରଭାବଶାଳୀ ଭାଗ ନେବାକୁ ଚେଷ୍ଟା କରନ୍ତି ଏବଂ ନିଜର ପାରିପାର୍ଶ୍ୱିକ ଅବସ୍ଥା ଉପରେ ପ୍ରଭାବ ପକାଇବାକୁ ଚାହାନ୍ତି । ଦ୍ୱିତୀୟ ଶ୍ରେଣୀ ପକ୍ଷରେ ଜ୍ଞାନ ଓ ବୁଝିବା ଶକ୍ତି ଅତ୍ୟନ୍ତ ପ୍ରୟୋଜନ, କାରଣ ଫଳପ୍ରଦ କାର୍ଯ୍ୟ କେବଳ ଏହାରି ଉପରେ ପ୍ରତିଷ୍ଠିତ ହୋଇପାରେ । ଖାଲି ସଦିଚ୍ଛା ବା ସଦ୍‌ଭାବନାରେ କାମ ଚଳିବ ନାହିଁ । ଯେତେବେଳେ ଏକ ପ୍ରାକୃତିକ ବିପଦ ପଡ଼େ, କିମ୍ବା ସଂକ୍ରାମକ ରୋଗ, ବର୍ଷାଭାବ ବା ଅନ୍ୟ କୌଣସି ଅକାଳ ବେଳେ ଆମେ ଅନେକ ସମୟରେ ଦେଖୁ କେବଳ ଭାରତ ନୁହେଁ ଇଉରୋପରେ ମଧ୍ୟ ଲୋକେ ସାହାଯ୍ୟ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରନ୍ତି । ପ୍ରାର୍ଥନା ଯଦି ସାନ୍ତ୍ୱନା ଦିଏ ଏବଂ ବିଶ୍ୱାସ ଓ ସାହସ ଦାନ କରେ, ତାହା ହେଲେ ଏହା ଭଲ ଜିନିଷ ଏବଂ କାହାରି ଆପତ୍ତି କରିବାର କିଛି ନାହିଁ । କିନ୍ତୁ ସଂକ୍ରାମକ ରୋଗ ପ୍ରାର୍ଥନା ଦ୍ୱାରା ବନ୍ଦ ହେବା ଧାରଣା ବଦଳରେ ପରିଷ୍କାର ପରିଚ୍ଛନ୍ନତା

ଓ ଅନ୍ୟ ଉପାୟରେ ରୋଗର ମୂଳକାରଣ ଦୂର କରିବାର ବୈଜ୍ଞାନିକ ଧାରଣା ଜନ୍ମିଛି । ଯେତେବେଳେ କୌଣସି କଳକବ୍‌ଜା ଭାଙ୍ଗିଯାଏ, କାରଖାନା ଖରାପ ହୁଏ ବା ମଟର ଗାଡ଼ି ଟାୟାର ଫୁଟିଯାଏ, ସେତେବେଳେ କେହି କେବେ ଶୁଣିଛି କି ଲୋକେ ଚୁପଚାପ ବସି, କେବଳ ପବିତ୍ର ଭାବରେ ଆଶା କରନ୍ତି ଓ ପ୍ରାର୍ଥନା କରନ୍ତି ଯେ ଭାଙ୍ଗିବାଟା ଆପେଆପେ ସଜାଡ଼ି ହୋଇଯିବ ? ସେମାନେ କାମରେ ଲାଗନ୍ତି, କଳକବ୍‌ଜା ବା ଟାୟାରକୁ ସଜାଡ଼ନ୍ତି ଏବଂ ଶୀଘ୍ର ଦେଖାଯାଏ ଯେ କଳକବ୍‌ଜା ପୁନର୍ବାର ଚଳୁଛି କିମ୍ବା ରାସ୍ତାରେ ଗାଡ଼ି ନିରାଳମ୍ବ ଭାବରେ ଚାଲୁଛି ।

ସେହିପରି ମାନବ ଓ ସାମାଜିକ ଯନ୍ତ୍ରରେ ସଦିଚ୍ଛା ବ୍ୟତୀତ ଏହାର କ୍ରିୟା ପ୍ରଣାଳୀ ଓ ଶକ୍ତି ସମ୍ବନ୍ଧରେ ଆମର ଭଲ ଜ୍ଞାନ ଥିବା ଦରକାର । ଏହି ଜ୍ଞାନ ପ୍ରାପ୍ତ ନିଶ୍ଚିତ ହୋଇ ନ ଥାଏ—କାରଣ ଏହା ଅନିର୍ଦ୍ଦିଷ୍ଟ ଜିନିଷ; ଯଥା—ମାନବର ଇଚ୍ଛା, ଆକାଂକ୍ଷା, ରୁଚି, ଅରୁଚି ଓ ଆବଶ୍ୟକତା ଉପରେ ନିର୍ଭର ଥାଏ ଏବଂ ସମଗ୍ର ଜନତା, ସାରା ସମାଜ କିମ୍ବା ବିଭିନ୍ନ ଶ୍ରେଣୀ ଲୋକଙ୍କ ବିଷୟରେ ଆଲୋଚନା କଲାବେଳେ ଏହା ଆହୁରି ଅନିର୍ଦ୍ଦିଷ୍ଟ ହୋଇ ପଡ଼େ । କିନ୍ତୁ ଅଧ୍ୟୟନ, ଅଭିଜ୍ଞତା ଓ ନିରୀକ୍ଷଣ କ୍ରମେ ଏହି ଅନିର୍ଦ୍ଦିଷ୍ଟ ଜନତା ଭିତରେ ମଧ୍ୟ ଶୃଙ୍ଖଳା ଆଣିଦିଏ ଏବଂ ଜ୍ଞାନ ବୃଦ୍ଧି ହୁଏ ଓ ଏହା ସଙ୍ଗେ ସଙ୍ଗେ ଆମର ପାରିପାର୍ଶ୍ୱିକ ଅବସ୍ଥା ସମ୍ଭାଳିବାର ଶକ୍ତି ବି ବଢ଼େ ।

ଏବେ ଏହି ଯୁଦ୍ଧୋତ୍ତର କାଳରେ ୟୁରୋପର ରାଜନୀତିକ ଅବସ୍ଥା ସମ୍ବନ୍ଧରେ ମୁଁ କିଛି କହିବାକୁ ଚାହେଁ । ପ୍ରଥମ କଥା ଦୃଷ୍ଟିପଥରେ ପଡ଼େ—ତାହା ହେଉଛି ୟୁରୋପ ମହାଦେଶକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ଯୁଦ୍ଧ ବିଜେତା, ବିଜିତ ଏବଂ ସୋଭିଏଟ୍ ରୁଷ । ନରଓ୍ୱେ, ସୁଇଡ଼େନ୍, ହଲଣ୍ଡ, ସୁଇଜରଲଣ୍ଡ ପରି କେତେକ ଛୋଟ ଦେଶ ରହିଛି—ସେଗୁଡ଼ିକୁ ଏହି ତିନିଭାଗରୁ କେଉଁଥିରେ ପଡ଼ିବେ ନାହିଁ; କିନ୍ତୁ ବ୍ୟାପକ ରାଜନୀତିକ ଦୃଷ୍ଟିରୁ ସେଗୁଡ଼ିକ ଗୁରୁତର ନୁହେଁ । ସୋଭିଏଟ ରୁଷ ଅବଶ୍ୟ ନିଜ ଗୋଡ଼ରେ ଠିଆ ହୋଇଛି—ଏହାର ଶ୍ରମିକ ସରକାର ବରାବର ବିଜେତା ଶକ୍ତିମାନଙ୍କ ଆଗରେ ଏକ ବିରକ୍ତିକର ଓ ବିପଦ୍‌ଜନକ ଦେଶ ହୋଇ ରହିଥିଲା । ଏଠାରେ ପ୍ରଚଳିତ ସରକାରୀ ବ୍ୟବସ୍ଥା ସର୍ବଦା ଅନ୍ୟ ଦେଶର ଶ୍ରମିକମାନଙ୍କୁ ବିପ୍ଳବ ପାଇଁ ନିମନ୍ତ୍ରଣ ଦେଉଛି—ସେଥିପାଇଁ ଯେ କେବଳ ଏହି ବିରକ୍ତ ଭାବ ଉପୁଜୁଛି ତାହା ନୁହେଁ, ପ୍ରାଚ୍ୟ ଦେଶରେ ବିଜେତା ଶକ୍ତିମାନଙ୍କର ଅନେକ କଳ୍ପନାରେ ମଧ୍ୟ ସେ ବାଧା ଦେଉଥିବାରୁ ଅଧିକ ଏ ଭାବ ବଢ଼ିଛି । ୧୯୧୯ ଓ ୧୯୨୦ରେ ହସ୍ତକ୍ଷେପ କରିବା ନିମନ୍ତେ ଚାଲିଥିବା ଲଢ଼ାଇ ବିଷୟ ମୁଁ ତୋତେ ଆଗରୁ କହିଛି । ସେଥିରେ ଅଧିକାଂଶ ବିଜେତା ଶକ୍ତି ସୋଭିଏଟକୁ ଦମନ କରିଦେବା ନିମନ୍ତେ ଚେଷ୍ଟା କରିଥିଲେ । ଯାହାହେଉ ସୋଭିଏଟ ରୁଷ ବଞ୍ଚିଗଲା ଏବଂ ୟୁରୋପର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ଏହାର ଅବସ୍ଥିତି ସହ୍ୟ କରିବାକୁ ପଡ଼ିଲା,

କିନ୍ତୁ ସେମାନେ ଏହା ସେତେ ସଦିଚ୍ଛା ଓ ଭଲମନରେ କଲେ ନାହିଁ । ବିଶେଷ ଭାବରେ ଜାର୍ ଅମଳରୁ ଇଂଲଣ୍ଡ ଓ ରୁଷ ଭିତରେ ଯେଉଁ ପ୍ରତିଦ୍ୱନ୍ଦ୍ୱୀ ଭାବ ଥିଲା, ତାହା ଚାଲିଲା ଏବଂ ବେଳେ ବେଳେ ଆତଙ୍କପ୍ରଦ ଘଟଣା ଓ ଆକସ୍ମିକ ଦୁର୍ଘଟଣା ଭାବରେ ଏହା ବାହାରିପଡ଼େ—ଯୁଦ୍ଧ ଲାଗିଯିବାର ଆଶଙ୍କା ଜନ୍ମେ । ସୋଭିଏଟ୍ ଉପଲବ୍ଧି କଲା ଯେ ଇଂଲଣ୍ଡ ବରାବର ତାହା ବିରୁଦ୍ଧରେ ଚକ୍ରାନ୍ତ କରୁଛି ଏବଂ ୟୁରୋପର ଏକ ସୋଭିଏଟ ବିରୋଧୀ ଦଳ ଗଢ଼ିବାରେ ଚେଷ୍ଟା କରୁଛି ଏବଂ କେତେକ ଯୁଦ୍ଧ ଆତଙ୍କ ବି ସୃଷ୍ଟି କରିଗଲା ।

ପଶ୍ଚିମ ଓ କେନ୍ଦ୍ର ୟୁରୋପରେ ବିଜେତା ଶକ୍ତି ଓ ପରାଜିତ ଦେଶଗୁଡ଼ିକ ଭିତରେ ପାର୍ଥକ୍ୟ ସ୍ପଷ୍ଟ ପରିଲକ୍ଷିତ ହେଲା ଏବଂ ବିଶେଷ ଭାବରେ ଫ୍ରାନ୍‌ସ ବିଜୟୀ ଭାବର ପ୍ରଦର୍ଶନ କରୁଥିଲା । ସ୍ୱାଭାବିକ ଭାବରେ ପରାଜିତ ଦେଶଗୁଡ଼ିକ ସନ୍ଧିର ଅନେକ ସର୍ତ୍ତରେ ଅସନ୍ତୁଷ୍ଟ ଥିଲେ ଏବଂ ସେମାନେ ଯଦିଓ କିଛି କରିବାକୁ ଅକ୍ଷମ ଥିଲେ, ତଥାପି ଭବିଷ୍ୟତ ପରିବର୍ତ୍ତନର ସ୍ୱପ୍ନ ଦେଖିଥିଲେ । ଅଷ୍ଟ୍ରିଆ ଓ ହଙ୍ଗେରୀ ବଡ଼ ପୀଡ଼ିତ ଦେଶ ଥିଲେ ଏବଂ ସେଗୁଡ଼ିକର ଅବସ୍ଥା ଖରାପ ହେବାକୁ ଲାଗିଲା । ଅନ୍ୟ ପକ୍ଷରେ ସର୍ବିଆ ବଢ଼ି ବଢ଼ି ଯୁଗୋସ୍ଲୋଭିଆ ଦେଶ ହେଲା ଏବଂ ଏହା ଅନୈକ୍ୟ ଗୋଷ୍ଠୀ ଓ ଜାତିର ସମଷ୍ଟି ହୋଇଗଲା । ବିଭିନ୍ନ ଅଂଶ ଭିତରେ ପରସ୍ପର ପ୍ରତି ବିରାଗ ଭାବ ହୋଇ ଭାଗ ଭାଗ ହେବାର ପ୍ରବୃତ୍ତି ବୃଦ୍ଧି ପାଇବାକୁ ବେଶୀ ଦିନ ଲାଗିଲା ନାହିଁ । କ୍ରୋସିଆରେ (ଏହା ଏବେ ଯୁଗୋସ୍ଲୋଭିଆର ଏକ ପ୍ରଦେଶ ରୂପେ ରହିଛି) ସ୍ୱାଧୀନତା ପାଇଁ ଦୃଢ଼ ଆନ୍ଦୋଳନ ଚାଲିଛି ଏବଂ ସର୍ବିଆନ୍ ସରକାର ଏହାକୁ ଭୀଷଣ ଭାବରେ ଦମନ କରିଛି । ମାନଚିତ୍ରରେ ପୋଲଣ୍ଡ ବିରାଟ ଆକାର ଦେଖାଯାଉଛି, କିନ୍ତୁ ଏହାର ସାମ୍ରାଜ୍ୟବାଦୀମାନେ ଦକ୍ଷିଣରେ କୃଷ୍ଣସାଗର ପର୍ଯ୍ୟନ୍ତ ବିସ୍ତାର ଲାଭ କରିବାର ଅସାଧାରଣ ସ୍ୱପ୍ନ ଦେଖୁଛନ୍ତି ଏବଂ ୧୭୭୨ରେ ଥିବା ପୋଲଣ୍ଡ ସୀମାନ୍ତକୁ ଫେରାଇ ଆଣିବାର ଆଶା ପୋଷଣ କରୁଛନ୍ତି । ଇତ୍ୟବସରେ ପୋଲଣ୍ଡରେ ରୁଷର ୟୁକ୍ରେନ୍‌ର ଏକ ଅଂଶ ରହିଛି ଏବଂ ଆତଙ୍କ ରାଜୁତି, ଯନ୍ତ୍ରଣା, ମୃତ୍ୟୁକର ଓ ଅନ୍ୟ ଅନେକ ବର୍ବର ଶାସ୍ତି ଦ୍ୱାରା ଏହାକୁ "ଶାନ୍ତ" ବା "ପୋଲଣ୍ଡୀକରଣ" କରାହୋଇଛି ଏବଂ ଏବେ ବି କରାଯାଉଛି । ପୂର୍ବ-ୟୁରୋପରେ ଏହି ସବୁ କ୍ଷୁଦ୍ର ଅଗ୍ନି ଜୁଳୁଛି । ଅଗ୍ନି ବ୍ୟାପିବା ବିପଦ ଯୋଗୁଁ ଏଗୁଡ଼ିକର ଗୁରୁତ୍ୱ ରହିଛି ।

ୟୁରୋପରେ ଯୁଦ୍ଧ ପର ବର୍ତ୍ତମାନଙ୍କରେ ରାଜନୀତିକ ଭାବରେ ଏବଂ ସାମରିକ ଅର୍ଥରେ ମଧ୍ୟ ଫ୍ରାନ୍‌ସ ପ୍ରଧାନ ଶକ୍ତି ଥିଲା ତାହା ରାଜ୍ୟ ଓ ଅତ୍ୟନ୍ତ କ୍ଷତିପୂରଣ ପ୍ରତିଶ୍ରୁତି ଭାବରେ ଯାହା ଚାହିଁ ଥିଲା, ତାହା ପାଇଲା; କିନ୍ତୁ ସେ ଖୁସି ନ ଥିଲା । ଗୋଟାଏ ବଡ଼ ଭୟ ତା ମୁଣ୍ଡ ଉପରେ ସର୍ବଦା ଝୁଲୁଥିଲା । ତାହା ହେଉଛି ଜର୍ମାନୀ ପୁଣି ବଳବାନ ହୋଇ ତାହା ସହିତ ଯୁଦ୍ଧ କରିବାର ଓ ସମ୍ଭବତଃ ତାକୁ ପରାସ୍ତ କରିବାର ଭୟ । ଜର୍ମାନୀର

ଲୋକସଂଖ୍ୟା ଅଧିକ ଥିବାରୁ ଏ ଭୟ ହେଉଥିଲା । ଫ୍ରାନ୍‌ସର ଆକୃତି ପ୍ରକୃତରେ ଜର୍ମାନୀ ଅପେକ୍ଷା ବହୁତ ବଡ଼ ଏବଂ ସମ୍ଭବତଃ ଏହା ଅଧିକ ଉର୍ବର । ଅଥଚ ଫ୍ରାନ୍ସର ଲୋକସଂଖ୍ୟା ୪୧,୦୦୦,୦୦୦ରୁ କମ୍ ଏବଂ ଏହା ସ୍ଥାୟୀ ହୋଇ ରହିଛି । ଜର୍ମାନୀର ଲୋକସଂଖ୍ୟା ୬୨,୦୦୦,୦୦୦ରୁ ବେଶୀ ଏବଂ ଏହା ବଢ଼ୁଛି । ଜର୍ମାନମାନେ ଏକ ଆକ୍ରମଣଶୀଳ ଓ ଯୁଦ୍ଧପ୍ରିୟ ଜାତି ବୋଲି ତାଙ୍କର ଖ୍ୟାତି ଅଛି ଏବଂ ଆମର ଜୀବନକାଳ ଭିତରେ ଏହା ଦୁଇଥର ଫ୍ରାନ୍ସ ଆକ୍ରମଣ କଲଣି ।

ତେଣୁ ଜର୍ମାନୀ ପ୍ରତିଶୋଧ ନେବାର ଭୟ ଫ୍ରାନ୍‌ସର ମନ ଅଧିକାର କରିଥିଲା ଏବଂ ତାର ସମଗ୍ର ନୀତିର ଭିତ୍ତି ଓ ମୂଳ ଧାରଣା ହେଲା 'ନିରାପତ୍ତା'— ଫ୍ରାନ୍‌ସର ଯାହା ଅଛି ତାହା ଯେପରି ନିରାପଦରେ ରଖିପାରିବ । ଭର୍ସେଇ ସନ୍ଧିରେ ହତାଶ ହୋଇଥିବା ସବୁ ଦେଶକୁ ଫ୍ରାନ୍‌ସର ସାମରିକ କର୍ତ୍ତୃତ୍ୱହିଁ ରୋକି ରଖି ପାରିଥିଲା, କାରଣ ଫରାସୀ ନିରାପତ୍ତା ପାଇଁ ଏହି ଶାନ୍ତି ରକ୍ଷା ଅବଶ୍ୟକ ଥିଲା । ତାର ସ୍ଥିତିକୁ ଆହୁରି ଦୃଢ଼ କରିବା ନିମନ୍ତେ ଫ୍ରାନ୍ସ ଭର୍ସେଇ ସନ୍ଧି ରକ୍ଷା କରିବାଲାଗି ଆଗ୍ରହୀ ଥିବା ଦେଶମାନଙ୍କର ଏକ ଗୋଷ୍ଠୀ ତିଆରି କଲା । ଏ ସବୁ ଦେଶ ହେଉଛନ୍ତି ବେଲ୍‌ଜିୟମ୍, ପୋଲାଣ୍ଡ, ଚେକୋସ୍ଲୋଭାକିଆ, ରୁମାନିଆ ଓ ଯୁଗୋସ୍ଲାଭିଆ ।

ଏହି ରୂପେ ଫ୍ରାନ୍ସ ତାର ଆଧିପତ୍ୟ ବା ନେତୃତ୍ୱ ୟୁରୋପରେ ସ୍ଥାପନ କଲା । ଇଂଲଣ୍ଡ ଏହା ପସନ୍ଦ କରୁ ନ ଥିଲା, କାରଣ ଇଂଲଣ୍ଡ ତାହା ବ୍ୟତୀତ ଅନ୍ୟ କୌଣସି ଶକ୍ତି ୟୁରୋପରେ ପ୍ରାଧାନ୍ୟ କରିବା ଇଚ୍ଛୁ ନ ଥିଲା । ଇଂଲଣ୍ଡ ତାର ମିତ୍ର ଫ୍ରାନ୍ସ ପ୍ରତି ଯେଉଁ ପ୍ରେମ ଓ ବନ୍ଧୁତା ଥିଲା, ତାହା ବହୁ ପରିମାଣରେ କ୍ଷୀଣ ହୋଇଗଲା; ଇଂରେଜ ସମ୍ବାଦପତ୍ରମାନଙ୍କରେ ଫ୍ରାନ୍ସ ସ୍ୱାର୍ଥପର ଓ କଠିନହୃଦୟ ବୋଲି ସମାଲୋଚନା ହେଲା ଏବଂ ପୁରାତନ ଶତ୍ରୁ ଜର୍ମାନୀ ପ୍ରତି ବନ୍ଧୁତ୍ୱପୂର୍ଣ୍ଣ ଭାବ ପ୍ରଦର୍ଶନ କରାଗଲା । ଇଂରେଜମାନେ କହିବାକୁ ଲାଗିଲେ; ଆମର ପଛକଥା ପାସୋରି ପକାଇବା ଉଚିତ ଏବଂ ଶାନ୍ତିକାଳରେ ଯୁଦ୍ଧ ଦିବସର ସ୍ମୃତି ମନରେ ଧରି କାରବାର କରିବା ଉଚିତ ନୁହେଁ । ଆହା କି ଉଚ୍ଚ ଉଦାର ଭାବନା ! ଇଂରେଜ ଦୃଷ୍ଟିକୋଣରେ ଆହୁରି ପ୍ରଶଂସାଯୋଗ୍ୟ—କାରଣ ଏହା ଇଂଲଣ୍ଡର ନୀତି ସହି ଖାପ ଖାଉଥିଲା । ଇଟାଲୀର ରାଜନୀତିଜ୍ଞ କାଉଣ୍ଟ ସ୍ପୋର୍ଜା କହିଛନ୍ତି : "ଭଗବାନ ଅନୁଗ୍ରହ କରି ଏହି ମୂଲ୍ୟବାନ ଦାନ ଇଂରେଜ ଲୋକଙ୍କୁ ଦେଇଛନ୍ତି"—ତାହା ହେଉଛି ଇଂଲଣ୍ଡରେ ଯାହା କିଛି ରାଜନୀତିକ ସୁବିଧା ଆସେ କିମ୍ବା ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଯେ କୌଣସି କୂଟନୀତିକ କାର୍ଯ୍ୟ କରନ୍ତୁ, ସବୁ ଶ୍ରେଣୀର ଲୋକେ ଉଚ୍ଚ ନୈତିକତା ଦୃଷ୍ଟିରୁ ତାହା ଯଥାର୍ଥ ବୋଲି ମତ ଦିଅନ୍ତି ।

୧୯୨୨ ଆରମ୍ଭରୁ ୟୁରୋପୀୟ ରାଜନୀତିରେ ଇଂରେଜ-ଫରାସୀ ବିବାଦ ଏକ ପୁରାତନ ଲକ୍ଷଣ ହୋଇଥିଲା । ଉପରେ ଖୁବ୍ ମୃଦୁ ଓ ଭଦ୍ର କଥାବାର୍ତ୍ତା, ଦୁଇ ଦେଶର

ରାଜନୀତଜ୍ଞ ଓ ପ୍ରଧାନ ମନ୍ତ୍ରୀମାନେ ବାରମ୍ବାର ଭେଟ ହୋଇଛନ୍ତି ଏବଂ ଏକାଠି ଫଟୋ ଉଠିଛି, କିନ୍ତୁ ଦୁଇଟିଯାକ ସରକାର ବିଭିନ୍ନ ଦିଗରେ ଟାଣି ହୋଇଯାଇଛୁ । ଜର୍ମାନୀ ୧୯୨୨ରେ ଯେତେବେଳେ କ୍ଷତିପୂରଣ ଅସୁଲ ଦେବାରେ ଗଫଲତି କଲା ସେତେବେଳେ ରୁର ଉପତ୍ୟକା ମିତ୍ରପକ୍ଷ ଦଖଲ କରିବା ସପକ୍ଷରେ ଇଂଲଣ୍ଡ ନ ଥିଲା, କିନ୍ତୁ ଇଂଲଣ୍ଡର ମତ ଯାହା ଥାଉ ପଛକେ ଫ୍ରାନ୍ସ ତା କାମ କରି ଚାଲିଗଲା । ଯାହା ହେଉ ବ୍ରିଟିଶ ଏହି ଦଖଲରେ କୌଣସି ଭାଗ ନେଲା ନାହିଁ ।

ଆଉ ଏକ ପୁରାତନ ମିତ୍ର ଇଟାଲୀର ଫ୍ରାନ୍ସ ସହ ବିବାଦ ଲାଗିଲା ଏବଂ ଦୁଇ ଦେଶ ଭିତରେ ଘନ ଘନ ସଙ୍ଘର୍ଷ ହେଲା । ଏହାର କାରଣ ହେଉଛି ୧୯୨୨ରେ ମୁସୋଲିନୀ ଶାସନକ୍ଷମତା ଦଖଲ କଲା ଏବଂ ତାର ସାମ୍ରାଜ୍ୟବାଦ ଆକାଂକ୍ଷାରେ ଫ୍ରାନ୍ସ ବାଧା ଦେଲା । ମୁସୋଲିନୀ ଓ ଫାସିଜିମ ବିଷୟରେ ମୁଁ ଆଗାମୀ ଚିଠିରେ ଲେଖିବି ।

ଯୁଦ୍ଧୋତ୍ତର ବର୍ଷମାନଙ୍କରେ ବ୍ରିଟିଶ ସାମ୍ରାଜ୍ୟ ଭାଗ ଭାଗ ହେବା ପ୍ରବୃତ୍ତି ଦେଖାଦେଲା । ଅନ୍ୟ ଚିଠିରେ ସବୁ ଏହି ପ୍ରଶ୍ନର କେତେକ ଭାଗ ମୁଁ ଆଲୋଚନା କରିଛି । ଏଠି ମୁଁ କେବଳ ଗୋଟିଏ ବିଭାଗ ଉଲ୍ଲେଖ କରିବି । ଅଷ୍ଟ୍ରେଲିଆ ଓ କାନାଡ଼ା ଉଭୟେ ଅଧିକରୁ ଅଧିକ ଭାବରେ ଆମେରିକାନ୍ ସଂସ୍କୃତି ଓ ଆର୍ଥିକ ପ୍ରଭାବ ଭିତରକୁ ଟଣା ହୋଇ ଆସିଲେ ଏବଂ ଏହି ଉପନିବେଶିଯାକ ଦେଶ ମିଳିତ ହୋଇ ଜାପାନୀମାନଙ୍କୁ ଏବଂ ବିଶେଷତଃ ଜାପାନୀମାନେ ଆସି ଦେଶରେ ବସତି ସ୍ଥାପନ କରିବାକୁ ନାପସନ୍ଦ କରୁଥିଲେ । ଏଥିରେ ଅଷ୍ଟ୍ରେଲିଆର ଅଧିକ ବିପଦ ଥିଲା; ଏହାର ବିସ୍ତୃତ ଅଞ୍ଚଳରେ କୌଣସି ଲୋକବସତି ନ ଥିଲା ଏବଂ ଜାପାନ କିଛି ଦୂରରେ ନୁହେଁ ଏବଂ ତାର ଲୋକସଂଖ୍ୟା ବଢ଼ିବଢ଼ିକା ଚାଲିଛି । ଏହି ଦୁଇଟିଯାକ ଡୋମିନିୟନ କମ୍ବା ସଂଯୁକ୍ତ ରାଷ୍ଟ୍ର ଆମେରିକା କେହି ଇଂଲଣ୍ଡର ଜାପାନ ସହିତ ମିତ୍ରତାକୁ ପସନ୍ଦ କଲେ ନାହିଁ । ଇଂଲଣ୍ଡ ଆମେରିକାକୁ ସନ୍ତୁଷ୍ଟ କରିବାକୁ ଚାହୁଁଥିଲା । କାରଣ ଆମେରିକା ଋଣଦାତା ଓ ଅନ୍ୟ ହିସାବରେ ପୃଥିବୀରେ ପ୍ରାଧାନ୍ୟ କରୁଥିଲା ଏବଂ ଯେତେକାଳ ସମ୍ଭବ ନିଜର ସାମ୍ରାଜ୍ୟ ଚଳାଇବାକୁ ଚାହୁଁଥିଲା । ତେଣୁ ୧୯୨୨ରେ ଓ୍ୱାଶିଂଟନ ସମ୍ମିଳନୀରେ ଇଂଲଣ୍ଡକୁ ଇଂଲଣ-ଜାପାନ ମିତ୍ରତାକୁ ତ୍ୟାଗ କରିବାକୁ ପଡ଼ିଲା । ମୁଁ ଚୀନ ସମ୍ବନ୍ଧରେ ଲେଖିଥିବା ପୂର୍ବ ଚିଠିରେ ଏହି ସମ୍ମିଳନୀ ବିଷୟରେ ଲେଖିଛି । ଏଠାରେହିଁ ଚାରିଶକ୍ତିର ଚୁକ୍ତି ଓ ନଅଶକ୍ତିର ସନ୍ଧି ହୋଇଥିଲା । ଏହି ସନ୍ଧି ଚୀନ ଓ ପ୍ରଶାନ୍ତ-ଉପକୂଳ ସମ୍ବନ୍ଧରେ ହୋଇଥିଲା, କିନ୍ତୁ ସୋଭିଏଟ୍ ରୁଷର ଏଥିରେ ଜୀବନ୍ତ ସ୍ୱାର୍ଥ ଥିଲେ ସୁଦ୍ଧା ତାର ପ୍ରତିବାଦ ସତ୍ତ୍ୱେ ତାଙ୍କୁ ଏଥିକି ନିମନ୍ତ୍ରଣ କରାଯାଇ ନ ଥିଲା ।

ଏହି ଓ୍ୱାଶିଂଟନ ସମ୍ମିଳନୀରେ ଇଂଲଣ୍ଡର ପୂର୍ବଦେଶ ସମ୍ବନ୍ଧୀୟ ନୀତିରେ ଏକ ପରିବର୍ତ୍ତନ ପରିଲକ୍ଷିତ ହେଲା । ଏ ପର୍ଯ୍ୟନ୍ତ ସୁଦୂର ପ୍ରାଚ୍ୟ ଏବଂ ଏପରିକି ଦରକାର ପଡ଼ିଲେ

ଭାରତରେ ମଧ୍ୟ ଜାପାନ ତାଙ୍କୁ ସାହାଯ୍ୟ କରିବ ବୋଲି ଇଂଲଣ୍ଡ ଭରସା କରିଥିଲା । କିନ୍ତୁ ଏବେ ପୃଥିବୀ ବ୍ୟାପାରରେ ସୁଦୂର ପ୍ରାଚ୍ୟ ଏକ ଅତି ଗୁରୁତର ଜିନିଷ ହୋଇଯାଇଛି ଏବଂ ବିଭିନ୍ନ ଶକ୍ତି ଭିତରେ ସ୍ୱାର୍ଥର ସଙ୍ଘର୍ଷ ଘଟିଛି । ଚୀନ ଜାଗ୍ରତ ହେଉଛି ଅଥବା ସେହିପରି ବୋଧହେଉଛି ଏବଂ ଜାପାନ ଓ ଆମେରିକା ଭିତରେ ଅଧିକ ବିରୋଧଭାବ ବଢ଼ୁଛି । ଅନେକ ଲୋକ ଭାବିଲେ ଯେ ଆଗାମୀ ମହା ସମରର ପ୍ରଶାନ୍ତ ମହାସାଗରହିଁ ପ୍ରଧାନ କେନ୍ଦ୍ର ହେବ । ଆମେରିକା ଓ ଜାପାନ ଭିତରେ ଇଂଲଣ୍ଡ ଆମେରିକା ପକ୍ଷକୁ ଚଳିଲା, ଅଥବା ଏ କଥା କହିଲେ ଅଧିକ ଠିକ୍ ହେବ ଯେ ତାହା ଜାପାନ ପକ୍ଷ ଛାଡ଼ିଦେଲା । ତାର ନିର୍ଦ୍ଦିଷ୍ଟ ରୂପେ ନୀତି ହେଲା କୌଣସି ପ୍ରକାର ଚୁକ୍ତିରେ ବନ୍ଧା ନ ହୋଇ ପ୍ରଭାବଶାଳୀ ଓ ଧନୀ ଆମେରିକାସହ ବନ୍ଧୁଭାବ ରଖିବା । ଜାପାନୀ ମିତ୍ରତା ଛାଡ଼ି, ଇଂଲଣ୍ଡ ଏକ ସମ୍ଭବଯୋଗ୍ୟ ସୁଦୂର ପ୍ରାଚ୍ୟ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେବାକୁ ଲାଗିଲା । ସେ ସିଙ୍ଗାପୁରରେ ପ୍ରକାଣ୍ଡ ଓ ବହୁବ୍ୟୟସାପେକ୍ଷ ଏକ ବନ୍ଦର ନିର୍ମାଣ କଲା ଏବଂ ଏହି ସ୍ଥାନକୁ ଗୋଟାଏ ବଡ଼ ନୌଘାଟୀରେ ପରିଣତ କଲା । ଏହି ସ୍ଥାନରୁ ସେ ଭାରତ ମହାସାଗର ଓ ପ୍ରଶାନ୍ତ ମହାସାଗର ଭିତରେ ବେପାର ନିୟନ୍ତ୍ରଣ କରିପାରେ । ସେ ଏକ ପକ୍ଷରେ ଭାରତ ଓ ବର୍ମା ଉପରେ ପ୍ରାଧାନ୍ୟ କରିପାରେ ଏବଂ ଅନ୍ୟ ଆଡ଼େ ଫରାସୀ ଓ ଡଚ ଉପନିବେଶରେ ମଧ୍ୟ । ସବୁଠାରୁ ଗୁରୁତର ହେଉଛି ଜାପାନ ବିରୁଦ୍ଧରେ ହେଉ ବା ଅନ୍ୟ କୌଣସି ଶକ୍ତି ବିରୁଦ୍ଧରେ ହେଉ ସେ ପ୍ରଶାନ୍ତ ମହାସାଗର ସଙ୍ଘର୍ଷରେ ଫଳଦାୟକ ଭାଗ ନେଇ ପାରିବ ।

୧୯୨୨ର ଓ୍ୱାଶିଂଟନ ସମ୍ମିଳନୀରେ ଏହି ଇଂରେଜ-ଜାପାନ ମିତ୍ରତା ଭାଙ୍ଗିଗଲା ପରେ ଜାପାନ ଅଲଗା ହୋଇ ରହିଗଲା । ବାଧ୍ୟ ହୋଇ ଜାପାନୀମାନେ ରୁଷ ଆଡ଼କୁ ଦୃଷ୍ଟିପାତ କଲେ ଏବଂ ସେମାନେ ସୋଭିଏଟ ରାଜ୍ୟସହ ଭଲ ସମ୍ବନ୍ଧ କରିବାରେ ମନ ଦେଲେ । ତିନବର୍ଷ ପରେ '୧୯୨୫ ଜାନୁୟାରୀ ମାସରେ ସୋଭିଏଟ୍ ରୁଷ ଓ ଜାପାନ ଭିତରେ ଗୋଟାଏ ସନ୍ଧି ହେଲା ।

ଯୁଦ୍ଧ ପରେ ପ୍ରଥମ ଭାଗରେ ବିଜେତା ଶକ୍ତିମାନେ ଜର୍ମାନୀକୁ ଏକ ଅଜାତିଆ ଦେଶରୂପେ ବ୍ୟବହାର କଲେ । ଏହି ଶକ୍ତିମାନଙ୍କଠାରୁ କିଛି ସହାନୁଭୂତି ନ ପାଇବାରୁ ଏବଂ ସେମାନଙ୍କୁ ଟିକିଏ ଭୟଭୀତ କରାଇଦେବା ନିମନ୍ତେ ସେ ସୋଭିଏଟ ରୁଷ ପ୍ରତି ଦୃଷ୍ଟି ଦେଇ ୧୯୨୨ ଏପ୍ରିଲ ମାସରେ ତାହା ସହିତ ଏକ ସନ୍ଧି କଲା । ଏହା ହେଉଛି ରାପାଲୋ ସନ୍ଧି । ଏଥିପାଇଁ ମିଳାମିଶା କଥାବାର୍ତ୍ତା ଗୋପନରେ ଚାଲିଥିଲା ଏବଂ ତେଣୁ ଯେତେବେଳେ ସନ୍ଧି ପ୍ରକାଶିତ ହୋଇଗଲା, ମିତ୍ର ରାଜ୍ୟମାନେ ବଡ଼ ଚମକି ପଡ଼ିଲେ । ବିଶେଷ ରୂପେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ପ୍ରତି ସବୁ କଥା ଗୋପନ ରଖା ଯାଇଥିଲା, କାରଣ ଇଂରେଜ ଶାସକ ଶ୍ରେଣୀ ସୋଭିଏଟ୍ ସରକାରକୁ ବଡ଼ ନାପସନ୍ଦ କରୁଥିଲେ । ପ୍ରକୃତରେ ଯେତେବେଳେ ବୁଝିଲେ ଯେ ଜର୍ମାନୀ ପ୍ରତି ଯଦି ଭଲ ବ୍ୟବହାର ନ କରାଯାଏ ଓ ସନ୍ତୁଷ୍ଟ ନ କରାଯାଏ, ତେବେ ତାହା

ରୁଷ ପକ୍ଷକୁ ଯିବ, ସେତେବେଳେ ଯାଇ ଜର୍ମାନୀ ପ୍ରତି ବ୍ରିଟିଶ ନୀତିରେ ପରିବର୍ତ୍ତନ ହେଲା । ସେମାନେ ଜର୍ମାନୀର ଅସୁବିଧା ସବୁ ସମ୍ପୂର୍ଣ୍ଣ ରୂପେ ବୁଝି ପାରୁଛନ୍ତି ବୋଲି କହିଲେ ଏବଂ ଅନେକ ପ୍ରକାରେ ବେସରକାରୀ ଭାବରେ ବନ୍ଧୁତ୍ୱ ଭାବରେ ଟଙ୍କା ସବୁ ଅଗ୍ରିମ ଦିଆଗଲା । ରୁଷ ପ୍ରଦେଶରେ ମିତ୍ର ପକ୍ଷର କାର୍ଯ୍ୟରୁ ସେମାନେ ଅଲଗା ହୋଇ ରହିଲେ । ଏ ସବୁ କେବଳ ହଠାତ୍ ଜର୍ମାନୀ ପ୍ରତି ପ୍ରେମଯୋଗୁ ହେଲା ନାହିଁ, ରୁଷଠାରୁ ଜର୍ମାନୀକୁ ଦୂରରେ ରଖିବା ନିମନ୍ତେ ଓ ସୋଭିଏଟ୍ ବିରୋଧୀ ଜାତି ଗୋଷ୍ଠୀରେ ତାକୁ ରଖିବାର ଇଚ୍ଛା ହେତୁ ଏହା ହୋଇଥିଲା । କେତେକ ବର୍ଷ ପର୍ଯ୍ୟନ୍ତ ବ୍ରିଟିଶ ନୀତିରେ ଏହାହିଁ ମୁଖ୍ୟ ହୋଇ ରହିଲା ଏବଂ ୧୯୨୫ରେ ଲୋକାର୍ଣ୍ଣୋଠାରେ ସେମାନେ ସଫଳ ହେଲେ । ପ୍ରଧାନ ଶକ୍ତିମାନଙ୍କର ଏକ ସମ୍ମିଳନୀ ଲୋକାର୍ଣ୍ଣୋଠାରେ ହେଲା ଏବଂ କେତେକ ବିଷୟରେ ବୁଝାମଣାରେ ଗୋଟାଏ ଚୁକ୍ତି ହେଲା—ଏ ସବୁ ସନ୍ଧିରେ ଲିପିବଦ୍ଧ ହୋଇଥିଲା । ପୂର୍ବ ରାଜିନାମା ହୋଇ ନ ଥିଲା; ପ୍ରକାଣ୍ଡ କ୍ଷତିପୂରଣ ପ୍ରଶ୍ନ ଓ ଅନ୍ୟ ପ୍ରଶ୍ନ ସବୁ ରହିଥିଲା । କିନ୍ତୁ 'ଅଯୁମାରମ୍ଭ ଶୁଭାଯ଼' ହେଲା ଏବଂ ଅନେକ ପରସ୍ପର ପ୍ରତି ପ୍ରତିଶ୍ରୁତି ଓ ନିର୍ଭରବାଣୀ ସବୁ ଦିଆଗଲା । ଭର୍ସେଇ ସନ୍ଧିରେ ଜର୍ମାନୀର ଫ୍ରାନସ ସୀମାନ୍ତ ଯାହା ଧାର୍ଯ୍ୟ କରାଯାଇଥିଲା ତାହା ସେ ଗ୍ରହଣ କଲା; ତାର ପୂର୍ବ ସୀମାନ୍ତରେ ପୋଲାଣ୍ଡ କରିଡର ନ ମିଳିବାରୁ ସେ ଏହା ଶେଷ ନିଷ୍ପତ୍ତି ବୋଲି ଗ୍ରହଣ କରିବାକୁ ଅସ୍ୱୀକାର କଲା; କିନ୍ତୁ ଏହାକୁ ପରିବର୍ତ୍ତନ କରିବା ନିମନ୍ତେ ଶାନ୍ତିପୂର୍ଣ୍ଣ ଉପାୟ ଅବଲମ୍ବନ କରିବା ଲାଗି ସେ ପ୍ରତିଜ୍ଞାବଦ୍ଧ ହେଲା । ଯଦି କୌଣସି ଦଳ ଚୁକ୍ତି ଭଙ୍ଗ କରେ, ତେବେ ଏହା ବିରୁଦ୍ଧରେ ଯୋଗ ଦେବା ପାଇଁ ଅନ୍ୟମାନେ ଏକାଠି ବାହାରିବେ ।

ଲୋକାର୍ଣ୍ଣୋରେ ବ୍ରିଟିଶ ନୀତିର ଜୟ ହେଲା । ଏହି ସନ୍ଧି ଅନୁସାରେ କେତେକ ପରିମାଣରେ ଫ୍ରାନ୍ସ ଓ ଜର୍ମାନୀ ବିବାଦରେ ଇଂଲଣ୍ଡ ପଞ୍ଚାୟତ ହୋଇଗଲା ଏବଂ ଏହି ହେତୁ ଜର୍ମାନୀ ରୁଷଠାରୁ ଦୂରରେ ରହିଲା । ବାସ୍ତବିକ ଲୋକାର୍ଣ୍ଣୋର ମୁଖ୍ୟ କଥା ହେଉଛି ଏକ ସୋଭିଏଟ୍-ବିରୋଧୀ ଗୋଷ୍ଠୀ ଗଢ଼ିବା ପାଇଁ ଏହା ପଶ୍ଚିମ ୟୁରୋପର ଦେଶଗୁଡ଼ିକ ଏକତ୍ର କରି ପାରିଥିଲା । ରୁଷ କାତର ହୋଇ ପଡ଼ିଲା ଏବଂ କେତେକ ମାସ ଭିତରେ ସେ ତୁର୍କି ସହିତ ଗୋଟାଏ ସନ୍ଧି କରି ଏହା ପୂରଣ କଲା । ଏହି ରୁଷ-ତୁର୍କି ସନ୍ଧି ୧୯୨୫ ଡିସେମ୍ବର ମାସରେ ସ୍ୱାକ୍ଷରିତ ହେଲା—ମସୁଲ ବିରୁଦ୍ଧରେ ଲିଗ୍ ଅଫ୍ ନେସନ୍ସର ନିଷ୍ପତ୍ତିର ଠିକ୍ ଦୁଇ ଦିନ ପରେ । ତୋର ମନେଥିବ ଏହି ସିଦ୍ଧାନ୍ତ ତୁର୍କି ବିରୁଦ୍ଧରେ ଗଲା । ୧୯୨୬ ସେପ୍ଟେମ୍ବର ମାସରେ ଜର୍ମାନୀ ଲିଗ୍ ଅଫ୍ ନେସନ୍ସରେ ପ୍ରବେଶ କଲା ଏବଂ ଏଠାରେ ଖୁବ୍ କୋଳାକୋଳି, ହାତ ମିଳାଇବା ଚାଲିଲା ଏବଂ ଲିଗ୍‌ରେ ପ୍ରତ୍ୟେକ ବ୍ୟକ୍ତି ହସ ଖୁସି କଲେ ଏବଂ ପ୍ରତ୍ୟେକଙ୍କୁ ଧନ୍ୟବାଦ ଦେଲେ ।

ତେଣୁ ୟୁରୋପର ଜାତିମାନଙ୍କ ଉପରେ ଏହି ଗତି ଓ ବିରୁଦ୍ଧ ଗତି ଚାଲିଲା—ନିଜର ଘରୋଇ ନୀତି ଦ୍ୱାରା ଏହା ଅନେକ ସମୟରେ ପ୍ରଭାବିତ ହେଉଥିଲା । ୧୯୨୩ ଡିସେମ୍ବରରେ

ଇଂଲଣ୍ଡରେ ସାଧାରଣ ନିର୍ବାଚନ ଫଳରେ ଟୋରି ଦଳ ପରାଜିତ ହେଲେ ଏବଂ ପାର୍ଲାମେଣ୍ଟରେ ଶ୍ରମିକଦଳର ପରିଷ୍କାର ବହୁମତ ନ ଥିଲେ ସୁଦ୍ଧା ପ୍ରଥମ ଥର ପାଇଁ ସରକାର ଗଠନ କଲା । ରାମସେ ମାକ୍‌ଡୋନାଲ୍‌ଡ୍ ପ୍ରଧାନମନ୍ତ୍ରୀ ହେଲେ । ଏହି ସରକାର ଅତି ଅଳ୍ପକାଳ—ସାଢ଼େ ନଅମାସ ମାତ୍ର ରହିପାରିଲା । ଯାହା ହେଉ ଏହି କାଳଭିତରେ ଏହା ସୋଭିଏଟ୍ ରୁଷସହ ଗୋଟାଏ ଚୁକ୍ତି କରିପାରିଲା ଏବଂ ଦୁଇ ଦେଶ ଭିତରେ କୂଟନୀତିକ ସମ୍ବନ୍ଧ ଓ ବେପାର ଲାଗି ସମ୍ପର୍କ ସ୍ଥାପିତ ହୋଇଗଲା । ସୋଭିଏଟ୍‌କୁ ସ୍ୱୀକାର କରିବା ବିରୁଦ୍ଧରେ ଟୋରିମାନେ ଥିଲେ ଏବଂ ଗତ ନିର୍ବାଚନର ଏକ ବର୍ଷ ଭିତରେ ଯେଉଁ ବ୍ରିଟିଶ ସାଧାରଣ ନିର୍ବାଚନ ହେଲା ସେଥିରେ ରୁଷ ଖୁବ୍ କାମ କରିଥିଲା । କାରଣ ନିର୍ବାଚନରେ ଟୋରିମାନେ ଜିନୋଭିଏଭ ଚିଠି ନାମକ ଏକ ଚିଠିର ସୁବିଧା ଉଠାଇଲେ । ବ୍ରିଟେନର କମ୍ୟୁନିଷ୍ଟମାନେ ଗୋପନରେ ବିପ୍ଳବ ଲାଗି କାର୍ଯ୍ୟ କରିବା ଏଥିରେ ଥିଲା । ସୋଭିଏଟ୍ ସରକାର ଭିତରେ ଜିନୋଭିଏଭ ଜଣେ ମୁଖ୍ୟ ବଲସେଭିକ୍ ଥିଲେ, କୌଣସି ଚିଠି ଲେଖିଥିବା କଥା ସେ ଅସ୍ୱୀକାରକଲେ ଏବଂ ଏହା ଜାଲ ହୋଇଥିବ ବୋଲି କହିଲେ । ତଥାପି ଟୋରିମାନେ ଚିଠିର ପୂର୍ଣ୍ଣ ସୁବିଧା ଉଠାଇଲେ ଏବଂ ଆଂଶିକ ରୂପେ ଏହା ସାହାଯ୍ୟରେ ନିର୍ବାଚନରେ ଜିତିଲେ । ଏକ ଟୋରି ସରକାର ଗଠିତ ହେଲା— ଷ୍ଟାନଲି ବଲଡ଼ୁଇନ ତାର ପ୍ରଧାନମନ୍ତ୍ରୀ ହେଲେ । ଜିନୋଭିଏଭ ଚିଠି ସମ୍ବନ୍ଧରେ ସତ୍ୟ ମିଥ୍ୟା ତଦନ୍ତ କରିବା ନିମନ୍ତେ ସରକାର ନିକଟରେ ବାରମ୍ବାର ଦାବୀ କରାଗଲା, କିନ୍ତୁ ଏହା ତା କରିବା ନିମନ୍ତେ ଅସ୍ୱୀକାର କଲା । ପରେ ବର୍ଲିନରେ ଜଣା ପଡ଼ିଲା ଯେ ଏହାକୁ ଜଣେ "ଶ୍ୱେତ" ରୁଷ ଲୋକ ଅର୍ଥାତ୍ ବଲସେଭିକ୍ ବିରୋଧୀ ରୁଷୀୟ ଲେଖିଥିଲା । ଯାହାହେଉ ଏହି ଜାଲ ଫିସାଦ ତାର କାମ ଇଂଲଣ୍ଡରେ କରିଥିଲା ଏବଂ ଏକ ସରକାରକୁ ଶେଷ କରି ଆଉ ଏକ ସରକାର ଆଣି ଥୋଇଲା । ଏହିପରି ସବୁ ଶ୍ରେଷ୍ଠ ଘଟଣାରେ ଆନ୍ତର୍ଜାତିକ ଘଟଣାମାନଙ୍କ ଉପରେ ପ୍ରଭାବ ପଡ଼େ ।

ସେହି ବର୍ଷ ପରେ ସୁଦୂର ପ୍ରାଚ୍ୟରେ ଏଥରକ ଗୋଟାଏ ନୂତନ ଅବସ୍ଥାରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବଡ଼ ବିରକ୍ତ ହୋଇ ପଡ଼ିଲା । ଚୀନରେ ଏକ ଦୃଢ଼ ମିଳିତ ଜାତୀୟ ସରକାର ଗଠିତ ହେଲା ଏବଂ ଏହାର ସୋଭିଏଟ ସହ ଘନିଷ୍ଠ ସମ୍ପର୍କ ଥିଲାପରି ବୋଧ ହେଲା । ଅନେକ ମାସ ପର୍ଯ୍ୟନ୍ତ ଚୀନରେ ବ୍ରିଟିଶମାନେ ମହା ବିପଦରେ ପଡ଼ିଥିଲେ ଏବଂ ସେମାନଙ୍କର ନିଜର ମର୍ଯ୍ୟାଦା ହାନି କରିବାକୁ ପଡ଼ିଥିଲା ଏବଂ ନିଜେ ପସନ୍ଦ ନ କରୁଥିବା ଅନେକ ଜିନିଷ ସେମାନଙ୍କୁ କରିବାକୁ ପଡ଼ିଥିଲା । ତା ପରେ ଅଳ୍ପକାଳ ସଫଳ ହେଲା ପରେ ଚୀନ ଆନ୍ଦୋଳନ ଭାଗ ଭାଗ ହୋଇଗଲା । ସେନାପତିମାନେ ହତ୍ୟା କଲେ ଓ ଆନ୍ଦୋଳନରେ ଅଗ୍ରଗାମୀ ବ୍ୟକ୍ତିମାନଙ୍କୁ ତଡ଼ି ଦେଲେ ଏବଂ ସାଙ୍ଘାଇ ବିଦେଶୀ ବ୍ୟାଙ୍କରଙ୍କ ଉପରେ ନିର୍ଭର କରିବା ପସନ୍ଦ କଲେ । ଅନ୍ତର୍ଜାତୀୟ ଖେଳରେ ଏହା ରୁଷ ପକ୍ଷରେ ଏକ ମହାନ୍ ପରାଜୟ ଏବଂ ଚୀନ୍ ଓ ଅନ୍ୟତ୍ର ତାର ମର୍ଯ୍ୟାଦା କମିଗଲା । ଇଂଲଣ୍ଡ ପକ୍ଷରେ ଏହା ଏକ ବିଜୟ ହେଲା ଏବଂ

ସେମାନେ ସୋଭିଏଟ୍ ପରାଜୟକୁ ଆହୁରି ପ୍ରଖର କରି ଅବସ୍ଥାର ଉନ୍ନତି କରିବା ନିମନ୍ତେ ଚେଷ୍ଟା କଲେ । ସୋଭିଏଟ୍-ବିରୋଧୀ ଗୋଷ୍ଠୀ ସଙ୍ଗଠନ କରିବା ନିମନ୍ତେ ଓ ରୁଷକୁ ଘେରାଉ କରିବା ପାଇଁ ପ୍ରଚେଷ୍ଟାମାନ ହେଲା ।

୧୯୨୭ ମଧ୍ୟ ଭାଗକୁ ପୃଥିବୀର ବିଭିନ୍ନ ଭାଗରେ ରୁଷ ବିରୁଦ୍ଧରେ କାର୍ଯ୍ୟ ଆରମ୍ଭ ହେଲା । ପ୍ରତିନିଧି ଉପରେ ଆକ୍ରମଣ ହେଲା । ଏହି ଅଞ୍ଚଳମାନଙ୍କରେ ଦୁଇଟି ପୃଥକ ଚୀନା ସରକାର ଶାସନ କରୁଥିଲେ, ତଥାପି ସେମାନେ ଏ ବ୍ୟାପାରରେ ମିଳିତ ହୋଇ କାର୍ଯ୍ୟ କଲେ । ଗୋଟାଏ ଦୂତାବାସ ଆକ୍ରମଣ କରିବା ଏବଂ ରାଷ୍ଟ୍ରଦୂତଙ୍କୁ ଅପମାନ ଦେବା ଅତି ଅସାଧାରଣ ଜିନିଷ; ପ୍ରାୟ ଏଥିରେ ଯୁଦ୍ଧ ଲାଗିବା ଅନିବାର୍ଯ୍ୟ । ରୁଷ ବିଶ୍ୱାସ କଲା ଯେ ରୁଷ ମୁଣ୍ଡରେ ଯୁଦ୍ଧ ଲଦିଦେବା ନିମନ୍ତେ ସୋଭିଏଟ୍ ବିରୋଧୀ ଶକ୍ତି ଓ ଇଂଲଣ୍ଡ ଏପରି ଭାବରେ ଚୀନ ସରକାରକୁ କାର୍ଯ୍ୟରେ ଲଗାଇଲେ । କିନ୍ତୁ ରୁଷ ଯୁଦ୍ଧ କଲା ନାହିଁ । ଏକ ମାସ ପରେ ୧୯୨୭ ମେ ମାସରେ ଆଉ ଏକ ଆକ୍ରମଣ ହେଲା—ଏଥର ରୁଷର ଲଣ୍ଡନରେ ଥିବା ବେପାର ଅଫିସରେ ହେଲା । ଏହାକୁ "ଆର୍କସ ରେଡ୍" ( Arcos Raid ) ବା ଆର୍କସ ଆକ୍ରମଣ କହନ୍ତି, କାରଣ ଇଂଲଣ୍ଡରେ ରୁଷ ସରକାରୀ ଟ୍ରେଡ଼ିଂ କମ୍ପାନୀର ନାମ ଥିଲା "ଆର୍କସ" । ଘଟଣାରୁ ଯାହା ପ୍ରମାଣିତ ହେଲା ଏହା ମଧ୍ୟ ଅନ୍ୟ ଶକ୍ତି ପ୍ରତି ସମ୍ପୂର୍ଣ୍ଣ ଅଯଥାର୍ଥ ଅପମାନ । ସଙ୍ଗେ ସଙ୍ଗେ ଦୁଇ ଦେଶ ଭିତରେ କୂଟନୀତିକ ସମ୍ବନ୍ଧ ଓ ବେପାରସବୁ ବନ୍ଦ ହୋଇଗଲା । ତାର ଆରମାସ ପୋଲଣ୍ଡରେ ଥିବା ସୋଭିଏଟ୍ ରାଷ୍ଟ୍ରଦୂତଙ୍କୁ ଓ୍ୟାରସଠାରେ ହତ୍ୟା କରାଗଲା । (ଚାରିବର୍ଷ ଆଗରୁ ଲୁସେନଠାରେ ରୋମରେ ଥିବା ସୋଭିଏଟ୍ ମନ୍ତ୍ରୀଙ୍କୁ ହତ୍ୟା କରାଯାଇଥିଲା) । ଗୋଟିକ ପରେ ଗୋଟିଏ ଏହି ସବୁ ଘଟଣା ଫଳରେ ରୁଷ ଲୋକଙ୍କର ଧୈର୍ଯ୍ୟ ବିଚ୍ୟୁତି ଘଟିଲା ଏବଂ ସାମ୍ରାଜ୍ୟବାଦୀ ଶତ୍ରୁମାନେ ତାଙ୍କ ବିରୁଦ୍ଧରେ ଏକ ମିଳିତ ଆକ୍ରମଣ କରିବାର ଆଶଙ୍କା ସେମାନେ କଲେ । ରୁଷ ଖୁବ୍ ଯୁଦ୍ଧ ଆତଙ୍କ ସୃଷ୍ଟି କଲା ଏବଂ ଅନେକ ୟୁରୋପୀୟ ଦେଶରେ ରୁଷ ସପକ୍ଷରେ ଏବଂ ଆସନ୍ନପ୍ରାୟ ଯୁଦ୍ଧ ବିରୁଦ୍ଧରେ ଶ୍ରମିକମାନେ ଆନ୍ଦୋଳନ କଲେ । ଆତଙ୍କ ଚାଲିଗଲା, ଯୁଦ୍ଧ ହେଲା ନାହିଁ ।

ସେହିବର୍ଷ—୧୯୨୭ରେ ସୋଭିଏଟ୍ ରୁଷ ବିରାଟ ଆକାରରେ ବଲସେଭିକ ବିପ୍ଳବର ୧୦ମ ବାର୍ଷିକ ଉତ୍ସବ ପାଳନ କଲା । ସେତେବେଳେ ଇଂଲଣ୍ଡ ଓ ଫ୍ରାନ୍ସ ରୁଷର ଖୁବ୍ ବିରୋଧୀ ଥିଲେ, କିନ୍ତୁ ପ୍ରାଚ୍ୟ ଦେଶମାନଙ୍କ ସହି ସୋଭିଏଟ୍ ରୁଷର ବନ୍ଧୁତାର ପ୍ରମାଣ ମିଳିଲା । ପର୍ସିଆ, ତୁର୍କି, ଆଫଗାନିସ୍ଥାନ ଓ ମଙ୍ଗୋଲିଆର ସରକାରୀ ପ୍ରତିନିଧିମାନେ ଏହି ଉତ୍ସବରେ ଯୋଗ ଦେଇଥିଲେ ।

ୟୁରୋପରେ ଓ ଅନ୍ୟତ୍ର ଏହି ସବୁ ଯୁଦ୍ଧ ଆତଙ୍କ ଓ ଆୟୋଜନ ଚାଲିଥିବାବେଳେ ତେଣେ ନିରସ୍ତ୍ରୀକରଣ ବିଷୟରେ ବି ଖୁବ୍ କଥାବାର୍ତ୍ତା ଚାଲିଲା । ଲିଗ୍ ଅଫ ନେସନ୍ସର କଭେନାଣ୍ଟରେ ଧାର୍ଯ୍ୟ ହୋଇଥିଲା ଯେ "ଲିଗ୍ ଅଫ୍ ନେସନ୍ସର ସଭ୍ୟମାନେ ସ୍ୱୀକା

କରନ୍ତି ଯେ ଶାନ୍ତି ରକ୍ଷା ନିମନ୍ତେ ଜାତୀୟ ନିରାପତ୍ତା ସହିତ ସାମଞ୍ଜସ୍ୟ ରଖି ନ୍ୟୂନତମ ସଂଖ୍ୟା ପର୍ଯ୍ୟନ୍ତ ନିଜ ଦେଶର ଅସ୍ତ୍ରଶସ୍ତ୍ର କମାଇବା ଦରକାର ଏବଂ ଅନ୍ତର୍ଜାତୀୟ ପ୍ରତିଶ୍ରୁତି ପାଇଁ ସମସ୍ତେ କାର୍ଯ୍ୟ କରିବା ଦରକାର ।'' କେବଳ ଏହି ପବିତ୍ର ନୀତି ଧାର୍ଯ୍ୟ କରିବା ଅପେକ୍ଷା ଲିଗ୍ ସେତେବେଳେ କିଛି କରି ପାରିଲା ନାହିଁ, କିନ୍ତୁ ଏ ବିଷୟରେ ଆବଶ୍ୟକୀୟ ପ୍ରତିକାର କରିବା ନିମନ୍ତେ କାଉନ୍‌ସିଲ୍‌କୁ ଭାର ଦେଲା । ଏହି ଶାନ୍ତି ସନ୍ଧି ଅନୁସାରେ ଅବଶ୍ୟ ଜର୍ମାନୀ ଓ ଅନ୍ୟ ପରାଜିତ ଶକ୍ତି ସବୁ ନିରସ୍ତ୍ର ହୋଇଯାଇଥିଲେ । ବିଜେତା ଶକ୍ତିମାନେ ବି ନିରସ୍ତ୍ରୀକରଣ ପରେ ପରେ କରିବେ ବୋଲି କହିଥିଲେ, କିନ୍ତୁ ବାରମ୍ବାର ସମ୍ମିଳନୀରେ କିଛି ଫଳ ହେଲା ନାହିଁ । ପ୍ରତ୍ୟେକ ଶକ୍ତି ସେତେବେଳେ ଏପରି ପ୍ରକାର ନିରସ୍ତ୍ରୀକରଣ ଖୋଜୁଥିଲେ ଯଦ୍ଦ୍ୱାରା ଅନ୍ୟ ଶକ୍ତି ଅପେକ୍ଷା ସେ ବଳିଷ୍ଠ ହୋଇ ପାରିବେ, ସେତେବେଳେ ଏହା କିଛି ବିସ୍ମୟର କଥା ନୁହେଁ । ଏଥିରେ ଅନ୍ୟମାନେ ସମ୍ମତ ହେଲେ ନାହିଁ । ନିରସ୍ତ୍ରୀକରଣ ପୂର୍ବରୁ ନିଜର ନିରାପତ୍ତା ଦାବୀ ଫରାସୀ ବରାବର କରିଥାଏ ।

ପ୍ରଧାନ ଶକ୍ତିମାନଙ୍କ ଭିତରେ ସୋଭିଏଟ୍ ରୁଷ ଓ ଆମେରିକା କେହି ଲିଗ୍‌ର ସଭ୍ୟ ନଥିଲେ । ବାସ୍ତବିକ ସୋଭିଏଟ୍ ଲିଗ୍‌କୁ ଏକ ବିରୋଧୀ ଓ ପ୍ରତିଦ୍ୱନ୍ଦ୍ୱୀ ପ୍ରଦର୍ଶନ ବୋଲି ମନେ କରୁଥିଲା, ସୋଭିଏଟ୍ ବିରୁଦ୍ଧରେ ପୁଞ୍ଜିବାଦୀ ଶକ୍ତି ଗୋଷ୍ଠୀ ରହିଛନ୍ତି । ସୋଭିଏଟ୍ ୟୁନିୟନକୁ ବି ଗୋଟାଏ ଲିଗ୍ ଅଫ୍ ନେସନ୍‌ସ (ଠିକ୍ ବେଳେ ବେଳେ ବ୍ରିଟିଶ ସାମ୍ରାଜ୍ୟକୁ ଯେପରି କୁହାଯାଏ) କୁହାଯାଏ । ଏହି ୟୁନିୟନରେ ଅନେକ ଗୁଡ଼ିଏ ପ୍ରଜାତନ୍ତ୍ର ମିଳିତ ହୋଇଛନ୍ତି । ପ୍ରାଚ୍ୟ ଦେଶ ସବୁ ମଧ୍ୟ ଲିଗ୍ ଅଫ୍ ନେସନ୍‌ସକୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ ଏବଂ ଏହା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ହାତରେ ଏକ ଖେଳନା ବୋଲି ବିଚାରୁଥିଲେ । ଯାହାହେଉ ନିରସ୍ତ୍ରୀକରଣ ବିଷୟ ବିଚାର କରିବା ନିମନ୍ତେ ଆମେରିକା, ରୁଷ ଓ ପ୍ରାୟ ସବୁ ଦେଶ ଲିଗ୍ ସମ୍ମିଳନୀରେ ଯୋଗ ଦେଇଥିଲେ । ୧୯୨୫ରେ ଲିଗ୍ ଏକ ଅଯୋଜନକାରୀ କମିଶନ ବସାଇଲା—ନିରସ୍ତ୍ରୀକରଣ ପାଇଁ ଏକ ବିରାଟ ପୃଥିବୀ ସମ୍ମିଳନୀ ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିବା ହେଲା ଏହାର କାର୍ଯ୍ୟ । ଏହି କମିଶନ ଅବିରାମ ଭାବରେ ସାତବର୍ଷ କାଳ ଚାଲିଲା, ଯୋଜନା ଉପରେ ଯୋଜନା ପରୀକ୍ଷା କଲା—କିଛି ଫଳ ହେଲା ନାହିଁ । ୧୯୩୨ରେ ପୃଥିବୀ ସମ୍ମିଳନୀ ବୈଠକ ହେଲା ଏବଂ ଅନେକ ମାସ ପର୍ଯ୍ୟନ୍ତ ବୃଥା ଆଲୋଚନା ପରେ ଭାଙ୍ଗିଗଲା ।

ଆମେରିକା ଖାଲି ଯେ ଏହି ନିରସ୍ତ୍ରୀକରଣ ଆଲୋଚନାରେ ଯୋଗ ଦେଲା ତାହା ନୁହେଁ, ପୃଥିବୀରେ ତାର ପ୍ରଧାନ ଆର୍ଥିକ ଅବସ୍ଥା ଯୋଗୁଁ ୟୁରୋପ ଓ ୟୁରୋପୀୟ ସମସ୍ୟାରେ ତାର ଆଗ୍ରହ ବଢ଼ିଲା । ସମଗ୍ର ୟୁରୋପ ତାର ଖାତକ ଥିଲା ଏବଂ ୟୁରୋପ ଦେଶମାନେ ପୁଣି ନିଜ ନିଜର ଗଳା କାଟିବାରେ ବାଧା ଦେବା ପାଇଁ ତାହା ବ୍ୟଗ୍ର ଥିଲା, କାରଣ ଅନ୍ୟ ଉଦାର ବିଚାର ସବୁ ବାଦ୍ ଦେଲେ ଯଦି ଏହା ହୁଏ, ତେବେ ତାର ଋଣ ଓ ବେପାର ଦଶା କ'ଣ ହେବ ? ନିରସ୍ତ୍ରୀକରଣ ଆଲୋଚନାରେ କୌଣସି ଫଳ ଜଳଦି ନ ହେବାରୁ ୧୯୨୮ରେ

ଶାନ୍ତିରକ୍ଷା ନିମନ୍ତେ ଆଉ ଏକ ନୂତନ ପ୍ରସ୍ତାବ ଆସିଲା । ଫରାସୀ ଓ ଆମେରିକା ସରକାର ଭିତରେ କଥାବାର୍ତ୍ତା ଫଳରେ ଏହା ହେଲା । ଏହି ପ୍ରସ୍ତାବରେ ସାହସର ସହିତ ଯୁଦ୍ଧକୁ "ବେଆଇନ" ବୋଲି ଘୋଷଣା କରିବାକୁ କୁହାହେଲା । ମୂଳ ଧାରଣା ଥିଲା, ଫ୍ରାନସ ଓ ଆମେରିକା ଭିତରେ ଏକ ଚୁକ୍ତି, କିନ୍ତୁ ପରେ ଏହା ବୃଦ୍ଧି ପାଇଲା ଏବଂ ପ୍ରାୟ ପୃଥିବୀର ସମସ୍ତ ଦେଶ ଏଥିରେ ଯୋଗ ଦେଲେ । ପାରିସଠାରେ ୧୯୨୮ ଅଗଷ୍ଟ ମାସରେ ଏହି ଚୁକ୍ତି ସ୍ୱାକ୍ଷରିତ ହେଲା ଏବଂ କେଣ୍ଟେ ଏହାକୁ ୧୯୨୮ର ପ୍ୟାରିସ ଚୁକ୍ତି ବୋଲି କହନ୍ତି । ଏହାକୁ ମଧ୍ୟ କେଲଗ-ବ୍ରିୟାଣ୍ଡ ଚୁକ୍ତି କିମ୍ବା କେବଳ କେଲଗ ଚୁକ୍ତି ବୋଲି କହନ୍ତି । ଆମେରିକାର ରାଷ୍ଟ୍ର ସଚିବ କେଲଗ ଏ ବିଷୟରେ ନେତୃତ୍ୱ ନେଇଥିଲେ ଏବଂ ଆରିଷ୍ଟାଇଡ଼ ବ୍ରିୟାଣ୍ଡ ଫରାସୀ ବିଦେଶମନ୍ତ୍ରୀ ଥିଲେ । ଚୁକ୍ତିପତ୍ର ଖୁବ୍ ସଂକ୍ଷିପ୍ତ କାଗଜ—ଅନ୍ତର୍ଜାତୀୟ ବିବାଦ ତୁଟାଇବା ନିମନ୍ତେ ଯୁଦ୍ଧ ଆରମ୍ଭ କରିବାର ନିନ୍ଦା କରାଗଲା ଏବଂ ଚୁକ୍ତିପତ୍ର ସ୍ୱାକ୍ଷରକାରୀଙ୍କ ଭିତରେ ପରସ୍ପର ସମ୍ପର୍କ ସ୍ଥାପନରେ ଯୁଦ୍ଧ ତ୍ୟାଗ କରିବା ଏକ ଜାତୀୟ ନୀତି ବୋଲି ଧାର୍ଯ୍ୟ କରାଗଲା । ଏହି ଭାଷା ପ୍ରାୟ ସେହି କାଗଜରେ ଲିଖିତ ଭାଷା—ଶୁଣିବାକୁ ଭାରି ସୁନ୍ଦର ଏବଂ ସାଧୁ ଭାବରେ ଲେଖାହୋଇଥିଲେ ଯୁଦ୍ଧ ଲୋପ ହୋଇଯାଇଥାନ୍ତା, କିନ୍ତୁ ଶକ୍ତିମାନେ କପରି ଅସାଧୁ ଥିଲେ ତାହା ଅଳ୍ପ ଦିନ ପରେ ଜଣା ପଡ଼ିଗଲା । ଏହା ଦସ୍ତଖତ କରିବା ପୂର୍ବରୁ ଫରାସୀ ଓ ଇଂରେଜ ଏବଂ ବିଶେଷ ଭାବରେ ଇଂରେଜମାନେ ଅନେକ ହାତରେ ପାଣି ରଖିଲେ, ତାହା ଫଳରେ ବ୍ୟାବହାରିକ ଦୃଷ୍ଟିରେ ଚୁକ୍ତିଟି ଅକାମୀ ହୋଇଗଲା । ନିଜର ସାମ୍ରାଜ୍ୟ ସଂକ୍ରାନ୍ତ ଯୁଦ୍ଧ ଗୁଲି କାର୍ଯ୍ୟ କିଛି ବ୍ରିଟିଶ ଗଭର୍ଣ୍ଣମେଣ୍ଟ କରିବାଟା ଏଥିରେ ନିଷିଦ୍ଧ ହେଲା ନାହିଁ, ତାର ଅର୍ଥ ଯେତେବେଳେ ଇଚ୍ଛା କରିବ ଏହା ଯୁଦ୍ଧ କରିପାରେ । ଏହା ତାର ପ୍ରାଧାନ୍ୟ ଓ ପ୍ରଭାବରେ ଥିବା ଅଞ୍ଚଳମାନଙ୍କରେ ଏକ ପ୍ରକାର "ମନୋ ଡକ୍‌ଟ୍ରିନ୍" ଘୋଷଣା କଲା ।

ସାଧାରଣରେ ଯୁଦ୍ଧ ଏହିପରି "ବେଆଇନ" ବୋଲି ଘୋଷିତ ହେଉଥିବାବେଳେ କେଣେ ୧୯୨୮ରେ ଏକ ଗୁପ୍ତ ଇଂରେଜ-ଫରାସୀ ନୌଚୁକ୍ତି ହେଲା । ଏହି ସମ୍ବାଦ କୌଣସି ପ୍ରକାରେ ବାହାର ପଡ଼ିଲା ଏବଂ ୟୁରୋପ ଓ ଆମେରିକା ଚମକି ଉଠିଲେ । ଦୃଷ୍ଟି ଅନ୍ତରାଳରେ କପରି ଅବସ୍ଥା ଥିଲା ତାହା ଏଥିରୁ ବେଶ୍ ପ୍ରମାଣିତ ହୁଏ ।

ସୋଭିଏଟ୍ ୟୁନିୟନ କେଲଗ ଚୁକ୍ତିକୁ ଗ୍ରହଣ କଲା ଏବଂ ଦସ୍ତଖତ କଲା । ତା ପକ୍ଷରେ ଏହା କରିବାର ପ୍ରକୃତରେ କାରଣ ହେଉଛି, ଏହିପରି ଭାବରେ କେତେକ ପରିମାଣରେ ଅନ୍ତତଃ ଯେଉଁ ସୋଭିଏଟ୍ ବିରୋଧୀ ଗୋଷ୍ଠୀ ତା ବିରୁଦ୍ଧରେ ଆକ୍ରମଣ କରିବାର ସମ୍ଭାବନା ରହିଛି, ସେଥିରେ ବାଧା ପଡ଼ିଥିବ । ବ୍ରିଟିଶ ଚୁକ୍ତିରେ ଯେଉଁସବୁ ହାତରପାଣି ରଖିଥିଲା ତାହା ବିଶେଷ ରୂପେ ସୋଭିଏଟ୍‌କୁ ଲକ୍ଷ୍ୟ କରି ହୋଇଥିଲା । ଚୁକ୍ତି ଦସ୍ତଖତ

କଲାବେଳେ ରୁଷ ବ୍ରିଟିଶ ଓ ଫ୍ରାନ୍ସର ଏହି ହାତରପାଞ୍ଚ କ୍ଷମତାରେ ଘୋର ଆପତ୍ତି ଦର୍ଶାଇଥିଲା ।

ରୁଷ ଯୁଦ୍ଧ ଏଡ଼ାଇଦେବା ନିମନ୍ତେ ଏତେ ବ୍ୟଗ୍ର ଥିଲା ଯେ ସେ ଆଗରୁ ବିଶେଷ ସତର୍କ ହୋଇ ନିଜର ପଡ଼ୋଶୀ ଦେଶ ପୋଲଣ୍ଡ, ରୁମାନିଆ, ଇସ୍ତୋନିଆ, ଲଟେଭିଆ, ତୁର୍କି ଓ ପାରସ୍ୟ ସହିତ ବିଶେଷ ଚୁକ୍ତିମାନ କରି ପକାଇଲା । ଏହା 'ଲିଟଭିନୋଭ ଚୁକ୍ତି' ନାମରେ ଜଣା । କେଲଗ ଚୁକ୍ତି ଆନ୍ତର୍ଜାତୀୟ ଆଇନ ହେବାର ଛଅ ମାସ ପୂର୍ବେ ୧୯୨୯ ଫେବୃଆରି ମାସରେ ସ୍ୱାକ୍ଷରିତ ହୋଇଥିଲା ।

ତେଣୁ ଏକ କଳହପ୍ରିୟ ଓ ପତନୋନ୍ମୁଖୀ ଦୁନିଆକୁ ଅଟଳ କରିବା ନିମନ୍ତେ ହିତାଶ ଭାବରେ ଉଦ୍ୟମ କରି ଏହି ସବୁ ଚୁକ୍ତି, ମିଳିତା ଓ ସନ୍ଧିମାନ କରାଗଲା, ସତେ କି ଉପରେ ଏହି ସବୁ ଚୁକ୍ତି ଓ ତାଲି ପକାଇବାରେ ଶରୀରକୁ ଭେଦ କରିଥିବା ରୋଗର ପ୍ରତିକାର ହୋଇଯାଇ ପାରିବ । ଏହା ୧୯୧୯-୨୦ ବେଳ—ଏତେବେଳେ ୟୁରୋପୀୟ ଦେଶମାନଙ୍କରେ ପ୍ରାୟ ସୋସାଲିଷ୍ଟ ଓ ସୋସାଲ ଡେମୋକ୍ରାଟମାନେ କ୍ଷମତା ପାଉଥାନ୍ତି । ସେମାନେ ଯେତେ ଅଧିକ ଅଧିକ ଅଫିସ ଓ କ୍ଷମତାର ସୁଆଦ ପାଇଲେ, ତେତେ ବେଶୀ ପୁଞ୍ଜିବାଦୀ ଗଠନ ଦେହରେ ନିଜକୁ ମିଶାଇ ଦେଲେ । ବାସ୍ତବିକ ସେମାନେ ପୁଞ୍ଜିବାଦ ରକ୍ଷାର ସର୍ବୋତ୍କୃଷ୍ଟ କର୍ତ୍ତା ହେଲେ ଏବଂ ଅନେକ ସମୟରେ ଯେ କୌଣସି ରକ୍ଷଣଶୀଳ ବା ଅନ୍ୟ ପ୍ରତିକ୍ରିୟାପନ୍ଥୀ ପରି ସାମ୍ରାଜ୍ୟବାଦୀ ବି ପାଲଟିଲେ । ଯୁଦ୍ଧୋତ୍ତର ବର୍ଷର ପ୍ରଥମ ଭାଗ ବିପ୍ଳବୀ ଆଲୋଡ଼ନ ପରେ ୟୁରୋପୀୟ ଦୁନିଆ କେତେକ ପରିମାଣରେ ଥଣ୍ଡା ହୋଇ ଯାଇଥିଲା । ମନେ ହେଲା ଆଉ ଏକ ଯୁଗ ପାଇଁ ନୂତନ ଅବସ୍ଥା ସହି ପୁଞ୍ଜିବାଦ ନିଜକୁ ମିଳାଇ ଦେଇ ପାରିଲା ଏବଂ କୌଣସି-ଠାରେ ବିପ୍ଳବୀ ପରିବର୍ତ୍ତନର କୌଣସି ତତ୍‌କ୍ଷଣାତ୍ ଆଶା ଦେଖାଗଲା ନାହିଁ ।

ତେଣୁ ୟୁରୋପରେ ୧୯୨୯ରେ ଅବସ୍ଥା ଏହିପରି ଥିଲା ।

## ୧୭୪ : ମୁସୋଲିନୀ ଓ ଇଟାଲୀରେ ଫାସିଜିମ

ଜୁନ ୨୧, ୧୯୩୩

ୟୁରୋପ ଇତିହାସ କାହାଣୀ ଆମେ ୧୯୨୯ ପର୍ଯ୍ୟନ୍ତ ଆଲୋଚନା କଲେ । କିନ୍ତୁ ଏ ପର୍ଯ୍ୟନ୍ତ ଏକ ପ୍ରଧାନ ଅଧ୍ୟାୟ ଛାଡ଼ି ଯାଇଛୁ ଏବଂ ତେଣୁ ଟିକିଏ ପଛକୁ ଫେରିଯିବାକୁ ପଡ଼ିବ । ଏହା ହେଉଛି ଇଟାଲିରେ ଯୁଦ୍ଧ ପର ଘଟଣାବଳୀ । ଇଟାଲିର ଘଟଣାବଳୀର ବିବରଣୀ

ଏଥିରେ ମିଳେ । କେବଳ ଏଥିପାଇଁ ଯେ ଏହା ଶ୍ରେଷ୍ଠ ତାହା ନୁହେଁ; ମାତ୍ର ଏଗୁଡ଼ିକ ଏକ ନୂତନ ପ୍ରକାର ଘଟଣା ଏବଂ ସମସ୍ତ ଦୁନିଆର କାର୍ଯ୍ୟକଳାପ ଓ ଘଟଣାବଳୀର ଏକ ନୂତନ ଅଧ୍ୟାୟ ହୋଇଥିବାରୁ ଆମକୁ ସତର୍କ କରିଦିଏ । ତେଣୁ କେବଳ ତାହାର ମହତ୍ତ୍ୱ ଛଡ଼ା ଏହା ଆହୁରି କିଛି ଅଧିକ ଏବଂ ସେହି ହେତୁ ଏକ ଅଲଗା ଚିଠିରେ ବର୍ଣ୍ଣନା କରିବା ନିମନ୍ତେ ମୁଁ ଏହାକୁ ରଖିଥିଲି । ତେଣୁ ଏହି ଚିଠିରେ ଆଜକାଲିକା ଦୁନିଆର ଜଣେ ପ୍ରଧାନ ବ୍ୟକ୍ତି ମୁସୋଲିନୀ ଏବଂ ଇଟାଲୀରେ ଫାସିଜମ୍‌ର ଆବିର୍ଭାବ ସମ୍ବନ୍ଧରେ ଲେଖିବି ।

ପୃଥିବୀ ଯୁଦ୍ଧ ଆରମ୍ଭ ପୂର୍ବରୁ ବି ଇଟାଲୀ ଗୁରୁତର ଆର୍ଥିକ ଦୁର୍ଗତିରେ ପଡ଼ିଥିଲା । ୧୯୧୧-୧୨ରେ ତୁର୍କି ଯୁଦ୍ଧରେ ଏହା ଜୟଲାଭ କରିଥିଲା ଏବଂ ଉତ୍ତର-ଆଫ୍ରିକାରେ ତ୍ରିପଲୀ ଅଧିକାର ହେବା ଦ୍ୱାରା ଏହାର ସାମ୍ରାଜ୍ୟବାଦୀମାନେ ଖୁବ ଖୁସି ହୋଇଥିଲେ । କିନ୍ତୁ ଏହି ଶ୍ରେଷ୍ଠ ଯୁଦ୍ଧଟିରେ ଭିତର ଅବସ୍ଥା ଭଲ ହୋଇ ନ ଥିଲା ଓ ଆର୍ଥିକ ପରିସ୍ଥିତି ଉନ୍ନତ ହୋଇ ପାରି ନ ଥିଲା । ଅବସ୍ଥା ଖରାପ ଆଡ଼କୁ ଗଲା ଏବଂ ପୃଥିବୀ ଯୁଦ୍ଧ ପୂର୍ବରୁ ୧୯୧୪ରେ ଇଟାଲୀ ବିପ୍ଳବ ନିକଟବର୍ତ୍ତୀ ହେଲା ପରି ବୋଧ ହେଉଥିଲା । କାରଖାନାମାନଙ୍କରେ ଅନେକ ବଡ଼ ଧର୍ମଘଟମାନ ହୋଇଥିଲା ଏବଂ ନରମା ସାମ୍ୟବାଦୀ ଶ୍ରମିକ ନେତାମାନେ ଏହାକୁ ରୋକି ରଖିଥିଲେ—ସେମାନେ ଧର୍ମଘଟ ବନ୍ଦ କରିବାରେ ସଫଳ ହୋଇ ପାରିଥିଲେ । ତା ପରେ ଆସିଲା ଯୁଦ୍ଧ । ଇଟାଲୀ ତାର ମିତ୍ର ଜର୍ମାନ ପକ୍ଷ ସହ ଯୋଗଦେବାକୁ ଅସ୍ୱୀକାର କଲା ଏବଂ ନିଜର ନିରପେକ୍ଷତା ଦ୍ୱାରା ଦୁଇ ପକ୍ଷରୁ ସୁବିଧା ଆଦାୟ କରିବା ନିମନ୍ତେ ଚେଷ୍ଟା କଲା । ସର୍ବାପେକ୍ଷା ବଡ଼ ନିଲାମଦାରକୁ ନିଜର ସାହାଯ୍ୟ ଦେବା ମନୋଭାବ କିଛି ଉନ୍ନତ ମନର ପରିଚୟ ନୁହେଁ, କିନ୍ତୁ ଦେଶସବୁ ନିତାନ୍ତ ନିର୍ବେଦ ବସ୍ତୁ ଏବଂ ଏପରି ଭାବରେ କାର୍ଯ୍ୟ କରନ୍ତି ଯଦ୍ୱାରା ବ୍ୟକ୍ତିବିଶେଷ ଲଜ୍ଜାରେ ବୁଡ଼ିଯିବେ । ମିତ୍ରପକ୍ଷ ଇଂଲଣ୍ଡ ଓ ଫ୍ରାନ୍‌ସ ନଗଦ ମୁଦ୍ରା ଓ ରାଜ୍ୟ ଦେବାର ପ୍ରତିଶ୍ରୁତିରେ ସବୁଠାରୁ ବେଶୀ ଲାଞ୍ଚ ଯାଚି ପାରିଲେ ଏବଂ ତେଣୁ ୧୯୧୫ ମେ ମାସରେ ଇଟାଲୀ ମିତ୍ର ପକ୍ଷରେ ଯୋଗଦାନ କଲା । ମୋର ମନେହୁଏ ତାପରେ ଇଟାଲୀକୁ ସ୍ମିର୍ଣ୍ଣା ଓ ଏସିଆମାଇନର ଏକ ଅଞ୍ଚଳ ଦେଇ ଯେଉଁ ଗୁପ୍ତ ସନ୍ଧି ହୋଇଥିଲା ସେ ବିଷୟ ମୁଁ ତତେ କହିଛି । ଏହି ସନ୍ଧି ମଞ୍ଜୁର ହେବା ପୂର୍ବରୁ ରୁଷରେ ବଲସେଭିକ ବିପ୍ଳବ ଘଟିଲା ଏବଂ ସବୁ ଖେଳ ଓଲଟପାଲଟ ହୋଇଗଲା । ଇଟାଲୀର ଏହା ଥିଲା ଏକ ଅଭିଯୋଗ ଏବଂ ପ୍ୟାରିସଠାରେ ଶାନ୍ତି ସନ୍ଧିବେଳେ ଅସନ୍ତୋଷ ବି ପ୍ରକଟ କରାଯାଇଥିଲା—ଇଟାଲୀର "ଦାବୀ" ପ୍ରତି ଅବହେଳା କରାଯାଇଛି ବୋଲି ଭାବ ପ୍ରକାଶିତ ହେଲା । ସାମ୍ରାଜ୍ୟ-ବାଦୀ ଓ ବୁର୍ଜୋୟାମାନେ ନୂତନ ଉପନିବେଶ ରାଜ୍ୟ ସଂଯୋଗ ଓ ଶୋଷଣକୁ ଚାହିଁ ରହିଲେ ଏବଂ ସେହି ଭାବରେ ନିଜ ଦେଶରେ ଆର୍ଥିକ ଚାପ ଲାଘବ କରିବେ ବୋଲି ଆଶା ବାନ୍ଧିଥିଲେ ।

କାରଣ ଯୁଦ୍ଧ ପରେ ଇଟାଲୀର ଅବସ୍ଥା ଅତି ଖରାପ ଥିଲା ଏବଂ ଅନ୍ୟ ଯେ କୌଣସି ମିତ୍ରରାଜ୍ୟ ଅପେକ୍ଷା ଏହାର ଅଧିକ ଶକ୍ତିକ୍ଷୟ ହୋଇ ପଡ଼ିଥିଲା । ଅର୍ଥନୈତିକ ବ୍ୟବସ୍ଥା ଭାଙ୍ଗି

ପଡ଼ିଲା ପରି ବୋଧ ହେଲା ଏବଂ ସୋସାଲିଜମ ଓ କମ୍ୟୁନିଜମ ମତବାଦ ପୋଷଣ କରୁଥିବା ଲୋକଙ୍କ ସଂଖ୍ୟା ବୃଦ୍ଧି ପାଇଲା । ସେମାନଙ୍କ ସମ୍ମୁଖରେ ଅବଶ୍ୟ ରୁଷର ବଲସେଭିକ ଦୃଷ୍ଟାନ୍ତ ରହିଥିଲା । ଏକ ପକ୍ଷରେ କଳକାରଖାନା ଶ୍ରମିକ ଆର୍ଥିକ ଅବସ୍ଥାରେ କଷ୍ଟ ଭୋଗୁଥିଲେ ଏବଂ ଅନ୍ୟ ପକ୍ଷରେ ବହୁ ସଂଖ୍ୟକ ସୈନିକଙ୍କୁ ସୈନିକ କାର୍ଯ୍ୟରୁ ବାହାର କରି ଦିଆଯାଇଥାଏ ଏବଂ ସେମାନେ କିଛି କାମ ନ ପାଇ ବୁଲୁଥିଲେ । ବିଶୃଙ୍ଖଳା ବଢ଼ିଲା ଏବଂ ଶ୍ରମିକମାନଙ୍କର ଉମବର୍ଦ୍ଧିଷ୍ଣୁ ଶକ୍ତିକୁ ବିରୋଧ କରିବା ନିମନ୍ତେ ମଧ୍ୟବିତ୍ତ ଶ୍ରେଣୀର ନେତାମାନେ ଏହି ସୈନ୍ୟ-ମାନଙ୍କୁ ସଙ୍ଗଠିତ କରିବା ପାଇଁ ଚେଷ୍ଟା କଲେ । ୧୯୨୦ ଗ୍ରୀଷ୍ମକାଳରେ ଏକ ସଙ୍କଟ ଉପୁଜିଲା । ଧାତୁ ( Metal ) ଶ୍ରମିକ ୟୁନିୟନ ଅଧିକା ମଜୁରି ଦାବି କଲେ । ଏହାର ସଭ୍ୟ ସଂଖ୍ୟା ୧,୫୦,୦୦୦ ଥିଲା । ଏହି ଦାବୀକୁ ଅଗ୍ରାହ୍ୟ କରାଗଲା ଏବଂ ତେଣୁ ଶ୍ରମିକମାନେ ଏକ ନୂତନ ଉପାୟରେ ଧର୍ମଘଟ କରିବା ନିମନ୍ତେ ସ୍ଥିର କଲେ—ଏହାକୁ "କାରଖାନା ଭିତରକୁ ଯାଇ ଧର୍ମଘଟ" ( Striking as the Job ) କହନ୍ତି । ଏହାର ଅର୍ଥ ଶ୍ରମିକମାନେ କାରଖାନାକୁ ଗଲେ; କିନ୍ତୁ କିଛି କାମ କଲେ ନାହିଁ ଏବଂ ଅନ୍ୟମାନଙ୍କୁ କାମ କରାଇଦେଲେ ନାହିଁ । ଏହାକୁ ସିଣ୍ଡିକାଲିଷ୍ଟ ( Sundicalist ) କାର୍ଯ୍ୟ ପନ୍ଥା କହନ୍ତି—ବହୁ କାଳ ପୂର୍ବେ ଫରାସୀ ଶ୍ରମିକମାନେ ଏହା କରିଥିଲେ । କାରଖାନା ମାଲିକମାନେ ଏହି ପ୍ରତିରୋଧକାରୀ ଧର୍ମଘଟ ଦବାଇବା ନିମନ୍ତେ ସେମାନଙ୍କର କାରଖାନା ବନ୍ଦ କରିଦେଲେ । ତେଣୁ ଶ୍ରମିକମାନେ କାରଖାନା ସବୁ ଦଖଲ କଲେ ଏବଂ ସାମ୍ୟବାଦୀ ଧାରାରେ କାର୍ଯ୍ୟ କରିବାକୁ ଚେଷ୍ଟା କଲେ ।

ଶ୍ରମିକମାନଙ୍କର ଏହି କାର୍ଯ୍ୟ ନିର୍ଦ୍ଦିଷ୍ଟରୂପେ ବିପ୍ଳବମୂଳକ ଥିଲା ଏବଂ ଯଦି ଜୋର ଦିଆଯାଇଥାନ୍ତା, ହୁଏତ ଏକ ସାମାଜିକ ବିପ୍ଳବ ହୋଇଥାନ୍ତା ନଚେତ୍ ବ୍ୟର୍ଥ ହୋଇଥାନ୍ତା । ଦୀର୍ଘକାଳ ପର୍ଯ୍ୟନ୍ତ କୌଣସି ମଧ୍ୟମ ଅବସ୍ଥା ରହି ନ ଥାନ୍ତା । ସେତେବେଳେ ଇଟାଲିରେ ସୋସଲିଷ୍ଟ ପାର୍ଟି ଅତ୍ୟନ୍ତ ଦୃଢ଼ ଥିଲା । ଏହି ଟ୍ରେଡ୍ ଇଉନିୟନମାନଙ୍କ ଛଡ଼ା ଏହା ଆୟତ୍ତରେ ତିନିହଜାର ମ୍ୟୁନିସିପାଲିଟି ଥିଲା ଏବଂ ପାର୍ଲିମେଣ୍ଟକୁ ୧୫୦ ସଦସ୍ୟ ପଠାଉଥିଲା, ତାହାର ଅର୍ଥ ପାର୍ଲିମେଣ୍ଟ ସଭ୍ୟ ସଂଖ୍ୟାର ⅓ ସଭ୍ୟ ସୋସଲିଷ୍ଟ ପାର୍ଟରେ ଥିଲେ । କୌଣସି ପ୍ରଭାବଶାଳୀ ଓ ସୁସଂଗଠିତ ଦଳ ଯଦି ସମ୍ପତ୍ତିର ମାଲିକ ହୁଏ ଓ ଶାସନରେ ବଡ଼ ବଡ଼ ପଦବୀ ଅଧିକାର କରେ, ତେବେ ତାହା ଆଉ ବିପ୍ଳବୀ ହୋଇ ରହେନା । ଏହା ହୋଇ ସୁଦ୍ଧା ନରମ ପନ୍ଥୀଙ୍କ ସମେତ ଏହି ଦଳ ଶ୍ରମିକମାନେ କାରଖାନା ଦଖଲ କରିବା କାର୍ଯ୍ୟକୁ ପସନ୍ଦ କଲା । ଏହା କରିସାରି ଦଳ ଅଉ କିଛି କଲା ନାହିଁ । ଏହା ପଛକୁ ଯିବାକୁ ଇଚ୍ଛୁକ ନ ଥିଲା, କିନ୍ତୁ ଆଗକୁ ଯିବାକୁ ବି ସାହସ କଲା ନାହିଁ । ନ୍ୟୂନତମ ପ୍ରତିରୋଧର ମଧ୍ୟମ ପନ୍ଥାକୁ ଏହା ବାଛି ନେଲା ଏବଂ ସନ୍ଦିଗ୍ଧମନା ଲୋକଙ୍କ ପରି ଓ ଯେଉଁ ଲୋକ ଦ୍ୱିଧା କରନ୍ତି ଏବଂ ଠିକଣା ବେଳେ ସେମାନଙ୍କର ମନ ସ୍ଥିର କରି ପାରନ୍ତି ନାହିଁ ସେହିପରି ସୋସଲିଷ୍ଟ ନେତାଙ୍କୁ ବାଦ୍ ଦେଇ ଆଗକୁ ଯିବାକୁ ସେମାନେ ବାହାରିଲେ ନାହିଁ ଏବଂ କାଳଗତିରେ ଲୋପ ପାଇଗଲେ । ଶ୍ରମିକ ନେତା ଓ ଅଗ୍ରଗାମୀ ଦଳର ଦ୍ୱିଧା ଯୋଗୁଁ ଶ୍ରମିକମାନଙ୍କର କାରଖାନା ଦଖଲ ବୃଥା ହୋଇଗଲା ।

ଏଥିରେ ମାଲିକ ଶ୍ରେଣୀ ବଡ଼ ଉତ୍ସାହିତ ହେଲେ । ସେମାନେ ଶ୍ରମିକ ଓ ତାଙ୍କ ନେତାଙ୍କ ମାପ ପାଇଗଲେ ଏବଂ ଯେପରି ଆଶଙ୍କା କରାଯାଉଥିଲା ତାହା ଅପେକ୍ଷା ଶ୍ରମିକ-ମାନଙ୍କ ଶକ୍ତି ବହୁତ କମ୍ ବୋଲି ଦେଖିଲେ ଏବଂ ଏବେ ଶ୍ରମିକ ଆନ୍ଦୋଳନ ଓ ସୋସଲିଷ୍ଟ ପାର୍ଟିକୁ ଦମନ କରି ପ୍ରତିଶୋଧ ନେବା ନିମନ୍ତେ ଯୋଜନା କଲେ । ବେନିଟୋ ମୁସୋଲିନୀ ଯୁଦ୍ଧଫେରନ୍ତା ସୈନିକମାନଙ୍କୁ ନେଇ ୧୯୧୯ରେ ଯେଉଁ ସ୍ୱେଚ୍ଛାସେବକ ବାହିନୀ ଗଢ଼ିଥିଲେ ସେଥିପ୍ରତି ବିଶେଷଭାବରେ ଦୃଷ୍ଟି ପକାଇଲେ । ଏଗୁଡ଼ିକୁ "ଫାଶି ଡି କମ୍ବାଟିମେଣ୍ଟି" ବା "ଲଢୁଆ ଦଳ" କୁହାଯାଉଥିଲା ଏବଂ ସେମାନଙ୍କ ମୁଖ୍ୟ କାର୍ଯ୍ୟ ହେଲା ସୁଯୋଗ ପଡ଼ିଲେ ସୋସଲିଷ୍ଟ, ଅଗ୍ରଗାମୀ ଦଳ ଓ ସେମାନଙ୍କ ଅନୁଷ୍ଠାନ ସବୁ ଉପରେ ଆକ୍ରମଣ କରିବା । ଏହିରୂପେ ସୋସଲିଷ୍ଟ ସମ୍ବାଦପତ୍ରର ଛାପାଖାନା ସେମାନେ ଧ୍ୱଂସ କଲେ କିମ୍ବା ସୋସଲିଷ୍ଟ ବା ଅଗ୍ରଗାମୀ ଦଳ ଅଧୀନରେ ଥିବା ମ୍ୟୁନିସିପାଲିଟି ବା ସମବାୟ ସମିତି ଉପରେ ଆକ୍ରମଣ କଲେ । ଶ୍ରମିକ ଓ ସାମ୍ୟବାଦ ବିରୁଦ୍ଧରେ ଏହି ଲଢ଼ାଇରେ ସାଧାରଣତଃ ବଡ଼ ବଡ଼ କାରଖାନା ମାଲିକ ଓ ଉଚ୍ଚ ବୁର୍ଜୋୟା ଶ୍ରେଣୀ ଏହି "ଲଢୁଆ ଦଳ"ମାନଙ୍କୁ ସହାନୁଭୂତି ଓ ଅର୍ଥ ସାହାଯ୍ୟ କଲେ । ଏପରି କି ସରକାର ବି ଏଥିପ୍ରତି ଉଦାସୀନ ରହିଥିଲା । କାରଣ ସୋସଲିଷ୍ଟ ପାର୍ଟିକୁ ଭାଙ୍ଗିବା ସରକାରର ବି ଇଚ୍ଛା ଥିଲା ।

ଏହି ଲଢୁଆ ଦଳସବୁ ବା "ଫାସି ଡି କମ୍ବାଟିମେଣ୍ଟି" ଅଥବା ଯାହାକୁ ଆମେ ସଂକ୍ଷେପରେ ଫାସିଷ୍ଟବୋଲି କହୁ, ତାକୁ ଯେ ସଂଗଠିତ କରିଥିଲା, ସେ ବେନିଟୋ ମୁସୋଲିନୀ କିଏ ? ସେତେବେଳକୁ ସେ ଜଣେ ଯୁବକ (ଏବେ ତାଙ୍କ ବୟସ ୫୦ ହେଲାଣି, ୧୮୮୩ରେ ତାଙ୍କର ଜନ୍ମ)—ନାନା କ୍ଷେତ୍ରରେ ସେ କାମ କରିଥିଲେ । ତାଙ୍କ ପିତା ଥିଲେ ଜଣେ କମାର, ସେ ସାମ୍ୟବାଦୀ ଥିଲେ ଏବଂ ତେଣୁ ବେନିଟୋ ଏହି ସାମ୍ୟବାଦୀ ପୃଷ୍ଠଭୂମିକା ଉପରେ ବଢ଼ିଲେ । ଯୁବାବସ୍ଥାରେ ସେ ଜଣେ ବଡ଼ ଚରମ ଆନ୍ଦୋଳନକାରୀ ଥିଲେ ଏବଂ ତାଙ୍କର ବିପ୍ଳବୀ ପ୍ରବୃତ୍ତି ହେତୁ କେତେକ ସ୍ୱଇଜରଲାଣ୍ଡ ସେନାନିବାସରୁ ତାଙ୍କୁ ତଡ଼ି ଦିଆଯାଇଥିଲା । ନରମାପନ୍ଥିଆ ସକାଶେ ସେ ନରମପନ୍ଥୀ ସୋସଲିଷ୍ଟ ନେତାମାନଙ୍କୁ ଭୀଷଣ ଭାବରେ ଆକ୍ରମଣ କରିଥିଲେ । ସେ ଷ୍ଟେଟ (ରାଜ୍ୟର ଶାସନ) ବିରୁଦ୍ଧରେ ବୋମା ଓ ଅନ୍ୟ ଆତଙ୍କବାଦୀ ପନ୍ଥା ସବୁ ପ୍ରୟୋଗକୁ ପ୍ରକାଶ୍ୟ ଭାବରେ ସମର୍ଥନ କଲେ । ତୁର୍କି ସହିତ ଇଟାଲିର ଯୁଦ୍ଧ ଲାଗିଥିଲା ବେଳେ ଅଧିକାଂଶ ସୋସଲିଷ୍ଟ ନେତା ଯୁଦ୍ଧକୁ ସମର୍ଥନ କଲେ । ମୁସୋଲିନୀ ସେପରି କଲେ ନାହିଁ, ସେ ଏହାର ବିରୋଧୀ ଥିଲେ; ଏବଂ କେତେକ ହିଂସାମୂଳକ କାର୍ଯ୍ୟ ନିମନ୍ତେ କେତେକ ମାସ ପାଇଁ ସେ କାରାବାସ ବି ଭୋଗିଲେ । ଯୁଦ୍ଧକୁ ସମର୍ଥନ କରିଥିବା ହେତୁ ସେ ନରମପନ୍ଥୀ ସୋସଲିଷ୍ଟ ନେତାମାନଙ୍କୁ ତୀବ୍ର ଭାବରେ ଆକ୍ରମଣ କଲେ ଏବଂ ସୋସଲିଷ୍ଟ ପାର୍ଟିରୁ ସେମାନଙ୍କୁ ତଡ଼ିଦେଲେ । ମିଲାନର ସୋସଲିଷ୍ଟ ଦୈନିକ ସମ୍ବାଦପତ୍ର 'ଅବନ୍ତୀ' (**Avanti**) ସେ ସମ୍ପାଦକ ହୋଇଥିଲେ ଏବଂ ହିଂସା ଦ୍ୱାରା ହିଂସାର ସମ୍ମୁଖୀନ ହେବା ନିମନ୍ତେ ସେ

ହିଂସାକୁ ଦମନ ଶ୍ରମିକମାନଙ୍କୁ ପରାମର୍ଶ ଦେବାକୁ ଲାଗିଲେ । ନରମପନ୍ଥୀ ମାର୍କ୍ସବାଦୀ ନେତାମାନେ ଏପରି ହିଂସାକୁ ଉତ୍ତେଜନା ଦେବାରେ ଘୋର ଆପତ୍ତି ଦର୍ଶାଇଲେ ।

ତା ପରେ ଆସିଲା ପୃଥିବୀ ଯୁଦ୍ଧ । କେତେକ ମାସ ପର୍ଯ୍ୟନ୍ତ ମୁସୋଲିନୀ ଯୁଦ୍ଧର ବିରୋଧ କରୁଥିଲେ ଏବଂ ଇଟାଲୀ ନିରପେକ୍ଷ ରହିବା ସପକ୍ଷରେ ମତପ୍ରକାଶ କଲେ । ତା ପରେ ହଠାତ୍ ନିଜର ମତ ପରିବର୍ତ୍ତନ କଲେ ଅଥବା ତାହା ପ୍ରକାଶ କରିବାର ଭଙ୍ଗୀ ବଦଳାଇଲେ ଏବଂ ଇଟାଲୀ ମିତ୍ର ପକ୍ଷରେ ଯୋଗ ଦେବା ସପକ୍ଷରେ ମତ ଘୋଷଣା କଲେ । ସେ ସୋସଲିଷ୍ଟ କାଗଜ ଛାଡ଼ି ଆସିଲେ ଏବଂ ଏହି ନୂତନ ନୀତି ପ୍ରଚାର କରୁଥିବା ଏକ ନୂଆ କାଗଜ ସମ୍ପାଦନ କଲେ । ସୋସଲିଷ୍ଟ ପାର୍ଟିରୁ ତାଙ୍କୁ ତଡ଼ି ଦିଆଗଲା । ପରେ ସେ ଜଣେ ସାଧାରଣ ସୈନିକ ଭାବରେ କାମ କରିବା ନିମନ୍ତେ ସ୍ୱେଚ୍ଛାରେ ବାହାରିଲେ; ଇଟାଲୀ ରଣକ୍ଷେତ୍ରରେ କାର୍ଯ୍ୟ କଲେ ଏବଂ ଆହତ ହୋଇଥିଲେ ।

ଯୁଦ୍ଧ ପରେ ମୁସୋଲିନୀ ଆଉ ନିଜକୁ ସୋସଲିଷ୍ଟ ବୋଲି ପରିଚୟ ଦେଲେ ନାହିଁ । ସେ ପଥଭ୍ରଷ୍ଟ ହୋଇ ବୁଲିଲେ—ତାଙ୍କର ପୁରୁଣା ଦଳ ତାଙ୍କୁ ନାପସନ୍ଦ କରୁଥିଲା ଏବଂ ଶ୍ରମିକ ଶ୍ରେଣୀ ଉପରେ ଆଉ ପ୍ରଭାବ ନ ଥିଲା । ସେ ଶାନ୍ତିବାଦ ଓ ସାମ୍ୟବାଦ ଏବଂ ତାହା ସଙ୍ଗେ ସଙ୍ଗେ ବୁର୍ଜୋୟା ଷ୍ଟେଟକୁ ମଧ୍ୟ ନିନ୍ଦା କରିବାକୁ ଲାଗିଲେ । ସେ ପ୍ରତ୍ୟେକ ପ୍ରକାର ଷ୍ଟେଟର ନିନ୍ଦା କଲେ ଏବଂ ନିଜକୁ ଜଣେ 'ବ୍ୟକ୍ତିତ୍ୱବାଦୀ' ବୋଲି ପରିଚୟ ଦେଲେ ଓ ଅରାଜକତାର ପ୍ରଶଂସା କଲେ । ଏହା ସେ ଲେଖିଥିଲେ । ସେ ୧୯୧୯ ମାର୍ଚ୍ଚ ମାସରେ 'ଫାସିଷ୍ଟୋ' ବା ଫାସିଜିମ ସ୍ଥାପନ କଲେ ଏବଂ ଲଢ଼ୁଆ ଦଳରେ ନିକମା ସୈନିକମାନଙ୍କୁ ଭର୍ତ୍ତି କଲେ । ଏହି ଦଳମାନଙ୍କର ଉଦ୍ଦେଶ୍ୟ ଥିଲା ହିଂସା, ଏବଂ ସରକାର କିଛି ହସ୍ତକ୍ଷେପ ନ କରିବାରୁ ଏହା ଅଧିକ ସାହସୀ ଓ ଉଦ୍ଧତ ହେବାକୁ ଲାଗିଲା । ବେଳେ ବେଳେ ସହର-ମାନଙ୍କରେ ଶ୍ରମିକ ଶ୍ରେଣୀଙ୍କ ସହ ସେମାନଙ୍କର ରୀତିମତ ଯୁଦ୍ଧ ହେଉଥିଲା ଏବଂ ଏମାନଙ୍କୁ ତଡ଼ି ଦିଆଯାଉଥିଲା । କିନ୍ତୁ ସୋସଲିଷ୍ଟ ନେତାମାନେ ଶ୍ରମିକମାନଙ୍କର ଏହି ଲଢ଼ୁଆ ମନୋଭାବର ବିରୋଧୀ ଥିଲେ ଏବଂ ଧୈର୍ଯ୍ୟର ସହ ଶାନ୍ତିପୂର୍ଣ୍ଣ ଭାବରେ ଏହି ଫାସିଷ୍ଟ ଆତଙ୍କର ସମ୍ମୁଖୀନ ହେବାକୁ ସେମାନେ ପରାମର୍ଶ ଦେଲେ । ସେମାନେ ଆଶା କରୁଥିଲେ ଯେ ଫାସିଜିମ ଏହି ରୂପେ ହ୍ରାସ ଲଭିବ । ଏହା ପରିବର୍ତ୍ତେ ଫାସିଷ୍ଟ ଦଳର ଶକ୍ତି ବୃଦ୍ଧି ହେଲା—କାରଣ ଧନୀ ଲୋକେ ତାଙ୍କୁ ଅର୍ଥ ସାହାଯ୍ୟ କରୁଥିଲେ ଏବଂ ସରକାର ବି କିଛି ହସ୍ତକ୍ଷେପ କରୁ ନ ଥିଲା—ଏଣେ ଜନସାଧାରଣଙ୍କର ଯାହା ବା ପ୍ରତିରୋଧ ଶକ୍ତି ଥିଲା ତାହା ସେମାନେ ହରାଇଲେ । ଫାସିଷ୍ଟ ହିଂସାକୁ ଶ୍ରମିକ ଅସ୍ତ୍ର ଅର୍ଥାତ୍ ଧର୍ମଘଟ ଦ୍ୱାରା ସମ୍ମୁଖୀନ ହେବାର ବି ଉଦ୍ୟମ ହୋଇ ନ ଥିଲା ।

ଦୁଇଟି ସ୍ୱବିରୋଧୀ ନୀତି ବିଧାନ କରି ମୁସୋଲିନୀଙ୍କ ନେତୃତ୍ୱରେ ଫାସିଷ୍ଟମାନେ କାମ କରିବାକୁ ଲାଗିଲେ । ପ୍ରଥମ କଥା ହେଉଛି ସେମାନେ ପ୍ରଧାନତଃ ସୋସଲିଜିମ୍ ଓ

କମ୍ୟୁନିଜିମ୍‌ର ଶତ୍ରୁ ଏବଂ ତେଣୁ ସମ୍ପତ୍ତିଶାଳୀ ଶ୍ରେଣୀଙ୍କ ସମର୍ଥନ ପାଇଲେ । କିନ୍ତୁ ମୁସୋଲିନୀ ଥିଲେ ଜଣେ ପୁରାତନ ସାମ୍ୟବାଦୀ ଆନ୍ଦୋଳନକାରୀ ଓ ବିପ୍ଳବୀ ଏବଂ ସେ ବହୁତ ପୁଞ୍ଜିବାଦ ବିରୋଧୀ ଧ୍ୱନିମାନ କଲେ—ଗରିବ ଶ୍ରେଣୀ ତାହା ପସନ୍ଦ କଲେ । ଆନ୍ଦୋଳନ ବ୍ୟବସାୟରେ ବିଶେଷତଃ କମ୍ୟୁନିଷ୍ଟମାନଙ୍କଠାରୁ ବହୁତ କୌଶଳ ସେ ଶିଖିଥିଲେ । ତେଣୁ ଫାସିଜିମ୍ ଏକ ଅଦ୍ଭୁତ ସମ୍ମିଶ୍ରଣ ହେଲା ଏବଂ ବିଭିନ୍ନ ଭାବରେ ତାର ବ୍ୟାଖ୍ୟା କରାଯାଇପାରେ । ମୁଖ୍ୟତଃ ଏହା ଏକ ପୁଞ୍ଜିବାଦୀ ଆନ୍ଦୋଳନ, ତଥାପି ଏହା ଅନେକ ଧ୍ୱନି ଉଠାଇଲା ଯାହା ପୁଞ୍ଜିବାଦ ପକ୍ଷରେ ବିପଜ୍ଜନକ । ଏହିରୂପେ ଏହା ଭିତରେ ବିଭିନ୍ନ ପୋଷାକଧାରୀ ଲୋକ ସବୁ ରହିଲେ । ମଧ୍ୟବିତ୍ତ ଶ୍ରେଣୀ ବିଶେଷତଃ ଅକର୍ମୀ ନିମ୍ନମଧ୍ୟବିତ୍ତ ଶ୍ରେଣୀ ଏହାର ମେରୁଦଣ୍ଡ ଥିଲେ । ଅକର୍ମୀ ଓ ଅପଟୁ ଶ୍ରମିକମାନେ ଯେଉଁମାନେ ଶ୍ରମିକ ସଂଘରେ ଅନ୍ତର୍ଭୁକ୍ତ ହୋଇ ନ ଥିଲେ, ସେମାନେ କ୍ଷମତା ପାଇବା ମାତ୍ରକେ କ୍ରମେ ଏଥିରେ ପଶିଲେ; କାରଣ ସଫଳତା ପରି କିଛି ସଫଳ ହୁଏ ନା । ଫାସିଷ୍ଟମାନେ ଦୋକାନୀମାନଙ୍କୁ ଦର କମ୍ କରିବା ନିମନ୍ତେ ବାଧ୍ୟ କଲେ ଏବଂ ଏହିରୂପେ ଗରିବମାନଙ୍କର ବି ସଦିଚ୍ଛା ଲାଭ କଲେ । ଅନେକ ଦୁଃସାହସିକ ଲୋକ ବି ଫାସିଷ୍ଟ ଦଳରେ ପଶିଲେ । ଏସବୁ ସତ୍ତ୍ୱେ ଫାସିଜିମ୍ ଏକ ସଂଖ୍ୟାନ୍ୟୁନ ଆନ୍ଦୋଳନ ହୋଇ ରହିଲା ।

ତେଣୁ ଯେତେବେଳେ ସୋସିଆଲିଷ୍ଟ ନେତାମାନେ ସନ୍ଦେହ କଲେ, ଦ୍ୱିଧା କଲେ, ନିଜ ଭିତରେ କଳହ ଲଗାଇଲେ ଏବଂ ତାଙ୍କ ଦଳ ଭିତରେ ଭେଦଭାବ ଥିଲା, ସେତେବେଳେ ଫାସିଷ୍ଟମାନଙ୍କ କ୍ଷମତା ବଢ଼ିଲା । ରକ୍ଷିତ ସେନା ଫାସିଜିମ୍ ପ୍ରତି ବନ୍ଧୁଭାବାପନ୍ନ ଥିଲା ଏବଂ ମୁସୋଲିନୀ ସେନାବାହିନୀର ସେନାପତିମାନଙ୍କୁ ନିଜଆଡ଼କୁ ଟାଣି ନେଲେ । ଏପରି ବିବିଧ ଓ ବିରୋଧୀ ଲୋକମାନଙ୍କୁ ନିଜ ଆଡ଼କୁ ଟାଣି ଆଣିବା ଓ ଏକତ୍ର ଚଳାଇବା ମୁସୋଲିନୀଙ୍କ ପକ୍ଷରେ ଏକ ଅଦ୍ଭୁତ କାର୍ଯ୍ୟ ଓ ତାଙ୍କ ଅନୁଚରଙ୍କ ଭିତରେ ଥିବା ପ୍ରତ୍ୟେକ ଗୋଷ୍ଠୀ ଅନୁମାନ କରିବାକୁ ଲାଗିଲେ ଯେ, ଫାସିଜିମ୍ ତାଙ୍କର ନିତାନ୍ତ ଲୋଡ଼ା । ଧନୀ ଫାସିଷ୍ଟମାନେ ତାଙ୍କୁ ତାଙ୍କ ସମ୍ପତ୍ତିର ରକ୍ଷକ ଭାବରେ ଦେଖୁଥିଲେ ଏବଂ ବିଚାରୁଥିଲେ ଯେ ତାଙ୍କର ପୁଞ୍ଜିବାଦ ବିରୋଧୀ ବକ୍ତୃତା ଓ ଧ୍ୱନି ସବୁ କେବଳ ଫମ୍ପା ଆବାଜ । ଜନସାଧାରଣଙ୍କୁ ଭୁଲାଇବା ନିମନ୍ତେ ସେ ଏପରି କରନ୍ତି । ଗରିବ ଫାସିଷ୍ଟ ବିଶ୍ୱାସ କଲା ଯେ, ଫାସିଜିମ୍‌ରେ ପ୍ରକୃତ ଜିନିଷ ହେଉଛି ପୁଞ୍ଜିବାଦର ବିରୋଧ କରିବା ଏବଂ ଧନୀ ଲୋକଙ୍କ ଖୁସି ସକାଶେ ଆଉ ସବୁ କଥା କୁହାହେଉଛି । ତେଣୁ ମୁସୋଲିନୀ ଜଣକୁ ଅପର ବିରୁଦ୍ଧରେ ଖେଳାଇବାକୁ ଚେଷ୍ଟା କଲେ ଏବଂ ଦିନେ ଧନୀଙ୍କ ସପକ୍ଷରେ କହିଲେ ତ ଅନ୍ୟ ଦିନେ ଗରିବଙ୍କ ସପକ୍ଷରେ କହୁଥିଲେ; କିନ୍ତୁ ପ୍ରକୃତରେ ସେ ସମ୍ପତ୍ତିବାନ ଶ୍ରେଣୀର ରକ୍ଷକ ଥିଲେ, ସେମାନେ ତାଙ୍କୁ ଅର୍ଥ ସାହାଯ୍ୟ କରୁଥିଲେ ଏବଂ ଯେଉଁ ଶ୍ରମିକ ଓ ସାମ୍ୟବାଦ ଯାଦକାଳ ହେଲା ତାଙ୍କୁ ଭୟ ଦେଖାଇ ଆସିଛି, ତାହାର କ୍ଷମତା ଧ୍ୱଂସ କରିବା ନିମନ୍ତେ ବଦ୍ଧପରିକର ହୋଇଥିଲେ ।

ଶେଷରେ ୧୯୨୨ ଅକ୍ଟୋବର ମାସରେ ରକ୍ଷିତ ସେନାର ସେନାବାହିନୀଙ୍କଦ୍ୱାରା ପରିପୁଷ୍ଟିତ ହୋଇ ଫାସିଷ୍ଟ ଦଳସବୁ ରୋମ ଆଡ଼କୁ ଯାତ୍ରା କଲେ । ଯେଉଁ ପ୍ରଧାନମନ୍ତ୍ରୀ ଏ ପର୍ଯ୍ୟନ୍ତ ଫାସିଷ୍ଟ କାର୍ଯ୍ୟକଳାପକୁ ସହ୍ୟ କରୁଥିଲେ ସେ ସାମରିକ ଆଇନ ଘୋଷଣା କଲେ । କିନ୍ତୁ ଏହା ଅତି ବିଳମ୍ବରେ ହେଲା ଏବଂ ରାଜା ନିଜେ ଏବେ ମୁସୋଲିନୀ ପକ୍ଷରେ ଥିଲେ । ସେ ( ରାଜା ) ସାମରିକ ଆଇନ ଆଦେଶ ରଦ୍ଦ କଲେ, ତାଙ୍କ ପ୍ରଧାନମନ୍ତ୍ରୀର ଇସ୍ତଫା ଗ୍ରହଣ କଲେ ଏବଂ ତତ୍ପରେ ପ୍ରଧାନମନ୍ତ୍ରୀ ହେବା ପାଇଁ ଓ ମନ୍ତ୍ରୀ ଦଳ ଗଢ଼ିବା ନିମନ୍ତେ ମୁସୋଲିନୀଙ୍କୁ ନିମନ୍ତ୍ରଣ କଲେ । ଫାସିଷ୍ଟସେନା ୧୯୨୨ ଅକ୍ଟୋବର ୩୦ ତାରିଖରେ ରୋମରେ ପହଞ୍ଚିଲେ ଏବଂ ସେହିଦିନ ପ୍ରଧାନମନ୍ତ୍ରୀ ହେବା ନିମନ୍ତେ ମୁସୋଲିନୀ ଟ୍ରେନରେ ମିଲାନରୁ ଆସି ପହଞ୍ଚିଲେ ।

ଫାସିଜମ ଜୟଯୁକ୍ତ ହେଲା ଏବଂ ମୁସୋଲିନୀ ହାତକୁ କ୍ଷମତା ଆସିଲା । କିନ୍ତୁ ତାଙ୍କର ଉଦ୍ଦେଶ୍ୟ କଣ ଥିଲା ? ତାଙ୍କର କାର୍ଯ୍ୟପନ୍ଥା ଓ ନୀତି କଣ ଥିଲା ? ବଡ଼ ବଡ଼ ଆନ୍ଦୋଳନ ସାଧାରଣତଃ ଏକ ସୁନିର୍ଦ୍ଦିଷ୍ଟ ଆଦର୍ଶବାଦ ଉପରେ ଗତି କରେ—ଏହା କେତେକ ନିର୍ଦ୍ଦିଷ୍ଟ ନୀତି ଉପରେ ଚାଲେ ଏବଂ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ କାର୍ଯ୍ୟପନ୍ଥା ଥାଏ । ଫାସିଜମ୍‌ର ବିଚିତ୍ର ବିଶେଷତ୍ୱ ହେଉଛି ଏହାର କୌଣସି ନିର୍ଦ୍ଦିଷ୍ଟ ନୀତି, ଆଦର୍ଶବାଦ ବା ଦର୍ଶନ ନାହିଁ—ଅବଶ୍ୟ ଯଦି ସୋସଲିଜମ, କମ୍ୟୁନିଜମ ଓ ଉଦାରନୀତିକ ଭାବରେ ବିରୋଧକୁ ଦର୍ଶନ ବୋଲି ବିଚାର କରାଯାଇପାରେ ତାହା ଅଲଗ ଏକ କଥା । ଫାସିଷ୍ଟ ଦଳ ଗଢ଼ାହେବାର ଏକ ବର୍ଷ ପରେ ୧୯୨୦ରେ ଫାସିଷ୍ଟମାନଙ୍କ ସମ୍ବନ୍ଧରେ ମୁସୋଲିନୀ ଘୋଷଣା କରି କହିଥିଲେ—

"କୌଣସି ନିର୍ଦ୍ଦିଷ୍ଟ ନୀତିରେ ବନ୍ଧା ନ ହୋଇ ସେମାନେ ଅବିରାମଭାବରେ ଗୋଟିଏ ଲକ୍ଷ୍ୟକୁ ଅଗ୍ରସର ହୁଅନ୍ତି—ତାହା ହେଉଛି ଇଟାଲୀ ଲୋକଙ୍କର ମଙ୍ଗଳ ।"

ଏହା ଅବଶ୍ୟ କୌଣସି ନିର୍ଦ୍ଦିଷ୍ଟ ନୀତି ନୁହେଁ । କାରଣ ପ୍ରତ୍ୟେକ ବ୍ୟକ୍ତି ନିଜର ଦେଶବାସୀଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛି ବୋଲି କହିପାରେ । ରୋମ ଯାତ୍ରାର ଏକ ମାସ ପୂର୍ବରୁ ୧୯୨୨ରେ ମୁସୋଲିନୀ କହିଥିଲେ "ଆମର କାର୍ଯ୍ୟପନ୍ଥା ବଡ଼ ସରଳ, ଆମେ ଇଟାଲୀ ଶାସନ କରିବାକୁ ଚାହୁଁ ।"

ଏକ ଇଟାଲୀୟ ଅଭିଧାନରେ ଫାସିଜିମର ଆରମ୍ଭ ସମ୍ବନ୍ଧରେ ମୁସୋଲିନୀ ଏକ ପ୍ରବନ୍ଧ ଲେଖି ଏହା ଅଦ୍ଭୁତ ପରିଷ୍କାର କରି ଦେଇଛନ୍ତି । ସେ ଏଥିରେ କହିଛନ୍ତି ଯେ, ସେ ରୋମ ଯାତ୍ରା କଲାବେଳେ ଭବିଷ୍ୟତ ସମ୍ବନ୍ଧରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଯୋଜନା ନ ଥିଲା । ତାଙ୍କର ପୂର୍ବ ସାମ୍ୟବାଦୀ ଶିକ୍ଷା ଫଳରେ ରାଜନୀତିକ ସଙ୍କଟବେଳେ କାର୍ଯ୍ୟ କରିବାର ଯେ ପ୍ରେରଣା ତାଙ୍କର ଥିଲା ତାହାଦ୍ୱାରା ଏହି ସାହସିକ କାର୍ଯ୍ୟ କରିବା ନିମନ୍ତେ ସେ ବାହାରିପଡ଼ିଲେ ।

ଫାସିଜମ ଓ କମ୍ୟୁନିଜମ ଶାସନ ଭାବରେ ପରସ୍ପର ବିରୋଧୀ ହୋଇଥିଲେ ମଧ୍ୟ ସେମାନଙ୍କର କେତେକ କାର୍ଯ୍ୟ ସମାନ । କିନ୍ତୁ ଆଦର୍ଶ ଦିଗରୁ ଦେଖିଲେ ଏହି ଦୁଇ ମତ ଭିତରେ ଆକାଶପାତାଳ ପ୍ରଭେଦ । କାରଣ ଆମେ ଦେଖିଛେ ଫାସିଜମ୍‌ର କୌଣସି ମୂଳ ମତ ନାହିଁ, ଏହା ଏକ ଶୂନ୍ୟରୁ ଆରମ୍ଭ କରେ । ଅନ୍ୟ ପକ୍ଷରେ କମ୍ୟୁନିଜମ ବା ମାର୍କସବାଦ ଏକ ଜଟିଲ ଆର୍ଥନୀତିକ ତଥ୍ୟ ଓ ଐତିହାସିକ ଦୃଷ୍ଟିକୋଣ—ଏଥିପାଇଁ କଠୋର ମାନସିକ ଶୃଙ୍ଖଳା ଆବଶ୍ୟକ ।

ଫାସିଜମର କୌଣସି ମତ ବା ଭିତ୍ତି ନ ଥିଲେ ମଧ୍ୟ ଏହାର ଏକ ନିର୍ଦ୍ଦିଷ୍ଟ ହିଂସା ଓ ଆତଙ୍କବାଦ କୌଶଳ ରହିଛି ଏବଂ ଅତୀତ ପ୍ରତି ଏହାର କେତେକ ଦୃଷ୍ଟିକୋଣ ଏହାକୁ ଠିକଏ ବୁଝିପାରିବାରେ ଆମକୁ ସାହାଯ୍ୟ କରେ । ଏହାର ପ୍ରତୀକ ହେଉଛି ପୁରାତନ ସାମ୍ରାଜ୍ୟବାଦୀ ରୋମାନ୍ ପ୍ରତୀକ—ରୋମାନ୍ ସମ୍ରାଟ ଓ ମାଜିଷ୍ଟ୍ରେଟମାନଙ୍କ ସମ୍ମୁଖରେ ଏହା ନିଆ ହେଉଥିଲା । ଏହା ହେଉଛି ଏକ ବଡ଼ା ବାଡ଼ି (ଫାସେସ ବୋଲି ଏହାକୁ କହନ୍ତି, ତେଣୁ ଫାସିଜ୍ମୋ )—କେନ୍ଦ୍ର ସ୍ଥଳରେ ଗୋଟିଏ କୁଠାର ଥାଏ । ପୁରାତନ ରୋମାନ ଆଦର୍ଶରେ ଫଗ୍ରସୀ ସଂଗଠନ ପ୍ରତିଷ୍ଠିତ, ଏପରିକି ଏହାର ନାମକରଣ ସବୁ ବି ବହୁ ପୁରାତନ । ଫାସିଷ୍ଟ ସଲାମକୁ ଫାସିଷ୍ଟ ( Fascista ) କହନ୍ତି—ପୁରୁଣା ରୋମାନ୍ ସଲାମ ପରି ଏଥିରେ ବାହୁ ଉଠାଇ ଲମ୍ବାଇ ସଲାମ୍ କରାଯାଏ । ଏଣୁ ଫାସିଷ୍ଟମାନେ ସାମ୍ରାଜ୍ୟବାଦୀ ରୋମରୁ ପ୍ରେରଣା ପାଆନ୍ତି, ସେମାନଙ୍କର ଦୃଷ୍ଟିକୋଣ ସାମ୍ରାଜ୍ୟବାଦୀ । ସେମାନଙ୍କର ଧ୍ୱନି ହେଲା "ଆଲୋଚନାଦ୍ୱାରା ନୁହେଁ—କେବଳ ଆଜ୍ଞା ପାଳନ", ଏପରି ଆଦର୍ଶ ବୋଧହୁଏ ସେନାବାହିନୀ ପକ୍ଷରେ ଉପଯୋଗୀ, କିନ୍ତୁ ଗଣତନ୍ତ୍ର ପକ୍ଷରେ କେବେ ନୁହେଁ । ତାଙ୍କର ନେତା ମୁସୋଲିନୀ ହେଉଛନ୍ତି ଇଲ ଡ୍ୟୁସ୍ ( Il duce ) ଅର୍ଥାତ୍ ଡିକ୍‌ଟେଟର । ତାଙ୍କର ପୋଷାକରୂପେ ସେମାନେ କଳା କାମିଜ ବରଣ କଲେ ଏବଂ ତେଣୁ ସେମାନେ 'କଳା କୁର୍ତ୍ତାବାଲା' ନାମରେ ଖ୍ୟାତ ।

ଫାସିଷ୍ଟମାନଙ୍କର ଏକମାତ୍ର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ କ୍ଷମତା ଅର୍ଜନ କରିବା ହୋଇଥିବାରୁ ମୁସୋଲିନୀ ପ୍ରଧାନମନ୍ତ୍ରୀ ହେବା ଫଳରେ ସେମାନେ ତାହା ପାଇଗଲେ । ତାପରେ ସେ ତାଙ୍କର ବିରୋଧୀମାନଙ୍କୁ ଦମନ କରି ନିଜର ସ୍ଥିତି ଦୃଢ଼ କରିବା ନିମନ୍ତେ ଲାଗି ପଡ଼ିଲେ । ଅତି ଅସାଧାରଣ ଭାବରେ ହିଂସା ଓ ଆତଙ୍କବାଦ କାର୍ଯ୍ୟ କଲା । ଇତିହାସରେ ହିଂସା ଏକ ଅତି ସାଧାରଣ କଥା, କିନ୍ତୁ ସାଧାରଣତଃ ଏହା ଏକ ଯନ୍ତ୍ରଣାଦାୟକ ଆବଶ୍ୟକତା ରୂପେ ବିବେଚିତ କରାଯାଏ ଏବଂ ଏଥିପାଇଁ ବାହାନା ଖୋଜାଯାଏ ଓ ସଫେଇ ବି ଦିଆଯାଏ । ଯାହାହେଉ ଫାସିଜମ୍ ହିଂସା ପାଇଁ ଏପରି କୌଣସି କ୍ଷମାସୂଚକ ମନୋଭାବ ଦେଖାଇବାର ଆବଶ୍ୟକତା ଦେଖେ ନାହିଁ । ସେମାନେ ଏହା ଗ୍ରହଣ କଲେ ଓ ପ୍ରକାଶ୍ୟରେ ପ୍ରଶଂସା କଲେ ଏବଂ ସେମାନଙ୍କ ଉପରେ କୌଣସି ପ୍ରତିରୋଧ ନ ଥିଲେ ମଧ୍ୟ ସେମାନେ ଏହା ବ୍ୟବହାର

କଲେ । ପ୍ରହାର ଫଳରେ ବିରୁଦ୍ଧ ସଭ୍ୟମାନେ ପାର୍ଲିମେଣ୍ଟରେ ଆତଙ୍କିତ ହୋଇଗଲେ ଏବଂ ଶାସନ ଖସଡ଼ା ସମ୍ପୂର୍ଣ୍ଣ ପରିବର୍ତ୍ତିନ କରି ଏକ ନୂତନ ଭୋଟ ସମ୍ବନ୍ଧୀୟ ଆଇନ ଜବରଦସ୍ତ ପ୍ରଚଳନ କରାଗଲା । ଏହିରୂପେ ମୁସୋଲିନୀ ସପକ୍ଷରେ ଅଧିକ ସଂଖ୍ୟକ ଭୋଟ ହେଲା ।

ସେମାନେ ପ୍ରକୃତରେ କ୍ଷମତାରେ ଥିଲାବେଳେ ଏବଂ ପୋଲିସ ଓ ଶାସନତନ୍ତ୍ର ତାଙ୍କ ପାଖରେ ରହିଥିଲାବେଳେ ମଧ୍ୟ ଫାସିଷ୍ଟମାନେ ବେଆଇନ ହିଂସା ଯେ ପ୍ରୟୋଗ କରିପାରନ୍ତି ଏହା ହିଁ ଅଦ୍ଭୁତ କଥା । ତଥାପି ସେମାନେ ତାହା କଲେ ଏବଂ ଅବଶ୍ୟ ସେମାନଙ୍କ ପାଇଁ ମୁକ୍ତ କ୍ଷେତ୍ର ପଡ଼ିଥିଲା; କାରଣ ଷ୍ଟେଟ ପୁଲିସ ବାଧା ଦେଇ ନ ଥିଲେ । ହତ୍ୟା, ଯନ୍ତ୍ରଣା, ପ୍ରହାର, ସମ୍ପତ୍ତି ଧ୍ୱଂସ ସବୁ ଖୋଲାଖୋଲି ଏବଂ ବ୍ୟାପକଭାବରେ ଏକ ନୂଆ କୌଶଳ ପ୍ରୟୋଗ କଲେ । ଏହା ହେଉଛି ଯେଉଁମାନେ ତାଙ୍କୁ ବିରୋଧ କରିବାକୁ ସାହସ କରିବେ, ସେମାନଙ୍କୁ ପ୍ରଚୁର ପରିମାଣରେ ଜଡ଼ା ତେଲ ପିଆଇଦେବା ।

୧୯୨୬ରେ ପାର୍ଲିମେଣ୍ଟ ସଦସ୍ୟ ଜଣେ ପ୍ରଧାନ ସାମ୍ୟବାଦୀ ମିଆଟୋମୋଙ୍କ ମୃତ୍ୟୁ ସମ୍ବାଦ ପାଇ ଇଉରୋପ ଚମକୃତ ହୋଇଗଲା । ସେ ପାର୍ଲିମେଣ୍ଟରେ ବକ୍ତୃତା ଦେଇଥିଲେ ଏବଂ ନିକଟରେ ଶେଷ ହୋଇଥିବା ନିର୍ବାଚନରେ ଯେଉଁ ଫାସିଷ୍ଟ ପ୍ରଣାଳୀ ପ୍ରୟୋଗ କରାଯାଇଥିଲା, ତାର ସମାଲୋଚନା କରିଥିଲେ । ଅଳ୍ପ କେତେଦିନ ଭିତରେ ତାଙ୍କୁ ହତ୍ୟା କରାଗଲା । କେବଳ ବାହ୍ୟରକ୍ଷା ପାଇଁ ହତ୍ୟାକାରୀମାନଙ୍କର ବିଚାର ହେଲା, କିନ୍ତୁ ସେମାନେ ବାସ୍ତବିକ କୌଣସି ଶାସ୍ତି ନ ପାଇ ଖଲାସ ହୋଇଗଲେ । ପ୍ରହାର ଫଳରେ ଉଦାରନୀତିକ-ମାନଙ୍କର ଜଣେ ନରମପନ୍ଥୀ ନେତା ଆମେଣ୍ଡୋଲା ମରିଗଲେ । ଉଦାରନୀତିକ ଭୂତପୂର୍ବ ପ୍ରଧାନମନ୍ତ୍ରୀ ନିଟୀ କୌଣସି ପ୍ରକାରେ ଇଟାଲୀରୁ ପ୍ରାଣ ବଞ୍ଚାଇ ପଳାଇ ଯାଇପାରିଲେ କିନ୍ତୁ ତାଙ୍କ ଘର ଧ୍ୱଂସ କରିଦିଆଗଲା । ଯେଉଁ କେତୋଟି କଥାରେ ପୃଥିବୀର ଦୃଷ୍ଟି ଆକୃଷ୍ଟ ହେଲା, ସେଥିରୁ ଏହା କେତୋଟି ଦୃଷ୍ଟାନ୍ତ, କିନ୍ତୁ ହିଂସା ନିମାନ୍ବୟ ଓ ବ୍ୟାପକରୂପେ ଚାଲିଥିଲା । ଦମନ କରିବାର ଆଇନସଙ୍ଗତ ପନ୍ଥାଠାରୁ ଏହି ହିଂସା ସମ୍ପୂର୍ଣ୍ଣ ଅଲଗା ଜିନିଷ ଥିଲା ଏବଂ ଏହା କେବଳ ଏକ ଭାବପ୍ରବଣ ଜନତାର ହିଂସା ନ ଥିଲା । ଏହା ଏକ ଶୃଙ୍ଖଳିତ ହିଂସା କାର୍ଯ୍ୟ—ସମସ୍ତ ବିରୋଧୀଙ୍କ ବିରୁଦ୍ଧରେ—ଖାଲି ସୋସିଆଲିଷ୍ଟ ଓ କମ୍ୟୁନିଷ୍ଟ ନୁହଁନ୍ତି. ଅଧିକନ୍ତୁ ଶାନ୍ତିପ୍ରିୟ ଓ ଅତ୍ୟନ୍ତ ନରମପନ୍ଥୀ ଉଦାରନୀତିକଙ୍କ ବିରୁଦ୍ଧରେ ମଧ୍ୟ ଜାଣିଶୁଣି ପ୍ରୟୋଗ କରାଗଲା । ମୁସୋଲିନୀଙ୍କର ହୁକୁମ ଥିଲା ତାଙ୍କର ବିରୋଧୀମାନଙ୍କ ଜୀବନ କଷ୍ଟକର "ବା ଅସମ୍ଭବ" ଯେପରି ହୋଇଯାଏ । ଏହା ଖୁବ୍ ନିଷ୍ଠାର ସହ କାର୍ଯ୍ୟକାରୀ କରାଗଲା । ଆଉ କୌଣସି ଦଳ ତିଷ୍ଠି ପାରିବ ନାହିଁ, କୌଣସି ଅନୁଷ୍ଠାନ ବା ସଂଗଠନ ରହିବ ନାହିଁ । ପ୍ରତ୍ୟେକ ଜିନିଷ ଅବଶ୍ୟ ଫାସିଷ୍ଟ ହେବ ଏବଂ ସମସ୍ତ ଚାକିରିବାକିରି ଅବଶ୍ୟ ଫାସିଷ୍ଟ ପାଇବେ ।

ମୁସୋଲିନୀ ଇଟାଲୀର ସର୍ବଶକ୍ତିମାନ୍ ଡିକ୍‌ଟେଟର ହେଲେ । ସେ ଖାଲି ପ୍ରଧାନ-ମନ୍ତ୍ରୀ ନ ଥିଲେ, ମାତ୍ର ସେ ବୈଦେଶିକ ବ୍ୟାପାର, ଅଭ୍ୟନ୍ତରୀଣ, ଔପନିବେଶିକ, ଯୁଦ୍ଧ, ନୌବାହିନୀ, ଉଡ଼ାଜାହାଜ ଓ ଶ୍ରମିକ ସବୁ ବିଭାଗର ମନ୍ତ୍ରୀ ଥିଲେ । ବ୍ୟାବହାରିକ ଦୃଷ୍ଟିରେ ସେହି ହିଁ ସମଗ୍ର ମନ୍ତ୍ରିମଣ୍ଡଳ ଥିଲେ । ବିଚାରା ରଜା ପଛରେ ଛପିଗଲା ଏବଂ ତାର ନାମଗନ୍ଧ ପ୍ରାୟ ଶୁଣାଯାଉ ନ ଥିଲା । କ୍ରମେ ପାର୍ଲିମେଣ୍ଟକୁ ବି ଏକ ପାଖକୁ ଆଡ଼େଇ ଦିଆଗଲା ଏବଂ ତାହା ଏକ ପାର୍ଶ୍ଵବର୍ତ୍ତୀ ଗୁମ୍ଫା ମାତ୍ର ହୋଇ ରହିଲା । ଫାସିଷ୍ଟ ଗ୍ରାଣ୍ଡ କାଉନ୍‌ସିଲ୍ ହିଁ ପ୍ରାଧାନ୍ୟ କଲା ଏବଂ ମୁସୋଲିନୀ ଫାସିଷ୍ଟ ଗ୍ରାଣ୍ଡ କାଉନ୍‌ସିଲର ଥିଲେ କର୍ତ୍ତା ।

ବୈଦେଶିକ ବ୍ୟାପାର ସମ୍ବନ୍ଧରେ ମୁସୋଲିନୀଙ୍କର ପ୍ରଥମ ବକ୍ତୃତାରେ ଇଉରୋପରେ ପ୍ରଚୁର ପରିମାଣରେ ବିସ୍ମୟ ଓ ଶଙ୍କା ଜାତ ହେଲା । ସେଗୁଡ଼ିକ ଅସାଧାରଣ ବକ୍ତୃତା—ଉଚ୍ଚବାକ୍ୟସମ୍ବଳିତ, ଧମକଭରା ଏବଂ ରାଜନୀତିଜ୍ଞମାନଙ୍କର କୂଟନୀତିକ ଉକ୍ତି ପରି ଆଦୌ ନୁହେ । ସେ ସର୍ବଦା ଯୁଦ୍ଧ ପାଇଁ ଆକୁଳ ହେଲା ପରି ମନେହେଲା । ସେ ଇଟାଲୀ ସାମ୍ରାଜ୍ୟର ରାଜ୍ୟ, ଇଟାଲୀ ଉଡ଼ାଜାହାଜର ସଂଖ୍ୟା ବଢ଼ୁତି ହେତୁ ଆକାଶ କିପରି ଆଚ୍ଛାଦିତ ହୋଇଯାଉଛି ଇତ୍ୟାଦି କଥା କହିବାକୁ ଲାଗିଲେ ଏବଂ କେତେ ଥର ସେ ପ୍ରକାଶ୍ୟ ଭାବରେ ତାଙ୍କ ପଡ଼ୋଶୀ ଫ୍ରାନସ ରାଜ୍ୟକୁ ଧମକ ବି ଦେଲେ । ଫ୍ରାନ୍‌ସ ଅବଶ୍ୟ ଇଟାଲୀ ଅପେକ୍ଷା ଖୁବ୍ ବେଶୀ କ୍ଷମତାଶାଳୀ ଥିଲା, କିନ୍ତୁ ଯୁଦ୍ଧ କରିବାକୁ ଇଚ୍ଛୁକ ନ ଥିଲା ଏବଂ ତେଣୁ ମୁସୋଲିନୀଙ୍କ କଥା ସମସ୍ତେ ସହ୍ୟ କରିଗଲେ । ଇଟାଲୀ ଲିଗ୍ ଅଫ୍ ନେସନ୍‌ସର ସଭ୍ୟ ଥାଇ ସୁଦ୍ଧା ମୁସୋଲିନୀ ବିଶେଷଭାବରେ ତାକୁ ଉପହାସ ଓ ଘୃଣାବ୍ୟଞ୍ଜକ ଭାବରେ ଆକ୍ରମଣ କଲେ ଏବଂ ଥରେ ସେ ଅତି ଉଦ୍ଧତ ଭାବରେ ଏହାର ଅବମାନନା କଲେ । ତଥାପି ଲିଗ ଓ ଅନ୍ୟ ଶକ୍ତିସବୁ ଏହାକୁ ସହ୍ୟ କରିଗଲେ ।

ଇଟାଲୀରେ ଅନେକ ବାହ୍ୟିକ ପରିବର୍ତ୍ତନ ହୋଇଛି ଏବଂ ସର୍ବତ୍ର ଗୋଟାଏ ଶୃଙ୍ଖଳା ଓ ନିୟମାନୁବର୍ତ୍ତିତା ଦେଖିଲେ ଯେ କୌଣସି ପରିବ୍ରାଜକ ମୁଗ୍ଧ ହୋଇଯାଏ । ସର୍ବଶ୍ରେଷ୍ଠ ନଗର ରୋମକୁ ସୌନ୍ଦର୍ଯ୍ୟମଣ୍ଡିତ କରାଯାଇଛି ଏବଂ ଉନ୍ନତି ନିମନ୍ତେ ଅନେକ ଉଚ୍ଚକାମୀ ଯୋଜନା ସବୁ କରାଯାଇଛି । ମୁସୋଲିନୀଙ୍କ ସମ୍ମୁଖରେ ଏକ ନୂତନ ରୋମାନ ସାମ୍ରାଜ୍ୟର ଚିତ୍ର ଭାସୁଛି ।

ପୋପ ଓ ଇଟାଲୀ ସରକାର ଭିତରେ ଥିବା ପୁରାତନ ବିବାଦ ୧୯୧୯ରେ ଶେଷ ହେଲା—ମୁସୋଲିନୀ ଓ ପୋପଙ୍କ ପ୍ରତିନିଧି ଭିତରେ ଗୋଟାଏ ଚୁକ୍ତି ହୋଇଗଲା । ୧୮୭୧ରେ ଇଟାଲୀ ରାଜ୍ୟ ରୋମକୁ ରାଜଧାନୀ କଲାଦିନୁ ପୋପ ଏହାକୁ ସ୍ୱୀକାର କରୁ ନ ଥିଲେ ଏବଂ ରୋମ ଉପରେ ତାଙ୍କର ଏକାଧିପତ୍ୟ ଅଧିକାର ତ୍ୟାଗ କରୁ ନ ଥିଲେ । ତେଣୁ ପୋପମାନେ ନିର୍ବାଚିତ ହେବା ସଙ୍ଗେ ସଙ୍ଗେ ରୋମର ଭଟିକାନରେ ଥିବା ପ୍ରକାଣ୍ଡ ପ୍ରାସାଦରେ ରହୁଥିଲେ (ସେଣ୍ଟ ପିଟର୍ସ ବି ଏହାର ଅନ୍ତର୍ଗତ) ଏବଂ କେବେହେଲେ ଇଟାଲୀ

ରାଜ୍ୟକୁ ଆଉ ବାହାର ଆସନ୍ତି ନାହିଁ । ସେମାନେ ନିଜକୁ ସ୍ୱେଚ୍ଛାକୃତ ବନ୍ଦୀ କରି ରଖୁଥିଲେ । ୧୯୨୯ ଚୁକ୍ତି ଅନୁସାରେ ରୋମର ଏହି କ୍ଷୁଦ୍ର ଭାଟିକାନ ଅଞ୍ଚଳକୁ ଏକ ସ୍ୱାଧୀନ ଓ ସର୍ବାଧିକାରୀ ରାଜ୍ୟ ରୂପେ ସ୍ୱୀକାର କରାଗଲା । ଏହି ଷ୍ଟେଟର ସର୍ବଶକ୍ତିସମ୍ପନ୍ନ ସମ୍ରାଟ ହେଲେ ପୋପ ଏବଂ ଏଥିରେ ସର୍ବମୋଟ ନାଗରିକ ସଂଖ୍ୟା ହେଲା ୫୦୦ । ଏହି ରାଜ୍ୟରେ ନିଜର କରେନ୍ସି, ମୁଦ୍ରା, ଡାକଟିକଟ, ସାଧାରଣ ଯୁକ୍ତିରବାକର ରହିଛି ଏବଂ ଏଥିରେ ପୃଥିବୀରେ ସର୍ବାପେକ୍ଷା ଅଧିକ ବ୍ୟୟସାଧ୍ୟ କ୍ଷୁଦ୍ର ରେଲବାଇ ରହିଛି । ପୋପ ଆଉ ସ୍ୱନିର୍ବାଚିତ ବନ୍ଦୀ ନୁହନ୍ତି; ସେ ବେଳେବେଳେ ଭାଟିକାନରୁ ବାହାରକୁ ଆସନ୍ତି । ପୋପ ସହିତ ଏହି ସନ୍ଧି ଫଳରେ କାଥଲିକଙ୍କ ଭିତରେ ମୁସୋଲିନୀ ପ୍ରିୟ ହୋଇଗଲେ । ଫାସିଷ୍ଟ ହିଂସାର ବେଆଇନ କାର୍ଯ୍ୟ ଗୃହଯୁଦ୍ଧରେ ବର୍ଷେ ବା ଅଧିକକାଳ ପର୍ଯ୍ୟନ୍ତ ଚାଲିଲା ଏବଂ ତାପରେ କେତେକ ପରିମାଣରେ ୧୯୨୬ ପର୍ଯ୍ୟନ୍ତ ରହିଲା । ୧୯୨୬ରେ ରାଜନୈତିକ ବିରୋଧୀମାନଙ୍କ ସହିତ ବ୍ୟବହାର କରିବା ନିମନ୍ତେ "ବିଶେଷ ଆଇନ ସବୁ" ପାସ ହେଲା । ଏଥିରେ ଷ୍ଟେଟ ପ୍ରଚୁର କ୍ଷମତା ପାଇଲା ଏବଂ ବେଆଇନ କାର୍ଯ୍ୟ ଅନାବଶ୍ୟକ ହୋଇ ପଡ଼ିଲା । ଏଗୁଡ଼ିକ ଏକପ୍ରକାର ଅର୍ଡିନାନ୍‌ସ ପରି, ଏବଂ ଏଥିରେ ପ୍ରତିଷ୍ଠିତ ଆଇନସବୁ ପରି ଆମେ ଭାରତରେ ବହୁତ ଭୋଗୁଁ । ଏହି "ବିଶେଷ ଅଇନ" ଦ୍ୱାରା ଲୋକମାନଙ୍କୁ ଶାସ୍ତି ଦିଆଗଲା, ଜେଲ ପଠାଗଲା ଏବଂ ବହୁ ସଂଖ୍ୟାରେ ଦେଶାନ୍ତର କରାଗଲା । ସରକାରୀ ବିବରଣୀ ଅନୁସାରେ ୧୯୨୬ ନଭେମ୍ବର ଓ ୧୯୩୨ ଅକ୍ଟୋବର ଭିତରେ ସ୍ପେଶାଲ ଟ୍ରିବ୍ୟୁନାଲ ଆଗରେ ୧୦,୦୪୪ ଲୋକଙ୍କର ବିଚାର ହୋଇଥିଲା । ଦେଶାନ୍ତର ହେଉଥିବା ଲୋକଙ୍କୁ ପୋଞ୍ଜା, ଭେଣ୍ଟୋଲିନ୍ ଓ ଚେମିଟି ଏହି ତିନୋଟି ଶାସ୍ତି ଦ୍ୱୀପରେ ରଖା ହେଉଥିଲା ଏବଂ ସେଠାରେ ଅବସ୍ଥା ଅତି ଖରାପ ଥିଲା ।

ବହୁ ପରିମାଣରେ ଦମନ ଓ ଗିରଫ ଚାଲିଛି ଏବଂ ଏଥିରୁ ପରିଷ୍କାର ହେଉଛି ଯେ ଏହା ଦମନ କରିବାର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଦେଶର ଗୁପ୍ତ ଓ ବିପ୍ଳବୀ ବିରୋଧ ରହିଛି । ଆର୍ଥିକ ବୋଝ ବଢ଼ୁଛି ଏବଂ ଦେଶର ଆର୍ଥିକ ଅବସ୍ଥା ଅଧୋଗତି ଆଡ଼କୁ ଯାଉଛି ।

## ୧୭୬ : ଗଣତନ୍ତ୍ର ଓ ଅଧିନାୟକତ୍ୱ

ଜୁନ ୨୨, ୧୯୩୩

ଇଟାଲୀରେ ଅଧିନାୟକ (ଡିକ୍‌ଟେଟର) ରୂପେ ବେନିଟୋ ମୁସୋଲିନୀଙ୍କର ନିଜକୁ ପ୍ରତିଷ୍ଠିତ କରିବାର ଦୃଷ୍ଟାନ୍ତ ଇଉରୋପରେ ସଂକ୍ରାମକ ପରି ବୋଧ ହେଲା । ସେ କହୁଥିଲେ

"ଇଉରୋପର ପ୍ରତ୍ୟେକ ଦେଶରେ ଶୂନ୍ୟ ସିଂହାସନ ପଡ଼ିଛି, କେବଳ ଜଣେ କେହି ଦକ୍ଷ ଲୋକ ତାହା ପୂରଣ କରିବା ନିମନ୍ତେ ଚାହିଁ ବସିଛି ।" ଅନେକ ଦେଶରେ ଡିକ୍‌ଟେଟରଶାହି ଦେଖା ଦେଲା ଏବଂ ପାର୍ଲିମେଣ୍ଟ ଭାଙ୍ଗି ଦିଆଗଲା କିମ୍ବା ଜବରଦସ୍ତ ଡିକ୍‌ଟେଟର ଇଚ୍ଛାନୁକୂଳ କରି ଦିଆଗଲା । ସ୍ପେନର ଦୃଷ୍ଟାନ୍ତ ଏକ ଉଲ୍ଲେଖଯୋଗ୍ୟ କଥା ।

ସ୍ପେନ ପୃଥିବୀ ଯୁଦ୍ଧରେ ଲିପ୍ତ ନ ଥିଲା । ଯୁଦ୍ଧରତ ଦେଶମାନଙ୍କୁ ମାଲ ବିକ୍ରୀ କରି ଏହା ଧନ ରୋଜଗାର କରିଥିଲା । କିନ୍ତୁ ତା ନିଜର ଆଭ୍ୟନ୍ତରୀଣ ଅସୁବିଧା ସବୁ ଥିଲା ଏବଂ ଶିଳ୍ପ ଧନ୍ଦାରେ ଏହା ଅତି ଅନୁନ୍ନତ ଦେଶ ଥିଲା । ଯେତେବେଳେ ଇଉରୋପରେ ସେ ମହାନ ହୋଇଥିଲା, ଆମେରିକା ଓ ପ୍ରାଚ୍ୟ ଦେଶମାନଙ୍କରୁ ଧନ ସେ ଦେଶକୁ ବୋହି ଆସୁଥିଲା, ସେ ଦିନ କେଉଁ କାଳରୁ ଯାଇଛି ଏବଂ ଇଉରୋପରେ ତାକୁ ପ୍ରଧାନ ଶକ୍ତି ହିସାବରେ ପ୍ରାୟ ଗଣ୍ୟ କରାଯାଏ ନାହିଁ । ଗୋଟାଏ ଅତି ଦୁର୍ବଳ ପାର୍ଲିମେଣ୍ଟ ଥିଲା— ଏହାକୁ କୋର୍ଟ (Cortes) କହନ୍ତି ଏବଂ ରୋମାନ ଗୀର୍ଜା ହିଁ ବଳବାନ ଥିଲା । ଇଉରୋପର ଶିଳ୍ପ ଦିଗରେ ଅନୁନ୍ନତ ଅନ୍ୟ ଦେଶମାନଙ୍କ ଭଳି ଜର୍ମାନୀ ଓ ଇଂଲଣ୍ଡର ଖାଣ୍ଟି ମାର୍କସବାଦ ଓ ନରମା ସାମ୍ୟବାଦ ଅପେକ୍ଷା (Syndicalism) ସଂଘବାଦ ଓ ଓ ନୈରାଜ୍ୟବାଦ (Anarchism) ଧାରଣା ଏଠି ବେଶ୍ ପ୍ରଚୁର ହେଲା । ୧୯୧୮ରେ ବଲସେଭିକମାନେ ରୁଷରେ ଯେତେବେଳେ କ୍ଷମତା ଲାଗି ସଂଗ୍ରାମ କରୁଥିଲେ ସେତେବେଳେ ସ୍ପେନର ଶ୍ରମିକ ଓ ଅଗ୍ରପନ୍ଥୀମାନେ (Radicals) ଏକ ସାଧାରଣ ଧର୍ମଘଟ କରି ଗଣ-ତାନ୍ତ୍ରିକ ପ୍ରଜାତନ୍ତ୍ର ସ୍ଥାପନା କରିବା ନିମନ୍ତେ ଚେଷ୍ଟା କରୁଥିଲେ । ଏହି ଧର୍ମଘଟ ଏବଂ ସମଗ୍ର ଆନ୍ଦୋଳନକୁ ରାଜ ସରକାର ଓ ସେନା ଦମନ କରିଦେଲେ ଏବଂ ଫଳସ୍ୱରୂପ ସେନା ସର୍ବଶକ୍ତିମାନ ହୋଇପଡ଼ିଲା । ରାଜା ସେନା ଉପରେ ନିର୍ଭର କରି ମଧ୍ୟ ଆଉ ଟିକିଏ ଅଧିକ ସ୍ୱାଧୀନ ଓ ଏକଚ୍ଛତ୍ର ହୋଇଗଲା ।

ଫ୍ରାନ୍‌ସ ଓ ସ୍ପେନ ଅଲ୍ଲେଅଧିକେ ଦୁଇ ଭାଗରେ ମରକୋକୁ ବିଭକ୍ତ କରି ନିଜ ପ୍ରଭାବ ଅଧୀନରେ ରଖିଥିଲେ । ୧୯୨୧ରେ ଦକ୍ଷ ନେତା ଅବଦୁଲ କରିମ କକ୍‌କୋର ରିଫମାନଙ୍କ ଭିତରୁ ବାହାରି ସ୍ପେନ ଶାସନ ବିରୁଦ୍ଧରେ ଉଠିଲେ । ସେ ଖୁବ୍ ଦକ୍ଷତା ଓ ନିର୍ଭୀକତା ଦେଖାଇଲେ ଏବଂ ପୁନଃ ପୁନଃ ସ୍ପେନ ସେନାଙ୍କୁ ପରାସ୍ତ କଲେ । ଏଥିରେ ସ୍ପେନରେ ଏକ ଆଭ୍ୟନ୍ତରୀଣ ସଙ୍କଟ ଉପୁଜିଲା । ରାଜା ଓ ସେନାର ନେତା ଉଭୟେ ଶାସନସଭା ଓ ପାର୍ଲିମେଣ୍ଟ ବନ୍ଦ କରିଦେବା ନିମନ୍ତେ ଇଚ୍ଛା କରୁଥିଲେ ଏବଂ ଏକ ଡିକ୍‌ଟେଟରୀ ଶାସନ ସ୍ଥାପନ କରିବାକୁ ଚାହୁଁଥିଲେ । ସେମାନେ ଏଥିରେ ସମ୍ମତ ହୋଇ-ଗଲେ, କିନ୍ତୁ କିଏ ଡିକ୍‌ଟେଟର ହେବ, ଏଥିରେ ସମ୍ମତ ହୋଇପାରିଲେ ନାହିଁ । ରାଜା ନିଜେ ଡିକ୍‌ଟେଟର ବା ଏକଚ୍ଛତ୍ର ସମ୍ରାଟ ହେବାକୁ ଚାହୁଁଥିଲେ ଏବଂ ସେନା-ନେତାମାନେ ମଧ୍ୟ ଏକ ସେନାବାହୀ (Military) ଡିକ୍‌ଟେଟରୀ ଶାସନ ଚାହୁଁଥିଲେ ।

୧୯୨୩ ସେପ୍‌ଟେମ୍ବର ମାସରେ ଏକ ସାମରିକ ବିପ୍ଳବ ହେଲା ଏବଂ ଏହା ସୈନ୍ୟଙ୍କ ସପକ୍ଷରେ ସମସ୍ୟାର ନିଷ୍ପତ୍ତି କଲା ଏବଂ ଜେନେରାଲ୍ ପ୍ରିମୋଡ଼ି ରିଭେରା ଡିକ୍‌ଟେଟର ହେଲେ । ସେ କୋର୍ଟ (ପାର୍ଲିମେଣ୍ଟ)କୁ ସ୍ଥଗିତ ରଖିଲେ ଏବଂ ଖୋଲା ଭାବରେ ଶକ୍ତି ବଳରେ ଅର୍ଥାତ ସେନା ବଳରେ ଶାସନ କଲେ । ଯାହାହେଉ ରିଫମାନଙ୍କ ବିରୁଦ୍ଧରେ ମରକ୍‌କୋ ଅଭିଯାନ ଆଗେଇଲା ନାହିଁ ଏବଂ ଅବ୍‌ଦୁଲ କରିମ ଉଦ୍ଧତ ଭାବରେ ସ୍ପେନକୁ ଅପମାନନା କରିବାକୁ ଲାଗିଲେ । ସ୍ପେନ ସରକାର ତାଙ୍କୁ ଖୁବ୍ ଅନୁକୂଳ ସର୍ତ୍ତି ବି ଯାଚିଲେ; କିନ୍ତୁ ସେ ପୂର୍ଣ୍ଣ ସ୍ୱାଧୀନତା ଚାହିଁଲେ ଏବଂ ଏହାକୁ ଅସ୍ୱୀକାର କଲେ । ଏହା ମଧ୍ୟ ସମ୍ଭବ ଯେ, ତାଙ୍କୁ ଏକାକୀ ଦମନ କରିବା ସ୍ପେନ ସରକାର ପକ୍ଷରେ ସହଜ ହୋଇ ନ ଥାନ୍ତା । ଫରାସୀମାନଙ୍କର ମରକ୍‌କୋରେ ଖୁବ୍ ସ୍ୱାର୍ଥ ଥିଲା ଏବଂ ୧୯୨୫ରେ ସେମାନେ ହସ୍ତକ୍ଷେପ କରିବା ନିମନ୍ତେ ସ୍ଥିର କଲେ ଏବଂ ସେମାନେ ଅବଦୁଲ କରିମ ବିରୁଦ୍ଧରେ ତାଙ୍କର ବିଶାଳ ଶକ୍ତି ଲଗାଇଲେ । ୧୯୨୬ ମଧ୍ୟବେଳକୁ ସେ ପରାସ୍ତ ହୋଇ ଯାଇଥିଲେ ଏବଂ ଫରାସୀ ପାଖରେ ଆତ୍ମସମର୍ପଣ କଲେ—ଏହିରୂପେ ତାଙ୍କର ଦୀର୍ଘ ଓ ନିର୍ଭୀକ ସଂଗ୍ରାମ ଶେଷ ହେଲା ।

ଏହି ବର୍ଷ ଭିତରେ ସ୍ପେନର ପ୍ରିମୋ ଡି ରିଭେରାଙ୍କ ଡିକ୍‌ଟେଟରୀ ଶାସନ ଚାଲିଥିଲା ଏବଂ ତାହାର ସାଧାରଣ ସହଚରୀରୂପେ ସାମରିକ ଶକ୍ତି, ଯାଞ୍ଚ ପ୍ରଥା, ଅତ୍ୟାଚାର ଓ ବେଳେ ବେଳେ ସାମରିକ ଆଇନ ବି ରହୁଥାଏ । ଏହା ମନେରଖିବା ଦରକାର ଯେ ଏହି ଡିକ୍‌ଟେଟରୀ ଶାସନ ମୁସୋଲିନିଠାରୁ ପୃଥକ ଥିଲା—ଏହା ପ୍ରଧାନତଃ ସେନା ଉପରେ ନିର୍ଭର କରୁଥିଲା ଏବଂ ଇଟାଲୀ ପରି ଲୋକସଂଖ୍ୟାର କେତେକ ଶ୍ରେଣୀ ଉପରେ ନିର୍ଭର କରୁ ନ ଥିଲା । ପ୍ରିମୋ ଡି ରିଭେରାଙ୍କୁ ସେନା ଛାଡ଼ି ଦେବା ପରେ ତାର ଆଉ କିଛି ସମର୍ଥନ ରହିଲା ନାହିଁ । ୧୯୩୦ ପ୍ରଥମ ଭାଗରେ ରାଜା ପ୍ରିମୋଙ୍କୁ ବରଖାସ୍ତ କଲେ । ସେହି ବର୍ଷ ଗୋଟିଏ ବିପ୍ଳବ ହେଲା; ତାକୁ ଦମନ କରି ଦିଆଗଲା । କିନ୍ତୁ ପ୍ରଜାତନ୍ତ୍ରବାଦୀ ଓ ବିପ୍ଳବୀ ଚିନ୍ତାଧାରା ଖୁବ୍ ବିସ୍ତୃତ ହୋଇ ଯାଇଥିଲା—ତାହା ଦମନ କରାଯାଇ ପାରିଲା ନାହିଁ । ୧୯୩୧ରେ ପ୍ରଜାତନ୍ତ୍ରବାଦୀମାନେ ମ୍ୟୁନିସିପାଲ ନିର୍ବାଚନରେ ତାଙ୍କର ପ୍ରବଳ ଶକ୍ତି ଦେଖାଇଲେ ଏବଂ ଅଳ୍ପ ଦିନ ପରେ ନିଜ ମହତ୍ତ୍ୱ ନିଜେ ରକ୍ଷା କରି ରାଜା ଆଲଫୋନ୍‌ସୋ ସିଂହାସନ ତ୍ୟାଗ କଲେ ଓ ଦେଶ ଛାଡ଼ି ପଳାଇ ଗଲେ । ଏକ ଅସ୍ଥାୟୀ ସରକାର ସ୍ଥାପନା କରାଗଲା ଏବଂ ଇଉରୋପରେ ଏକଛତ୍ର ରାଜସତ୍ତା ଓ ଗୀର୍ଜା ଶାସନର ପୁରାତନ ପ୍ରତୀକ ସ୍ପେନ ଇଉରୋପର ପ୍ରଜାତନ୍ତ୍ର ରାଜ୍ୟମାନଙ୍କ ଭିତରେ ସର୍ବାପେକ୍ଷା ଶ୍ରେଷ୍ଠ ଥିଲା । ଭୂତପୂର୍ବ ରାଜା ଆଲଫୋନ୍‌ସୋଙ୍କୁ ବେଆଇନ କରିଦେଲା ଏବଂ ଗୀର୍ଜାର ପ୍ରଭାବ ବିରୁଦ୍ଧରେ ଲଢ଼ାଇ କଲା ।

କିନ୍ତୁ ମୁଁ ତତେ ଡିକ୍‌ଟେଟରମାନଙ୍କ ସମ୍ବନ୍ଧରେ କହୁଥିଲି । ଇଟାଲୀ ଓ ସ୍ପେନ ବ୍ୟତୀତ ଆଉ ଯେଉଁସବୁ ଦେଶରେ ଗଣତାନ୍ତ୍ରିକ ସରକାର ଯାଇ ତା ସ୍ଥାନରେ ଡିକ୍‌ଟେଟରୀ

ଶାସନ ପ୍ରତିଷ୍ଠା ହେଲା, ସେସବୁ ହେଉଛି, ପୋଲଣ୍ଡ, ଯୁଗୋସ୍ଲୋଭିଆ, ଗ୍ରୀସ, ବୁଲଗେରିଆ ପର୍ତ୍ତୁଗାଲ, ଗଙ୍ଗେରୀ ଓ ଅଷ୍ଟ୍ରିଆ । ପୋଲଣ୍ଡରେ ଜାର ଅମଳର ସାମ୍ୟବାଦୀ ପିଲସୁଡ଼ସ୍କି ର ସେନାରେ ପ୍ରଭାବ ଥିବା ଯୋଗୁଁ ସେ ଡିକ୍‌ଟେଟର ହେଲେ ଏବଂ ସେ ପୋଲଣ୍ଡ ପାର୍ଲିମେଣ୍ଟର ସଭ୍ୟମାନଙ୍କ ପ୍ରତି ଅଭୂତପୂର୍ବ ଭାବରେ ଅପମାନଜନକ ଭାଷା ପ୍ରୟୋଗ କରୁଥିଲେ ଏବଂ ବେଳେ ବେଳେ ବାସ୍ତବିକ ସେମାନଙ୍କୁ ଗିରଫ କରି ବାନ୍ଧିବାନ୍ଧି ଅନ୍ୟ ସ୍ଥାନକୁ ପଠାଇ ଦିଆହେଉଥିଲା । ଯୁଗୋସ୍ଲୋଭିଆରେ ରାଜା ଆଲେକ୍‌ଜାଣ୍ଡର ନିଜେ ଡିକ୍‌ଟେଟର । ଶୁଣାଯାଏ ଯେ, ଦେଶର କେତେକ ଭାଗରେ ଅବସ୍ଥା ବଡ଼ ଖରାପ ଏବଂ ତୁର୍କି ରାଜୁତି କଲାବେଳେ ଯେପରି ଥିଲା, ତାହା ଅପେକ୍ଷା ଅଧିକ ଦମନ ଚାଲିଛି ।

ଉପରେ ମୁଁ ଯେଉଁସବୁ ଦେଶର ନାମୋଲ୍ଲେଖ କରିଗଲି ସେସବୁ କିଛି ବରାବର ପ୍ରକାଶ୍ୟ ଡିକ୍‌ଟେଟରୀ ଶାସନ ଅଧୀନରେ ରହି ନ ଥିଲା । ବେଳେ ବେଳେ କ୍ଷଣକାଳ ଲାଗି ସେଗୁଡ଼ିକର ପାର୍ଲିମେଣ୍ଟ ଜାଗି ଉଠେ ଓ ଚାଲୁ ହେବା ନିମନ୍ତେ ଅନୁମତି ଦିଆଯାଏ; ବେଳେ ବେଳେ ଯେମିତି ଏବେ ବୁଲଗେରିଆରେ ହେଲା, ଯେଉଁସବୁ ସଭ୍ୟଙ୍କୁ ଯଥା କମ୍ୟୁନିଷ୍ଟଙ୍କୁ କ୍ଷମତାରେ ଥିବା ସରକାର ଗିରଫ କରି ନେଉଥିଲା ଏବଂ ସେମାନଙ୍କୁ ବଳ-ପୂର୍ବକ ପାର୍ଲିମେଣ୍ଟରୁ ଅନ୍ତର କରି ଦେଉଥିଲା—ଅବଶିଷ୍ଟ ସଭ୍ୟମାନେ କାମ ଚଲାଉ-ଥିଲେ । ସର୍ବଦା ସେମାନେ ହୁଏତ ଡିକ୍‌ଟେଟରୀ ଶାସନ କିମ୍ବା ସେହିପରି ଶାସନ ଅଧୀନରେ ବାସ କରୁଥିଲେ ଏବଂ ବ୍ୟକ୍ତିବିଶେଷ ବା ଶ୍ରେଣୀ ଦଳର ଏହି ସରକାର ସବୁ ଶକ୍ତି ଉପରେ ନିର୍ଭର କରୁଥିବାରୁ ଦମନ, ହତ୍ୟା, ବିରୋଧୀଙ୍କୁ ଜେଲ ଦଣ୍ଡ, କଠୋର ଯାଞ୍ଚ ପ୍ରଥା ଏବଂ ବ୍ୟାପକ ଗୁଇନ୍ଦା ପ୍ରଥାରୁ ହିଁ ସମର୍ଥନ ପାଉଥିଲା ।

ଇଉରୋପ ବାହାରେ ମଧ୍ୟ ଡିକ୍‌ଟେଟରୀ ଶାସନ ଗଜୁରି ଉଠିଲା । ମୁଁ ତତେ ଆଗରୁ କେମାଲ ପାଶା ଓ ତୁର୍କି ବିଷୟରେ କହିଛି । ଦକ୍ଷିଣ ଆମେରିକାରେ ଅନେକ ଡିକ୍‌ଟେଟର ଥିଲେ, କିନ୍ତୁ ଏସବୁ ସେଠାରେ ପୁରାତନ ଅନୁଷ୍ଠାନ, କାରଣ ଦକ୍ଷିଣ-ଆମେରିକା ପ୍ରଜାତନ୍ତ୍ର ସବୁ କେବେହେଁ ଗଣତନ୍ତ୍ର ରୀତିକୁ ଆଗ୍ରହର ସହିତ ଗ୍ରହଣ କରି-ନାହାନ୍ତି ।

ଉପରୋକ୍ତ ଡିକ୍‌ଟେଟରୀ ଶାସନ ତାଲିକାରେ ମୁଁ ସୋଭିଏଟ ଇଉନିୟନକୁ ମିଶାଇ ନାହିଁ, କାରଣ ସେଠାରେ ଡିକ୍‌ଟେଟରୀ ଶାସନ ଅନ୍ୟ ସବୁ ପରି ନିର୍ମମ ହେଲେ ସୁଦ୍ଧା ଅଲଗା ଧରଣର । ଏହା ବ୍ୟକ୍ତିବିଶେଷ ବା ଶ୍ରେଣୀ ଗୋଷ୍ଠୀର ଡିକ୍‌ଟେଟରୀ ଶାସନ ନୁହେଁ, କିନ୍ତୁ ବିଶେଷ ଭାବରେ ଶ୍ରମିକମାନଙ୍କୁ ଭିତ୍ତି କରି ରହିଥିବା ଏକ ସୁସଂଗଠିତ ରାଜନୀତିକ ଦଳର ଡିକ୍‌ଟେଟରୀ । ସେମାନେ ଏହାକୁ "ସର୍ବହରାର ଡିକ୍‌ଟେଟରୀ ଶାସନ" କହନ୍ତି । ଏହିରୂପେ ଆମେ ତିନି ପ୍ରକାର ଡିକ୍‌ଟେଟର ଦେଖିବାକୁ ପାଉ – କମ୍ୟୁନିଷ୍ଟ, ଫାସିଷ୍ଟ ଓ ମିଲଟାରୀ । ସେନାବାଦୀ ବିଷୟରେ କିଛି ବିଶେଷତ୍ୱ ନାହିଁ । ଏହା ଆଦିମ

କାଳରୁ ରହି ଆସିଛି । କମ୍ୟୁନିଷ୍ଟ ଓ ଫାସିଷ୍ଟ ଡିକ୍‌ଟେଟର ଇତିହାସରେ ନୂତନ ଏବଂ ଆମ ଅମଳରେ ଜାତ ।

ପ୍ରଥମ କଥା ମନରେ ଉଠେ ଯେ, ଏହିସବୁ ଡିକ୍‌ଟେଟରୀ ଶାସନ ଓ ତାର ଆକାର ପ୍ରକାର ସବୁ ଗଣତନ୍ତ୍ର ଓ ପାର୍ଲିମେଣ୍ଟାରୀ ସରକାରର ପ୍ରତ୍ୟକ୍ଷ ବିପରୀତ । ମୁଁ ତତେ କହିଥିଲି ତୋର ମନେଥିବ, ଊନବିଂଶ ଶତାବ୍ଦୀ ଥିଲା ଗଣତନ୍ତ୍ର ଶତାବ୍ଦୀ—ଏହି ଶତାବ୍ଦୀରେ ଫରାସୀ ବିପ୍ଳବ ହିଁ ଅଗ୍ରଗାମୀ ଚିନ୍ତାଧାରା ଥିଲା ଏବଂ ବ୍ୟକ୍ତିଗତ ସ୍ୱାଧୀନତା ଏହାର ଲକ୍ଷ୍ୟ ଥିଲା । ଏଥିରୁ ପାର୍ଲିମେଣ୍ଟାରୀ ସରକାର ବାହାରିଲା—ଇଉରୋପର ଅଧିକାଂଶ ଦେଶରେ ଏହା ବିଭିନ୍ନ ରୂପରେ ଦେଖାଦେଲା । ଅର୍ଥନୈତିକ କ୍ଷେତ୍ରରେ ଏଥିରେ "ଲାଏସେଜ ଫେୟାର" ତଥ୍ୟ ବାହାରିଲା । ବିଂଶ ଶତାବ୍ଦୀକୁ ଏକପ୍ରକାର ଯୁଦ୍ଧୋତ୍ତର ବର୍ଷ କହିଲେ ହେବ, ଏହା ଊନବିଂଶ ଶତାବ୍ଦୀର ବିରାଟ ପରମ୍ପରାକୁ ନଷ୍ଟ କରି ଦେଲା ଏବଂ ଏକ ବିଧିବଦ୍ଧ ଗଣତନ୍ତ୍ରକୁ ଆଜି ଖୁବ୍ ମୁଷ୍ଟିମେୟ ଲୋକ ସମ୍ମାନ ଦେଖାଉଛନ୍ତି । ଗଣତନ୍ତ୍ରର ପତନ ସଙ୍ଗେ ସଙ୍ଗେ ତଥାକଥିତ ଉଦାର ନୀତିକମାନେ ସର୍ବତ୍ର ସମାନ ଦଶା ଭୋଗିଛନ୍ତି ଏବଂ ଏକ ପ୍ରଭାବଶାଳୀ ଶକ୍ତି ଭାବରେ ସେମାନଙ୍କୁ ଗଣ୍ୟ କରାଯାଉ ନାହିଁ ।

ଫାସିଜିମ୍ ଓ କମ୍ୟୁନିଜିମ୍ ପରସ୍ପରର ବିପରୀତ କ୍ଷେତ୍ରରେ ଯାଉଥିଲେ ସୁଦ୍ଧା ଉଭୟେ ଗଣତନ୍ତ୍ରର ବିରୋଧ କରିଛନ୍ତି ଓ ସମାଲୋଚନା କରିଛନ୍ତି । ଏପରି କି ଯେଉଁ ଦେଶ ସବୁ କମ୍ୟୁନିଷ୍ଟ କି ଫାସିଷ୍ଟ କିଛି ନୁହେଁ, ସେଠି ଗଣତନ୍ତ୍ର ଆଉ ଆଗପରି ଆଦରଣୀୟ ହୋଇ ନାହିଁ । ପାର୍ଲିମେଣ୍ଟ ଆଗ ଯାହା ଥିଲା, ଆଉ ନାହିଁ ଏବଂ ବିଶେଷ ସମ୍ମାନ ଲାଭ କରୁ ନାହିଁ । ପାର୍ଲିମେଣ୍ଟକୁ ନ ଜଣାଇ ପ୍ରଧାନ ଶକ୍ତିମାନେ ଯାହା ଆବଶ୍ୟକ ମନେକରନ୍ତି, ତାହା କରିବା ନିମନ୍ତେ ତାଙ୍କୁ କାର୍ଯ୍ୟକାରୀ କ୍ଷମତା ଦିଆଯାଏ । ଆମେ ଯେଉଁ ସଙ୍କଟ-କାଳରେ ବାସ କରୁଛେ—ଆଂଶିକରୂପେ ସେଥିଯୋଗୁଁ ଏହା ହୋଇଛି—ଏଥିରେ ଦ୍ରୁତ କାର୍ଯ୍ୟ କରିବା ଦରକାର ପଡ଼େ ଏବଂ ପ୍ରତିନିଧିମୂଳକ ଆସେମ୍ବ୍ଲି ସବୁ ସର୍ବଦା ଶୀଘ୍ର କାର୍ଯ୍ୟ କରିପାରନ୍ତି ନାହିଁ । ନିକଟରେ ଜର୍ମାନୀ ସମ୍ପୂର୍ଣ୍ଣରୂପେ ତାର ପାର୍ଲିମେଣ୍ଟ ଭାଙ୍ଗି ଦେଇଛି ଏବଂ ଅତି ଖରାପ ଧରଣର ଫାସିଷ୍ଟ ଶାସନ ସେଠି ଚାଲିଛି । ସଂଯୁକ୍ତ ରାଷ୍ଟ୍ର ଆମେରିକାରେ ସର୍ବଦା ସଭାପତିକୁ ପ୍ରବଳ କ୍ଷମତା ଦିଆଯାଉଛି ଏବଂ ନିକଟରେ ତାହା ପୁଣି ଆହୁରି ବଢ଼ାଇ ଦିଆ-ହୋଇଛି । ବର୍ତ୍ତମାନ ଫ୍ରାନ୍‌ସ ଓ ଇଂଲଣ୍ଡ ଏହି ଦୁଇଟି ଦେଶରେ ଅନ୍ତତଃ ବାହାର ଦେଖାଣିଆ ଭାବରେ ଆଗକାଳ ପରି ପାର୍ଲିମେଣ୍ଟ ଚାଲିଛି; ସେମାନଙ୍କର ଫାସିଷ୍ଟ କାର୍ଯ୍ୟ-କଳାପ ନିଜର ଅଧୀନସ୍ଥ ରାଜ୍ୟ ଓ ଉପନିବେଶମାନଙ୍କରେ ହୁଏ—ଭାରତରେ ବ୍ରିଟିଶ ଫାସିଜିମ୍ କାର୍ଯ୍ୟ କରୁଛି; ଇଣ୍ଡୋଚାଇନାରେ ଫରାସୀ ଫାସିଜିମ୍ ଦେଶରେ "ଶାନ୍ତି ସ୍ଥାପନ" କରୁଛି । କିନ୍ତୁ ଲଣ୍ଡନ ଓ ପ୍ୟାରିସରେ ସୁଦ୍ଧା ପାର୍ଲିମେଣ୍ଟ ଫମ୍ପା ଖୋଲପା ହୋଇଗଲାଣି । ଗତ ମାସରେ ଜଣେ ମୁଖ୍ୟ ଇଂରେଜ ମାହା ଦଳର ଲୋକ କହିଥିଲେ—

"ଆମର ପ୍ରତିନିଧିମୂଳକ ପାର୍ଲିମେଣ୍ଟ ଦ୍ରୁତବେଗରେ କେବଳ ଏକ ଶାସକ ଗୋଷ୍ଠୀର ହୁକୁମ ତାଲିମ କରିବାର ଯନ୍ତ୍ର ହୋଇ ଯାଉଛି; ଏକ ଅସମ୍ପୂର୍ଣ୍ଣ ଓ ଖରାପ ଭାବରେ କାର୍ଯ୍ୟକାରୀ ନିର୍ବାଚନମଣ୍ଡଳୀଦ୍ୱାରା ଏହା ନିର୍ବାଚିତ ହୁଏ।"

ଏହିରୂପେ ସର୍ବତ୍ର ଊନବିଂଶ ଶତାବ୍ଦୀର ଗଣତନ୍ତ୍ର ଓ ପାର୍ଲିମେଣ୍ଟର ଆଉ ସମ୍ମାନ ରହୁ ନାହିଁ। କେତେକ ଦେଶରେ ପ୍ରକାଶ୍ୟ ଭାବରେ ଓ କଠୋର ଭାବରେ ଏହାକୁ ବର୍ଜନ କରାଯାଉଛି, ଆଉ କେତେକ ସ୍ଥାନରେ ଏଗୁଡ଼ିକ ତାର ପ୍ରକୃତ ମହତ୍ତ୍ୱ ହରାଉଛି ଏବଂ ଏକ "ଫମ୍ପା ଓ ଫମ୍ପା ଆଡ଼ମ୍ବରପୂର୍ଣ୍ଣ" ଦେଶ ହୋଇ ରହିଛି। ଜଣେ ଐତିହାସିକ ପାର୍ଲିମେଣ୍ଟର ଏହି ଅଧୋଗତିକୁ ଊନବିଂଶ ଶତାବ୍ଦୀର ରାଜସତ୍ତା ସହିତ ତୁଳନା କରିଛନ୍ତି। ଯେପରି ଅଳ୍ପ ଅଧିକେ କେବଳ ପ୍ରଦର୍ଶନ ପାଇଁ, ଯେପରି ଇଂଲଣ୍ଡ ଓ ଅନ୍ୟତ୍ର ରାଜା ପ୍ରକୃତ କ୍ଷମତା ହରାଇ ଶାସନତାନ୍ତ୍ରିକ ସମ୍ରାଟ ହୋଇଛନ୍ତି, ସେହିପରି ଏହି ଐତିହାସିକଙ୍କ ମତାନୁସାରେ ପାର୍ଲିମେଣ୍ଟଗୁଡ଼ିକ କ୍ଷମତାହୀନ ଓ ମର୍ଯ୍ୟାଦାପୂର୍ଣ୍ଣ ପ୍ରତୀକ ହୋଇ ରହିବାର ସମ୍ଭାବନା ଏବଂ ଏ ହେଉଛନ୍ତି ମଧ୍ୟ। ଏହା ଦେଖିବାକୁ ବୃହତ୍ ଓ ଗୁରୁତର। ମାତ୍ର ଏହାର ଅର୍ଥ କିଛି ନାହିଁ।

କାହିଁକି ଏପରି ହୋଇଛି ? ଯେଉଁ ଗଣତନ୍ତ୍ର ଏକ ଶତାବ୍ଦୀ କି ତା ଆଗରୁ ଅଗଣିତ ଲୋକଙ୍କର ଆଦର୍ଶ ଓ ପ୍ରେରଣା ହୋଇ ରହିଥିଲା, ଯେଉଁଥିପାଇଁ ସହସ୍ର ସହସ୍ର ଲୋକ ଶହୀଦ ହେଲେ, ତାହା କାହିଁକି ଏପରି ନାପସନ୍ଦ ହୋଇ ପଡ଼ିଛି ? ଯଥେଷ୍ଟ କାରଣ ନ ଥିଲେ ଏପରି ପରିବର୍ତ୍ତନ ସବୁ ହୁଏ ନା; ଏକ ଚପଳ ଜନତାର ଜିଦ୍ ଓ ଖିଆଲ୍ ହେତୁ କିଛି ଏହା ହୁଏ ନାହିଁ। ଆଧୁନିକ ଜୀବନ ପ୍ରଣାଳୀରେ ଏପରି କିଛି ରହିଛି, ଯାହା ଊନବିଂଶ ଶତାବ୍ଦୀର ନିୟମିତ ଗଣତନ୍ତ୍ର ସହ ଖାପ ଖାଉ ନାହିଁ। ଏହି ବିଷୟଟି ଆଗ୍ରହପ୍ରଦ ଓ ଜଟିଳ। ମୁଁ ଏଠି ସେ ବିଷୟ ଆଲୋଚନା କରିପାରିବି ନାହିଁ, କିନ୍ତୁ ଗୋଟିଏ ବା ଦୁଇଟି ବିଷୟର ଏଠି ଥୋଇବି।

ପୂର୍ବ ପାତ୍ରରେ ମୁଁ ଗଣତନ୍ତ୍ରକୁ "ନିୟମିତ" ବୋଲି କହିଛି। କମ୍ୟୁନିଷ୍ଟମାନେ କହନ୍ତି ଏହା ପ୍ରକୃତ ଗଣତନ୍ତ୍ର ନୁହେଁ; ଗୋଟାଏ ଶ୍ରେଣୀ ଯେ ଅପର ଶ୍ରେଣୀ ଉପରେ ଶାସନ କରୁଛି ତାହା ଲୁଚାଇବା ନିମନ୍ତେ ଏହା ଏକ ଗଣତାନ୍ତ୍ରିକ ଆବରଣ ମାତ୍ର। ସେମାନଙ୍କ ମତାନୁସାରେ ଗଣତନ୍ତ୍ର ପୁଞ୍ଜିବାଦୀ ଶ୍ରେଣୀର ଅଧିନାୟକତ୍ୱକୁ ଆଚ୍ଛାଦିତ କରି ରଖିଛି। ଏହା ଧନିକତନ୍ତ୍ର (Plutocracy)—ଧନିକମାନଙ୍କ ସରକାର। ଜନସାଧାରଣଙ୍କୁ ଭୋଟ ଅଧିକାର ଦିଆଯାଇଛି ବୋଲି ଯେଉଁ ଡିଣ୍ଡିମ ବାଜୁଛି, ତାହା କିଛି ନୁହେଁ—ସେଥିରେ ଚାରି ବା ପାଞ୍ଚ ବର୍ଷରେ ଥରେ କୌଣସି ନିର୍ଦ୍ଦିଷ୍ଟ ଲୋକ 'କ' ତାଙ୍କ ଉପରେ ଶାସନ କରିବ ଏବଂ ଶୋଷଣ କରିବ କିମ୍ବା ଆଉ ଜଣେ ଲୋକ 'ଖ' ଶାସନ କରିବ ଏହା ବାଛିବା ନିମନ୍ତେ କ୍ଷମତା ଦିଏ। ଉଭୟ କ୍ଷେତ୍ରରେ ଶାସକ ଶ୍ରେଣୀଦ୍ୱାରା ଜନତାକୁ ଶୋଷଣ କରାହୁଏ। ଏହି ଶ୍ରେଣୀର

ଶାସନ ଓ ଶୋଷଣ ଲୋପ ହେଲେ ଏବଂ କେବଳ ଗୋଟିଏ ଶ୍ରେଣୀ ରହିଲେ ଯାଇ ପ୍ରକୃତ ଗଣତନ୍ତ୍ର ଆସିପାରେ । ଯାହାହେଉ, ଏହି ସାମ୍ୟବାଦୀ ରାଷ୍ଟ୍ର ଆଣିବା ନିମନ୍ତେ କେତେ କାଳ ପାଇଁ ସର୍ବହରାର ଅଧିନାୟକତ୍ୱ ଆବଶ୍ୟକ—ତାହାହେଲେ ଯାଇ ପୁଞ୍ଜିବାଦୀ ଓ ବୁର୍ଜୋୟା ଶ୍ରେଣୀଙ୍କୁ ଦମନ କରିହେବ ଏବଂ ଶ୍ରମିକ ରାଷ୍ଟ୍ର ବିରୁଦ୍ଧରେ ସେମାନେ ଚକ୍ରାନ୍ତ କରିବାରେ ବାଧା ଦିଆହେବ । ରୁଷରେ ସୋଭିଏଟ୍ ହିଁ ଡିକ୍ଟେଟର ହୋଇ ରହିଛି— ଏଥିରେ ସମସ୍ତ ଶ୍ରମିକ, କୃଷକ ଓ ଅନ୍ୟ "ଜନିଷ୍ଟାଣୀଲ" ଲୋକେ ସ୍ଥାନପାଆନ୍ତି । ତେଣୁ ଏହା ହେଉଛି ଶତକଡ଼ା ୯୦ ବା ୯୫ ଲୋକଙ୍କର । ଅବଶିଷ୍ଟ ୧୦ ବା ୫ ଲୋକଙ୍କ ଉପରେ ଡିକ୍ଟେଟରୀ ଶାସନ । ଏହା ହେଉଛି ସିଦ୍ଧାନ୍ତ କଥା । ବ୍ୟାବହାରିକ ଭାବରେ କମ୍ୟୁନିଷ୍ଟ ପାର୍ଟି ସୋଭିଏଟ ନିୟନ୍ତ୍ରଣ କରେ ଏବଂ କମ୍ୟୁନିଷ୍ଟଙ୍କ ଭିତରେ ଶାସକଗୋଷ୍ଠୀଙ୍କ ଅଧିକ୍ତ- ଧୀନରେ ପାର୍ଟି ଥାଏ । ଅନ୍ୟ ସବୁ ଡିକ୍ଟେଟରୀ ଶାସନ ପରି ଏହି ଶାସନ ମଧ୍ୟ ଯାଞ୍ଚ ପ୍ରଥା ଏବଂ ଚିନ୍ତା ଓ କାର୍ଯ୍ୟର ସ୍ୱାଧୀନତା ସମ୍ପର୍କରେ ସେହିପରି କଠୋର । କିନ୍ତୁ ଏହା ଶ୍ରମିକ- ମାନଙ୍କର ସଦିଚ୍ଛା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଶ୍ରମିକମାନଙ୍କୁ କି ସାଙ୍ଗରେ ଅବଶ୍ୟ ନେବ ଏବଂ ଏହା ସ୍ଥିର ଯେ, ସେଠି ଅନ୍ୟର ମଙ୍ଗଳ ନିମନ୍ତେ ଶ୍ରମିକ ବା ଅନ୍ୟ କୌଣସି ଶ୍ରେଣୀର ଶୋଷଣ ନାହିଁ । ସେଠାରେ କୌଣସି ଶୋଷକ ଶ୍ରେଣୀ ଆଉ ନାହାନ୍ତି କିଛି ଯଦି ବା ଶୋଷଣ ଅଛି, ତାହା ହେଉଛି ରାଷ୍ଟ୍ରଦ୍ୱାରା, ସମସ୍ତଙ୍କର ମଙ୍ଗଳ ନିମନ୍ତେ । ଏହା ସ୍ମରଣ ରଖିବାର କଥା ଯେ ରୁଷରେ କେବେହେଲେ ଗଣତନ୍ତ୍ର ସରକାର ନ ଥିଲା । ୧୯୧୭ରେ ଏକଛତ୍ର ଶାସନରୁ ଏହା କମ୍ୟୁନିଜମ୍‌କୁ ଲମ୍ଫ ହେଲା ।

ଫାସିଷ୍ଟ ମନୋଭାବ ସମ୍ପୂର୍ଣ୍ଣ ଭିନ୍ନ । ମୋର ଗତ ଚିଠିରେ ମୁଁ ତତେ କହିଛି ଯେ, ଫାସିଷ୍ଟ ନୀତି କଣ ତାହା ଜାଣିବା ସହଜ ନୁହେଁ, କାରଣ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ନୀତି ଥିଲାପରି ଜଣାଯାଏ ନାହିଁ । ସେମାନେ ଯେ ଗଣତନ୍ତ୍ରର ବିରୋଧୀ ଏଥିରେ ସନ୍ଦେହ ନାହିଁ ଏବଂ କମ୍ୟୁନିଷ୍ଟମାନେ ଯେପରି ଏହା ପ୍ରକୃତ ଗଣତନ୍ତ୍ର ନୁହେଁ, ଏକ ଛଳନା ମାତ୍ର ବୋଲି କହି ବିରୋଧ କରନ୍ତି, ସେମାନେ ସେପରି କହନ୍ତି ନାହିଁ । ସେମାନେ ଗଣତାନ୍ତ୍ରିକ ଭାବର ମୂଳନୀତିକୁ ହିଁ ଆପତ୍ତି କରନ୍ତି ଏବଂ ସମସ୍ତ ଜୋର ଦେଇ ଗଣତନ୍ତ୍ର ଉପରେ ଅଭିଶାପ ଢାଳନ୍ତି । ମୁସୋଲିନି ଏହାକୁ "ଦୁର୍ଗନ୍ଧମୟ ଶବ" ବୋଲି କହନ୍ତି । ଫାସିଷ୍ଟମାନେ ସେହିପରି ବ୍ୟକ୍ତିଗତ ସ୍ୱାଧୀନତା ଭାବକୁ ମଧ୍ୟ ଘୃଣା କରନ୍ତି; ରାଷ୍ଟ୍ର ହେଉଛି ସବୁ, ବ୍ୟକ୍ତି- ବିଶେଷର କୌଣସି ସ୍ଥାନ ନାହିଁ । (କମ୍ୟୁନିଷ୍ଟମାନେ ମଧ୍ୟ ବ୍ୟକ୍ତି ସ୍ୱାଧୀନତାକୁ ବିଶେଷ ମୂଲ୍ୟ ଦିଅନ୍ତି ନାହିଁ ।) ଯଦି ଊନବିଂଶ ଶତାବ୍ଦୀରେ ଗଣତାନ୍ତ୍ରିକ ଉଦାରନୀତିକ ଭାବର ଭବିଷ୍ୟତ ବକ୍ତା ମାଜିନି ଆଜି ଥାଆନ୍ତେ, ସେ ତାଙ୍କ ଦେଶବାସୀ ମୁସୋଲିନିଙ୍କୁ କି ପରାମର୍ଶ ଦିଅନ୍ତେ !

ଖାଲି କମ୍ୟୁନିଷ୍ଟ ଓ ଫାସିଷ୍ଟ ନୁହନ୍ତି, କିନ୍ତୁ ଆହୁରି ଅନେକେ ଯେଉଁମାନେ ବର୍ତ୍ତମାନ ଯୁଗର ଦୁର୍ଦ୍ଦଶା ସମ୍ବନ୍ଧରେ ଚିନ୍ତା କରିଛନ୍ତି, ସେମାନେ ଭୋଟାଧିକାର ଦେବା

ଓ ଏହାକୁ ଗଣତନ୍ତ୍ର କହିବାରେ ବି ଅସନ୍ତୋଷ ପ୍ରକାଶ କରିଛନ୍ତି । ଗଣତନ୍ତ୍ର ଅର୍ଥ ସମାନତା ଏବଂ କେବଳ ଏକ ସମାନ ସମାଜରେ ଗଣତନ୍ତ୍ର ବୃଦ୍ଧି ହୋଇପାରେ । ଏହା ସ୍ପଷ୍ଟ ଯେ, ପ୍ରତ୍ୟେକ ଲୋକଙ୍କୁ ଭୋଟାଧିକାର ଦେବାଦ୍ୱାରା ସମାନ ସମାଜ ସୃଷ୍ଟି ହୋଇଯାଏ ନା । ସାବାଳକଭୋଟାଧିକାର ଓ ତଦନୁରୂପେ ବ୍ୟବସ୍ଥାସତ୍ତ୍ୱେ ଆଜିର ସମାଜରେ ପ୍ରବଳଭାବରେ ଅସମାନତା ରହିଛି । ତେଣୁ ଗଣତନ୍ତ୍ର କାର୍ଯ୍ୟକାରୀ ହେବାର ଫଳ ପାଇବା ନିମନ୍ତେ ଏକ ସମାନ ସମାଜ ସୃଷ୍ଟି କରିବାକୁ ହେବ ଏବଂ ଏହି ଯୁକ୍ତିଦ୍ୱାରା ଭାବିଲବେଳକୁ ବିଭିନ୍ନ ପ୍ରକାର ଆଦର୍ଶ ଓ ପ୍ରଣାଳୀ ମନରେ ଉଠେ । କିନ୍ତୁ ସମସ୍ତେ ଏକମତ ଯେ, ଆଜି କାଲିକା ବ୍ୟବସ୍ଥା ସବୁଗୁଡ଼ିକ ଅତ୍ୟନ୍ତ ଅସନ୍ତୋଷଜନକ ।

ଆମେ ଏବେ ଫାସିଜିମ୍ ସମ୍ବନ୍ଧରେ ଆଉ ଟିକିଏ ଗଭୀର ଭାବରେ ଆଲୋଚନା କରିବା ଏବଂ ଏହା କଣ ଦେଖିବାର ଚେଷ୍ଟା କରିବା । ଏହା ହିଂସାର ବଡ଼ିମା କରେ ଏବଂ ଶାନ୍ତିବାଦର ଘୃଣା କରେ । ମୁସୋଲିନୀ 'ଏନ୍‌ସାଇକ୍ଲୋପେଡ଼ିଆ ଇଟାଲିଆନ'ରେ ଲେଖିଛନ୍ତି—

"ଫାସିଜିମ୍ ସ୍ଥାୟୀ ଶାନ୍ତିର ଆବଶ୍ୟକତା ବା ଉପକାରିତା ବିଶ୍ୱାସ କରେ ନା । ତେଣୁ ଏହା ଶାନ୍ତିବାଦକୁ ଅଗ୍ରାହ୍ୟ କରେ । ଏହା (ଶାନ୍ତିବାଦ) ତ୍ୟାଗ ପରିବର୍ତ୍ତେ ସଂଗ୍ରାମ କରିବାକୁ ଅସ୍ୱୀକାର କରେ ଏବଂ ଏଥିରେ ମୂଳତଃ ଭୀରୁତା ହିଁ ରହିଛି । ଯୁଦ୍ଧ, କେବଳ ଯୁଦ୍ଧ ହିଁ ମନୁଷ୍ୟର ଶକ୍ତିକୁ ଅତ୍ୟଧିକ ରୂପେ ବିସ୍ତାର କରେ ଏବଂ ଯେଉଁ ଲୋକଙ୍କର ଗ୍ରହଣ କରିବାର ସାହସ ଥାଏ, ତାଙ୍କ ଭାଗ୍ୟଡୋରି ଏଥିରେ ବନ୍ଧା । ଅନ୍ୟସବୁ ପ୍ରଚେଷ୍ଟା କେବଳ ଏହାର ପ୍ରତିବିମ୍ବ ମାତ୍ର; ସେଗୁଡ଼ିକ ବ୍ୟକ୍ତିବିଶେଷଙ୍କୁ ଜୀବନ ଓ ମୃତ୍ୟୁ ଭିତରୁ କାହାକୁ ବାଛିନେବାକୁ ପଡ଼ିବ ଏପରି ଅବସ୍ଥାରେ ରଖେ ନାହିଁ ।"

ଫାସିଜିମ୍ ଅତ୍ୟନ୍ତ ଜାତୀୟତାବାଦୀ, କମ୍ୟୁନିଜିମ୍ ହେଉଛି ଅନ୍ତର୍ଜାତୀୟ । ଫାସିଜିମ୍ ପ୍ରକୃତରେ ଅନ୍ତର୍ଜାତୀୟତାର ବିରୋଧ କରେ । ଏହା ରାଷ୍ଟ୍ରକୁ ଏକ ଦେବତା ଜ୍ଞାନ କରେ । ଏଥିପାଇଁ ବ୍ୟକ୍ତି ସ୍ୱାଧୀନତା ଓ ଅଧିକାର ତ୍ୟାଗ କରିବାକୁ ପଡ଼ିବ; ଅନ୍ୟ ସବୁ ଦେଶ ବିଦେଶୀ ଏବଂ ପ୍ରାୟ ଶତ୍ରୁ ସମାନ । ଇହୁଦୀମାନଙ୍କୁ ବିଦେଶୀ ବୋଲି ବିଚାର କରାଯାଉଥିବାରୁ ଖରାପ ବ୍ୟବହାର କରାଯାଏ । କେତେକ ପୁଞ୍ଜିବାଦବିରୋଧୀ ଧ୍ୱନି ଓ ବିପ୍ଳବୀ କୌଶଳ ସତ୍ତ୍ୱେ ଫାସିଜିମ୍ ସମ୍ପତ୍ତିଶାଳୀ ଓ ପ୍ରତିକ୍ରିୟାପନ୍ଥୀମାନଙ୍କ ସହିତ ସଂଯୁକ୍ତ ହୋଇ ରହିଛି ।

ଏଗୁଡ଼ିକ ଫାସିଜିମ୍‌ର ଖରାପ ଦିଗ । ଏହାର ଯଦିବା କିଛି ଦର୍ଶନ ରହିଛି, ତାହା ଜାଣିବା ମୁସ୍କିଲ । ଆମେ ଦେଖିଛେ କେବଳ କ୍ଷମତା ଅଭିଳାଷରେ ଏହା ଆରମ୍ଭ ହେଲା । ସଫଳତା ଆସିବା ପରେ ଏହାର ଏକ ଦର୍ଶନ ଗଢ଼ିବା ନିମନ୍ତେ ପ୍ରଚେଷ୍ଟା ହେଲା । ଏଇଥିରେ ହିଁ ଏହା କିପରି ନିହିତ ଅଛି ସେ ବିଷୟରେ ତୋ ମନରେ ଗୋଟାଏ ଧାରଣା

ଦେବା ନିମନ୍ତେ ଏବଂ ତୋ ଶନ୍ତାରାଜ୍ୟରେ ଗୋଲମାଲ ସୃଷ୍ଟି କରିବା ନିମନ୍ତେ ଜଣେ ଖ୍ୟାତନାମା ଫାସିଷ୍ଟ ଦାର୍ଶନିକଙ୍କ ଲେଖା ଏଠି ଉଦ୍ଧାର କରିବି । ତାଙ୍କ ନାମ ହେଉଛି ଜିଓଭାନି ଜେଣ୍ଟାଇଲ (Giovanni Gentile) ଏବଂ ସେ ଫାସିଜିମ୍‌ର ପ୍ରକୃତ ଦାର୍ଶନିକ ବୋଲି ତାଙ୍କୁ ଧରାଯାଏ; ସେ ମଧ୍ୟ ସରକାରରେ ଜଣେ ଫାସିଷ୍ଟ ମନ୍ତ୍ରୀ ଥିଲେ । ଜେଣ୍ଟାଇଲ କହନ୍ତି ଗଣତନ୍ତ୍ର ପରି ଲୋକେ ସେମାନଙ୍କର ନିଜଦ୍ୱାରା ବା ବ୍ୟକ୍ତିତ୍ୱ ବଳରେ ଆତ୍ମା-ଉପଲବ୍ଧି କରିବାର ଚେଷ୍ଟା କରିବା ଉଚିତ୍ ନୁହେଁ; କିନ୍ତୁ ଫାସିଜିମ୍ ଅନୁସାରେ ଏହା ପୃଥିବୀର ଆତ୍ମଚେତନା ପରି ଅତ୍ୟୁତ୍କୃଷ୍ଟ ଶନ୍ତାସିଙ୍କ କାର୍ଯ୍ୟଦ୍ୱାରା ହେବ (ଏହାର ଅର୍ଥ କିଣ ମୋର ବୁଦ୍ଧିର ଅଗମ୍ୟ) । ଏହିରୂପେ ଏହି ମତରେ ବ୍ୟକ୍ତି ସ୍ୱାଧୀନତା ଓ ବ୍ୟକ୍ତିତ୍ୱର ସ୍ଥାନ ନାହିଁ, କାରଣ ନିଜକୁ ରାଷ୍ଟ୍ରରେ ହରାଇ ଦେବାଦ୍ୱାରା ସେ ଯାହା ପାଏ ତାହାହିଁ ପ୍ରକୃତ ବାସ୍ତବତା ଓ ବ୍ୟକ୍ତିସ୍ୱାଧୀନତା ।

"ପରିବାର, ରାଷ୍ଟ୍ର ଆତ୍ମାରେ ନିଜକୁ ମିଳାଇ ଦେବା ଦ୍ୱାରା ମୋର ବ୍ୟକ୍ତିତ୍ୱ ଦମନ ହୋଇ ନାହିଁ, କିନ୍ତୁ ଉନ୍ନତ ହୋଇଛି, ଦୃଢ଼ ହୋଇଛି ଓ ବୃଦ୍ଧି ପାଇଛି ।"

ପୁଣି ଜେଣ୍ଟାଇଲ କହିଛନ୍ତି—"ଯାହା ଯୁକ୍ତି କରାଯାଉ ନା କାହିଁକି ଧର୍ମବାଣୀ ବା ଲଠି ଯାହା କିଛି ମନୁଷ୍ୟର ଇଚ୍ଛା ଶକ୍ତି ଉପରେ ପ୍ରଭାବ ପକାଏ ତାହାହିଁ ନୈତିକ ବଳ ।"

ତେଣୁ ଆମେ ଏବେ ଜାଣିଲେ ଯେ ବ୍ରିଟିଶ ସରକାର ଭାରତରେ ଲଠିମାଡ଼ ଦେଇ ଖୁବ୍ ନୈତିକ ବଳର ପରିଚୟ ଦେଲେ ।

ଘଟି ଯାଇଥିବା ଜିନିଷକୁ ଯଥାର୍ଥ ବୋଲି ପ୍ରତିପାଦନ କରିବା ଓ ବୁଝାଇବାର ଏ ସବୁ ପରବର୍ତ୍ତୀ ପ୍ରଚେଷ୍ଟା । ଆଉ ମଧ୍ୟ କୁହାଯାଏ ଫାସିଜିମ୍‌ର ଲକ୍ଷ୍ୟ ହେଉଛି "ସାମୂହିକ ରାଷ୍ଟ୍ର" (Corporative State) । ଏଥିରେ ମୋର ମନେହୁଏ ଏପରି ବ୍ୟବସ୍ଥାରେ ସାଧାରଣ ମଙ୍ଗଳ ନିମନ୍ତେ ପ୍ରତ୍ୟେକ ଲୋକ ଏକାଠି ମିଳି କାମ କରନ୍ତି । କିନ୍ତୁ ଇଟାଲୀ ବା ଅନ୍ୟ କୁଆପି ଏପରି କାର୍ଯ୍ୟ ଏ ପର୍ଯ୍ୟନ୍ତ ହୋଇ ନାହିଁ । କେତେକ କଟକଣା ପ୍ରବର୍ତ୍ତିତ କରାଯାଇ ଥିଲେ ସୁଦ୍ଧା ଅନ୍ୟ ପୁଞ୍ଜିବାଦୀ ଦେଶମାନଙ୍କ ପରି ଇଟାଲୀରେ ଅଳ୍ପେ ଅଧିକେ ସମାନ ଭାବରେ ପୁଞ୍ଜିବାଦ କାର୍ଯ୍ୟ କରୁଛି ।

ଫାସିଜିମ୍ ଅନ୍ୟ ଦେଶରେ ବିସ୍ତାର ଲଭିବାରୁ ଏହା ପରିଷ୍କାର ଜଣାପଡ଼ୁଛି ଯେ ଏହା ଏକ ବିଶେଷ ଇଟାଲୀୟ ଗୁଣ ନୁହେଁ, କିନ୍ତୁ କୌଣସି ଦେଶରେ ଯେତେବେଳେ ନିର୍ଦ୍ଦିଷ୍ଟ ସାମାଜିକ ଓ ଆର୍ଥିକ ଅବସ୍ଥା ପହଞ୍ଚେ, ଏହାର ଆବିର୍ଭାବ ହୁଏ । ଯେତେବେଳେ ଶ୍ରମିକମାନେ କ୍ଷମତାଶାଳୀ ହୁଅନ୍ତି ଏବଂ ପ୍ରକୃତରେ ପୁଞ୍ଜିବାଦୀ ରାଷ୍ଟ୍ର ଭୟାକୁଳ ହୋଇଯାଏ, ସେତେବେଳେ ଏହା ସ୍ୱାଭାବିକରୂପେ ନିଜକୁ ରକ୍ଷା କରିବା ନିମନ୍ତେ ଚେଷ୍ଟା କରେ । ସାଧାରଣତଃ ଭୀଷଣ ଆର୍ଥିକ ସଙ୍କଟବେଳେ ଶ୍ରମିକମାନଙ୍କଠାରୁ ଏପରି ଭୟ ଆଶଙ୍କା

କରାଯାଏ । ମାଲିକ ଓ ଶାସକଶ୍ରେଣୀ ଯଦି ସାଧାରଣ ଗଣତାନ୍ତ୍ରିକ ଉପାୟରେ ପୁଲିସ ଓ ସେନା ବ୍ୟବହାର କରି ଶ୍ରମିକମାନଙ୍କୁ ଦମନ କରି ନ ପାରନ୍ତି, ତେବେ ସେମାନେ ଫାସିଷ୍ଟ ପନ୍ଥା ଗ୍ରହଣ କରନ୍ତି । ଏଥିରେ ଏକ ଲୋକପ୍ରିୟ ଗଣଆନ୍ଦୋଳନ ସୃଷ୍ଟି କରାଯାଏ; ଜନସାଧାରଣଙ୍କ ହୃଦୟଗ୍ରାହୀ ହେଲା ପରି କେତେକ ଧ୍ୱନି କରାଯାଏ, କିନ୍ତୁ ମାଲିକ ପୁଞ୍ଜିବାଦୀ ଶ୍ରେଣୀ ରକ୍ଷାହିଁ ଏହାର ଲକ୍ଷ୍ୟ । ନିମ୍ନ ମଧ୍ୟବିତ୍ତ ଶ୍ରେଣୀହିଁ ଏହି ଆନ୍ଦୋଳନର ମେରୁଦଣ୍ଡ—ସେମାନଙ୍କ ଭିତରୁ ଅଧିକାଂଶ ଅକର୍ମୀ ହୋଇ ପାରିଥାନ୍ତି ଓ ରାଜନୀତିକ ଭାବରେ ଅନୁନ୍ନତ ଅସଙ୍ଗଠିତ ଶ୍ରମିକ କୃଷକ ନିଜ ଅବସ୍ଥାର ଉନ୍ନତି ହେବାର ଆଶା କରି ଏହି ଧ୍ୱନିଦ୍ୱାରା ଆକୃଷ୍ଟ ହୋଇ ଏଥି ଭିତରକୁ ଆସନ୍ତି । ବଡ଼ ବୁର୍ଜୋୟାମାନେ ଏଥିରେ ଲାଭବାନ ହେବେ ବୋଲି ଆଶା କରି ଏପରି ଆନ୍ଦୋଳନକୁ ଅର୍ଥ ସାହାଯ୍ୟ କରନ୍ତି ଏବଂ ଯଦିଓ ହିଂସା ଏହାର ଧର୍ମ ଓ ଦୈନନ୍ଦିନ ବ୍ୟବହାର ହୋଇଥାଏ, ତଥାପି ସାଧାରଣ ଶତ୍ରୁ ଅର୍ଥାତ୍ ସାମ୍ୟବାଦୀ ଶ୍ରମିକ ବିରୁଦ୍ଧରେ ଏହା ଲଢ଼ାଇ କରୁଥିବାରୁ ଦେଶର ପୁଞ୍ଜିବାଦୀ ଶାସନ ଏହାକୁ ବହୁ ପରିମାଣରେ ସହ୍ୟ କରେ । ଏକ ଦଳ ହିସାବରେ ଏବଂ ଆହୁରି ବେଶୀ ଯଦି କୌଣସି ଦେଶରେ ଏହା ସରକାର ହୋଇଯାଏ । ତେବେ ଏହା ଶ୍ରମିକ ସଙ୍ଗଠନ ଧ୍ୱଂସ କରିଦିଏ ଏବଂ ସମସ୍ତ ବିରୋଧୀଙ୍କୁ ଆତଙ୍କିତ କରି ପକାଏ ।

ତେଣୁ ଯେତେବେଳେ ଅଗ୍ରଗାମୀ ସାମ୍ୟବାଦ ଓ ଛଳାଭିଷିକ୍ତ ପୁଞ୍ଜିବାଦ ଭିତରେ ଶ୍ରେଣୀ ସଂଘର୍ଷ ଅତ୍ୟନ୍ତ ତିକ୍ତ ଓ ସଙ୍କଟପୂର୍ଣ୍ଣ ହୋଇଯାଏ, ସେତେବେଳେ ଫାସିଜିମ୍‌ର ଆବିର୍ଭାବ ହୁଏ । ଏହି ସାମାଜିକ ସଂଗ୍ରାମ ବୁଝିବାରେ ଭୁଲ ଯୋଗୁଁ ହୁଏନା, ମାତ୍ର ଆମର ଆଜିକାଲିର ସମାଜରେ ନିହିତ ବିଭିନ୍ନ ସ୍ୱାର୍ଥର ସଂଘର୍ଷକୁ ଭଲ ରୂପେ ଉପଲବ୍ଧି କରିବାରେ ହିଁ ଜାତ ହୁଏ । ଏଗୁଡ଼ିକ ଅବଜ୍ଞା କରିବା ଦ୍ୱାରା ଏହି ସଙ୍ଘର୍ଷ ଦୂର ହୋଇ ପାରିବ ନାହିଁ । ପ୍ରଚଳିତ ବ୍ୟବସ୍ଥାରେ ଯେଉଁମାନେ କଷ୍ଟ ଭୋଗ କରୁଛନ୍ତି, ସେମାନେ ଯେତେ ଅଧିକ ସ୍ୱାର୍ଥର ବିଭିନ୍ନତା ବୁଝିପାରିବେ, ତେତେ ଅଧିକଭାବରେ ସେମାନେ ନିଜର ଅଂଶ ବୋଲି ବିଚାରନ୍ତି ସେଥିରୁ ବଞ୍ଚିତ ହୋଇଥିବାରୁ ଅସନ୍ତୋଷ ପ୍ରକାଶ କରିବେ । ମାଲିକ ଶ୍ରେଣୀର ଯାହା ଅଛି ତାହା ସେମାନେ ଛାଡ଼ିବାକୁ ଚାହାନ୍ତି ନାହିଁ ଏବଂ ତେଣୁ ସଙ୍ଘର୍ଷ ତୀବ୍ର ହୁଏ । ଯେତେ ଦିନ ପର୍ଯ୍ୟନ୍ତ ପୁଞ୍ଜିବାଦ କ୍ଷମତା ହାତରେ ରଖିବା ପାଇଁ ଏବଂ ଶ୍ରମିକଙ୍କୁ ଦବାଇବା ପାଇଁ ଗଣତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକ ବ୍ୟବହାର କରିପାରେ, ସେ ପର୍ଯ୍ୟନ୍ତ ଗଣତନ୍ତ୍ର ବୃଦ୍ଧି କରିବାକୁ ଦିଆଯାଏ । ଯେତେବେଳେ ତାହା ସମ୍ଭବ ହୁଏନା, ସେତେବେଳେ ପୁଞ୍ଜିବାଦ ଗଣତନ୍ତ୍ର ତ୍ୟାଗ କରେ ଏବଂ ପ୍ରକାଶ୍ୟ ହିଂସା ଓ ଆତଙ୍କ ପନ୍ଥା ଗ୍ରହଣ କରେ ।

ମୋର ମନେହୁଏ ରୁଷ ଛଡ଼ା ଇଉରୋପର ଅନ୍ୟ ସମସ୍ତ ଦେଶରେ ବିଭିନ୍ନ ପରିମାଣରେ ଫାସିଜିମ ପ୍ରଚଳିତ ଅଛି । ଜର୍ମାନୀରେ ଏହାର ଶେଷ ବିଜୟ ହୋଇଛି । ଇଂଲଣ୍ଡରେ ମଧ୍ୟ ଶାସକ ଶ୍ରେଣୀଙ୍କ ଭିତରେ ଫାସିଷ୍ଟ ଭାବଧାରା ବିସ୍ତାର ଲଭୁଛି ଏବଂ

ଭାରତରେ ଆମେ ଅନେକ ସମୟରେ ତାର ପ୍ରୟୋଗ ଦେଖୁ । ବିଶ୍ୱମଞ୍ଚରେ ପୁଞ୍ଜିବାଦର ଅନ୍ତିମ ପ୍ରଚେଷ୍ଟା ଫାସିଜିମ୍ ଆଜି କମ୍ୟୁନିଜିମ୍‌ର ସମ୍ମୁଖୀନ ହୋଇଛି ।

ଏହି ସବୁ ଅନ୍ୟ କଥା ଛଡ଼ା ମଧ୍ୟ ଆଜି ଯେଉଁ ସବୁ ଆର୍ଥିକ ଦୁର୍ଦ୍ଦଶା ଦୁନିଆଁକୁ ଗ୍ରାସ କରିଛି ଫାସିଜିମ୍ ତାର ସମାଧାନର କିଛି ବାଟ ବତାଏ ନାହିଁ । ଏହାର ଉଗ୍ର ଓ ଉଦ୍ଧତ ଜାତୀୟତା ଯୋଗୁଁ ପୃଥିବୀରେ ପରସ୍ପର ନିର୍ଭରଶୀଳତା ପ୍ରବୃତ୍ତି ଯେ ରହିଛି ଏହା ତାହା ବିରୁଦ୍ଧରେ ଯାଏ, ପୁଞ୍ଜିବାଦର ପତନ ଅବସ୍ଥାରେ ଯେଉଁ ସବୁ ସମସ୍ୟା ସୃଷ୍ଟି ହୁଏ ତାକୁ ବଢ଼ାଇ ଦିଏ ଏବଂ ଜାତିବବାଦ ବଢ଼େ—ତାହା ଫଳରେ ଅନେକ ସମୟରେ ଯୁଦ୍ଧ ଲଗେ ।

## ୧୭୭: ଚୀନ୍‌ରେ ବିପ୍ଳବ ଓ ପ୍ରତି-ବିପ୍ଳବ

ଜୁନ ୨୭, ୧୯୩୩

ଅଟ୍ଲାଣ୍ଟିକର ଇଉରୋପରୁ ଆମେ ଏବେ ବିଦାୟ ନେବା ଏବଂ ତାହା ଅପେକ୍ଷା ଆହୁରି ଦୁର୍ଦ୍ଦଶାପୂର୍ଣ୍ଣ ଅଞ୍ଚଳ ସୁଦୂର ପ୍ରାଚ୍ୟ—ଚୀନ ଓ ଜାପାନକୁ ଯିବା । ଚୀନ ସମ୍ବନ୍ଧରେ ମୋର ଗତ ଚିଠିରେ ଶିଶୁ ପ୍ରଜାତନ୍ତ୍ରର ଅନେକ ଅସୁବିଧା ବିଷୟ ଲେଖିଥିଲି—ପୃଥିବୀର ଏକ ଅତି ପୁରାତନ ଓ ଜୀବନ୍ତ ସଂସ୍କୃତି ଭୂମିରେ ଏହା ସ୍ଥାପିତ ହୋଇଥିଲା । ଦେଶଟି ବିଭକ୍ତ ହେଲାପରି ମନେହେଲା ଏବଂ ବିବେଚନାହୀନ ଯୁଦ୍ଧ-ସାମନ୍ତ ଟୁଚୁନ୍ ଓ ଅତି ଟୁଚୁନ୍‌ମାନେ ପ୍ରଧାନ ହୋଇ ଉଠିଲେ—ସେମାନଙ୍କୁ ଅନେକ ସମୟରେ ସାମ୍ରାଜ୍ୟବାଦୀ ଶକ୍ତିମାନେ ସାହାଯ୍ୟ ଓ ଉତ୍ସାହିତ କରୁଥିଲେ । ଏହି ଶକ୍ତିମାନେ ଚୀନକୁ ଦୁର୍ବଳ ଓ ବିଭକ୍ତ କରିବାକୁ ଚାହିଁଥିଲେ । ଏହି ଟୁଚୁନ୍‌ମାନଙ୍କର କୌଣସି ନୀତି ନ ଥିଲା; ନିଜର ବ୍ୟକ୍ତିଗତ ଉନ୍ନତି ପାଇଁ ସେମାନେ ଧାଉଁଥିଲେ ଏବଂ ଯେଉଁସବୁ ଶ୍ରେଷ୍ଠ ଶ୍ରେଷ୍ଠ ଗୃହଯୁଦ୍ଧ ବରାବର ଚାଲୁଥିଲା, ସେଥିରେ ସେମାନେ ଏପାଖ ସେପାଖ ବହୁତ ଥର ହୁଅନ୍ତି । ସେମାନେ ଅଭାଗା କୃଷକମାନଙ୍କ ଉପରେ ସୈନ୍ୟ ନେଇ ଅତ୍ୟାଚାର କରୁଥିଲେ । ବିଶିଷ୍ଟ ନେତା ଡାକ୍ତର ସନ୍-ୟାଟ୍-ସେନ୍ ଚୀନର ସ୍ୱାଧୀନତା ସକାଶେ ନିଜର ସମସ୍ତ ଜୀବନ ଦେଇ କାର୍ଯ୍ୟ କରିଥିଲେ—ସେ ଦକ୍ଷିଣରେ କାଣ୍ଟନରେ ଯେଉଁ ଜାତୀୟବାଦୀ ସରକାର ସଂଗଠନ କରିଥିଲେ ସେ କଥା ବି କହିଛି ।

ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଆର୍ଥିକ ସ୍ୱାର୍ଥ ଦୃଷ୍ଟି ସମଗ୍ର ଦେଶ ଉପରେ ପଡ଼ିଥିଲା—ସେମାନେ ବଡ଼ ବଡ଼ ବନ୍ଦର ସହର ସାଙ୍ଘାଇ, ହଂକଂ ଇତ୍ୟାଦିରେ ରହୁଥିଲେ ଏବଂ ଚୀନର ସବୁ ବିଦେଶୀ ବେପାର ନିୟନ୍ତ୍ରଣ କରୁଥିଲେ । ଡାକ୍ତର ସନ୍ ଠିକ୍ କହିଛନ୍ତି—ଚୀନ ଅର୍ଥନୈତିକ ଦୃଷ୍ଟିରେ ଏହି ସବୁ ଶକ୍ତିମାନଙ୍କର ଉପନିବେଶ ଥିଲା । କୌଣସି ଏକ ଖାମିନ୍ଦ ରହିବା ତ ଖରାପ, ବେଶୀ ଖାମିନ୍ଦ ରହିବା ବେଳେ ବେଳେ ଆହୁରି ଖରାପ । ନିଜର ଦେଶକୁ ଶିଳ୍ପ ଦିଗରେ ଉନ୍ନତ କରିବା ନିମନ୍ତେ ଏବଂ ଶୃଙ୍ଖଳାରେ ପକାଇବା ନିମନ୍ତେ ଡାକ୍ତର ସନ ବିଦେଶୀ ସାହାଯ୍ୟ ଆଣିବାକୁ ଚେଷ୍ଟା କଲେ । ବିଶେଷ ଭାବରେ ସେ ଆମେରିକା ଓ ବ୍ରିଟେନକୁ ଗୁହାରିଲେ, ମାତ୍ର ତାଙ୍କ ଭିତରୁ କେହି କିମ୍ବା କୌଣସି ସାମ୍ରାଜ୍ୟବାଦୀ ଶକ୍ତି ତାଙ୍କୁ ସାହାଯ୍ୟ କଲେ ନାହିଁ । ସେମାନଙ୍କର ସ୍ୱାର୍ଥ ଥିଲା ଚୀନକୁ ଶୋଷଣ କରିବା—ମଙ୍ଗଳ କରିବା ବା ବଳବାନ କରିବା ମତଲବ ନ ଥିଲା । ତାପରେ ୧୯୨୪ରେ ଡାକ୍ତର ସନ୍ ସୋଭିଏଟ ରୁଷକୁ ସାହାଯ୍ୟ ମାଗିଲେ ।

ଚୀନର ଯୁବକ ଓ ଶିକ୍ଷିତ ଶ୍ରେଣୀଙ୍କ ଭିତରେ କମ୍ୟୁନିଜିମ ଗୁପ୍ତଭାବରେ ଏବଂ ଶୀଘ୍ର ବୃଦ୍ଧି ପାଉଥିଲା । ୧୯୨୦ରେ ଗୋଟିଏ କମ୍ୟୁନିଷ୍ଟ ପାର୍ଟି ଗଢ଼ାହୋଇଥିଲା ଏବଂ ବିଭିନ୍ନ ସରକାର ପ୍ରକାଶ୍ୟରେ କାର୍ଯ୍ୟ କରିବାକୁ ଦେଉ ନ ଥିବାରୁ ଏହା ଗୁପ୍ତ ସମିତି ଭାବରେ ରହି କାର୍ଯ୍ୟ କରୁଥିଲା । ଡାକ୍ତର ସନ୍ ନିଜେ ଜଣେ କମ୍ୟୁନିଷ୍ଟ ନ ଥିଲେ; ସେ ଜଣେ ନରମା ସୋସାଲିଷ୍ଟ, ତାଙ୍କର ବିଖ୍ୟାତ "ଲୋକଙ୍କ ପାଇଁ ତିନୋଟି ନୀତି"ରୁ ଜଣାପଡ଼େ । ଯାହା ହେଉ ସୋଭିଏଟର ଚୀନ ଓ ଅନ୍ୟ ପ୍ରାଚ୍ୟ ଦେଶମାନଙ୍କ ପ୍ରତି ଉଦାର ଓ ଖୋଲା ବ୍ୟବହାରରେ ସେ ମୁଗ୍ଧ ହୋଇଥିଲେ ଏବଂ ସେମାନଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ, ସେ କେତେକ ରୁଷ ପରାମର୍ଶଦାତା ନିଯୁକ୍ତ କଲେ; ତାଙ୍କ ଭିତରେ ବୋରୋଡ଼ିନ ହେଉଛନ୍ତି ଜଣେ ଦକ୍ଷ ବଲସେଭିକ । କ୍ୟାଣ୍ଟନର କୋମିନଟାଙ୍ଗରେ ବୋରୋଡ଼ିନ ଜଣେ ପ୍ରଭାବଶାଳୀ ବ୍ୟକ୍ତି ହୋଇ ରହିଲେ ଏବଂ ସେ ଶକ୍ତିଶାଳୀ ଜାତୀୟ ଦଳ ସଂଗଠନ କରି ଯେପରି ଜନସାଧାରଣଙ୍କ ସମର୍ଥନ ପାଏ ସେହି ଅନୁସାରେ କାର୍ଯ୍ୟ କରିବାରେ ଲାଗିଲେ । ସେ ପୁରାପୁରି କମ୍ୟୁନିଷ୍ଟ ଧାରାରେ କାର୍ଯ୍ୟ କରି ନ ଥିଲେ । ସେ ଦଳକୁ ଜାତୀୟ ଭିତ୍ତି ଉପରେ ସ୍ଥାପନ କଲେ, କିନ୍ତୁ କୋମିନ୍ଟାଙ୍ଗରେ କମ୍ୟୁନିଷ୍ଟମାନଙ୍କୁ ସଭ୍ୟରୂପେ ଗ୍ରହଣ କରାଗଲା; ସୁତରାଂ ଏହିରୂପେ ଜାତୀୟବାଦୀ କୋମିନ୍ଟାଙ୍ଗ ଓ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ଗୋଟିଏ ପ୍ରକାର ବେସରକାରୀ ମିତ୍ରତା ସ୍ଥାପିତ ହେଲା । କୋମିନଟାଙ୍ଗର ଅନେକ ରକ୍ଷଣଶୀଳ ଓ ଧନୀ ସଭ୍ୟ ବିଶେଷତଃ ଜମିଦାରମାନେ କମ୍ୟୁନିଷ୍ଟମାନଙ୍କ ସହିତ ଏ ସହଯୋଗ ପସନ୍ଦ କଲେ ନାହିଁ । ଅନ୍ୟ ପକ୍ଷରେ ଅନେକ କମ୍ୟୁନିଷ୍ଟ ବି ସେମାନଙ୍କୁ ପସନ୍ଦ କରୁ ନ ଥିଲେ, କାରଣ ତଦ୍ୱାରା ସେମାନଙ୍କର କାର୍ଯ୍ୟପନ୍ଥାକୁ ଅନେକ କୋହଳ କରିବାକୁ ପଡ଼େ ଓ ଅନ୍ୟଥା ସେମାନେ ଯେଉଁସବୁ କାମ କରି ପାରିଥାନ୍ତେ ଏଥିରେ କରିପାରିନ୍ତି ନାହିଁ । ଏହି ମିତ୍ରତା ବିଶେଷ ଦୃଢ଼ ହୋଇ ନ ଥିଲା ଏବଂ ଆମେ ଦେଖିବା ଏକ ସଙ୍କଟ କାଳରେ ଏହା

ଖାଙ୍କିପଡ଼ିଲ ଓ ଏହାଦ୍ୱାରା ଚୀନର ଦୁର୍ଦ୍ଦଶା ବଢ଼ିଲ । ଗୋଟିଏ ଦଳ ଭିତରେ ପରସ୍ପର ସ୍ୱାର୍ଥରେ ସଙ୍ଘର୍ଷ କରୁଥିବା ଦୁଇଟି ବା ତତୋଽଧିକ ଶ୍ରେଣୀଙ୍କୁ ଏକତ୍ର ରଖିବା ସର୍ବଦା କଷ୍ଟକର । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଏହି ମିତ୍ରତା ରହିଥିଲା ଏହା ଅଦ୍ଭୁତ ପ୍ରକାରେ ବୃଦ୍ଧି ପାଇଲା ଏବଂ କୋମିନ୍‌ଟାଙ୍ଗ ଓ କ୍ୟାଣ୍ଟନ ସରକାରର ଶକ୍ତି ବଢ଼ିଲା, ପ୍ରଜା ସଙ୍ଗଠନମାନ ଉତ୍ସାହିତ କରାଗଲା ଓ ଦ୍ରୁତ ଗତିରେ ଏହା ବିସ୍ତାର ଲାଭକଲା । ସେହିପରି ଶ୍ରମିକଙ୍କର ଟ୍ରେଡ଼ ଇଉନିୟନ ମଧ୍ୟ ବ୍ୟାପିଲା, ଏହି ଜନସମର୍ଥନ ଲାଭ କରିବାରୁ କ୍ୟାଣ୍ଟନ କୋମିନ୍‌ଟାଙ୍ଗ ହାତରେ ପ୍ରକୃତ କ୍ଷମତା ଆସିଲା ଏବଂ ଏହି କାରଣରୁ ହିଁ ଜମିଦାର ନେତାମାନେ ଉତ୍କଣ୍ଠିତ ହେଲେ ଓ ପରେ ଦଳ ଛାଡ଼ି ଚାଲିଗଲେ ।

ଅନେକ ଆମୂଳଚୂଳ ପାର୍ଥକ୍ୟ ସତ୍ତ୍ୱେ ଚୀନ ଅବସ୍ଥା ସହି ଭାରତ ଅବସ୍ଥାର ବହୁତ ସାମଞ୍ଜସ୍ୟ ରହିଛି । ଚୀନ ମୁଖ୍ୟତଃ ଏକ କୃଷି ପ୍ରଧାନ ଦେଶ; ବହୁସଂଖ୍ୟକ କୃଷକ ଏଠାରେ ଅଛନ୍ତି । ପ୍ରାୟ ଅଧଡ଼ଜନ ସହରରେ ପୁଞ୍ଜିବାଦୀ ଶିଳ୍ପ ରହିଛି ଏବଂ ତାହା ପୁଣି ବିଦେଶୀଙ୍କ ହାତରେ । ଲକ୍ଷ ଲକ୍ଷ କୃଷକ ଓ ପ୍ରଜା ଦାରୁଣ ଋଣ-ଭାରରେ ପେଷି ହେଉଛନ୍ତି । ଖଜଣା-ହାର ଅତି ଉଚ୍ଚ ଏବଂ ଭାରତ ପରି ବର୍ଷକରେ ଦୀର୍ଘକାଳ ପର୍ଯ୍ୟନ୍ତ ଘୂର୍ଣ୍ଣୀକୂଳ ବାଧ୍ୟ ହୋଇ ଅଳସୁଆ ହୋଇ ରହନ୍ତି । କ୍ଷେତରେ କିଛି କାମ କରିବାର ନ ଥାଏ । ଏହି ସମୟରେ ନିଯୁକ୍ତ ହେବା ପାଇଁ ଓ ତାଙ୍କର ଆୟ ବଢ଼ାଇବା ପାଇଁ ତେଣୁ କୁଟୀରଶିଳ୍ପ ଲୋଡ଼ା । ବାସ୍ତବିକ ଏବେ କୁଟୀରଶିଳ୍ପର ପ୍ରଚାର ହେଲାଣି । ସେଠାରେ ଅତି ବଡ଼ ଇଲାକା ଅଛି । କୌଣସି ଇଲାକା ବଡ଼ ହେଲା ମାତ୍ରେ ଅଳ୍ପ ଦିନ ଭିତରେ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବଣ୍ଟା ହୋଇଯାଏ । ଅର୍ଦ୍ଧେକ କୃଷକଙ୍କର ନିଜର କ୍ଷେତ ରହିଛି । ଅନ୍ୟ ଅର୍ଦ୍ଧେକ ଜମିଦାରଙ୍କ ଅଧୀନରେ କାର୍ଯ୍ୟ କରନ୍ତି । ତେଣୁ ଚୀନରେ ବହୁ ସଂଖ୍ୟକ ଶ୍ରେଷ୍ଠ କ୍ଷେତଜମି ରହିଛି । ଶହ ଶହ ବର୍ଷ ଧରି ଚୀନା କୃଷକମାନେ ଏହି ଜମିରୁ ନିଜର ଚଳିବା ଭଳି ଆୟ ଆମଦାନି କରିବାର ଦକ୍ଷତା ଦେଖାଇ ଆସିଛନ୍ତି । ସେମାନଙ୍କର କ୍ଷେତର ଆକାର ଅତି କ୍ଷୁଦ୍ର ହୋଇଥିବାରୁ ଏପରି କରିବାକୁ ବାଧ୍ୟ ହୁଅନ୍ତି । ସେମାନେ ଅଦ୍ଭୁତ କୌଶଳ ଖଟାନ୍ତି ଓ ଖୁବ୍ କଠୋର ପରିଶ୍ରମ କରନ୍ତି । ଆଧୁନିକ କୃଷି ପ୍ରଣାଳୀରେ ଯେପରି ଶ୍ରମ ବଞ୍ଚାଇବାର ପ୍ରଚେଷ୍ଟା ରହିଛି ସେମାନଙ୍କର ସେ ସବୁ ନ ଥିଲା ଏବଂ ଏହିହେତୁ ଯାହା ଫଳ ମିଳୁଥିଲା ସେଥିପାଇଁ ଦରକାରୀ ଶ୍ରମ ଅପେକ୍ଷା ଏମାନେ କଠୋର ପରିଶ୍ରମ କରୁଥିଲେ ।

ଏ ସମସ୍ତ କୌଶଳ ଖଟାଇ ଓ କଠୋର ପରିଶ୍ରମ କରି ସୁଦ୍ଧା ପ୍ରାୟ ଅର୍ଦ୍ଧେକ କୃଷକ ନିଜର ଭରଣପୋଷଣ ମେଣ୍ଟାଇ ପାରୁ ନ ଥିଲେ, ଏବଂ ଭାରତରେ ଅଧିକ ସଂଖ୍ୟକ କୃଷକଙ୍କ ଦୁର୍ଭାଗ୍ୟ ପରି ଏମାନେ ଅଧପେଟେ ଖାଇ ରହନ୍ତି; ସେଥିପାଇଁ ଅଳ୍ପଦିନ ବଞ୍ଚନ୍ତି ଓ ଖୁବ୍ ବାଙ୍ଗର ହୁଅନ୍ତି । ସେମାନେ ପ୍ରାୟ ଦାରିଦ୍ର୍ୟର ଭିକାରି ଅବସ୍ଥାରେ ଥାଆନ୍ତି; ଅକାଳ ପଡ଼େ, ଦୁର୍ଭିକ୍ଷ, ବନ୍ୟା ଆସେ ଏବଂ ଲକ୍ଷ ଲକ୍ଷ ଲୋକଙ୍କୁ ଉଡ଼ାଇ ନିଏ । ବୋରୋଡ଼ିନଙ୍କ ପରାମର୍ଶ ଅନୁସାରେ ଡାକ୍ତର ସନ୍‌ଙ୍କ ସରକାର କୃଷକ ଓ ଶ୍ରମିକମାନଙ୍କର ଅବସ୍ଥା ଲାଘବ

କରିବା ନିମନ୍ତେ ଆଇନ ପାସ କଲା । ଭୂମିକର ଶତକଡ଼ା ପଚଶ କମାଇ ଦିଆଗଲା, ଶ୍ରମିକ-ମାନଙ୍କ ପାଇଁ ଦୈନିକ ଆଠଘଣ୍ଟା ପରିଶ୍ରମ ଓ ଅନ୍ୟୂନ ମଜୁରି ହାର ନିର୍ଦ୍ଦିଷ୍ଟ କରାଗଲା ଏବଂ କୃଷକ ସଂଘ ସ୍ଥାପନା କରାଗଲା । ଏହି ସବୁ ସଂସ୍କାରକୁ ଜନସାଧାରଣ ସ୍ୱାଗତ କରିବା ସ୍ୱାଭାବିକ ଏବଂ ସେମାନେ ଉତ୍ସାହରେ ନାଚ ଉଠିଲେ । ଦଳ ଦଳ ହୋଇ ନୂତନ କୃଷକ ସଂଘରେ ଯୋଗ ଦେଲେ ଏବଂ କ୍ୟାଣ୍ଟନ ସରକାରକୁ ସମର୍ଥନ କଲେ ।

ଏହିରୂପେ କ୍ୟାଣ୍ଟନ ନିଜେ ପ୍ରତିଷ୍ଠିତ ହେଲା ଓ ଉତ୍ତରର ଟୁଚୁନମାନଙ୍କ ସହିତ ସଂଗ୍ରାମ କରିବା ଲାଗି ପ୍ରସ୍ତୁତ ହେଲା । ଏକ ସାମରିକ ସ୍କୁଲ୍ ଖୋଲା ହେଲା ଓ ସେନାବାହିନୀ ଗଠନ କରାହେଲା । ଆଉ ମଜାର କଥା ହେଉଛି ଯେ କେବଳ କ୍ୟାଣ୍ଟନରେ କାହିଁକି ସମଗ୍ର ଚୀନରେ ଏବଂ କେତେକ ପରିମାଣରେ ସମଗ୍ର ପ୍ରାଚ୍ୟ ଦେଶରେ ଧର୍ମ ସମ୍ବନ୍ଧୀୟ କର୍ତ୍ତୃତ୍ୱ ସ୍ଥାନରେ ଭୌତିକ ସତ୍ତା ସ୍ଥାପନା କରାଗଲା; ଅବଶ୍ୟ ସଂକୀର୍ଣ୍ଣ ଅର୍ଥରେ ଚୀନ କେବେ ଧାର୍ମିକ ଦେଶ ନ ଥିଲା, ଏବେ ଏହା ଆହୁରି ଅଧିକ ଭୌତିକ ହୋଇଗଲା । ଧର୍ମ ସମ୍ବନ୍ଧୀୟ ଶିକ୍ଷା ପରିବର୍ତ୍ତେ ଭୌତିକ ଶିକ୍ଷା ଦିଆଗଲା । ପୁରାତନ ମନ୍ଦିରମାନଙ୍କରେ ଏଥିଲାଗି ଯେପରି ଉପଯୋଗ କରାଗଲା ତାହା ଏ ଦିଗରେ ସ୍ପଷ୍ଟ ଦୃଷ୍ଟାନ୍ତ । କ୍ୟାଣ୍ଟନରେ ଗୋଟିଏ ପୁରାତନ ପ୍ରସିଦ୍ଧ ମନ୍ଦିର ଏବେ ପୁଲିସ-ଶିକ୍ଷା-ଅନୁଷ୍ଠାନ ହୋଇଛି । ଆଉ ଏକ ସ୍ଥାନରେ ମନ୍ଦିର ଦରବୁ ପରିବା ବଜାରରେ ପରିଣତ କରାଯାଇଛି ।

ଡାକ୍ତର ସନ-ୟାତ-ସେନ ୧୯୨୫ ମାର୍ଚ୍ଚ ମାସରେ ମଲେ, କିନ୍ତୁ କ୍ୟାଣ୍ଟନ ସରକାରର ଶକ୍ତି ବୃଦ୍ଧି ପାଇବାକୁ ଲାଗିଲା । ବୋରୋଡିନ ତାଙ୍କର ପରାମର୍ଶଦାତାରୂପେ ଥାନ୍ତି । ଅଳ୍ପ କେତେକ ଦିନ ପରେ କେତେକ ଘଟଣା ହେତୁ ବିଦେଶୀ ସାମ୍ରାଜ୍ୟବାଦୀ ଏବଂ ବିଶେଷତଃ ବ୍ରିଟିଶଙ୍କ ବିରୁଦ୍ଧରେ ଚୀନାଲୋକେ ବିଗିଡ଼ିଗଲେ । ସାଙ୍ଘାଇ ତୁଳା କଳରେ ଧର୍ମଘଟ ହେଲା ଏବଂ ୧୯୨୫ ମେ ମାସରେ ଏକ ଶୋଭାଯାତ୍ରାରେ ଜଣେ ଶ୍ରମିକଙ୍କୁ ହତ୍ୟା କରାଗଲା । ତା'ର ସ୍ମୃତିରକ୍ଷା କରିବା ନିମନ୍ତେ ବିରାଟ ବ୍ୟବସ୍ଥା ହେଲା ଏବଂ ଛାତ୍ର ଶ୍ରମିକମାନେ ସେହିଦିନ ବହୁତ ସାମ୍ରାଜ୍ୟବାଦବିରୋଧୀ ପ୍ରଦର୍ଶନମାନ କଲେ । ଶିଖ ପୁଲିସଙ୍କୁ ସାଙ୍ଗରେ ନେଇ ଜଣେ ବ୍ରିଟିଶ ପୁଲିସ କର୍ମଚାରୀ ଜନତା ଉପରେ ଗୁଳି ଚଳାଇବାର ଆଦେଶ ଦେଲେ । ହୁକୁମ ହେଲା "ମାରିବା ପାଇଁ ଗୁଳି କର" । ଗୁଳିରେ କେତେକ ଛାତ୍ର ମରିଗଲେ । ସମଗ୍ର ଚୀନରେ ବ୍ରିଟିଶ ବିରୁଦ୍ଧରେ କ୍ରୋଧାନଳ ଜଳିଉଠିଲା ଓ ତାହାର ପରବର୍ତ୍ତୀ ଏକ ଘଟଣା ଯୋଗୁଁ ଅବସ୍ଥା ଆହୁରି ଖରାପ ଆଡ଼କୁ ଗଲା । ଏ ଘଟଣା ୧୯୨୫ ଜୁନ୍ ମାସରେ କ୍ୟାଣ୍ଟନର ଏକ ବିଦେଶୀ ଅଧିକୃତ ଅଞ୍ଚଳରେ ହୋଇଥିଲା । (ଏହା ସାମିନ ଅଞ୍ଚଳ ନାମରେ ଜଣା ।) ଏକ ଚୀନ ଜନତା ଉପରେ ମେସିନଗନରୁ ଗୁଳି ସଂଏର ହେଲା । ସେଥିରେ ମୁଖ୍ୟତଃ ଛାତ୍ର ଥିଲେ । ୫୨ ଜଣ ମଲେ ଏବଂ ଆହୁରି ଅନେକ ଆହତ ହେଲେ । ଏହି "ସାମିନ ହତ୍ୟାକାଣ୍ଡ" ପାଇଁ ବ୍ରିଟିଶମାନଙ୍କୁ ପ୍ରଧାନତଃ ଦାୟୀ

କରାଗଲା । କ୍ୟାଣ୍ଟନରେ ବିଳାତି ଜିନିଷର ରାଜନୈତିକ ବର୍ଜନ ଘୋଷଣା କରାଗଲା ଓ ଅନେକ ମାସ ପର୍ଯ୍ୟନ୍ତ ହଂକଂ ବେପାର ଅଚଳ ଧରାଗଲା । ଏହା ଫଳରେ ବ୍ରିଟିଶ କୋମ୍ପାନି ଓ ବ୍ରିଟିଶ ସରକାରର ପ୍ରଭୂତ କ୍ଷତି ଘଟିଲା । ତୁ ବୋଧହୁଏ ଜାଣ ଦକ୍ଷିଣ ଚୀନରେ ହଂକଂ ଏକ ବ୍ରିଟିଶ ଇଲାକା । ଏହା କ୍ୟାଣ୍ଟନର ସମ୍ପୂର୍ଣ୍ଣ ନିକଟବର୍ତ୍ତୀ ଏବଂ ଏଠାରୁ ପ୍ରଚୁର ବେପାର ଚଳେ ।

ଡାକ୍ତର ସନ୍‌ଙ୍କ ମୃତ୍ୟୁ ପରେ କ୍ୟାଣ୍ଟନ ସରକାରର ରକ୍ଷଣଶୀଳ ଦକ୍ଷିଣପନ୍ଥୀ ଓ ଅଗ୍ରଗାମୀ ବାମପନ୍ଥୀଙ୍କ ଭିତରେ ବରାବର ସଂଘର୍ଷ ଲାଗିଲା । କେତେବେଳେ ଏ ଦଳ ତ ଅନ୍ୟ ବେଳେ ଅପର ଦଳ କ୍ଷମତା ପାଉଥିଲେ । ୧୯୨୬ ବେଳକୁ ଜଣେ ଦକ୍ଷିଣପନ୍ଥୀ ଚ୍ୟାଙ୍ଗ୍ କାଇଶେକ୍ ସେନାଧ୍ୟକ୍ଷ ହେଲେ ଏବଂ ସେ କମ୍ୟୁନିଷ୍ଟମାନଙ୍କୁ ତଡ଼ିବାକୁ ଲାଗିଲେ । ସେମାନେ ପରସ୍ପରକୁ ଅବିଶ୍ୱାସ କରୁଥିଲେ ସୁଦ୍ଧା ଦୁଇଦଳ କେତେକ ପରିମାଣରେ ଏକାଠି କାର୍ଯ୍ୟ କରୁଥିଲେ । ତା'ପରେ ଉତ୍ତରରେ ଯୁଦ୍ଧ କରି ବିଭିନ୍ନ ଟୁଚୁନମାନଙ୍କୁ ତଡ଼ିବା ପାଇଁ ଓ ସମଗ୍ର ଦେଶରେ ଏକ ଜାତୀୟ ସରକାର ସ୍ଥାପନ କରିବା ଲାଗି କ୍ୟାଣ୍ଟନ ସେନାବାହିନୀର ଯାତ୍ରା ଆରମ୍ଭ ହେଲା । ଏହି ଉତ୍ତର ଦିଗକୁ ଯାତ୍ରା ଏକ ଅସାଧାରଣ ଘଟଣା ଏବଂ ଅତିଶୀଘ୍ର ପୃଥିବୀର ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହେଲା । ପ୍ରକୃତ ଯୁଦ୍ଧ ବିଶେଷ କିଛି ହୋଇ ନ ଥିଲା ଓ ଦକ୍ଷିଣରେ ସେନାବାହିନୀ ଦ୍ରୁତ ବେଗରେ ବିଜୟ ପରେ ବିଜୟ ହାସଲ କରି ଚାଲିଲେ । ଉତ୍ତରରେ ଅମେଳ ଥିଲା ମାତ୍ର ଦକ୍ଷିଣ କୃଷକ ଓ ଶ୍ରମିକଙ୍କ ମଧ୍ୟରେ ଲୋକପ୍ରିୟତା ହାସଲ କରିଥିବାରୁ ସେଥିରୁ ପ୍ରକୃତ ଶକ୍ତି ପାଇଥିଲା । ସେନା ଆଗେ ଆଗେ ଏକ ଶ୍ରେଷ୍ଠ ପ୍ରଚାରକ ଓ ଆନ୍ଦୋଳନକାରୀ ବାହିନୀ ଚାଲୁଥାଆନ୍ତି; କୃଷକ ଓ ଶ୍ରମିକ ସଂଘ ସଂଗଠନ କରୁଥାଆନ୍ତି ଏବଂ କ୍ୟାଣ୍ଟନ ସରକାର ଅଧୀନରେ ସେମାନେ କି ଉପକାର ପାଇବେ ତାହା କହୁ ଥାଆନ୍ତି । ତେଣୁ ନଗର ଓ ଗ୍ରାମ ସବୁଠି ଅଗ୍ରଗାମୀ ସେନାକୁ ସ୍ୱାଗତ କରାଗଲା ଏବଂ ସବୁମତେ ଲୋକେ ସେମାନଙ୍କୁ ସାହାଯ୍ୟ କଲେ । କ୍ୟାଣ୍ଟନ ସେନା ବିରୁଦ୍ଧରେ ପଠା ହୋଇଥିବା ସୈନିକମାନେ ପ୍ରାୟ ସେମାନଙ୍କ ସହିତ ଯୁଦ୍ଧ କରନ୍ତି ନାହିଁ ଓ ଅନେକ ସମୟରେ ପୁଳ୍ପ ପୁଟୁଳି ହୋଇ କ୍ୟାଣ୍ଟନ ସେନା ଆଡ଼କୁ ଚାଲି ଯାଆନ୍ତି । ୧୯୨୬ ସାଲ ଶେଷ ହେବା ପୂର୍ବରୁ ଜାତୀୟତାବାଦୀମାନେ ଚୀନର ଅର୍ଦ୍ଧେକ ଅଞ୍ଚଳ ଅତିକ୍ରମ କରି ଯାଇଥିଲେ ଏବଂ ୟାଙ୍ଗ୍‌ସେ ନଦୀର ହାଙ୍କୋ ସହର ଦଖଲ କଲେ । ସେମାନେ ତାଙ୍କର ରାଜଧାନୀ କ୍ୟାଣ୍ଟନରୁ ହାଙ୍କୋକୁ ଉଠାଇ ଆଣିଲେ । ଏହାର ନାମକରଣ ହେଲା ଉହାନ୍ । ଉପକୂଳରେ ଥିବା ଯୁଦ୍ଧ ପ୍ରଭୁମାନେ ସନ୍ତ୍ରସ୍ତ ହେଲେ ଓ ସେମାନଙ୍କୁ ବାହାର କରି ଦିଆଗଲା ଏବଂ ହଠାତ୍ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଆଖି ଖୋଲିଲା ଓ ଏଥିରେ ସେମାନଙ୍କର ବିରକ୍ତିଭାବ ବି ବଢ଼ିଲା; ମାତ୍ର ସେମାନେ ଦେଖିଲେ ଏକ ନୂତନ ଓ ଉଗ୍ରଜାତୀୟତାବାଦୀ ଚୀନ ଆସି ତାଙ୍କ ପାଖରେ ଛିଡ଼ାହୋଇ ସମାନତା ଦାବୀ କରୁଛି ଏବଂ ତର୍ଜନ ଗର୍ଜନରେ ତ୍ରସ୍ତ ହୋଇ ଯାଉ ନାହିଁ ।

୧୯୨୭ ପ୍ରଥମ ଭାଗରେ ଯେତେବେଳେ ହାଙ୍କୋରେ ବ୍ରିଟିଶଙ୍କର ସୁବିଧା ସବୁ ନେଇଯିବା ଲାଗି ଜାତୀୟତାବାଦୀମାନେ ଚେଷ୍ଟା କଲେ ସେତେବେଳେ ଚୀନା ଓ ବ୍ରିଟିଶଙ୍କ ଭିତରେ ସଂଘର୍ଷ ଉପୁଜିଲା । ସାଧାରଣତଃ ଚୀନାଙ୍କ ପକ୍ଷରୁ ଏପରି ଉଦ୍ଧତ ଭାବ ଦେଖିଲେ ଯୁଦ୍ଧ ଆରମ୍ଭ ହୋଇଯାଏ ଏବଂ ବ୍ରିଟିଶ ସରକାର ସେମାନଙ୍କୁ ଦବାଇ ଦିଏ ଓ ଆତଙ୍କିତ କରେ, କ୍ଷତିପୂରଣ ଓ ଅଧିକ ସୁବିଧା ଦାବୀ କରେ । ଆମେ ଦେଖିଛେ ୧୮୪୦ ଅଫିମ ଯୁଦ୍ଧ କାଳରୁ ପ୍ରାୟ ଏକ ଶତାବ୍ଦୀ ହେଲା ଏହାହିଁ ହୋଇ ଆସିଛି । କିନ୍ତୁ ସମୟ ବଦଳି ଯାଇଛି, ଇଂରେଜଙ୍କ ଆଗରେ ଏକ ପୃଥକ୍ ଚୀନ ଛିଡ଼ା ହୋଇଛି ଓ ତେଣୁ ତତ୍‌କ୍ଷଣାତ୍ ଚୀନରେ ପ୍ରଥମ ଥର ପାଇଁ ବ୍ରିଟିଶ ନୀତିର ଗୋଟିଏ ପରିବର୍ତ୍ତନ ଦେଖାଦେଲା ଓ ନୂତନ ଚୀନ ପ୍ରତି ଏକ ପ୍ରକାର ମୀମାଂସା କରିବାର ଭାବ ପ୍ରଦର୍ଶନ କରିଗଲା । ହାଙ୍କୋରେ ସୁବିଧା ବ୍ୟାପାର ଏକ ନଗଣ୍ୟ ଜିନିଷ ଏବଂ ସହଜରେ ଏହା ସମାଧାନ ହୋଇ ପାରିଥାଆନ୍ତା । କିନ୍ତୁ ଅନତିଦୂରରେ ଅଗ୍ରଗାମୀ ଜାତୀୟତାବାଦୀଙ୍କ ସମ୍ମୁଖରେ ପ୍ରଧାନ ବନ୍ଦର ସାଙ୍ଘାଇ ଅବସ୍ଥିତ । ଏହା ଚୀନରେ ସର୍ବାପେକ୍ଷା ବୃହତ୍ତ ଓ ସମୃଦ୍ଧଶାଳୀ ଏବଂ ବିଦେଶୀଙ୍କ ସୁବିଧାଭୋଗୀ ଅଞ୍ଚଳ । ସାଙ୍ଘାଇର ଭାଗ୍ୟ ସହିତ ବିଦେଶୀ ସ୍ଥାପିତ ସ୍ୱାର୍ଥଙ୍କର ସ୍ୱାର୍ଥ ଜଡ଼ିତ ଥିଲା । ସେ ନଗରଟି ବା ତାହାର ଏକ ସୁବିଧା ମିଳିଥିବା ଅଞ୍ଚଳଟି ବିଦେଶୀ କର୍ତ୍ତୃତ୍ୱାଧୀନରେ ଥିଲା ଓ ବ୍ୟାବହାରିକ ଭାବରେ ଚୀନା ସରକାରଠାରୁ ସ୍ୱତନ୍ତ୍ର ଥିଲା । ସାଙ୍ଘାଇରେ ଥିବା ଏହି ବିଦେଶୀବର୍ଗ ଓ ସେମାନଙ୍କର ସରକାର ଜାତୀୟତାବାଦୀ ସେନା ନେଣିକି ମାଡ଼ି ଆସିବାର ଦେଖି ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଲେ ଓ ଯୁଦ୍ଧ ଜାହାଜ ଏବଂ ସେନାଦଳ ସେ ବନ୍ଦରକୁ ଶୀଘ୍ର ପ୍ରେରିତ ହେଲା । ୧୯୨୭ ଜାନୁଆରୀ ପ୍ରଥମ ଭାଗରେ ବ୍ରିଟିଶ ସରକାର ବିଶେଷ ଭାବରେ ସାଙ୍ଘାଇକୁ ବହୁସଂଖ୍ୟକ ଅଭିଯାନକାରୀ ସେନା ପଠାଇଲେ, ଏଥିରେ ଭାରତୀୟ ସେନା ବି ଥିଲେ ।

ଏବେ ହାଙ୍କୋ ବା ଉହାନ୍‌ରେ ନୂତନ ସ୍ଥାପିତ ହୋଇଥିବା ଜାତୀୟତାବାଦୀ ସରକାର ସମ୍ମୁଖରେ କଠିନ ସମସ୍ୟା ଉପୁଜିଲା—ଅଗ୍ରସର ହେବେ କି ନାହିଁ, ସାଙ୍ଘାଇ ନେବେ କି ନାହିଁ ? ଏ ପର୍ଯ୍ୟନ୍ତ ସହଜଲବ୍ଧ ସଫଳତା ସେମାନଙ୍କୁ ସାହସ ଦେଇଥିଲା ଓ ଉତ୍ସାହପୂର୍ଣ୍ଣ ହୋଇଥିଲେ ଏବଂ ସାଙ୍ଘାଇ ବି ବଡ଼ ଲୋଭନୀୟ ସ୍ଥାନ ଥିଲା । ଅନ୍ୟ ପକ୍ଷରେ ସେମାନେ କେବଳ ଅଗ୍ରସର ହୋଇ ଯାଇଥିଲେ, ପ୍ରାୟ ପାଞ୍ଚଶ ମାଇଲରୁ ଅଧିକ ଅଞ୍ଚଳ ଦଖଲ କରିଥିଲେ ଏବଂ ସେଠାରେ ନିଜର ସ୍ଥିତି ଦୃଢ଼ କରି ନ ଥିଲେ । ସାଙ୍ଘାଇ ଆକ୍ରମଣ କରିବା ଫଳରେ ବିଦେଶୀ ଶକ୍ତିମାନଙ୍କ ସହିତ ସେମାନେ ବିପଦରେ ପଡ଼ି ପାରନ୍ତି ଓ ଏଥିରେ ଯାହା ବି ଲାଭ କରିଛନ୍ତି ତାହା ହରାଇବାର ବିପଦ ରହିଥିଲା । ବୋରୋଡ଼ିନ ସତର୍କତାର ସହିତ କାର୍ଯ୍ୟ କରିବାକୁ ଏବଂ ଦୃଢ଼ ହେବାକୁ ପରାମର୍ଶ ଦେଇଥିଲେ । ତାଙ୍କର ମତାନୁସାରେ ଜାତୀୟତାବାଦୀମାନେ ସାଙ୍ଘାଇ ନ ଯିବା ଉଚିତ ଏବଂ ଚୀନର ଯେଉଁ

ଦକ୍ଷିଣାର୍ଦ୍ଧ ଦଖଲ କରିଥିଲେ ସେଥିରେ ନିଜର ସ୍ଥିତି ଦୃଢ଼ କରିବା ଦରକାର ଓ ପ୍ରଚାର ଦ୍ୱାରା ଉତ୍ତରରେ କ୍ଷେତ୍ର ପ୍ରସ୍ତୁତ କରିବା ଉଚିତ । ସେ ଆଶା କରୁଥିଲେ ଯେ ଅତିଶୀଘ୍ର ଏକବର୍ଷ ବା ସେତିପରି ସମୟ ଭିତରେ ସମଗ୍ର ଚୀନ ଜାତୀୟତାବାଦୀ ଯାତ୍ରାକୁ ସ୍ୱାଗତ କରିବା ନିମନ୍ତେ ପ୍ରସ୍ତୁତ ହୋଇଯିବ । ସେତେବେଳେହିଁ ସାଙ୍ଘାଇ ନେବାର, ପେକିଂ ଯାତ୍ରା କରିବାର ଓ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିର ସମ୍ମୁଖୀନ ହେବାର ସମୟ ଆସିବ । ବିପ୍ଳବୀ ବୋରୋଡ଼ିନ ଏହି ସତର୍କବାଣୀ ଶୁଣାଇ ଥିଲେ, କାରଣ ଗୋଟିଏ ପରିସ୍ଥିତିରେ ବିଭିନ୍ନ ସମସ୍ୟା ବିଚାର କରିବାର ତାଙ୍କର ଅଭିଜ୍ଞତା ଥିଲା । କିନ୍ତୁ କୋମିନଟାଙ୍ଗର ଦକ୍ଷିଣପନ୍ଥୀ ନେତାମାନେ ଓ ବିଶେଷତଃ ସେନାଧ୍ୟକ୍ଷ ଚ୍ୟାଙ୍ଗକାଇଶେକ୍ ସାଙ୍ଘାଇ ଯାତ୍ରା କରିବା ନିମନ୍ତେ ଜୋର ଦେଲେ । ସାଙ୍ଘାଇ ନେବାଲାଗି ଇଚ୍ଛା କରିବାର ପ୍ରକୃତ କାରଣ ପରେ ଦେଖାଗଲା—ଏଥିରେ କୋମିନ୍‌ଟାଙ୍ଗ୍ ଦୁଇ ଭାଗରେ ବିଭକ୍ତ ହୋଇଗଲା । ଏହି ଦକ୍ଷିଣପନ୍ଥୀ ନେତାମାନେ କୃଷକ ଓ ଶ୍ରମିକ ସଂଘର କ୍ରମବର୍ଦ୍ଧିଷ୍ଣୁ ଶକ୍ତିକୁ ଭଲ ପାଉ ନ ଥିଲେ । ଅନେକ ସେନାପତି ନିଜେ ଜମିଦାର ଥିଲେ । ତେଣୁ ଦଳକୁ ଦୁଇ ଭାଗରେ ଭାଙ୍ଗି ଦେଇ ଓ ଜାତୀୟତାବାଦୀ ଉଦ୍ଦେଶ୍ୟକୁ ଦୁର୍ବଳ କରି ପକାଇ ସୁଦ୍ଧା ଏହି ସଂଘଗୁଡ଼ିକୁ ଧ୍ୱଂସ କରିଦେବା ନିମନ୍ତେ ସ୍ଥିର କଲେ । ସାଙ୍ଘାଇ ବଡ଼ ଚୀନା ବୁର୍ଜୋୟା ଶ୍ରେଣୀର ପ୍ରଧାନ କେନ୍ଦ୍ରଥିଲା ଏବଂ ସେମାନଙ୍କ ଦଳ ଭିତରେ ଥିବା ଅଧିକ ଅଗ୍ରଗାମୀ ଲୋକ ଓ ବିଶେଷତଃ କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ ଲାଗିଥିବା ସଂଗ୍ରାମରେ ଧନ ବା ଅନ୍ୟ ଭାବରେ ଏଠାରୁ ସାହାଯ୍ୟ ପାଇବା ନିମନ୍ତେ ଦକ୍ଷିଣପନ୍ଥୀ ସେନାପତିମାନେ ଆଶା କରିଥିଲେ । ସେମାନେ ବି ଜାଣିଥିଲେ ଯେ ଏପରି ଏକ ଯୁଦ୍ଧରେ ସାଙ୍ଘାଇରେ ଥିବା ବିଦେଶୀ ବ୍ୟାଙ୍କର ଓ ଶିଳ୍ପାଧିପତିମାନେ ତାଙ୍କୁ ସାହାଯ୍ୟ ଦେଇପାରନ୍ତି ।

ତେଣୁ ସେମାନେ ସାଙ୍ଘାଇ ଯାତ୍ରାକଲେ ଓ ୧୯୨୭ ମାର୍ଚ୍ଚ ୨୨ ତାରିଖରେ ସହରର ଚୀନା ଅଞ୍ଚଳ ଉପରେ ଆକ୍ରମଣ ହୋଇ ନ ଥିଲା । ବିଶେଷ କିଛି ଯୁଦ୍ଧ ନ ହୋଇ ବି ସାଙ୍ଘାଇର ପତନ ହେଲା । ବିରୋଧୀ ସେନାମାନେ ଜାତୀୟତାବାଦୀ ଆଡ଼କୁ ଚାଲିଗଲେ ଏବଂ ଜାତୀୟତାବାଦୀମାନଙ୍କ ସପକ୍ଷରେ ନଗରର ଶ୍ରମିକମାନେ ସାଧାରଣ ଧର୍ମଘଟ ସାଙ୍ଘାଇରେ ବ୍ୟବସ୍ଥିତ ସରକାରର ପତନ ପୂରାପୂରି ହୋଇଗଲା । ଦୁଇ ଦିନ ପରେ ପ୍ରଧାନ ନଗର ନାନ୍‌କିଙ୍ଗ ବି ଜାତୀୟତାବାଦୀ ସେନା ଦଖଲ କଲେ । ତା' ପରେ ହେଲା କୋମିନଟାଙ୍ଗରେ ବାମପନ୍ଥୀ ଓ ଦକ୍ଷିଣପନ୍ଥୀଙ୍କ ମଧ୍ୟରେ ବିବାଦ । ଏଥିରେ ଜାତୀୟତାବାଦୀଙ୍କର ବିଜୟ ଇତିଶ୍ରୀ ହେଲା ଓ ଦୁର୍ଦ୍ଦଶା ବଢ଼ିଲା । ବିପ୍ଳବ ଶେଷ ପାଇଥିଲା; ଏବେ ପ୍ରତି-ବିପ୍ଳବ ଆରମ୍ଭ ହେଲା ।

ହାଙ୍କୋ ସରକାରର ଅନେକ ସଭ୍ୟଙ୍କ ଇଚ୍ଛା ବିରୁଦ୍ଧରେ ଚ୍ୟାଙ୍ଗ୍‌କାଇଶେକ ସାଙ୍ଘାଇ ଯାତ୍ରା କରିଥିଲେ । ଉଭୟ ଦଳ ପରସ୍ପର ବିରୁଦ୍ଧରେ ଚକ୍ରାନ୍ତ କଲେ । ହାଙ୍କୋ ଲୋକେ ସେନା ଉପରୁ ଚ୍ୟାଙ୍ଗଙ୍କର ପ୍ରଭାବ କମାଇ ଦେଇ ତାଙ୍କୁ ତଡ଼ିଦେବାକୁ ଚେଷ୍ଟା ଥିଲେ; ଚ୍ୟାଙ୍ଗ ନାନ୍‌କିଙ୍ଗ୍‌ରେ ଏକ ପ୍ରତିଦ୍ୱନ୍ଦ୍ୱୀ ସରକାର ସ୍ଥାପନ କଲେ । ଏସବୁ ସାଙ୍ଘାଇ ଦଖଲର

କେତେକ ଦିନ ଭିତରେ ହୋଇଗଲା । ହାଙ୍କୋରେ ନିଜ ସରକାର ବିରୁଦ୍ଧରେ ବିଦ୍ରୋହ କରି ସାର ଚ୍ୟାଙ୍ଗ ଏବେ କମ୍ୟୁନିଷ୍ଟ, ବାମପନ୍ଥୀ ଓ ଟ୍ରେଡ୍ ଇଉନିୟନ ଶ୍ରମିକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କଲେ । ଯେଉଁ ଶ୍ରମିକମାନେ ତାଙ୍କ ପକ୍ଷରେ ସାଙ୍ଘାଇ ଦଖଲ ଏତେ ସହଜ କରି ଦେଇଥିଲେ ଓ ଉତଫୁଲ୍ଲ ଚିତ୍ତରେ ତାଙ୍କୁ ସ୍ୱାଗତ କରିଥିଲେ ସେହିମାନଙ୍କୁ ଏବେ ଖୋଜି ଶିକାର କରି ଦମନ କରାଗଲା । ବହୁ ସଂଖ୍ୟକ ଲୋକଙ୍କୁ ଗୁଳି କରାଗଲା ବା ମସ୍ତକ ଛେଦନ କରାଗଲା । ହଜାର ହଜାର ଲୋକ ଗିରଫ ହେଲେ ଓ ଜେଲ ଶାସ୍ତି ପାଇଲେ । ଜାତୀୟତାବାଦୀମାନେ ସାଙ୍ଘାଇର ଯେଉଁ ମୁକ୍ତି ଆଣି ପାରିଥିଲେ ବୋଲି ଧରା ଯାଉଥିଲା ତାହା ଏବେ ରକ୍ତାକ୍ତ ଆତଙ୍କରେ ପରିଣତ ହେଲା ।

୧୯୨୭ ସାଲର ଏହି ଏପ୍ରିଲ ଦିବସରେ ପେକିଙ୍ଗର ସୋଭିଏଟ୍ ଦୂତାବାସର ଓ ସାଙ୍ଘାଇର ରାଷ୍ଟ୍ରଦୂତଙ୍କର ଅଫିସ ଉପରେ ଏକାବେଳକେ ଆକ୍ରମଣ ହେଲା । ସ୍ପଷ୍ଟ ଦେଖାଗଲା ଯେ ଚ୍ୟାଙ୍ଗ କାଇଶେକ ଉତ୍ତରସ୍ଥ ଯୁଦ୍ଧ ସାମନ୍ତ ଚ୍ୟାଙ୍ଗ ସୋ-ଲିନ ଯାହାଙ୍କ ସହିତ ସେ ଯୁଦ୍ଧ କରୁଛନ୍ତି ବୋଲି ଧରାଯାଉଥିଲା, ତାଙ୍କ ସହିତ ମିଳି କାର୍ଯ୍ୟ କରୁଥିଲେ । ସାଙ୍ଘାଇ ପରି ପେକିଙ୍ଗରେ କମ୍ୟୁନିଷ୍ଟ ଓ ଅଗ୍ରଗାମୀ ଶ୍ରମିକମାନଙ୍କୁ "ମୂଳପୋଛି" କରିବା ବି ଚାଲିଲା । ଅବଶ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନେ ଏପରି ପରିସ୍ଥିତିର ସ୍ୱାଗତ କଲେ, କାରଣ ଏହା ଚୀନା ଜାତୀୟତାବାଦୀ ଦଳକୁ ଭାଙ୍ଗି ଦେଲା ଓ ଦୁର୍ବଳ କରି ପକାଇଲା । ଚ୍ୟାଙ୍ଗକାଇଶେକ ସାଙ୍ଘାଇରେ ଥିବା ଶକ୍ତିମାନଙ୍କର ପ୍ରତିନିଧିମାନଙ୍କ ସହିତ ସହଯୋଗ କରିବାକୁ ଚାହିଁଲେ । ତୋର ମନେ ଥିବ ଠିକ୍ ଏତିକି ବେଳକୁ ୧୯୨୭ ମେ ମାସରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଲଣ୍ଡନରେ ଥିବା ସୋଭିଏଟ୍ ନିବାସ ଉପରେ "ଆପ୍ରୋସ" ଆକ୍ରମଣ କଲେ ଓ ତା' ପରେ ରୁଷ ସହିତ ସମ୍ବନ୍ଧ ତୁଟାଇ ଦେଲେ ।

ତେଣୁ ମାସେ କି ଦୁଇମାସ ଭିତରେ ଚୀନର ସାରା ନକ୍ସା ସମ୍ପୂର୍ଣ୍ଣରୂପେ ବଦଳିଗଲା । କୋମିନ୍‌ଟାଙ୍ଗ ସମଗ୍ର ଚୀନ ଜାତିର ପ୍ରତିନିଧିରୂପେ ଏକ ମିଳିତ ଓ ବିଜୟୀ ଦଳ ହେବା ପରିବର୍ତ୍ତେ, ସଫଳତାରେ ଆନନ୍ଦ ଉପଲବ୍ଧି କରି ବିଦେଶୀ ଶକ୍ତିମାନଙ୍କର ସମ୍ମୁଖୀନ ହେବା ପରିବର୍ତ୍ତେ ଦୁଇଟି କଳିଆଖୋର ଦଳରେ ବିଭକ୍ତ ହୋଇଗଲା ଏବଂ ଯେଉଁ ଶ୍ରମିକ ଓ କୃଷକଠାରୁ ଏପର୍ଯ୍ୟନ୍ତ ଜୀବନ ଓ ଶକ୍ତି ଅର୍ଜ୍ଜନ କରିଥିଲା ସେହିମାନଙ୍କୁ ଶାସ୍ତି ଦିଆଗଲା ଓ ଶିକାର କରାଗଲା । ସାଙ୍ଘାଇରେ ବିଦେଶୀ ସ୍ୱାର୍ଥସବୁ ସୁଖରେ ପୁଣି ଥରେ ନିଶ୍ୱାସ ମାଇଲେ ଏବଂ ଏକ ଦଳ ବିରୁଦ୍ଧରେ ଅପର ଦଳକୁ ସାହାଯ୍ୟ କରିବାରେ ଲାଗିଲେ । ସେମାନେ ବିଶେଷ ଭାବରେ ଶ୍ରମିକମାନଙ୍କୁ ହାଇରାଣ କରିବା ଓ ଆନନ୍ଦପ୍ରଦ ଏବଂ ଲାଭଜନକ ପନ୍ଥା ଦେଖାଇବାର ଲୋଭ ଦେଖାଇଲେ । ସାଙ୍ଘାଇ କାହିଁକି, ସାରା ଚୀନ କାରଖାନାର ଶ୍ରମିକମାନେ ମାଲିକମାନଙ୍କ ଦ୍ୱାରା ଭୀଷଣ ଭାବରେ ଶୋଷିତ ହେଲେ ଏବଂ ସେମାନଙ୍କର ରହିବା ଚଳିବାର ଅବସ୍ଥା ଦୁର୍ଦ୍ଦଶାପୂର୍ଣ୍ଣ ହେଲା । ଟ୍ରେଡ୍ ଇଉନିଅନହିଁ ତାଙ୍କୁ ବଳ ଦେଇଥିଲା ଏବଂ ଅଧିକ ମଜୁରି ଦେବାପାଇଁ ମାଲିକମାନଙ୍କୁ ବାଧ୍ୟ କରିଥିଲା । ତେଣୁ କାରଖାନା ମାଲିକ

ଇଉରୋପୀୟ, ଜାପାନୀ ବା ଚୀନା ଯେ ହୁଅନ୍ତୁ ନା କାହିଁକି ସେମାନେ ଟ୍ରେଡ୍‌-ଇଉନିଅନ-ଗୁଡ଼ିକୁ ପସନ୍ଦ କରୁ ନ ଥିଲେ ।

ଚୀନରେ ଘଟଣା ଯେପରି ଆଡ଼କୁ ଗତି କଲା ସେଥିଲାଗି ମସ୍କୋରେ ବୋରୋଡ଼ିନଙ୍କର ଖୁବ୍ କଡ଼ା ସମାଲୋଚନା କରାଗଲା ଓ ୧୯୨୭ ଜୁଲାଇ ମାସରେ ସେ ରୁଷ ଫେରିଗଲେ । ତାଙ୍କର ପ୍ରତ୍ୟାବର୍ତ୍ତନରେ ହାଙ୍କୋରେ କୋମିନ୍‌ଟାଙ୍ଗର ବାମପନ୍ଥୀ ଖଣ୍ଡ ବିଖଣ୍ଡ ହୋଇଗଲେ । ଏବେ ନାନକିଙ୍ଗ୍ ସରକାର ପୁରାପୁରି କୋମିନଟାଙ୍ଗ୍ ପରିଚାଳନା କଲା ଏବଂ ବିଶେଷଭାବରେ କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ ଓ ସମସ୍ତ ବାମପନ୍ଥୀ ଓ ଶ୍ରମିକ ନେତାମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚାଲିଲା । ଯେଉଁମାନେ ଏପରି ଅବସ୍ଥାରେ ଚୀନ ଛାଡ଼ିଲେ କିମ୍ବା ସେଥିରୁ ବିତାଡ଼ିତ ହେଲେ ସେମାନଙ୍କ ଭିତରେ ବିଶିଷ୍ଟ ନେତା ଡାକ୍ତର ସନୟାତ୍‌ସେନ୍‌ଙ୍କର ବିଧବା ପତ୍ନୀ ପୂଜ୍ୟା ମ୍ୟାଡ଼ାମ ସନ୍-ୟାତ୍-ସେନ ବି ଜଣେ ଥିଲେ । ସେ ଦୁଃଖିତ ହୋଇ ଘୋଷଣା କଲେ ଯେ ଚୀନର ସ୍ୱାଧୀନତା ଲାଗି ତାଙ୍କର ସ୍ୱାମୀଙ୍କର ମହାନ୍ କାର୍ଯ୍ୟ ପ୍ରତି ସେନାବାହିମାନେ ଓ ଅନ୍ୟମାନେ ବିଶ୍ୱାସଘାତକତା କରିଛନ୍ତି । ଏଥିଚ ଏହି ସେନାବାହୀମାନେ ଡାକ୍ତର ସନ୍ଙ୍କର ତିନୋଟି ପ୍ରସିଦ୍ଧ ନୀତି-ଜାତୀୟତା, ଗଣତନ୍ତ୍ର ଓ ସାମାଜିକ ନ୍ୟାୟର ଦୁହାଇ ଦେଉଥାନ୍ତି ।

ପୁନର୍ବାର ଚୀନ ଯୁଦ୍ଧ, ସାମନ୍ତ ଓ ସେନାପତିଙ୍କର ପରସ୍ପର ବିରୁଦ୍ଧରେ ଲଢ଼ାଇ କ୍ଷେତ୍ର ହୋଇଗଲା । କ୍ୟାଣ୍ଟନ ନାନକିଙ୍ଗ ସରକାରଠୁ ସମ୍ବନ୍ଧ ତୁଟାଇ ଦେଲା ଏବଂ ଦକ୍ଷିଣରେ ନିଜର ସରକାର ସ୍ଥାପନ କଲା । ୧୯୨୮ରେ ପେକିଙ୍ଗ୍ ନାନ୍‌କିଙ୍ଗ ସରକାର ହାତରେ ପଡ଼ିଲା । ଏହାର ନାମ ପେପିଙ୍ଗ କରି ଦିଆଗଲା । ପେପିଙ୍ଗ ଅର୍ଥ ହେଉଛି "ଉତ୍ତରର ଶାନ୍ତି" । ପେକିଙ୍ଗ ବୋଇଲେ "ଉତ୍ତରର ରାଜଧାନୀ" ବୁଝାଏ, କିନ୍ତୁ ଏହା ଆଉ ରାଜଧାନୀ ହୋଇ ନାହିଁ ।

ପେକିଙ୍ଗ୍ ବା ପେକିଙ୍ଗ୍ ( ଏହି ନାଁରେ ଆମେ ଏବେ ଡାକିବା ) ପତନ ପରେ ଦେଶର ବିଭିନ୍ନ ଭାଗରେ ଗୃହଯୁଦ୍ଧ ଲାଗି ରହିଲା । କ୍ୟାଣ୍ଟନରେ ଏକ ସ୍ୱତନ୍ତ୍ର ସରକାର ଗଢ଼ା ହୋଇଥିଲା କିନ୍ତୁ ଉତ୍ତରରେ ବିଭିନ୍ନ ଯୁଦ୍ଧସାମନ୍ତମାନେ ମନଖୁସିରେ ଅନେକ କାମ କଲେ ଏବଂ ନିଜ ନିଜ ଭିତରେ ଯୁଦ୍ଧ ଚଲାଇଲେ ଓ ବେଳେ ବେଳେ କ୍ଷଣକାଳ ଲାଗି ପରସ୍ପର ସହିତ ମିଳାମିଶା କରି ପକାଉଥିଲେ । ତାତ୍ତ୍ୱିକ ଦୃଷ୍ଟିରେ ନାନ୍‌କିଙ୍ଗ୍‌ରେ ଥିବା ତଥାକଥିତ "ଜାତୀୟ" ସରକାର କ୍ୟାଣ୍ଟନ ଛଡ଼ା ସର୍ବତ୍ର ଚୀନ ଶାସନ କରୁଥିଲା । ମାତ୍ର ଅନେକ ଅଞ୍ଚଳରେ ଏହା ପ୍ରବେଶ କରିପାରି ନ ଥିଲା । ବିଶେଷତଃ ଅଭ୍ୟନ୍ତର ପ୍ରଦେଶରେ ଏକ ବଡ଼ ଅଞ୍ଚଳରେ କମ୍ୟୁନିଷ୍ଟ ସରକାର ସ୍ଥାପିତ ହୋଇଥିଲା । ନାନ୍‌କିଙ୍ଗ ସରକାର ଆର୍ଥିକ ସାହାଯ୍ୟ ପାଇଁ ମୁଖ୍ୟତଃ ସାଂଘାଇ ବ୍ୟାଙ୍କରମାନଙ୍କ ଉପରେ ନିର୍ଭର କରୁଥିଲା । ବିଭିନ୍ନ ସେନାପତି-ମାନଙ୍କର ବିରାଟ ସେନାବାହିନୀ ସବୁ କୃଷକମାନଙ୍କ ଉପରେ ଏକ ଦାରୁଣ ବୋଝ

ହୋଇଗଲା । ବହୁସଂଖ୍ୟକ ପୂର୍ବତନ ସୈନିକ କାମ ଖୋଜିବା ଆଶାରେ ମଫସଲ ଅଞ୍ଚଳରେ ବୁଲିବାକୁ ଲାଗିଲେ ଏବଂ କିଛି କାମ ନ ପାଇ ଦସ୍ୟୁବୃତ୍ତି ଆରମ୍ଭ କଲେ ।

୧୯୨୭ ଡିସେମ୍ବର ମାସରେ ନାନ୍‌କିଙ୍ଗ୍ ସରକାର ଓ ସୋଭିଏଟ ରୁଷ ଭିତରେ ସମ୍ପର୍କ ତୁଟିଗଲା ଏବଂ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସାହଚର୍ଯ୍ୟରେ ନାନ୍‌କିଙ୍ଗ୍ ଏକ ଉଗ୍ର ସୋଭିଏଟ-ବିରୋଧୀ ନୀତି ଗ୍ରହଣ କଲା । ୧୯୨୭ରେ ଏଥିଯୋଗୁଁ ଯୁଦ୍ଧ ହୋଇଥାଆନ୍ତା, ମାତ୍ର ରୁଷ ଯୁଦ୍ଧରେ ପ୍ରବେଶ କରିବାକୁ ବରାବର ଅସ୍ୱୀକୃତ ହେବାରୁ ଏହା ହୋଇପାରିଲା ନାହିଁ । ୧୯୨୯ରେ ଚୀନ ସରକାର ମାଞ୍ଚୁରିଆରେ ଔଦ୍ଧତ୍ୟ ପ୍ରକାଶ କଲା । ସୋଭିଏଟ ଦୂତାବାସ ଆକ୍ରମଣ କରାଗଲା ଓ ଚୀନ ପୂର୍ବ ରେଲଓ୍ୱେର ରୁଷ କର୍ମଚାରୀମାନଙ୍କୁ ଗିରଫ୍ତ କରାଗଲା । ଏହି ରେଲଓ୍ୱେ ଅଧିକ ଭାଗରେ ରୁଷର ସମ୍ପତ୍ତି ଏବଂ ସୋଭିଏଟ ସରକାର ତତ୍‌କ୍ଷଣାତ୍ ଚୀନାମାନଙ୍କ ବିରୁଦ୍ଧରେ କାର୍ଯ୍ୟବିଧାନ କଲା । କେତେକ ମାସ ପର୍ଯ୍ୟନ୍ତ ଏକ ପ୍ରକାର ଯୁଦ୍ଧ ଚାଲିଲା ଏବଂ ତାପରେ ଚୀନ ସରକାର ସୋଭିଏଟର ପୁରାତନ ବ୍ୟବସ୍ଥା ଫେରାଇ ଆଣିବା ଦାବୀକୁ ସ୍ୱୀକାର କଲା ।

ମାଞ୍ଚୁରିଆ ଓ ଏହା ଦେଇ ଯେଉଁ ରେଲଓ୍ୱେ ଯାଇଛି, ସେଥିରେ ଅନେକ ସ୍ୱାର୍ଥର ବିଶେଷତଃ ଚୀନ, ଜାପାନ ଓ ରୁଷ ସ୍ୱାର୍ଥରୁ ସଂଘର୍ଷ ହେଉଥିବାରୁ ଅନେକ ଆନ୍ତର୍ଜାତିକ ଜଟିଳତା ଉପୁଜୁଛି । ସମଗ୍ର ଦୁନିଆଁର ଅମଙ୍ଗ ସତ୍ତ୍ୱେ ଏବେ ଜାପାନ ଚୀନର ଉତ୍ତର ପୂର୍ବ ପ୍ରଦେଶ ଉପରେ କର୍ତ୍ତୃତ୍ୱ ହାସଲ କରିଛି । ଏ ବିଷୟରେ ମୁଁ ଆଗାମୀ ଚିଠିରେ ଲେଖିବି ।

ଚୀନର କେତେକ ଅଞ୍ଚଳରେ ଏକ କମ୍ୟୁନିଷ୍ଟ ସରକାର ସ୍ଥାପିତ ହେବା କଥା ମୁଁ ଉପରେ କହିଛି । ଦେଖାଯାଏ ଯେ, ୧୯୨୭ ନଭେମ୍ବର ମାସରେ ଦକ୍ଷିଣରେ କ୍ୱାଟଙ୍ଗ୍ ପ୍ରଦେଶର ହୈଫେଙ୍ଗ୍ ଜିଲାରେ ପ୍ରଥମ କମ୍ୟୁନିଷ୍ଟ ସରକାର ସ୍ଥାପିତ ହୋଇଥିଲା । ଏହା ହେଉଛି "ହୈଫେଙ୍ଗ୍ ସୋଭିଏଟ୍ ପ୍ରଜାତନ୍ତ୍ର"—ବିଭିନ୍ନ କୃଷକ ସଂଘ ଯେଉଁ ଏହା ଗଠିତ । ଚୀନର ଅଭ୍ୟନ୍ତର ପ୍ରଦେଶରେ ସୋଭିଏଟ ରାଜ୍ୟ ବୃଦ୍ଧି ପାଇବାରେ ଲାଗିଲା ଓ ୧୯୩୨ ମଧ୍ୟଭାଗରେ ସମସ୍ତ ଚୀନର ଏକଷଷ୍ଠାଂଶ—ଅର୍ଥାତ ୨୫୦୦୦୦ ବର୍ଗମାଇଲ ବ୍ୟାପୀ ୫୦,୦୦୦,୦୦୦ ଲୋକସଂଖ୍ୟାବିଶିଷ୍ଟ ଅଞ୍ଚଳ—ଏହାର ଅନ୍ତର୍ଭୁକ୍ତ ହେଲା । ଏହି ସରକାର ୪୦୦୦୦୦ ଲୋକଙ୍କୁ ନେଇ ଏକ ଲାଲଫୌଜ ଗଠନ କଲା ଏବଂ ଏହାର ସାହାଯ୍ୟକାରୀ-ରୂପେ ବାଳକ ଓ ବାଳିକାମାନଙ୍କର ସଂଗଠନ ରହିଲା । ନାନ୍‌କିଙ୍ଗ୍ ଓ କ୍ୟାଣ୍ଟିନ ଉଭୟ ସରକାର ଏହି ଚୀନ ସୋଭିଏଟଗୁଡ଼ିକୁ ଦମନ କରିବା ନିମନ୍ତେ ଯଥାସାଧ୍ୟ ଚେଷ୍ଟା କଲେ ଏବଂ ଚ୍ୟାଙ୍ଗ କାଇଶେକ ବାରମ୍ବାର ସେମାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । କିନ୍ତୁ

ବିଶେଷ ସଫଳ ହୋଇପାରିଲେ ନାହିଁ । ବେଳେବେଳେ ସୋଭିଏଟ ପକ୍ଷକୁ ହଟି ଅଭ୍ୟନ୍ତର ପ୍ରଦେଶରେ ଅନ୍ୟତ୍ର ନିଜର ସ୍ଥିତି ଦୃଢ଼ କରନ୍ତି । *

## ୧୨୮ : ଜାପାନ ଦୁନିଆଁକୁ ଅବଜ୍ଞା କଲା

ଜୁନ ୨୯, ୧୯୩୩

ଚୀନ ବିଭକ୍ତ ହେବାର ଦୁଃଖଜନକ କାହାଣୀ, ଯେଉଁ ବିପ୍ଳବ ଜୟଲାଭ କରିବ ବୋଲି ବୋଧ ହେଉଥିଲା ଏବଂ ତାପରେ ହଠାତ୍ ପତନ ହୋଇଗଲା ଏବଂ ଏକ ଭୀଷଣ ପ୍ରତିବିପ୍ଳବ ତାକୁ କିପରି ଗ୍ରାସ କଲା ଏସବୁ କଥା ଆମେ ଦେଖିଲେ । କାହାଣୀ ଏ ପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ଆହୁରି ଅନେକ ବାକି ଅଛି । ବିପ୍ଳବ ବିଫଳ ହେଲା, କାରଣ ଜାତୀୟତାର ବନ୍ଧନ ଶକ୍ତି ଅପେକ୍ଷା ସଚେତନ ଶ୍ରେଣୀ ସ୍ୱାର୍ଥର ସଂଘର୍ଷ ଅଧିକ ଥିଲା । ଧନୀ ଭୂସ୍ୱାମୀ ଓ ଅନ୍ୟ ସ୍ୱାର୍ଥସମ୍ପନ୍ନ ଲୋକେ ଜାତୀୟ ଆନ୍ଦୋଳନ ଭାଙ୍ଗିବା ନିମନ୍ତେ ପସନ୍ଦ କଲେ—ସେମାନେ କୃଷକ ଓ ଶ୍ରମିକ ଜନତାର ପ୍ରାଧାନ୍ୟ ଦେଖିବାକୁ ଚାହୁଁ ନ ଥିଲେ ।

ନିଜ ଦେଶର ଆଭ୍ୟନ୍ତରୀଣ ଗୋଳମାଳ ଛଡ଼ା ଚୀନକୁ ଏକ ବିଦେଶୀ ଶତ୍ରୁର ଦୃଢ଼ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଲା । ଏହି ଶତ୍ରୁ ହେଉଛି ଜାପାନ—ଚୀନର ଦୁର୍ବଳତା ଓ ଅନ୍ୟ ଶକ୍ତି ସବୁ ଅନ୍ୟତ୍ର ବ୍ୟସ୍ତ ରହିଥିବାବେଳେ ଫାଇଦା ଉଠାଇବା ନିମନ୍ତେ ତାହା ଚାହୁଁ ଥିଲା ।

ଜାପାନ ଆଧୁନିକ ଶିଳ୍ପଧନ୍ଦା ଓ ମଧ୍ୟକାଳୀନ ସାମନ୍ତବାଦ, ପାର୍ଲିମେଣ୍ଟାରୀବାଦ, ଏକଛତ୍ରାଧିପତି ଓ ସାମରିକ ନିୟନ୍ତ୍ରଣ ମିଶ୍ରଣର ଏକ ଅସାଧାରଣ ଦୃଷ୍ଟାନ୍ତ । ଶାସକ ଭୂସ୍ୱାମୀ ଓ ସାମରିକ ଶ୍ରେଣୀ ନିଜକୁ ସର୍ଦ୍ଦାର ଓ ସମ୍ରାଟକୁ ସର୍ବେସର୍ବା କରି ଏକ ସମ୍ପ୍ରଦାୟ ହିସାବରେ ରାଷ୍ଟ୍ର ଗଠନ କରିବା ନିମନ୍ତେ ଚେଷ୍ଟା କଲେ । ଏହି ସ୍ଥିତିରେ ଧର୍ମ, ଶିକ୍ଷା ପ୍ରତ୍ୟେକ ଜିନିଷର ସାହାଯ୍ୟ ନିଆଗଲା । ଧର୍ମ ସରକାରଦ୍ୱାରା ନିୟନ୍ତ୍ରିତ ହୁଏ, ମନ୍ଦିର ଓ ଧର୍ମପୀଠ ସବୁ ପ୍ରତ୍ୟକ୍ଷରୂପେ ସରକାରୀ କର୍ତ୍ତୃତ୍ୱାଧୀନରେ ରହିଛି ଏବଂ ଧର୍ମଯାଜକମାନେ ସରକାରୀ ପଦସ୍ଥ

* ଚ୍ୟାଙ୍ଗ କାଇଶେକ ଓ ଚୀନ ସୋଭିଏଟ ଭିତରେ ବିବାଦ, ଜାପାନ ଆକ୍ରମଣ ବିରୁଦ୍ଧରେ ଦୁହିଁଙ୍କର ଏକତ୍ର ମିଳନ, ଚୀନ ଉପରେ ଜାପାନର ଆକ୍ରମଣ ଓ ତା ପରବର୍ତ୍ତୀ ଯୁଦ୍ଧ ସମ୍ବନ୍ଧରେ ପୁସ୍ତକ ଶେଷରେ ଯୋଡ଼ପତ୍ରରେ ଦିଆଯାଇଛି ।

ଗ୍ରହଣ କରିଛନ୍ତି । ଏହିରୂପେ ପ୍ରକାଣ୍ଡ ପ୍ରଚାର କଳ କାର୍ଯ୍ୟ କରୁଛି, ମନ୍ଦିର ଓ ବିଦ୍ୟାଳୟ-ମାନଙ୍କ ଜରିଆରେ ବରାବର ଲୋକଙ୍କୁ ଖାଲି ଦେଶପ୍ରୀତି ନୁହେଁ, ମାତ୍ର ଅର୍ଦ୍ଧ-ଦେବତା ରୂପେ ବିରାଜମାନ କରୁଥିବା ସମ୍ରାଟର ଆଜ୍ଞା ପାଳନ କରିବା ଉଚିତ ବୋଲି ଶିକ୍ଷା ଦିଆ-ଯାଉଛି । ପୁରୁଣା ବୀରତ୍ୱଭାବକୁ ଜାପାନୀ ଭାଷାରେ "ବୁଶିଦୋ" ବୋଲି କହନ୍ତି—ଏହା ଏକ ପ୍ରକାର ବଂଶ ପ୍ରତି ଭକ୍ତି ପ୍ରଦର୍ଶନ । ଏହି ଭାବନା ସାରା ରାଷ୍ଟ୍ରରେ ବ୍ୟାପ୍ତ ଏବଂ ଏହାର ସର୍ବୋଚ୍ଚ ସ୍ଥାନରେ ରହିଛି ସମ୍ରାଟ । ପ୍ରକୃତରେ ସମ୍ରାଟ ହେଉଛି ଏକ ପ୍ରତୀକ—ତାଙ୍କର ନାମରେ ଶାସକ, ବଡ଼ ଜମିଦାର ଓ ସାମରିକ ଶ୍ରେଣୀ କ୍ଷମତା ବ୍ୟବହାର କରନ୍ତି । ଶିଳ୍ପୋନ୍ନତି ଫଳରେ ଜାପାନରେ ଏକ ବୁର୍ଜୋୟା ଶ୍ରେଣୀ ବୃଦ୍ଧି ପାଇଛି, କିନ୍ତୁ ବଡ଼ ବଡ଼ ଶିଳ୍ପାଧିକାରୀ ଭୂମିପ୍ରତି ପରିବାରମାନଙ୍କରୁ ଉଦ୍ଭବ ହୁଅନ୍ତି ଏବଂ ତେଣୁ ଏପର୍ଯ୍ୟନ୍ତ ବୁର୍ଜୋୟା ଶ୍ରେଣୀଙ୍କ ହାତକୁ ସ୍ୱତନ୍ତ୍ର ଭାବରେ କ୍ଷମତା ଯିବାର କଥା ସେଠି ଉଠି ନାହିଁ । କାର୍ଯ୍ୟତଃ ଜାପାନରେ କେତେକ ପ୍ରଭାବଶାଳୀ ପରିବାର ଏକାଧିପତ୍ୟ କରି ଦେଶର ଶିଳ୍ପ ଓ ରାଜନୀତି ସବୁ ନିୟନ୍ତ୍ରଣ କରୁଛନ୍ତି ।

ଦୀର୍ଘକାଳରୁ ଜପାନରେ ବୌଦ୍ଧଧର୍ମ ପ୍ରଚଳନ ହୋଇଛି । କିନ୍ତୁ ଶିଣ୍ଟୋ (Shinto) ହେଉଛି ଜାତୀୟ ଧର୍ମ—ଏହା 'ପୂର୍ବପୁରୁଷଙ୍କ ପୂଜାରେ ବେଶୀ ଜୋର୍ ଦିଏ । ଏଥିର ପୂର୍ବ ସମ୍ରାଟ, ଜାତିର ବୀରମାନେ ଏବଂ ବିଶେଷତଃ ଯୁଦ୍ଧରେ ଯେଉଁମାନେ ମରିଛନ୍ତି ସେମାନଙ୍କୁ ପୂଜା କରିବାକୁ ହୁଏ । ଏହିପରି ଭାବରେ ଦେଶପ୍ରେମ ଓ ରାଜଭକ୍ତି କରୁଥିବା ସମ୍ରାଟଙ୍କ ଆଜ୍ଞା ପାଳନ ଭାବ ବିସ୍ତାରର ଏହା ଏକ ଶକ୍ତିଶାଳୀ ଓ କାର୍ଯ୍ୟପ୍ରଦ ପନ୍ଥା ଅଟେ । ଜାପାନୀମାନେ ତାଙ୍କର ଅଦ୍ଭୁତ ଦେଶପ୍ରୀତି ଓ ଦେଶପାଇଁ ତ୍ୟାଗ କରିବା କ୍ଷମତା ନିମନ୍ତେ ପ୍ରସିଦ୍ଧ । ଏହି ଦେଶପ୍ରୀତି ଯେ ଅତି ଉଦ୍ଧତ ଧରଣରେ ଏବଂ ବିଶ୍ୱ ସାମ୍ରାଜ୍ୟର କଳ୍ପନା କରେ ଏହା ସେତେ ଭଲରୂପେ ସମସ୍ତେ ଜାଣନ୍ତି ନାହିଁ । ୧୯୧୫ ବେଳକୁ ଜାପାନରେ ଏକ ନୂତନ ସମ୍ପ୍ରଦାୟ ଆରମ୍ଭ କରାଗଲା । ଏହାକୁ "ଓମୋତୋକ୍ୟୋ ।" (Omototyo) ସମ୍ପ୍ରଦାୟ କହନ୍ତି ଏବଂ ଏହା ସମଗ୍ର ଦେଶରେ ବଡ଼ ଦ୍ରୁତ ବେଗରେ ପ୍ରସାର ହୋଇଗଲା । ଏହି ସମ୍ପ୍ରଦାୟର ପ୍ରଧାନ ସିଦ୍ଧାନ୍ତ ହେଉଛି ଜାପାନ ସାରା ଜଗତର ଶାସକ ହେବ ଏବଂ ସମ୍ରାଟ ସେଥିରେ ସର୍ବାଧିକାରୀ ହେବେ । ଏହି ସମ୍ପ୍ରଦାୟ ତରଫରୁ କୁହା ହେଉଥିଲା—

"ଜାପାନର ସମ୍ରାଟଙ୍କୁ ସାରା ଦୁନିଆର ଶାସକ ଓ ଗଭର୍ଣ୍ଣର କରିବା ଆମର ଏକମାତ୍ର ଲକ୍ଷ୍ୟ । ସେ ହିଁ ପୃଥିବୀରେ ଏକମାତ୍ର ଶାସକ । ଦେବୀ ଜଗତର ଦୂରଦ୍ରଷ୍ଟିତ ପୂଜକମାନଙ୍କ ତରଫରୁ ଏକ ଆଧ୍ୟାତ୍ମିକ ଲକ୍ଷ୍ୟ ହାସଲ କରିବା ନିମନ୍ତେ ସେ ରହିଛନ୍ତି ।"

ଆମେ ଦେଖିଛେ ପ୍ରଥମ ଯୁଦ୍ଧ ବେଳେ ଚୀନକୁ ଧମକ ଦେଇ ଜାପାନ ତାର ୨୧ଟି ଦାବୀ ପୂରଣ କରିବାକୁ ଚେଷ୍ଟା କରିଥିଲା । ସେ ଯାହା ଚାହିଁଥିଲା, ତାହା ପାଇଲା ନାହିଁ—ଆମେରିକା ଓ ଇଉରୋପରେ ଆନ୍ଦୋଳନ ଯୋଗୁଁ ଏହା ହୋଇ ପାରିଲା ନାହିଁ; ମାତ୍ର

ତଥାପି ସେ ବିଶେଷ କିଛି ପାଇଲା । ଯୁଦ୍ଧପରେ ଜାର ସାମ୍ରାଜ୍ୟ ପତନରେ ଜାପାନ ଏସିଆରେ ବିସ୍ତାର ଲାଭ କରିବା ନିମନ୍ତେ ଏକ ଅପୂର୍ବ ସୁଯୋଗ ପାଇଗଲା । ତାର ସେନା ସାଇବେରିଆରେ ପ୍ରବେଶ କଲେ ଏବଂ ତାର ଏଜେଣ୍ଟମାନେ ମଧ୍ୟଏସିଆରେ ବୋଖାରା ଓ ସମରକନ୍ଦ ପର୍ଯ୍ୟନ୍ତ ଆସିଗଲେ । ସୋଭିଏଟ୍ ରୁଷର ଶକ୍ତି ଓ କେତେକ ପରିମାଣରେ ଆମେରିକାର ବିରୋଧ ଓ ଅବିଶ୍ୱାସ ହେତୁ ଏହି ଦୁଃସାହସ ବିଫଳ ହେଲା । କାରଣ ଏହା ସର୍ବଦା ମନେ ରଖିବା ଉଚିତ ଯେ ଜାପାନ ଓ ସଂଯୁକ୍ତରାଷ୍ଟ୍ର ଆମେରିକା ଭିତରେ କେବେହେଲେ ସଦ୍‌ଭାବ ନାହିଁ । ସେମାନଙ୍କ ପରସ୍ପରକୁ ଖୁବ୍ ଘୃଣା କରନ୍ତି ଏବଂ ପ୍ରଶାନ୍ତ ମହାସାଗରରେ ବୃଦ୍ଧିଙ୍କର ଆଖି । ୧୯୨୨ର ଓ୍ୱାଶିଂଟନ ସମ୍ମିଳନୀ ଜାପାନୀ ଅଭିଳାଷ ଉପରେ ଏକ ଅଘାତ ଏବଂ ଆମେରିକାନ କୂଟନୀତିର ବିଜୟ ହେଲା । ଏହି ସମ୍ମିଳନୀରେ ଜାପାନ ସମେତ ନଅଟିଯାକ ଶକ୍ତି ଚୀନର ଅବିଚ୍ଛିନ୍ନତା ରକ୍ଷା କରିବା ନିମନ୍ତେ ପ୍ରତିଜ୍ଞାବଦ୍ଧ ହେଲେ; ଏହାର ଅର୍ଥ ଚୀନରେ ପ୍ରସାର ଲାଭ କରିବାର ସମସ୍ତ ଆଶା ଜାପାନକୁ ତ୍ୟାଗ କରିବାକୁ ପଡ଼ିଲା । ଏହି ସମ୍ମିଳନୀରେ ବି ଇଂଲଣ୍ଡ-ଜାପାନ ମିତ୍ରତା ତୁଟିଗଲା ଏବଂ ସୁଦୂର ପ୍ରାଚ୍ୟରେ ଜାପାନ ଅଲଗା ହୋଇ ରହିଲା । ବ୍ରିଟିଶ ସରକାର ସିଙ୍ଗାପୁରରେ ଏକ ବିଶାଳ ନୌ-ଘାଟୀ ତିଆରି କରିବା ଆରମ୍ଭ କଲେ ଏବଂ ଏହା ସ୍ପଷ୍ଟଭାବରେ ଜାପାନ ପ୍ରତି ଏକ ଧମକ । ଜାପାନୀ ଶ୍ରମିକମାନଙ୍କୁ ସଂଯୁକ୍ତରାଷ୍ଟ୍ର ଭିତରେ ବାସ କରିବାରେ ବାଧା ଦେବା ନିମନ୍ତେ ୧୯୨୦ରେ ସଂଯୁକ୍ତରାଷ୍ଟ୍ର ଆମେରିକା ଏକ ଜାପାନ-ଆଗନ୍ତୁକ-ବିରୋଧୀ ବିଲ ପାଶ୍ କଲା । ଏହି ଜାତିଗତ ଭେଦଭାବକୁ ଜାପାନ ଓ କେତେକ ପରିମାଣରେ ସମସ୍ତ ପ୍ରାଚ୍ୟ ଦେଶରେ ବିରୋଧ କରାଗଲା । କିନ୍ତୁ ଜାପାନ ଆମେରିକା ବିରୁଦ୍ଧରେ କିଛି କରିପାରିଲା ନାହିଁ । ଅଲଗା ଓ ଏକ ବିରୋଧୀ ଶକ୍ତିପୁଞ୍ଜ ଦ୍ୱାରା ପରିବେଷ୍ଟିତ ହୋଇ ରହିଛି ବୋଲି ବୋଧ କରି ଜାପାନ ରୁଷ ଆଡ଼କୁ ନଜର ପକାଇଲା ଏବଂ ୧୯୨୫ ଜାନୁୟାରୀ ମାସରେ ତାହା ସହିତ ଏକ ସନ୍ଧି ସ୍ୱାକ୍ଷର କଲା ।

ଏହି ସମୟରେ ଜାପାନରେ ଯେଉଁ ମହାନ ବିପଦ ପଡ଼ିଥିଲା ଓ ଯାହା ଫଳରେ ତାହା ଖୁବ୍ ଦୁର୍ବଳ ହୋଇପଡ଼ିଲା । ସେ ବିଷୟରେ ମୁଁ ତୋତେ କିଛି କହିବି । ୧୯୨୫ ସେପଟେମ୍ବର ପହିଲାରେ ଏକ ନିଦାରୁଣ ଭୂମିକମ୍ପ ହେଲା ଏବଂ ତା ପରେ ପରେ ରାଜଧାନୀ ଟୋକିଓରେ ଏକ ପ୍ରବଳ ଝଡ଼ ଓ ଅଗ୍ନି ଜଳି ଉଠିଲା । ଏହି ପ୍ରକାଣ୍ଡ ସହର ଧ୍ୱଂସ ହେଲା ଏବଂ ୟାକୋହମା ବନ୍ଦର ମଧ୍ୟ ଶେଷ ପାଇଲା । ଏକ ଲକ୍ଷରୁ ଅଧିକ ଲୋକ ମଲେ ଓ ପ୍ରଭୂତ କ୍ଷତି ଘଟିଲା । ଜାପାନୀ ଲୋକେ ସାହସ ଓ ଦୃଢ଼ପଣ ସହକାରେ ଏହି ଦୁର୍ଦ୍ଦଶାରେ ସମ୍ମୁଖୀନ ହେଲେ ଏବଂ ପୁରାତନର ଧ୍ୱଂସସ୍ତୂପ ଉପରେ ନୂତନ ଟୋକିଓ ନଗର ସ୍ଥାପନ କଲେ ।

ଜାପାନ ନିଜର ଅସୁବିଧା ହେତୁ ରୁଷ ସହିତ ମିଳାମିଶା କରିଥିଲା, କିନ୍ତୁ ଏହାର ଅର୍ଥ ନୁହେଁ ଯେ ତାହା କମ୍ୟୁନିଜମ୍‌କୁ ପସନ୍ଦ କରୁଥିଲା । କମ୍ୟୁନିଜମ ବୋଇଲେ ସମ୍ରାଟ ପୂଜା, ସାମନ୍ତବାଦ ଏବଂ ଶାସକ ଶ୍ରେଣୀଙ୍କ ଦ୍ୱାରା ଜନତାର ଶୋଷଣ ପ୍ରଭୃତି ପ୍ରଚଳିତ

ବ୍ୟବସ୍ଥା ଯାହା ଉପରେ ପ୍ରତିଷ୍ଠିତ ସେ ସବୁର ଲୋପସାଧନ । ଶକ୍ତିଶାଳୀ ଔଦ୍ୟୋଗିକ ସ୍ୱାର୍ଥମାନଙ୍କର ଅଧିକରୁ ଅଧିକ ଶୋଷଣ ଫଳରେ ଲୋକଙ୍କର ଦୁର୍ଦ୍ଦଶା ବୃଦ୍ଧି ହେଉଥିବା ଯୋଗୁଁ ଜାପାନରେ କମ୍ୟୁନିଜିମ ପ୍ରସାରିତ ହେଲା । ଲୋକସଂଖ୍ୟା ଦ୍ରୁତବେଗରେ ବଢ଼ି ଚାଲିଲା । ଏମାନେ ଆମେରିକା, କାନାଡ଼ା ବା ଅଷ୍ଟ୍ରେଲିଆ ଦେଶକୁ ବି ଯାଇପାରିଲେ ନାହିଁ । ତାଙ୍କ ପାଇଁ ଦ୍ୱାର ବନ୍ଦ ହୋଇଥିଲା । ଚୀନ ନିକଟରେ ଥିଲା, କିନ୍ତୁ ଚୀନରେ ଲୋକସଂଖ୍ୟା ବହୁତ ବେଶୀ ଥିଲା । କୋରିଆ ଓ ମାଞ୍ଚୁରିଆକୁ କେତେକ ଲୋକ ଯାଇଥିଲେ । ନିଜର ବିଶେଷ ଦୁର୍ଦ୍ଦଶା ବ୍ୟତୀତ ସମଗ୍ର ଦୁନିଆରେ ଶିଳ୍ପୋଦ୍ୟୋଗ ଓ ବେପାର ଦୁର୍ଗତି ଯୋଗୁଁ ଯେଉଁ ସାଧାରଣ କଷ୍ଟ ଭୋଗ ହେଉଥିଲା ଜାପାନକୁ ତାର ସମ୍ମୁଖୀନ ହେବାକୁ ପଡ଼ିଲା । ଆଭ୍ୟନ୍ତରୀଣ ପରିସ୍ଥିତି ଅତ୍ୟନ୍ତ ଗୁରୁତର ହୋଇ ପଡ଼ିବାରୁ କମ୍ୟୁନିଷ୍ଟ ଓ ଅନ୍ୟ ସମସ୍ତ ଅଗ୍ରଗାମୀ ଭାବକୁ ଦମନ କରାଗଲା । ୧୯୨୫ରେ ଏକ 'ଶାନ୍ତିରକ୍ଷା ଅଇନ' ପାସ ହେଲା ଏବଂ ଏଥିର ଭାଷା ବଡ଼ ଆଗ୍ରହପ୍ରଦ ଓ ତେଣୁ ଏହାର ପ୍ରଥମ ଦଫା ମୁଁ ଏଠି ଉଦ୍ଧାର କରିବି । ଏହା ହେଉଛି—

"ଯେଉଁମାନେ ଜାତୀୟ ଶାସନ ଖସଡ଼ା ବଦଳାଇଦେବା ଉଦ୍ଦେଶ୍ୟରେ ଏକ ସମିତି ବା ଭ୍ରାତୃମଣ୍ଡଳୀ ଗଢ଼ିଥିବେ କିମ୍ବା ବ୍ୟକ୍ତିଗତ ସମ୍ପତ୍ତି ପ୍ରଥାକୁ ଅସ୍ୱୀକାର କରିବେ, ଅଥବା ଯେଉଁମାନେ ଏହାର ଉଦ୍ଦେଶ୍ୟ ବିଷୟରେ ପୂର୍ଣ୍ଣଜ୍ଞାନ ଅର୍ଜନ କରି ସେ ସଙ୍ଗଠନରେ ଯୋଗ ଦେଇଥିବେ, ସେମାନଙ୍କୁ ପାଞ୍ଚ ବର୍ଷ ଜେଲରୁ ଆରମ୍ଭ କରି ମୃତ୍ୟୁ ଶାସ୍ତି ପର୍ଯ୍ୟନ୍ତ ଦିଆଯିବ ।"

ଏହି କଡ଼ା ଆଇନରେ କେବଳ କମ୍ୟୁନିଜିମ ନୁହେଁ, ସମସ୍ତ ପ୍ରକାର ସାମ୍ୟବାଦ, ଅଗ୍ରଗାମୀ ବା ଶାସନତାନ୍ତ୍ରିକ ସଂସ୍କାର ନିଷେଧ କରାଯାଇଛି । ଏଥିରୁ ଜାପାନ ସରକାର କମ୍ୟୁନିଜିମର ଉଦୟରେ କିପରି ଭୀତ ହୋଇଛି, ତାହା ଜଣାପଡ଼େ ।

ସାମାଜିକ ଅବସ୍ଥାର ବ୍ୟାପକ ଦୁର୍ଗତି ଫଳରେ କମ୍ୟୁନିଜିମ ଜନ୍ମ ହୁଏ ଏବଂ ଏସବୁ ଅବସ୍ଥାର ଉନ୍ନତି ନ ହେଲେ କେବଳ ଦମନ ଏହାର ପ୍ରତିକାର କରିପାରିବ ନାହିଁ । ବର୍ତ୍ତମାନ ଜାପାନରେ ଭୀଷଣ ଦୁର୍ଦ୍ଦଶା ପଡ଼ିଛି । ଚୀନ ଓ ଭାରତ ପରି କୃଷକ ସମ୍ପ୍ରଦାୟ ଦାରୁଣ ଋଣଭାରରେ ପୀଡ଼ିତ ହୋଇଛନ୍ତି । ଅଧିକ ସାମରିକ ବ୍ୟୟ ଓ ଯୁଦ୍ଧ ଆବଶ୍ୟକତା ହେତୁ ଟିକସହାର ଅତ୍ୟନ୍ତ ଅଧିକ । ସେଠାରେ ଅର୍ଦ୍ଧାହାରୀ କୃଷକ ଘାସ ଓ ଗଛମୂଳ ଖାଇ ବଞ୍ଚିବାକୁ ଚେଷ୍ଟା କରୁଥିବା ଓ ଏପରି କି ନିଜର ସନ୍ତାନ ବିକ୍ରି କରୁଥିବା ସମ୍ବାଦ ଆସି ପହଞ୍ଚେ । ଅକର୍ମା ସମସ୍ୟା ଯୋଗୁ ମଧ୍ୟବିତ୍ତ ଶ୍ରେଣୀର ଅବସ୍ଥା ବି ଖରାପ ଆଡ଼କୁ ଯାଉଛି ଏବଂ ଆତ୍ମହତ୍ୟା ବଢ଼ିଛି ।

୧୯୨୮ର ପ୍ରଥମ ଭାଗରେ ବିରାଟ ଆକାରରେ କମ୍ୟୁନିଜିମ ବିରୁଦ୍ଧରେ ଅଭିଯାନ ଆରମ୍ଭ ହୋଇଥିଲା । ଏକାସାଥିକେ ଏକ ହଜାରରୁ ଅଧିକ ଗିରଫଦାରୀ ହୋଇଥିଲେ, ଅଥଚ

ମାସକ ପର୍ଯ୍ୟନ୍ତ ଏହି ଘଟଣା ପ୍ରକାଶ କରିବା ନିମନ୍ତେ ସମ୍ବାଦପତ୍ରମାନଙ୍କୁ ଅନୁମତି ଦିଆଗଲା ନାହିଁ । ବର୍ଷକୁ ବର୍ଷ ବାରମ୍ବାର ପୁଲିସ ଆକ୍ରମଣ ଓ ସାଧାରଣ ଭାବରେ ଗିରଫ ଚାଲିଲା । ୧୯୩୨ ଅକ୍ଟୋବର ମାସରେ ବଡ଼ ଚଢ଼ାଉ କରି ୨୨୫୦ ଲୋକଙ୍କୁ ଗିରଫ କରାଯାଇଥିଲା । ଏମାନଙ୍କ ଭିତରେ ଅଧିକାଂଶ ଲୋକ ଶ୍ରମିକ ନ ଥିଲେ, ମାତ୍ର ଛାତ୍ର ଓ ଶିକ୍ଷକ ଥିଲେ । ସେମାନଙ୍କ ଭିତରେ ଶହ ଶହ ଗ୍ରାଜୁଏଟ ଓ ନର ନାରୀ ବି ଥିଲେ । ଜାପାନରେ ଅନେକ ଧନୀ ଯୁବକ ଯେ କମ୍ୟୁନିଜମ ପ୍ରତି ଆକୃଷ୍ଟ ହୋଇଛନ୍ତି ଏହା ଏକ ବିଚିତ୍ର କଥା । ଭାରତ ଓ ଅନ୍ୟତ୍ର ପରି ଏଠାରେ ଅଗ୍ରଗାମୀ ଚିନ୍ତାଶୀଳମାନଙ୍କୁ ଅପରାଧୀଙ୍କ ଅପେକ୍ଷା ଅଧିକ ବିପଜ୍ଜନକ ବୋଲି ବିଚାର କରାଯାଏ । ଭାରତର ମିରଟ ଷଡ଼ଯନ୍ତ୍ର ମକଦ୍ଦମା ବିଚାର ପରି କେତେକ ଜାପାନୀ କମ୍ୟୁନିଷ୍ଟ ମକଦ୍ଦମା ବର୍ଷ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।

ଜାପାନର ମାଞ୍ଚୁରିଆ ଆକ୍ରମଣ କରିବା ପଛରେ କି ଅବସ୍ଥା ଥିଲା ଏହି ସମ୍ବନ୍ଧରେ ତୋର ଗୋଟାଏ ଧାରଣା କରି ଦେବା ନିମନ୍ତେ ମୁଁ ଜାପାନର ଅବସ୍ଥା ସମ୍ବନ୍ଧରେ ତୋତେ ଏ ସବୁ ଲେଖିଲି । ସେ ଦୁଃସାହସ ସମ୍ବନ୍ଧରେ ମୁଁ ଏବେ ତୋତେ କିଛି କହିବି ।

ପୂର୍ବ ଚିଠିମାନଙ୍କରେ ଜାପାନ ଏସିଆ ଖଣ୍ଡରେ କିପରି ସ୍ଥାନ ପାଇବ, ସେଥିପାଇଁ ଅବିରତ ପ୍ରଚେଷ୍ଟା, ପ୍ରଥମେ କୋରିଆରେ ଓ ତାପରେ ମାଞ୍ଚୁରିଅରେ କିପରିକଲା ସେକଥା ପଢ଼ିଛୁ । ୧୮୯୪ରେ ଚୀନ ସହିତ ଯୁଦ୍ଧ ଏବଂ ଦଶବର୍ଷ ପରେ ରୁଷ ସହିତ ଯୁଦ୍ଧ ମଧ୍ୟ ସେହି ଉଦ୍ଦେଶ୍ୟରେ ହୋଇଥିଲା । ଜାପାନ ଜୟଲାଭ କଲା ଓ ପାଦ ପାଦ କରି ଆଗକୁ ମାଡ଼ି ଚାଲିଲା । କୋରିଆକୁ ମିଶାଇ ନେଲା ଏବଂ ଜାପାନୀ ସାମ୍ରାଜ୍ୟର ଏହା ଏକ ଅଙ୍ଗ ପାଲଟିଗଲା । ଚୀନର ତିନୋଟିଯାକ ପୂର୍ବାଞ୍ଚଳ ପ୍ରଦେଶକୁ ସାଧାରଣ ଭାବରେ ମାଞ୍ଚୁରିଆ ବୋଲି କହନ୍ତି । ସେଠାରେ ରୁଷର ପଟ୍ଟା ଏବଂ ପୋର୍ଟ ଆର୍ଥରରେ ସୁବିଧା ସବୁ ଜାପାନ ହାତକୁ ଆସିଲା । ରୁଷ ମାଞ୍ଚୁରିଆରେ ଯେଉଁ ଚାଇନିଜ ଇଷ୍ଟର୍ଣ୍ଣ ରେଲଓ୍ୱେ ( Chinese Eastern Railway ) ନିର୍ମାଣ କରିଥିଲା ତାହାର ଏକ ଅଂଶ ମଧ୍ୟ ଜାପାନ କର୍ତ୍ତୃତ୍ୱକୁ ଆସିଲା ଏବଂ ତାର ନାମ ସାଉଥ ମାଞ୍ଚୁରିଆ ରେଲଓ୍ୱେ କରାଗଲା । ଏହି ସବୁ ପରିବର୍ତ୍ତନ ସତ୍ତ୍ୱେ ମୋଟ ଉପରେ ମାଞ୍ଚୁରିଆ ଏବେ ସୁଦ୍ଧା ଚୀନ ସରକାର ଅଧୀନରେ ଥିଲା ଏବଂ ରେଲବାଇ-ଯୋଗୁ ଚୀନରୁ ଲୋକେ ସୁଅପରି ମାଡ଼ି ଆସିଲେ । ବାସ୍ତବିକ ଏହି ତିନୋଟିଯାକ ପୂର୍ବାଦିଗସ୍ଥ ପ୍ରଦେଶକୁ ଯେତେ ଲୋକ ଯାଇଛନ୍ତି, ତାହା ପୃଥିବୀ ଇତିହାସରେ ସର୍ବାପେକ୍ଷା ବଡ଼ ବୋଲି ଧରାଯାଏ । ୧୯୨୩ଠାରୁ ୧୯୨୯ ପର୍ଯ୍ୟନ୍ତ ସାତ ବର୍ଷ ଭିତରେ ୨,୨୯୦,୦୦୦ ଚୀନା ଲୋକ ସେଠାକୁ ଗଲେ । ଏବେ ମାଞ୍ଚୁରିଆର ଲୋକସଂଖ୍ୟା ପ୍ରାୟ ୩୦,୦୦୦,୦୦୦ ଏବଂ ସେଥି ଭିତରୁ ଶତକଡ଼ା ୯୫ ହେଉଛନ୍ତି ଚୀନା ଲୋକ । ତେଣୁ ଏହି ତିନୋଟି ପ୍ରଦେଶ ପୁରାପୁରି ଚୀନର । ଅବଶିଷ୍ଟ ୫ ଜଣଙ୍କ ଭିତରେ ରୁଷୀୟ, ମଙ୍ଗୋଲ ଯାଯାବର, କୋରିଆନ ଓ ଜାପାନୀ ଅଛନ୍ତି । ପୁରାତନ ମାଞ୍ଚୁରିଆନମାନେ ଚୀନାମାନଙ୍କ ସହିତ ମିଶିଯାଇଛନ୍ତି ଏବଂ ଏପରିକି ନିଜ ଭାଷା ଭୁଲିଯାଇଛନ୍ତି ।

୧୯୨୨ରେ ଓ୍ୱାଶିଙ୍ଗଟନ ସମ୍ମିଳନୀରେ ଯେଉଁ ନବଶକ୍ତି ସନ୍ଧି ହେଲା, ସେ ବିଷୟରେ ତୋତେ କହିଥିଲି ମନେଥିବ । ପାଶ୍ଚାତ୍ୟ ଶକ୍ତିମାନଙ୍କ ପ୍ରସ୍ତାବ ଅନୁସାରେ ଚୀନରେ ଜାପାନୀ ମତଲବ ରୋକିବା ନିମନ୍ତେ ଏହା ବିଶେଷ ଭାବରେ କରାଯାଇଥିଲା । ପରିଷ୍କାର ରୂପେ ଏବଂ କୌଣସି ପ୍ରକାର ଦ୍ୱିବିଧାର୍ଥ ନ ରଖି ନଅଟିଯାକ ଶକ୍ତି ( ଜାପାନ ତା ଭିତରେ ଗୋଟିଏ ଥିଲା ) "ଚୀନର ଏକାଧିପତ୍ୟ, ସ୍ୱାଧୀନତା, ରାଜ୍ୟଗତ ଓ ଶାସନଗତ ଅଖଣ୍ଡତା ରକ୍ଷା କରିବା ନିମନ୍ତେ" ସମ୍ମତ ହୋଇଥିଲେ ।

କେତେକ ବର୍ଷ ପର୍ଯ୍ୟନ୍ତ ଜାପାନ ହାତ ବାନ୍ଧି ରହିଲା । କିନ୍ତୁ ଯାହା ହେଉ, ଅନ୍ତରାଳରେ ରହି ତାହା ଗୃହଯୁଦ୍ଧ ଚଳାଇ ଚୀନକୁ ଦୁର୍ବଳ କରିବା ନିମନ୍ତେ ଚୀନର କେତେକ ଯୁଦ୍ଧପ୍ରଭୁ ବା ଟୁଚୁନମାନଙ୍କୁ ଧନ ଓ ଅନ୍ୟ ସାହାଯ୍ୟ ଦେବାକୁ ଲାଗିଲା । ବିଶେଷଭାବରେ ତାହା ଚ୍ୟାଙ୍ଗ ସୋ ଲିନକୁ ସାହାଯ୍ୟ କରିଥିଲା । ସେ ଦକ୍ଷିଣର ଜାତୀୟତାବାଦୀମାନେ ବିଜୟଲାଭ କରିବା ପର୍ଯ୍ୟନ୍ତ ମାଞ୍ଚୁରିଆ ଓ ଏପରିକି ପେକିଙ୍ଗରେ ପ୍ରାଧାନ୍ୟ କରୁଥିଲା । ୧୯୩୧ରେ ଜାପାନୀ ସରକାର ମାଞ୍ଚୁରିଆରେ ଏକ ପ୍ରକାଶ୍ୟ ଉଦ୍ଧତ ମନୋଭାବ ଦେଖାଇଲା । ତାହା ହୁଏତ ତାଙ୍କର ଅତ୍ୟଧିକ ଆର୍ଥିକ ସଙ୍କଟ ହେତୁ ହୋଇପାରିଥାଏ—ଏହିହେତୁ ଦୃଷ୍ଟି ଅନ୍ୟଆଡ଼କୁ ଫେରାଇ ନେବା ନିମନ୍ତେ ଓ ନିଜ ଦେଶରେ ସଫଳ୍ମ ଲାଘବ କରିବା ପାଇଁ ଦେଶ ବାହାରେ କିଛି କରିବାକୁ ସେ ବାଧ୍ୟ ହେଲା କିମ୍ବା ହୁଏତ ମନେକଲା ଯେ, ଅନ୍ୟ ସବୁ ଶକ୍ତି ନିଜ ନିଜର ଜଞ୍ଜାଳରେ ବ୍ୟସ୍ତ ଅଛନ୍ତି, ବେପାର ଦୁର୍ଗତ ପଡ଼ିଛି—ସେମାନେ ହସ୍ତକ୍ଷେପ କରିବାର ସମ୍ଭାବନା ନାହିଁ । ସମ୍ଭବତଃ ଏହିସବୁ କାରଣଗୁଡ଼ିକ ଏକତ୍ର ବିଚାର କରି ଜାପାନ ସରକାର ଏକ ଅତି ଗୁରୁତର କାର୍ଯ୍ୟରେ ହାତ ଦେଲା । କାରଣ ଏଥିଦ୍ୱାରା ୧୯୨୨ରେ ନବଶକ୍ତି ସନ୍ଧିକୁ ପ୍ରତ୍ୟକ୍ଷଭାବରେ ଭଙ୍ଗ କରାଯାଉଥିଲା । ଆହୁରି ମଧ୍ୟ ଲିଗ ଅଫ୍ ନେସନସ କଭେନାଣ୍ଟ ( Covenant ) ବା ନିୟମ ଏଥିରେ ଭଙ୍ଗ କରାଗଲା, କାରଣ ଚୀନ ଓ ଜାପାନ ଉଭୟେ ଲିଗର ସଦସ୍ୟ ଥିଲେ ଏବଂ ସେହି ହେତୁ ଲିଗକୁ ନ ଜଣାଇ ପରସ୍ପର ଉପରେ ଆକ୍ରମଣ ନ କରିବାର କଥା । ଶେଷରେ ଏଥିରେ ବି ଯୁଦ୍ଧ ତ୍ୟାଗ କରିବା ନିମନ୍ତେ ୧୯୨୮ର ପାରିସ ( ବା କେଲଗ ) ଚୁକ୍ତିଭଙ୍ଗ ହେଉଥିଲା । ଚୀନ ବିରୁଦ୍ଧରେ ଏହିସବୁ ଯୁଦ୍ଧସମ କାର୍ଯ୍ୟ କରିବାଦ୍ୱାରା ଜାପାନ ଜ୍ଞାତସାରରେ ଏହିସବୁ ସନ୍ଧି ଓ ଶପଥ ଭଙ୍ଗ କଲା ଏବଂ ଦୁନିଆକୁ ଅବଜ୍ଞା କଲା ।

ଅବଶ୍ୟ ସେମାନେ ଏହା ସଫା କହନ୍ତି ନାହିଁ । ସେମାନେ ମାଞ୍ଚୁରିଆରେ ଦସ୍ୟୁବୃତ୍ତି ଓ କେତେକ ଗ୍ରେଟ ଘଟଣାର ପେଖନା ଦେଖାଇ ନିଜର ସ୍ୱାର୍ଥରକ୍ଷା ନିମନ୍ତେ ଓ ଶୃଙ୍ଖଳା ରକ୍ଷା ନିମନ୍ତେ ସୈନ୍ୟ ପଠାଇବାକୁ ବାଧ୍ୟ ହେଲେ ବୋଲି କହନ୍ତି । ଏହା ଏକ ଅତି ଦୁର୍ବଳ ଓ ସ୍ପଷ୍ଟଭାବରେ ଅସତ୍ୟ କଥା । ପ୍ରକାଶ୍ୟଭାବରେ ଯୁଦ୍ଧ ଘୋଷଣା ହୋଇ ନ ଥିଲା, କିନ୍ତୁ ଯାହାହେଉ ମାଞ୍ଚୁରିଆ ଉପରେ ଜାପାନ ଆକ୍ରମଣ କଲା । ଏଥିରେ ଚୀନା ଲୋକେ ବଡ଼

ଲାଗିଗଲେ । ଚୀନ ସରକାର ପ୍ରତିବାଦ କଲା ଏବଂ ଲିଗ ଅଫ ନେସନସ ଓ ଅନ୍ୟ ଶକ୍ତିମାନଙ୍କୁ ନିବେଦନ କଲା, ମାତ୍ର ଏଥିକୁ କେହି ଦୃଷ୍ଟି ଦେଲେ ନାହିଁ । ପ୍ରତ୍ୟେକ ଦେଶ ନିଜ ଜଞ୍ଜାଳରେ ବ୍ୟସ୍ତ ଥିଲେ ଏବଂ ଜାପାନର ବିରୋଧ କରି ପୁଣି ଜଞ୍ଜାଳ ବଢ଼ାଇବାକୁ ଅନିଚ୍ଛୁକ ଥିଲେ । ଏହା ମଧ୍ୟ ସମ୍ଭବ ଯେ, କେତେକ ଶକ୍ତି ପ୍ରଧାନତଃ ଇଂଲଣ୍ଡର ଜାପାନ ସହ ଏକ ଗୁପ୍ତ ସନ୍ଧି ଥିଲା । ଚୀନର ଅନିୟମିତ ( Irregular ) ସେନା ମାଞ୍ଚୁରିଆରେ ଜାପାନୀମାନଙ୍କୁ ବହୁତ ହଇରାଣ କଲେ । ଅଥଚ ଦୁଇ ଦେଶ ଭିତରେ କୌଣସି ଯୁଦ୍ଧ ହୋଇ ନ ଥିଲା ବୋଲି ଧରାଯାଏ । ଜାପାନୀ ମାଲ ବର୍ଜନ କରିବା ନିମନ୍ତେ ଚୀନରେ ଯେ ବିରାଟ ଆନ୍ଦୋଳନ କଲା, ତାହା ଜାପାନ ପକ୍ଷରେ ଅଧିକ କ୍ଲେଶଦାୟକ ହେଲା ।

୧୯୩୨ ଜାନୁୟାରୀରେ ଜାପାନୀ ସେନା ହଠାତ୍ ସାଙ୍ଘାଇ ନିକଟରେ ଚୀନା ଭୂମିରେ ଅବତରଣ କଲେ ଏବଂ ଆଧୁନିକ କାଳର ସର୍ବାପେକ୍ଷା ପ୍ରଚଣ୍ଡ ହତ୍ୟାକାଣ୍ଡ ଆରମ୍ଭ କଲେ । ସେମାନେ ପାଶ୍ଚାତ୍ୟ ଶକ୍ତିଗୁଡ଼ିକୁ ବିରକ୍ତ ନ କରିବା ନିମନ୍ତେ ବିଦେଶୀମାନଙ୍କର ସୁବିଧା ଅଞ୍ଚଳକୁ ଛାଡ଼ିଦେଲେ ଏବଂ ଘନବସତିପୂର୍ଣ୍ଣ ଚୀନା ଅଞ୍ଚଳ ଆକ୍ରମଣ କଲେ । ସାଙ୍ଘାଇ ନିକଟରେ ଏକ ବିଶାଳ ଅଞ୍ଚଳ (ମୋର ମନେହୁଏ ତାର ନାମ ହେଉଛି ଚାପେଇ) ଉପରେ ବୋମା ଓ ଗୁଳି ବର୍ଷଣ କରାଗଲା ଏବଂ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରାଗଲା । ହଜାର ହଜାର ଲୋକ ନିହତ ହେଲେ ଏବଂ ବହୁସଂଖ୍ୟକ ଗୃହହୀନ ହୋଇପଡ଼ିଲେ । ମନେରଖ ଏହା କିଛି ଏକ ସେନା ସହିତ ଯୁଦ୍ଧ ନୁହେଁ । ନିର୍ଦୋଷ ବେସାମରିକ ଲୋକଙ୍କ ଉପରେ ବୋମାବୃଷ୍ଟି । ଏହି ଦୁଃସାହସିକ କାର୍ଯ୍ୟ ବିଷୟରେ ଜାପାନୀ ସେନାପତିଙ୍କୁ ଯେତେବେଳେ ପ୍ରଶ୍ନ କରାଗଲା, ସେ କହିଲେ ଯେ, ଜାପାନ ଦୟାଶୀଳରୂପେ ସ୍ଥିର କରିଛି ଯେ, କେବଳ ଆଉ ଅଧିକ ଦୁଇଟି ଦିନ ପର୍ଯ୍ୟନ୍ତ ବେସାମରିକ ଲୋକଙ୍କ ଉପରେ ଅନ୍ଧାଧୁନ୍ଧ ବୋମାନିକ୍ଷେପ କରାଯିବ ! ଏପରି କି ଲଣ୍ଡନର 'ଟାଇମସ' କାଗଜର ସାଙ୍ଘାଇସ୍ଥ ଜାପାନ ପକ୍ଷପାତୀ ସମ୍ବାଦଦାତା ଜାପାନୀମାନଙ୍କର ଚୀନାମାନଙ୍କ ଉପରେ କରାଯାଇଥିବା କାଣ୍ଡରେ ଏତେ ଅଧୀର ହୋଇଯାଇଥିଲେ ଯେ, ଏହାକୁ "ପୂରାପୂରି ହତ୍ୟାକାଣ୍ଡ" ବୋଲି ବର୍ଣ୍ଣନା କରିଥିଲେ । ଚୀନ ଲୋକେ ଏଥିରେ କିପରି ଅନୁଭବ କଲେ ତାହା ଭଲରୂପେ ଅନୁମାନ କରାଯାଇପାରେ । ଚୀନରେ ଏକ ଆତଙ୍କ ଓ କ୍ରୋଧର ତରଙ୍ଗ ବୋହିଗଲା ଏବଂ ଏହି ବର୍ବର ବିଦେଶୀ ଆକ୍ରମଣ ହେତୁ ଦେଶର ବିଭିନ୍ନ ଯୁଦ୍ଧପ୍ରଭୁ ଓ ସରକାରସବୁ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ଭାବ ଭୁଲିଗଲେ ବା ଭୁଲିଗଲାପରି ବୋଧ ହେଲା । ଜାପାନ ବିରୁଦ୍ଧରେ ଏକ ମିଳିତ ଅଭିଯାନ କରିବା କଥା ଉଠିଲା ଏବଂ ଚୀନର ଅଭ୍ୟନ୍ତରସ୍ଥ କମ୍ୟୁନିଷ୍ଟ ସରକାର ବି ନାନକିଙ୍ଗ ସରକାର ସହିତ ସହଯୋଗ କରିବା ନିମନ୍ତେ ବାହାରିଲା । ଅଥଚ ଅଦ୍ଭୁତ କଥା ନାନକିଙ୍ଗ ବା ଏହାର ନେତା ଚ୍ୟାଙ୍ଗ କଇ ଶେକ ଅଗ୍ରସର ହେଉଥିବା ଜାପାନୀ ସେନାଙ୍କ ହାତରୁ ସାଙ୍ଘାଇକୁ ରକ୍ଷା କରିବା ନିମନ୍ତେ କିଛି କଲେ ନାହିଁ । ନାନକିଙ୍ଗ କେବଳ ଲିଗ ପାଖରେ ପ୍ରତିବାଦ ଜଣାଇଲା । ଏପରି କି

ଜାପାନିଙ୍କ ବିରୁଦ୍ଧରେ ଏକ ମିଳିତ ପ୍ରତିରୋଧର ମଧ୍ୟ ଆୟୋଜନ କଲା ନାହିଁ । ମନେହେଲା ଏହା ଯେପରି ଲମ୍ବା ଲମ୍ବା କଥା କହୁଛି ଓ ଦେଶର ଜ୍ୱଳନ୍ତ କ୍ରୋଧ ସତ୍ତ୍ୱେ ପ୍ରତିରୋଧ କରିବା ନିମନ୍ତେ ଏହାର ଆଦୌ ସେପରି ଇଚ୍ଛା ନ ଥିଲା ।

ତାପରେ ଦକ୍ଷିଣରୁ ଏକ ଅନୁରୂପ ସେନା ସାଙ୍ଘାଇରେ ଦେଖା ଦେଲା—ଏହାକୁ ଊନବିଂଶ ସୈନ୍ୟ ବାହିନୀ ( Ninteenth Route Army ) ବୋଲି କହନ୍ତି । ଏଥିରେ କାଣ୍ଟନ ଅଧିବାସୀ ଥିଲେ, କିନ୍ତୁ ଏହା ନାନକିଙ୍ଗ ବା କାଣ୍ଟନ ସରକାର କାହାର ଆଦେଶରେ ଯାଇ ନ ଥିଲା । ଏହା ଏକ ଦରିଦ୍ର ସେନାବାହିନୀ—କିଛି ସରଞ୍ଜାମ ନ ଥିଲା, ବଡ଼ ବନ୍ଧୁକ ନ ଥିଲା, ଅତି ହୀନ ପୋଷାକ ପିନ୍ଧିଥାନ୍ତି ଏବଂ ଶୀତକାଳୀନ ଚୀନର ଉତ୍କଟ ଜାଡ଼ରୁ ରକ୍ଷା ପାଇବା ନିମନ୍ତେ ସେମାନଙ୍କ ପାଖରେ ଯଥେଷ୍ଟ ଲୁଗାପଟା ନ ଥାଏ । ଏଥିରେ ଅନେକ ୧୪।୧୬ ବର୍ଷର ପିଲା ଥିଲେ, କେତେକଙ୍କର ବୟସ ମୂଳରୁ ୧୨ ବର୍ଷ ଥିଲା । ଚ୍ୟାଙ୍ଗ-କାଇ-ଶେକଙ୍କର ଆଦେଶ ଅବଜ୍ଞା କରି ଏହି ଦରିଦ୍ର ସେନା ଜାପାନିଙ୍କ ବିରୁଦ୍ଧରେ ଯୁଦ୍ଧ କରି ତା ହାତରୁ ଦେଶକୁ ରକ୍ଷା କରିବାକୁ ସ୍ଥିର କଲା । '୧୯୩୨ ଜାନୁୟାରି ଓ ଫେବୃୟାରି ମାସରେ ଦୁଇ ସପ୍ତାହ ପର୍ଯ୍ୟନ୍ତ ନାନକିଙ୍ଗ ସରକାରଠାରୁ କୌଣସି ସାହାଯ୍ୟ ବ୍ୟତିରେକେ ସେମାନେ ଯୁଦ୍ଧ କଲେ ଏବଂ ସେମାନେ ଏପରି ଅଲୌକିକ ବୀରତ୍ୱ ସହକାରେ ଲଢ଼ାଇ କଲେ ଯେ, ଅଧିକ ବଳବାନ ଓ ସୁସଜ୍ଜିତ ଜାପାନିମାନେ ଅଟକି ରହିଗଲେ— ଏଥିରେ ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଖାଲି ଜାପାନି ନୁହନ୍ତି, ମାତ୍ର ପ୍ରତ୍ୟେକ ଲୋକ ଏପରି କି ବିଦେଶୀ ଶକ୍ତି ଓ ଚୀନାଲୋକେ ବି ତାଟକା ହୋଇଗଲେ । ଦୁଇ ସପ୍ତାହ ପର୍ଯ୍ୟନ୍ତ ବିନା ସାହାଯ୍ୟରେ ଯୁଦ୍ଧ କଲାବେଳେ ଯେତେବେଳେ ସମସ୍ତେ ଏହି ସେନାବାହିନୀଙ୍କୁ ପ୍ରଶଂସା କରିବାକୁ ଲାଗିଲେ, ସେମାନଙ୍କୁ ରାଜ୍ୟରକ୍ଷାରେ ସାହାଯ୍ୟ କରିବା ନିମନ୍ତେ ଚ୍ୟାଙ୍ଗ-କାଇ-ଶେକ କେତେକ ସେନା ପ୍ରେରଣ କଲେ ।

ଊନବିଂଶ ସେନାବାହିନୀ ଇତିହାସ ସୃଷ୍ଟି କଲା ଏବଂ ସମଗ୍ର ଦୁନିଆଁରେ ପ୍ରସିଦ୍ଧ ହୋଇଗଲା । ସେମାନଙ୍କର ପ୍ରତିରୋଧ ହେତୁ ଜାପାନର ଯୋଜନା ଓଲଟପାଲଟ ହୋଇଗଲା ଏବଂ ପାଶ୍ଚାତ୍ୟ ଶକ୍ତିସବୁ ସାଙ୍ଘାଇରେ ସେମାନଙ୍କର ସ୍ୱାର୍ଥ ରକ୍ଷା ନିମନ୍ତେ ବ୍ୟଗ୍ର ଥିବାରୁ ଜାପାନି ସେନା କ୍ରମେ ସାଙ୍ଘାଇ ଅଞ୍ଚଳରୁ ଫେରି ଆସିଲେ ଓ ଜାହାଜରେ ପଳାଇ ଆସିଲେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଚାପେଇ ହତ୍ୟାକାଣ୍ଡ ପରି ଘଟଣା ଯେଉଁଥିରେ ହଜାର ହଜାର ଚୀନା ନିହତ ହେଲେ କିମ୍ବା ସନ୍ଧି ଓ ଆନ୍ତର୍ଜାତୀୟ ଚୁକ୍ତିନାମା ପ୍ରତ୍ୟକ୍ଷ ଭାବରେ ଭଙ୍ଗ କରାଗଲା, ତାହା ଅପେକ୍ଷା ପାଶ୍ଚାତ୍ୟ ଦେଶଗୁଡ଼ିକ ନିଜର ଆର୍ଥିକ ଓ ଅନ୍ୟ ସ୍ୱାର୍ଥରକ୍ଷା ନିମନ୍ତେ ଅଧିକ ଆଗ୍ରହୀ ଥିଲେ । ଲିଗ ଅଫ ନେସନ ଆଗରେ ବାରମ୍ବାର ଏ ବିଷୟ ଉତ୍ଥାପନ କରାଗଲା, କିନ୍ତୁ କୌଣସି ପ୍ରକାରେ ପେଖନା ଦେଖାଇ ଏହି କାର୍ଯ୍ୟବିଧାନ ସ୍ଥଗିତ ରଖାଯାଉଥିଲା । ପ୍ରକୃତ ଯୁଦ୍ଧ ଯେ ଲାଗିଛି, ହଜାର ହଜାର ଲୋକ ମରୁଛନ୍ତି ଓ ମରୁଛନ୍ତି ଏହା

କିଛି ଲିଗ ଏକ ଜରୁର ବିଷୟ ବୋଲି ବିଚାର କଲା ନାହିଁ । କୁହାଗଲା ଯେ, ସରକାରୀ ଭାବରେ ଯୁଦ୍ଧ ବୋଲି ଯେତେବେଳେ ଘୋଷଣା କରାଯାଇ ନାହିଁ ଏହା ପ୍ରକୃତ ଯୁଦ୍ଧ ନୁହେଁ । ଏହି ଦୁର୍ବଳତା ଓ ପ୍ରାୟ ଜାଣିଶୁଣି ଅନ୍ୟାୟ କାର୍ଯ୍ୟକୁ ପ୍ରଶ୍ରୟ ଦେବା ହେତୁ ଲିଗର ସୁନାମ ଓ ମର୍ଯ୍ୟାଦା ବହୁ ପରିମାଣରେ ହାନି ଘଟିଲା । ଅବଶ୍ୟ ଏଥିପାଇଁ କେତେକ ପ୍ରଧାନ ଶକ୍ତି ଦାୟୀ ଏବଂ ବିଶେଷ ଭାବରେ ଇଂଲଣ୍ଡ ଲିଗରେ ଏକ ଜାପାନ ପକ୍ଷବାଦୀ ମତ ପୋଷଣ କଲା । ଶେଷରେ ଲର୍ଡ଼ ଲିଟନଙ୍କ ସଭାପତିତ୍ୱରେ ମାଞ୍ଚୁରିଆ ବ୍ୟାପାର ସମ୍ବନ୍ଧରେ ଲିଗ ଏକ ଅନ୍ତର୍ଜାତୀୟ କମିଶନ ନିଯୁକ୍ତ କଲା । ପ୍ରଧାନ ଶକ୍ତିମାନ ସାଥେ ସାଥେ ଏଥିରେ ସମ୍ମତ ହୋଇଗଲେ, କାରଣ ଏହାଦ୍ୱାରା କୌଣସି ସିଦ୍ଧାନ୍ତ ହେବାକୁ ଅନ୍ତତଃ ଅନେକ ମାସ ଲାଗିଯିବ । ମାଞ୍ଚୁରିଆ ବହୁ ଦୂରରେ ଥିଲା ଏବଂ ସେଠାକୁ ଯାଇ ରିପୋର୍ଟ କରିବା ନିମନ୍ତେ କମିଶନ ପକ୍ଷରେ ଦୀର୍ଘକାଳ ଲାଗିଯିବ ଏବଂ ହୁଏତ ସେତେବେଳକୁ ବ୍ୟାପାର ଶେଷ ହୋଇ ଯାଇଥାଇପାରେ ।

ଜାପାନୀମାନେ ସାଙ୍ଘାଇରୁ ଫେରି ଆସିଲେ; ମାତ୍ର ସେମାନେ ଏବେ ମାଞ୍ଚୁରିଆ ପ୍ରତି ଅଧିକ ଦୃଷ୍ଟିଦେଲେ । ସେମାନେ ସେଠି ଏକ ପିତୁଳା ସରକାର ସ୍ଥାପନ କଲେ ଏବଂ ଘୋଷଣା କଲେ ଯେ, ମାଞ୍ଚୁରିଆ ତାର ଆତ୍ମ-ନିୟନ୍ତ୍ରଣ ଅଧିକାର ହାସଲ କରିଛି । ଏହି ନୂତନ ପିତୁଳା ରାଜ୍ୟର ନାମ ହେଲା ମାଞ୍ଚୁକୋ ଏବଂ ଚୀନର ପୁରାତନ ମଞ୍ଚୁ ଶାସକମାନଙ୍କର ବଂଶଧର ଗୋଟିଏ ଜୀର୍ଣ୍ଣଶୀର୍ଣ୍ଣ ଯୁବକକୁ ଏହି ନୂତନ ରାଜ୍ୟର ଅଧୀଶ୍ୱର କରାଗଲା । ଅବଶ୍ୟ ଏସବୁ କେବଳ ଲୋକଦେଖାଣିଆ ପାଇଁ କରାଗଲା ଏବଂ ଜାପାନ ଥିଲା ପ୍ରକୃତ ଶାସକ । ପ୍ରତ୍ୟେକ ଲୋକ ଜାଣିଥିଲେ ଯେ, ଜାପାନୀ ସେନା ଯଦି ଅନ୍ତର୍ହିତ ହୋଇ ଯାଏ, ତେବେ ମାଞ୍ଚୁକୋ ରାଜ୍ୟ ଏକା ଦିନକେ ଓଲଟି ପଡ଼ିବ ।

ମାଞ୍ଚୁରିଆରେ ଜାପାନୀମାନେ ଖୁବ୍ ତାନେ ହଇରାଣ ହେଲେ, କାରଣ ଚୀନ ସ୍ୱେଚ୍ଛାସେବକ ବାହିନୀ ବରାବର ସେମାନଙ୍କ ସହିତ ଲଢ଼ାଇ କରୁଥିଲେ । ଏହି ସେନାକୁ ଜାପାନୀମାନେ "ଦସ୍ୟୁ" ବୋଲି କହୁଥିଲେ । ସ୍ଥାନୀୟ ଚୀନାମାନଙ୍କୁ ନେଇ ଗଠିତ ମାଞ୍ଚୁକୋ ସେନାସବୁ ଶିକ୍ଷା ପାଇଲେ ଏବଂ ଜାପାନ ସେମାନଙ୍କୁ ସୁସଜ୍ଜିତ କଲା । ସେମାନଙ୍କୁ ଯେତେବେଳେ ଏହି "ଦସ୍ୟୁ"ମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ପଠାଗଲା, ସେମାନେ ଅତି ଆଧୁନିକ ସରଞ୍ଜାମ ଅସ୍ତ୍ର ସହ ଯାଇ "ଦସ୍ୟୁ"ମାନଙ୍କ ସହିତ ଯୋଗ ଦେଲେ । ଏହି ଅବିରତ ଯୁଦ୍ଧ ହେତୁ ମାଞ୍ଚୁରିଆ ଖୁବ୍ କ୍ଷତିଗ୍ରସ୍ତ ହେଲା ଏବଂ ସୋୟାବିନ ବେପାର ନଷ୍ଟ ହେବାକୁ ଲାଗିଲା ।

ଅନେକ ମାସ ତଦନ୍ତ ପରେ ଲିଟନ କମିଶନ ତାର ରିପୋର୍ଟ ଲିଗ୍ ଅଫ୍ ନେସନ୍ସରେ ପେଶ୍ କଲା । ଏହା ଏକ ସାବଧାନୀ, ନରମା ଓ ନ୍ୟାୟପୂର୍ଣ୍ଣ ଭାଷାରେ ଲେଖା ରିପୋର୍ଟ ଏବଂ

ଏହା ଜାପାନର ଖୁବ୍ ବିରୁଦ୍ଧରେ ମତ ଦେଲା । ଏଥିରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବଡ଼ ବିଗିଡ଼ି ଗଲା । କାରଣ ସେମାନେ ଜାପାନକୁ ରକ୍ଷା କରିବା ନିମନ୍ତେ ଲାଗି ପଡ଼ିଥିଲେ । ପୁନର୍ବାର ଅନେକ ମାସ ପର୍ଯ୍ୟନ୍ତ ଏ ବିଷୟରେ ବିଚାର ସ୍ଥଗିତ ରଖାଗଲା । ଶେଷରେ ଲିଗ୍ ଏହି ପ୍ରସ୍ତାବର ସମ୍ମୁଖୀନ ହେଲା । ଆମେରିକା ମତଗତ ଇଂଲଣ୍ଡଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା; ଏହା ଖୁବ୍ ଜାପାନ ବିରୋଧରେ ଥିଲା । ଆମେରିକା ଘୋଷଣା କରିଥିଲା ଯେ ମାଞ୍ଚୁରିଆ ଓ ଅନ୍ୟତ୍ର ବଳପୂର୍ବକ ଜାପାନ ଯେଉଁସବୁ ପରିବର୍ତ୍ତନ କରିଛି, ତାହା ସେ ସ୍ୱୀକାର କରିବ ନାହିଁ । ଆମେରିକାର ଏପରି ଦୃଢ଼ ମତ ସତ୍ତ୍ୱେ ଇଂଲଣ୍ଡ ଏବଂ କେତେକ ପରିମାଣରେ ଫ୍ରାନ୍ସ, ଇଟାଲୀ ଓ ଜର୍ମାନୀ ଜାପାନକୁ ସମର୍ଥନ କଲେ ।

ଲିଗ୍ କୌଣସି ନିଷ୍ପତ୍ତିରେ ଉପନୀତ ନ ପାରିଥିବା ଏହି ଅବସ୍ଥାରେ ଥିଲାବେଳେ ଜାପାନ ଏକ ନୂତନ କାମ କଲା । ୧୯୩୩ ନୂତନ ବର୍ଷର ଆରମ୍ଭ ଦିବସରେ ଜାପାନୀ ସେନା ହଠାତ୍ ଖାସ ଚୀନରେ ପ୍ରବେଶ କଲେ ଏବଂ ମହାନ ପ୍ରାଚୀର ( Great Wall )ର ଚୀନ କଡ଼ରେ ଥିବା ସାନହେଇକ୍ୱାନ ସହର ଆକ୍ରମଣ କଲେ । ବଡ଼ ବଡ଼ ବନ୍ଧୁକ ଓ ଡେଷ୍ଟ୍ରୟର ( Dstroyer ) ମାନଙ୍କରୁ ଗୁଳିବର୍ଷଣ ହେଲା ଏବଂ ଉଡ଼ାଜାହାଜରୁ ବୋମା ବର୍ଷଣ ହେଲା, ଏହା ସମ୍ପୂର୍ଣ୍ଣରୂପେ ଆଧୁନିକ ଧରଣର ଆକ୍ରମଣ ଏବଂ ସାନହେଇକ୍ୱାନ ଏକ "ନିଆଁ ପାଉଁଶ"ରେ ପରିଣତ ହୋଇଗଲା ଏବଂ ଏହାର ବେସାମରିକ ଅଧିବାସୀଙ୍କ ଭିତରୁ ବହୁସଂଖ୍ୟକ ମୁମୂର୍ଷୁ ଓ ମୃତ ଅବସ୍ଥାରେ ପଡ଼ିଲେ । ତାପରେ ଜାପାନୀ ସେନା ଚୀନ ପ୍ରଦେଶ ଜେହୋଲ ଭିତରକୁ ଯାତ୍ରା କଲେ ଏବଂ ପେପିଙ୍ଗ୍ ପାଖକୁ ଧାଇଁଲେ । କାରଣ ସ୍ୱରୂପ କୁହାହେଲା ଯେ, ମାଞ୍ଚୁକୋ ଆକ୍ରମଣ କରିବା ନିମନ୍ତେ "ଦସ୍ୟୁମାନେ" ଜେହୋଲକୁ ହେଡ଼କ୍ୱାର୍ଟର କରିବାକୁ ଚାହାନ୍ତି । ଜେହୋଲ ଏବେ ମାଞ୍ଚୁକୋର ଏକ ଅଂଶ ହୋଇଗଲାଣି ।

ଏହି ନୂତନ ଆକ୍ରମଣ ଓ ନୂତନ ବର୍ଷ ପ୍ରଥମ ଦିବସରେ ହତ୍ୟାକାଣ୍ଡ ଲିଗ୍ ଆଖି ଖୋଲିଦେଲା ଏବଂ ଶ୍ରେଷ୍ଠ ଶକ୍ତିମାନଙ୍କର ଚାପ ହେତୁ ଲିଗ୍ ଲିଟନ ରିପୋର୍ଟ ଗ୍ରହଣ କଲା ଓ ଜାପାନର ନିନ୍ଦା କଲା । ଜାପାନୀ ସରକାର ତଳେ ହେଲେ ଖାତିର କଲା ନାହିଁ (ଇଂଲଣ୍ଡ ସମେତ କେତେକ ପ୍ରଧାନ ଶକ୍ତି ଗୋପନରେ ତାକୁ ସମର୍ଥନ କରିବା କଥା ତାକୁ ଅଛପା ଥିଲା କି ? ) ଏବଂ ଲିଗ୍‌ରୁ ବାହାରିଗଲା । ଲିଗ୍‌ରୁ ଇସ୍ତଫା ଦେଇସାରି ଜାପାନ ନିରାଲମ୍ବ ଭାବରେ ପେପିଙ୍ଗ୍ ଆଡ଼କୁ ଅଗ୍ରସର ହେବାକୁ ଲାଗିଲେ । ଏହାର କିଛି ପ୍ରତିରୋଧ କରାଗଲା ନାହିଁ ଏବଂ ଜାପାନୀ ସେନା ଠିକ୍ ପେପିଙ୍ଗ୍ ଦ୍ୱାରରେ ପ୍ରାୟ ପହଞ୍ଚିଲାବେଳକୁ ୧୯୩୩ ମେ ମାସରେ ଚୀନ ଓ ଜାପାନ ଭିତରେ ଏକ ସନ୍ଧି ହୋଇଥିବା କଥା ଘୋଷିତ ହେଲା । ଜାପାନ ଜୟଯୁକ୍ତ ହେଲା । ଜାପାନୀ ଆକ୍ରମଣ ବିରୁଦ୍ଧରେ କାର୍ଯ୍ୟ କରିବା ବିଷୟରେ ନାନ୍‌କିଙ୍ଗ ଓ ବର୍ତ୍ତମାନ କୋମିନ୍‌ଟାଙ୍ଗ ଯେପରି ଦୟନୀୟ ଉପେକ୍ଷା ଦେଖାଇଲେ ସେଥିରେ ସେମାନେ ଚୀନରେ ଅପ୍ରିୟ ହୋଇ ପଡ଼ିବାଟା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

ଏହି ମାଞ୍ଚୁରିଆ ବ୍ୟାପାର ବିଷୟରେ ମୁଁ ବହୁତ କହିଲି । ଏହା ଏକ ଗୁରୁତର କଥା—କାରଣ ଏହା ଚୀନର ଭବିଷ୍ୟତ ସହିତ ସମ୍ପୃକ୍ତ । ଏହାର ଅନ୍ୟତ୍ର ଗୁରୁତ୍ୱ ରହିଛି, କାରଣ ଏହା ଲିଗ୍ ଅଫ୍ ନେସନ୍‌ସର ସ୍ୱରୂପ ପ୍ରକାଶ କରିଦେଲା ଏବଂ ଆନ୍ତର୍ଜାତୀୟ ଦୃଷ୍ଟିର ସମ୍ମୁଖରେ ଏହାର ଅକାର୍ଯ୍ୟକାରିତା ଓ ନିଷ୍ଫଳତା ଜଣାପଡ଼ିଗଲା । ଏଥିରେ ମଧ୍ୟ ବଡ଼ ଇଉରୋପୀୟ ଶକ୍ତିର କୁଟିଳତା ଓ ଚକ୍ରାନ୍ତ ଧରାପଡ଼ିଗଲା । ଏହି ନିର୍ଦ୍ଦିଷ୍ଟ ବିଷୟରେ ଆମେରିକା (ଲିଗ୍‌ର ସଭ୍ୟ ନ ଥାଇ) ଜାପାନ ବିରୁଦ୍ଧରେ ଏକ ଦୃଢ଼ ମନୋଭାବ ଦେଖାଇଲା ଏବଂ ପ୍ରାୟ ତା ବିରୁଦ୍ଧରେ ଯୁଦ୍ଧକୁ ଡେଇଁଲା ପରି ହେଲା । କିନ୍ତୁ ତା'ପରେ ଇଂଲଣ୍ଡ ଓ ଅନ୍ୟ ଶକ୍ତିମାନେ ଗୁପ୍ତରେ ଜାପାନକୁ ଯେ ସାହାଯ୍ୟ ଦେଲେ, ତାହା ଆମେରିକାର ମତିଗତିକୁ କୋହଳ କରିଦେଲା ଏବଂ ଜାପାନ ବିରୁଦ୍ଧରେ ଲଢ଼ିବା ପାଇଁ ଏକାକୀ ହୋଇଯିବାର ଭୟ ଦେଖି ଆମେରିକା ଅଧିକ ସତର୍କ ହୋଇପଡ଼ିଲା । ଲିଗ୍ ପରିବର୍ତ୍ତ ଭାବରେ ଜାପାନର ନିନ୍ଦା କଲା, କିନ୍ତୁ ତା ପଛରେ କିଛି କାର୍ଯ୍ୟବିଧାନ କଲା ନାହିଁ । ଲିଗ୍ ସଭ୍ୟମାନେ ଖେଳନା ମାଞ୍ଚୁକୋ ସରକାରକୁ ସ୍ୱୀକାର କଲେ ନାହିଁ, କିନ୍ତୁ ଏହି ଅସ୍ୱୀକୃତିଟା ଗୋଟାଏ ପ୍ରହସନ ହୋଇଗଲା ।

ଲିଗ୍ ଜାପାନର ନିନ୍ଦାବାଦ କରିବା ସତ୍ତ୍ୱେ ବ୍ରିଟିଶ ମନ୍ତ୍ରୀ ଓ ରାଷ୍ଟ୍ରଦୂତମାନେ ନିଜ ଆଡ଼ୁ ବାହାରିପଡ଼ି ଜାପାନୀ କାର୍ଯ୍ୟର ଯଥାର୍ଥତା ଦେଖାଇଲେ । ଇଂଲଣ୍ଡର ରୁଷ ପ୍ରତି ବ୍ୟବହାର ସହିତ ଏହାର ଏକ ବିଚିତ୍ର ପାର୍ଥକ୍ୟ ଦେଖାଯାଏ । ୧୯୩୩ ଏପ୍ରିଲ ମାସରେ ଗୁପ୍ତସନ୍ଧିମୂଳକ କାର୍ଯ୍ୟ ନିମନ୍ତେ କେତେକ ଇଂରେଜ ଇଞ୍ଜିନିୟରଙ୍କର ବିଚାର ରୁଷରେ ହୋଇଥିଲା । କେତେକ ଖଲାସ ହେଲେ ଏବଂ ଦୁଇଜଣଙ୍କୁ ଅଳ୍ପଦିନ ଜେଲ ଦଣ୍ଡ ଦିଆଗଲା । ଏଥିରେ ଖୁବ୍ ଚିତ୍କାର ଉଠିଲା ଏବଂ ସାଙ୍ଗେ ସାଙ୍ଗେ ରୁଷ ମାଲ ବ୍ରିଟେନରେ ପ୍ରବେଶ କରିପାରିବ ନାହିଁ ବୋଲି ବ୍ରିଟିଶ ସରକାର ନିଷେଧାଜ୍ଞା ଜାରି କରିଦେଲା । ରୁଷ ମଧ୍ୟ ପ୍ରତିବଦଳରେ ବ୍ରିଟିଶ ମାଲ ତା ଦେଶରେ ପୂରାଇ ଦେଲା ନାହିଁ । *

ତେଣୁ ଚୀନ ମାଞ୍ଚୁରିଆ ହରାଇଗଲା ଏବଂ ଜାପାନ ଦେଶର ଅବଶିଷ୍ଟ ଅଞ୍ଚଳକୁ ଧମକ ଦେବାକୁ ଲାଗିଲା । ତିବ୍ବତ ସ୍ୱାଧୀନ ଥିଲା । ମଙ୍ଗୋଲିଆ ଏକ ସୋଭିଏଟ ଦେଶ ଏବଂ ଏହା ରୁଷ ସୋଭିଏଟ ଇଉନିୟନ ସହିତ ସମ୍ପୃକ୍ତ ଥିଲା । ତିବ୍ବତ ଓ ସାଇବେରିଆ ମଧ୍ୟରେ ଥିବା ସିଙ୍କିଆଙ୍ଗ ବା ଚୀନା ତୁର୍କିସ୍ଥାନରେ ବି ଗୋଲମାଲ ହେଲା । ଏହା ଚୀନର ଅତି ଏକ ବିଶାଳ ପ୍ରଦେଶ । ଏହି ପ୍ରଦେଶର ୟାରକନ୍ଦ ଓ କାସଗରକୁ ଲଦାଖର ଲେହ ମଧ୍ୟ ଦେଇ କାଶ୍ମୀରରେ ଶ୍ରୀନଗରଠାରୁ ସବୁତମତ ବଣିକ ଚଳେ । ଏହି ପ୍ରଦେଶର ଅଧିବାସୀ ଅଧିକ ଭାବରେ ତୁର୍କି ମୁସଲମାନ । ସେମାନଙ୍କର ଦୃଷ୍ଟିକୋଣ, ସଂସ୍କୃତି ଏବଂ ଏପରି କି ନାମ ପର୍ଯ୍ୟନ୍ତ ଚୀନ ଦେଶାନୁସାରେ ହୋଇଛି । କିନ୍ତୁ ଖାସ ଚୀନଠାରୁ ସେମାନେ ବହୁ ଦୂରରେ ଓ

---

* ପରେ ଦୁଇ ଦେଶ ଭିତରେ ଏକ ସନ୍ଧି ହୋଇ ଏହି ବେପାର ଯୁଦ୍ଧର ଅବସାନ ହୋଇଥିଲା ।

ଗୋବୀ ମରୁଭୂମିଦ୍ୱାରା ବିଚ୍ଛିନ୍ନ ହୋଇଛି । ଯାତାୟାତ ପଥ ଅତି ଆଦିମ କାଳର । ଚୀନ ସହିତ ସେମାନଙ୍କର ସମ୍ବନ୍ଧ ଶକ୍ତ ନୁହେଁ ଏବଂ ଚୀନ୍ ଜାତୀୟତା ମନୋଭାବ ରହିଛି—ଏହା ବେଳେ ବେଳେ ପ୍ରକାଶିତ ହୋଇପଡ଼େ । ମହାସମର ବେଳୁ ଏହି ବିଶାଳ ଅଞ୍ଚଳ ଆନ୍ତର୍ଜାତୀୟ ଚକ୍ରାନ୍ତର କ୍ଷେତ୍ର ହୋଇ ପଡ଼ିଛି । ଇଂଲଣ୍ଡ, ରୁଷ ଓ ଜାପାନ ପରସ୍ପର ବିରୁଦ୍ଧରେ ଓ ଚୀନ ସରକାର ବିରୁଦ୍ଧରେ ଗୁଇନ୍ଦାଗିରି ଓ ଚକ୍ରାନ୍ତ କରନ୍ତି ଏବଂ ସ୍ଥାନୀୟ ପ୍ରତିଦ୍ୱନ୍ଦ୍ୱୀ ସାମନ୍ତମାନଙ୍କୁ ସମର୍ଥନ କରନ୍ତି ।

୧୯୩୩ ପ୍ରଥମ ଭାଗରେ ସିଙ୍କିୟାଙ୍ଗରେ ତୁର୍କି ବିଦ୍ରୋହ ହେଲା; ୟାରକନ୍ଦ ଓ କାଶଗରର ପତନ ହେଲା ଏବଂ ପ୍ରଜାତନ୍ତ୍ର ଘୋଷିତ ହେଲା । ଏହି ବିଦ୍ରୋହକୁ ଉତ୍ସାହିତ କରାଯାଉଛି ବୋଲି ବ୍ରିଟିଶ ସୋଭିଏଟକୁ ଦୋଷ ଦେଲା । କିନ୍ତୁ ସୋଭିଏଟ ପ୍ରକାଶ୍ୟଭାବରେ ଅଭିଯୋଗ କଲା ଯେ, ଚୀନ ଓ ରୁଷ ଭିତରେ ଏକ ମଧ୍ୟବର୍ତ୍ତୀ ରାଜ୍ୟରୂପେ ମାଞ୍ଚୁକୋକୁ ସୃଷ୍ଟି କରିବା ନିମନ୍ତେ ବ୍ରିଟେନ ଏହାକୁ ମତାଉଛି । ଏପରି କି ଯେଉଁ ବ୍ରିଟିଶ ସାମରିକ କର୍ମଚାରୀ ଏହା ସଂଗଠନ କରୁଥିଲେ ତାଙ୍କ ନାମ ବି ଉଲ୍ଲେଖ କରାଗଲା ।

ନୋଟ—ଆପାତତଃ ସୋଭିଏଟ କର୍ତ୍ତୃପକ୍ଷଙ୍କର କେତେକ ବେସରକାରୀ ସାହାଯ୍ୟ ପାଇ ଚୀନ ସରକାରର ସମର୍ଥକମାନେ ସିଙ୍କିୟାଙ୍ଗ ବିଦ୍ରୋହକୁ ଦମନ କରିଦେଲେ । ମଧ୍ୟଏସିଆରେ ଏହା ଫଳରେ ସୋଭିଏଟ ମର୍ଯ୍ୟାଦା ବଢ଼ିଗଲା ଓ ବ୍ରିଟିଶ ମାନ ପଡ଼ିଗଲା ।

## ୧୭୯ : ଇଉନିୟନ ଅଫ ସୋସାଲିଷ୍ଟ ସୋଭିଏଟ୍ ରିପବ୍ଲିକ

ଜୁଲାଇ ୭, ୧୯୩୩

ଏବେ ସୋଭିଏଟ ରାଜ୍ୟ ରୁଷକୁ ଫିରିବା ଏବଂ ଆମେ ଏହି କାହାଣୀ ଯେଉଁଠୁ ଛାଡ଼ିଥିଲେ ସେଠାରୁ ପୁଣି ସୂତ୍ର ଧରି ଆସିବା । ଆମେ ୧୯୨୪ ଜାନୁୟାରୀ ପର୍ଯ୍ୟନ୍ତ ଆସିଥିଲେ—ବିପ୍ଳବର ନେତା ଓ ପ୍ରେରଣାଦାତା ଲେନିନଙ୍କର ମୃତ୍ୟୁ ହେଲା । ତାପରେ ଅନ୍ୟ ଦେଶମାନଙ୍କ ସମ୍ବନ୍ଧରେ ମୁଁ ଯେଉଁସବୁ ଚିଠି ଲେଖିଛି ସେଥିରେ ରୁଷ କଥା ବରାବର ଉଲ୍ଲେଖ କରାଯାଇଛି । ଇଉରୋପୀୟ ସମସ୍ୟା, ଭାରତୀୟ ସୀମାନ୍ତ, ମଧ୍ୟପ୍ରାଚ୍ୟ ଦେଶ—ତୁର୍କି ଓ ପର୍ସିଆ କିମ୍ବା ସୁଦୂର ପ୍ରାଚ୍ୟରେ ଚୀନ ଓ ଜାପାନ ବିଷୟ ବିଚାର କଲାବେଳେ ରୁଷ କଥା ପୁନଃ ପୁନଃ ଉଠିଛି । ଏହା ଅବଶ୍ୟ ପ୍ରମାଣିତ ହୋଇ ଯାଇଥିବ ଯେ, ଏକ ଦେଶର

ରାଜନୀତି ଓ ଅର୍ଥନୀତିକୁ ଅନ୍ୟ ଦେଶରୁ ଅଲଗା କରିବା ଅତ୍ୟନ୍ତ କଷ୍ଟକର ଏବଂ ବାସ୍ତବିକ ଅସମ୍ଭବ କଥା । ଆଧୁନିକ କାଳରେ ପରସ୍ପର ସମ୍ବନ୍ଧ ଓ ଦେଶ ଦେଶ ଉପରେ ନିର୍ଭର କରିବା ଅଦ୍ଭୁତ ଭାବରେ ବଢ଼ି ଯାଇଛି ଏବଂ ଅନେକ କଥାରେ ପୃଥିବୀ ଏକ ହୋଇପଡ଼ୁଛି । ଇତିହାସ ଆନ୍ତର୍ଜାତୀୟ ବିଷୟ ଅର୍ଥାତ ପୃଥିବୀ ଇତିହାସ ହୋଇ ପଡ଼ିଲଣି ଏବଂ ଆମେ ସମଷ୍ଟି ଭାବରେ ଦୁନିଆଁ ପ୍ରତି ଦୃଷ୍ଟିପାତ କଲେ କୌଣସି ଦେଶର ଇତିହାସ ବୁଝି ହେବ ।

ଇଉରୋପ ଓ ଏସିଆର ଯେଉଁ ପ୍ରକାଣ୍ଡ ଅଞ୍ଚଳ ସୋଭିଏଟ ଇଉନିୟନର ଅନ୍ତର୍ଭୁକ୍ତ ତାହା ପୁଞ୍ଜିବାଦୀ ଦୁନିଆଁରୁ ଅଲଗା ଏବଂ ତଥାପି ଏହି ଅନ୍ୟ ଜଗତ ସହିତ ପ୍ରତ୍ୟେକ ସ୍ଥାନରେ ଏହା ସମ୍ପର୍କରେ ଆସେ ଓ ଅନେକ ସମୟରେ ସଂଘର୍ଷ ବି ହୁଏ । ମୋର ପୂର୍ବ ଚିଠିମାନଙ୍କରେ ସୋଭିଏଟର ଉଦାର ପୂର୍ବୀୟନୀତି, ତୁର୍କି, ପର୍ସିଆ ଓ ଆଫଗାନିସ୍ଥାନକୁ ସାହାଯ୍ୟ ଏବଂ ଚୀନ ସହିତ ତାର ଘନିଷ୍ଠ ସମ୍ପର୍କ ଓ ପରେ ତାହା ହଠାତ୍ ବନ୍ଦ ହୋଇଯିବା ଆଦି ବିଷୟ ମୁଁ କହିଛି । ମୁଁ ମଧ୍ୟ ତଳେ ଇଂଲଣ୍ଡରେ ଆକାଶ ଆକ୍ରମଣ ଓ "ଜିନୋଭିଏଭ ଚିଠି" କଥା କହିଛି । ଏହା ପରେ ଜାଲ ବୋଲି ଜଣାପଡ଼ିଲା, କିନ୍ତୁ ଯାହାହେଉ ବ୍ରିଟିଶ ସାଧାରଣ ନିର୍ବାଚନରେ ଏହା ପ୍ରଭାବ ପକାଇଲା । ଏବେ ମୁଁ ତୁମେ ସୋଭିଏଟ ଦେଶର କେନ୍ଦ୍ରସ୍ଥଳୀକୁ ନେଇଯିବାକୁ ଚାହେଁ—ସେଠାରେ ଯେଉଁ ଅଦ୍ଭୁତ ଓ ଚମତ୍କାର ସାମାଜିକ ପ୍ରୟୋଗ ହେଉଛି ତାହା ଦେଖିବା ।

୧୯୧୭ ଠାରୁ ୧୯୨୧ ପର୍ଯ୍ୟନ୍ତ ବିପ୍ଳବ ପରେ ରୁଷ ପ୍ରଥମ ଚାରିବର୍ଷ କାଳ ଅନେକ ଶତ୍ରୁଙ୍କ ହାତରୁ ବିପ୍ଳବକୁ ରକ୍ଷା କରିବା ନିମନ୍ତେ ଯୁଦ୍ଧ କରିବାରେ ଲାଗିଲା । ଏହା ଏକ ଭୟଙ୍କର ଓ କୌତୁହଳପ୍ରଦ ବେଳ—ଯୁଦ୍ଧ ବିଦ୍ରୋହ, ଗୃହଯୁଦ୍ଧ, ଅନାହାର ଓ ମୃତ୍ୟୁ ଲାଗିରହିଥିଲା । ଏକ ଆଦର୍ଶ ରକ୍ଷା ନିମନ୍ତେ ଜନତାର ଅଦ୍ଭୁତ ଦମ୍ଭ ଓ ବୀରତ୍ୱ ଦେଖାଗଲା । ସାଙ୍ଗେ ସାଙ୍ଗେ ଲୋକଙ୍କ ଆଗରେ ଫଳର ଆଶା ନ ଥିଲା, କିନ୍ତୁ ମହାନ ଆଶା ଓ ପ୍ରତିଶ୍ରୁତି ଲୋକଙ୍କ ହୃଦୟରେ ପରିପୂର୍ଣ୍ଣ ହୋଇ ରହିଥିଲା ଏବଂ ସେଥିଯୋଗୁଁ ସେମାନେ ଭୀଷଣ କଷ୍ଟ ସହ୍ୟ କଲେ ଓ କ୍ଷଣକାଳ ଲାଗି ଏପରି କି ନିଜର ଭୋକଲା ପେଟ କଥା ବି ଭୁଲିଗଲେ । ଏହା ହେଉଛି "ସୈନିକ କମ୍ୟୁନିଜମ୍" (Militant Communism)ର ବେଳ ।

ତାପରେ ୧୯୨୧ରେ ଯେତେବେଳେ ଲେନିନ ନୂତନ ଅର୍ଥନୈତିକ ନୀତି ବା 'ନେପ୍' ପ୍ରବର୍ତ୍ତନ କଲେ, ସେତେବେଳେ ଟିକିଏ କୋହଳ ହେଲା । ସେଥିରେ କମ୍ୟୁନିଜମ୍‌ରୁ ଟିକିଏ ପଛକୁ ହଟିବାକୁ ପଡ଼ିଲା—ଦେଶର ବୁର୍ଜୋୟା ଲୋକଙ୍କ ସହିତ ଗୋଟାଏ ମୀମାଂସା ହେଲା । ଏହାର ଅର୍ଥ ଏହା ନୁହେଁ ଯେ, ବଲ୍‌ସେଭିକ୍ ନେତାମାନେ ତାଙ୍କର ଆଦର୍ଶ ପରିବର୍ତ୍ତନ କରିଦେଲେ । ଏ ସବୁର ଅର୍ଥ ହେଉଛି ସେମାନେ ପୁନର୍ବାର ବହୁତ ପାଦ ଆଗକୁ ଯିବା ପାଇଁ ସମର୍ଥ ହେବା ନିମନ୍ତେ ବିଶ୍ରାମ ଓ ଶକ୍ତି ସଞ୍ଚୟ ଲାଗି ଏକପାଦ ପଛକୁ ଯାଇଛନ୍ତି । ତେଣୁ ସୋଭିଏଟମାନେ ଦୃଢ଼ ହୋଇଗଲେ ଏବଂ ଯେଉଁ

ଦେଶ ବହୁ ପରିମାଣରେ ଧ୍ୱଂସ ହୋଇ ଯାଇଥିଲା, ତାକୁ ଗଠନ କରିବାର ବିରାଟ ସମସ୍ୟାର ସମ୍ମୁଖୀନ ହେଲେ । ନିର୍ମାଣ ଓ ରଚନାତ୍ମକ କାର୍ଯ୍ୟ କରିବା ନିମନ୍ତେ ସେମାନଙ୍କର କଳକବଜା ଓ ରେଲ ଇଞ୍ଜିନ ଓ ଗାଡ଼ି ମଟର, ଟ୍ରକ, ଟ୍ରାକ୍ଟର (କଲଲଙ୍ଗଲ) ଓ କାରଖାନା ସାମଗ୍ରୀ ସବୁ ଦରକାର ହେଲା । ସେମାନଙ୍କୁ ଏଗୁଡ଼ିକ ବିଦେଶରୁ କିଣିବାକୁ ପଡ଼ିଲା ଏବଂ ଏଥିପାଇଁ ତାଙ୍କ ପାଖରେ ବିଶେଷ ଅର୍ଥ ନ ଥିଲା । ତେଣୁ ସେମାନେ ଏହି ବିଦେଶୀ ରାଜ୍ୟମାନଙ୍କରୁ ଧାର ଆଣିବା ନିମନ୍ତେ ଚେଷ୍ଟା କଲେ— ତାହାହେଲେ ସେହିସବୁ ମାଲ ଖରିଦ କରିବେ, ତାହା ସୁବିଧାଜନକ କିସ୍ତିରେ ଅସୁଲ ଦେବେ । ଦେଶ ସବୁ ପରସ୍ପର ଭିତରେ କଥାବାର୍ତ୍ତା କରିବା ଅବସ୍ଥାରେ ଥିଲେ ହେଁ, କେବଳ ଋଣ ମିଳିପାରେ; ସେମାନେ ପରସ୍ପରକୁ ସରକାରୀ ଭାବରେ ସ୍ୱୀକାର ନ କରୁଥିଲେ ତାହା ହୋଇପାରିବ ନାହିଁ । ତେଣୁ ବଡ଼ ଶକ୍ତିମାନେ ସୋଭିଏଟ ରୁଷକୁ ସ୍ୱୀକାର କରନ୍ତୁ ଏବଂ ସେମାନଙ୍କ ସହିତ କୂଟନୈତିକ ଓ ବେପାର ସମ୍ବନ୍ଧ ସ୍ଥାପନ କରିବା ନିମନ୍ତେ ସୋଭିଏଟ ରୁଷ ବଡ଼ ବ୍ୟଗ୍ର ହୋଇପଡ଼ିଲା । କିନ୍ତୁ ଏହି ବୃହତ ସାମ୍ରାଜ୍ୟବାଦୀ ଶକ୍ତିସବୁ ରୁଷ ଓ ତାର ସମସ୍ତ କାର୍ଯ୍ୟକୁ ଘୃଣା କରୁଥିଲେ; ତାଙ୍କ ମତରେ କମ୍ୟୁନିଜିମ ଏକ କଳୁଷ—ଏହା ଲୋପ ହେବା ଦରକାର । ବାସ୍ତବିକ ହସ୍ତକ୍ଷେପ ଯୁଦ୍ଧରେ ସେମାନେ ଦବାଇବା ନିମନ୍ତେ ସର୍ବପ୍ରକାରେ ଚେଷ୍ଟା କରିଥିଲେ, ମାତ୍ର ବିଫଳ ହେଲେ । ସୋଭିଏଟ ସହିତ କୌଣସି ପ୍ରକାର ସମ୍ପର୍କ ନ ରଖିବାକୁ ସେମାନେ ପସନ୍ଦ କରିଥାନ୍ତେ, କିନ୍ତୁ ସମଗ୍ର ପୃଥିବୀର ଏକ-ଷଷ୍ଠାଂଶ ଆବୃତ୍ତ କରୁଥିବା ସରକାରକୁ ଉପେକ୍ଷା କରିବା କଷ୍ଟକର । ବହୁ ପରିମାଣରେ ମୂଲ୍ୟବାନ କଳକବଜା କିଣିବାକୁ ପ୍ରସ୍ତୁତ ଥିବା ଏକ ଗ୍ରାହକକୁ ଅବହେଳା କରିବା ଆହୁରି ଅଧିକ କଷ୍ଟକର । ରୁଷପରି ଏକ କୃଷିପ୍ରଧାନ ଦେଶ ଏବଂ ଜର୍ମାନୀ, ଇଂଲଣ୍ଡ ଓ ଆମେରିକା ପରି ଶିଳ୍ପୋନ୍ନତ ଦେଶଗୁଡ଼ିକ ଭିତରେ ବେପାର ଚଳିବାରେ ଉଭୟ ପକ୍ଷ ଉପକୃତ ହେଲେ, କାରଣ ରୁଷ କଳକବଜା ଚାହୁଁଥିଲା ଏବଂ ଶସ୍ତା ଖାଦ୍ୟ ଓ କଞ୍ଚାମାଲ ଯୋଗାଇ ପାରୁଥିଲା ।

ଶେଷରେ ଅର୍ଥର ଜୋର କମ୍ୟୁନିଜିମ୍ ପ୍ରତି ଘୃଣାଠାରୁ ଅଧିକ ଶକ୍ତିଶାଳୀ ବୋଲି ଦେଖା ହେଲା ଏବଂ ପ୍ରାୟ ସମସ୍ତ ରାଜ୍ୟ ସୋଭିଏଟ ସରକାରକୁ ସ୍ୱୀକାର କଲେ ଏବଂ ସେଥି ଭିତରୁ ଅନେକେ ତା' ସହିତ ବାଣିଜ୍ୟ ଚୁକ୍ତି କଲେ । କେବଳ ଆମେରିକା ତାକୁ ସ୍ୱୀକାର କରିବା ନିମନ୍ତେ ବରାବର ଅସ୍ୱୀକାର କଲା । ଯାହା ହେଉ ରୁଷ ଓ ସଂଯୁକ୍ତ ରାଷ୍ଟ୍ର ଆମେରିକା ସହିତ ବେପାର ଚାଲିଲାଣି ।*

ଏହିରୂପେ ସୋଭିଏଟ ଅଧିକାଂଶ ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ଶକ୍ତି ସହ ସମ୍ବନ୍ଧ ସ୍ଥାପନ କଲା ଏବଂ କେତେକ ପରିମାଣରେ ଏମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ଯୋଗୁଁ ସୋଭିଏଟ

*୧୯୩୩ରେ ସଂଯୁକ୍ତ ରାଷ୍ଟ୍ର ସୋଭିଏଟ ଇଉନିୟନକୁ ସ୍ୱୀକାର କଲା ଏବଂ ଦୁଇ ଦେଶ ଭିତରେ କୂଟନୀତିକ ସମ୍ପର୍କ ସ୍ଥାପିତ ହେଲା ।

ଲାଭବାନ ହେଲ—ଯେପରି ୧୯୨୨ରେ ପରାଜିତ ଜର୍ମାନୀ ସୋଭିଏଟ ଆଡ଼କୁ ଦୃଷ୍ଟି ପକାଇଥିଲା ଓ ରେପାଲୋ ସନ୍ଧି ସ୍ୱାକ୍ଷରିତ ହୋଇଥିଲା । କିନ୍ତୁ ଏହି ମିଳାମିଶା ଅତ୍ୟନ୍ତ ଅସ୍ଥାୟୀ ଥିଲା ଏବଂ ଦୁଇ ବ୍ୟବସ୍ଥା—ପୁଞ୍ଜିବାଦ ଓ କମ୍ୟୁନିଜିମ ଭିତରେ ଏକ ମୌଳିକ ଅସାମଞ୍ଜସ୍ୟ ରହିଥିଲା । ବଲସେଭିକମାନେ ଉପନିବେଶ ରାଜ୍ୟର ପରାଧୀନ ଲୋକ ଓ କାରଖାନାର ଶ୍ରମିକ ଆଦି ସବୁ ଦଳିତ ଓ ଶୋଷିତ ଜନତାକୁ ଶୋଷକଙ୍କ ବିରୁଦ୍ଧରେ ଉଠିବା ନିମନ୍ତେ ସର୍ବଦା ଉତ୍ସାହିତ କରୁଥିଲେ । ସେମାନେ ସରକାରୀ ଭାବରେ ଏ କାମ କରୁ ନ ଥିଲେ, କିନ୍ତୁ କମିଣ୍ଟର୍ଣ୍ଣ ବା କମ୍ୟୁନିଷ୍ଟ ଆନ୍ତର୍ଜାତୀୟ ଜରିଆରେ ହେଉଥିଲା । ଅନ୍ୟ ପକ୍ଷରେ ସାମ୍ରାଜ୍ୟବାଦୀ ଶକ୍ତିସବୁ ଓ ବିଶେଷ ଭାବରେ ଇଂଲଣ୍ଡ ସୋଭିଏଟ୍‌ଗୁଡ଼ିକର ଅସ୍ତିତ୍ୱ ଲୋପ କରିବା ନିମନ୍ତେ ବରାବର ଚକ୍ରାନ୍ତ କରୁଥିଲେ । ତେଣୁ କଳହ ତ ହେଉଥିଲା ଓ ଘନ ଘନ ସଂଘର୍ଷ ହେବା ଫଳରେ କୂଟନୀତିକ ସମ୍ପର୍କ ତୁଟିଯାଏ ଏବଂ ଯୁଦ୍ଧ ଆତଙ୍କ ସୃଷ୍ଟି ହୁଏ । ତୋର ମନେଥିବ ୧୯୨୭ରେ ଆର୍କୋଶ ଆକ୍ରମଣ ପରେ ଇଂଲଣ୍ଡସହ କିପରି ଚୁକ୍ତିଭଙ୍ଗ ହେଲ । ଏହି ବିବାଦ ବୁଝିବା ସହଜ, କାରଣ ଇଂଲଣ୍ଡ ଏକ ମୁଖ୍ୟ ସାମ୍ରାଜ୍ୟବାଦୀ ଶକ୍ତି ଏବଂ ସୋଭିଏଟ ରୁଷ ଏପରି ଭାବଧାରାର ପ୍ରତିନିଧିତ୍ୱ କରୁଥିଲା ଯାହା ସକଳପ୍ରକାର ସାମ୍ରାଜ୍ୟବାଦ ମୂଳରେ କୁଠାରଘାତ କରୁଥିଲା । କିନ୍ତୁ ଏହି ଦୁଇଟି ବିରୋଧୀ ଦେଶ ଭିତରେ ଆଉ ଅଧିକ କିଛି ଥିଲା ପରି ବୋଧ ହେଲ—ତାହା ହେଉଛି ପୁରୁଷ ପୁରୁଷ ଧରି ପାରମ୍ପରିକ ଭାବରେ ଜାର ଶାସିତ ରୁଷ ଓ ଇଂଲଣ୍ଡ ଭିତରେ ରହିଥିବା ଶତ୍ରୁତା ।

ଇଂଲଣ୍ଡରେ ଓ ଅନ୍ୟ ପୁଞ୍ଜିବାଦୀ ଦେଶମାନଙ୍କରେ ଆଜି ସୋଭିଏଟ ସେନାର ଭୟ ନାହିଁ, ମାତ୍ର ଭୟ ହେଉଛି ସୋଭିଏଟ୍ ଭାବଧାରା ଓ କମ୍ୟୁନିଷ୍ଟ ପ୍ରଚାର—ଏହା ଅନୁଭବ କରି ହେବ ନାହିଁ, ଅଥଚ ଅତ୍ୟନ୍ତ ପ୍ରଭାବଶାଳୀ ଓ ବିପଜ୍ଜନକ । ଏହା ଖଣ୍ଡନ କରିବା ନିମନ୍ତେ ବରାବର ଓ ଅଧିକ ପରିମାଣରେ ରୁଷ ବିରୁଦ୍ଧରେ ଅସତ୍ୟ ପ୍ରଚାର କରାହୁଏ ଏବଂ ସୋଭିଏଟ ଦୁର୍ବୃତ୍ତପଣିଆ ବିଷୟରେ ନାନା ଅଦ୍ଭୁତ କାହାଣୀମାନ ପ୍ରଚାର କରାଯାଏ । ସୋଭିଏଟ୍ ନେତାଙ୍କ ବିରୁଦ୍ଧରେ ବ୍ରିଟିଶ ରାଜନୀତିଜ୍ଞମାନେ ଯେଉଁ ଭାଷା ପ୍ରୟୋଗ କରନ୍ତି, ତାହା ଯୁଦ୍ଧକାଳରେ ଶତ୍ରୁ ଛଡ଼ା ଆଉ କାହାପ୍ରତି କେବେହେଁ ବ୍ୟବହାର କରିନାହାନ୍ତି । ଲର୍ଡ ବର୍କେନହେଡ଼ ସୋଭିଏଟ୍ ରାଜନୀତିଜ୍ଞମାନଙ୍କୁ "ଏକ ହତ୍ୟାକାରୀ ଗୋଷ୍ଠୀ" ଓ "ଏକ ବେଙ୍ଗଫୁଲ ଦଳ" ବୋଲି କହିଥିଲେ—ଏହା କହିଲବେଳେ ପୁଣି ଦୁଇ ଦେଶ ଭିତରେ ଶାନ୍ତି ଯେ ଥିଲା ତାହା ନୁହେଁ, ପରସ୍ପରସହ କୂଟନୀତିକ ସମ୍ପର୍କ ବି ଥିଲା । ଏପରି ଅବସ୍ଥାରେ ଏହା ସୁସ୍ପଷ୍ଟ ଯେ ସୋଭିଏଟ୍ ଓ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ଭିତରେ ପ୍ରକୃତରେ ବନ୍ଧୁତା ସମ୍ବନ୍ଧ ହୋଇପାରେ ନା । ସେମାନଙ୍କ ଭିତରେ ମୌଳିକ ପାର୍ଥକ୍ୟ ରହିଛି । ପୃଥିବୀ ଯୁଦ୍ଧର ବିଜେତା ଓ ବିଜିତ ରାଜ୍ୟସବୁ ମିଳିତ ହୋଇପାରନ୍ତି, କିନ୍ତୁ କମ୍ୟୁନିଷ୍ଟ ଓ ପୁଞ୍ଜିବାଦୀ ଦେଶ ମିଳିପାରେ ନା । ଶେଷୋକ୍ତ ଦୁହିଁଙ୍କ ଭିତରେ ମେଳ କେବଳ ଅସ୍ଥାୟୀ ହୋଇପାରେ; ଏହା କେବଳ ଏକ କ୍ଷଣିକ ବିରାମଲାଗି (Truce) ।

ସୋଭିଏଟ୍ ରୁଷ ଯେ ବିଦେଶୀ ଋଣ ସବୁ ଅସ୍ୱୀକାର କରିଥିଲା ଏହା ଯେକି ସୋଭିଏଟ ରୁଷ ଓ ପୁଞ୍ଜିବାଦୀ ଶକ୍ତିମାନଙ୍କ ଭିତରେ ବରାବର ବିବାଦ ଲାଗି ରହିଲା । ଏବେ ଏହା ଏକ ଜୀବନ୍ତ ସମସ୍ୟା ହୋଇ ନାହିଁ, କାରଣ ଏହି କଠିନ ସମୟରେ ପ୍ରାୟ ପ୍ରତ୍ୟେକ ଦେଶ ଋଣ ଅସୁଲ ଦେବାରେ ଗଫଲତ କରିଛନ୍ତି । କିନ୍ତୁ ତଥାପି ଏ ପ୍ରଶ୍ନ ଥରକୁ ଥର ଉଠେ । ବଲସେଭିକମାନେ କ୍ଷମତା ପାଇବା ସଙ୍ଗେ ସଙ୍ଗେ ପୂର୍ବର ଜାର ସରକାର ବିଦେଶରୁ ଯେଉଁସବୁ ଋଣ କରିଥିଲା ତାହା ଅଗ୍ରାହ୍ୟ କଲେ । ୧୯୦୫ର ଅକୃତକାର୍ଯ୍ୟ ବିପ୍ଳବବେଳୁ ଏହି ନୀତି ବିସ୍ତାର କରାଯାଇଥିଲା । ସେହି ନୀତିର ସତ୍ୟତା ରକ୍ଷା କରି ସୋଭିଏଟ୍ ମଧ୍ୟ ପର୍ବାସ୍ଥ ରାଜ୍ୟ, ଚୀନ ପ୍ରଭୃତିରେ ତାହାର ଯାହା ଦାବୀ ଥିଲା ତାକୁ ଛାଡ଼ିଦେଲା । ଆହୁରି ମଧ୍ୟ କ୍ଷତିପୂରଣରେ ସେମାନେ କୌଣସି ଭାଗ ନେଲେ ନାହିଁ । ୧୯୨୨ରେ ଏହି ଋଣ ସମ୍ବନ୍ଧରେ ମିଳିତ ସରକାର ସୋଭିଏଟଙ୍କ ନିକଟରେ ଏକ ସ୍ମାରକପତ୍ର ଉପସ୍ଥାପିତ କଲେ । ଏହାର ଜବାବ ସ୍ୱରୂପ ପୂର୍ବରୁ କେତେ ପୁଞ୍ଜିବାଦୀ ରାଜ୍ୟ ଋଣ ଓ ଅନ୍ୟାନ୍ୟ ଦାବୀ ଅଗ୍ରାହ୍ୟ କରିଥିଲେ ଓ ବିଦେଶୀଙ୍କର ସମ୍ପତ୍ତି ସବୁ ଜୋକ କରିଥିଲେ, ତାହା ସୋଭିଏଟ୍ ଦର୍ଶାଇଲେ । "ବିପ୍ଳବରୁ ଯେଉଁ ସରକାର ଓ ବ୍ୟବସ୍ଥା ଉପୁଜିଛି, ତାହା ଅତୀତ ସରକାରର ଦାୟିତ୍ୱ ରକ୍ଷା କରିବାକୁ ବାଧ୍ୟ ନୁହେଁ ।" ମିତ୍ରପକ୍ଷ ଭିତରୁ ଫ୍ରାନ୍ସ ତାର ମହାନ୍ ବିପ୍ଳବ ବେଳେ କଣ କରିଥିଲା ସେ କଥା ସୋଭିଏଟ୍ ସରକାର ମିତ୍ରରାଜ୍ୟମାନଙ୍କୁ ସ୍ମରଣ କରାଇ ଦେଲା ।

"ଫ୍ରାନ୍ସ ନିଜକୁ ଯେଉଁ ଫରାସୀ କନ୍‌ଭେନ୍‌ସନ୍‌ର ନ୍ୟାୟସଙ୍ଗତ ଉତ୍ତରାଧିକାରୀ ବୋଲି ଘୋଷଣା କରେ, ସେଥିରେ ୧୭୯୨ ଡିସେମ୍ବର ୨୨ ତାରିଖରେ ଘୋଷଣା କରାଯାଇଥିଲା ଯେ 'ଲୋକଙ୍କ କର୍ତ୍ତୃତ୍ୱ ଅତ୍ୟାଚାରୀଙ୍କଦ୍ୱାରା ହୋଇଥିବା ସନ୍ଧି ଅନୁସାରେ ବାଧ୍ୟ ନୁହେଁ ।' ଏହି ଘୋଷଣା ଅନୁସାରେ ବିପ୍ଳବୀ ଫ୍ରାନ୍ସ କେବଳ ଯେ ବିଦେଶୀ ରାଜ୍ୟ ସହିତ ପୂର୍ବ ରାଜୁତିରେ ହୋଇଥିବା ରାଜନୈତିକ ସନ୍ଧି ସବୁ ଛିଣ୍ଡାଇଦେଲା ତାହା ନୁହେଁ, ମାତ୍ର ତାର ଜାତୀୟ ଋଣକୁ ବି ଅସ୍ୱୀକାର କଲା ।

ଏହି ରୂପେ ନିଜ କାର୍ଯ୍ୟର ଯଥାର୍ଥତା ଦେଖାଇବା ସତ୍ତ୍ୱେ ସୋଭିଏଟ୍ ସରକାର ଅନ୍ୟ ଶକ୍ତିମାନଙ୍କ ସହ ମିଳାମିଶା କରିବା ନିମନ୍ତେ ଏତେ ବ୍ୟଗ୍ର ଥିଲା ଯେ ସେମାନଙ୍କ ସହିତ ଏହି ଋଣ ସମସ୍ୟା ଆଲୋଚନା କରିବା ନିମିତ୍ତ ପ୍ରସ୍ତୁତ ରହିଛି ବୋଲି ଜଣାଇଲା । କିନ୍ତୁ ଏହା ସର୍ତ୍ତ ରଖିଲା ଯେ ବିଦେଶୀ ସରକାର ସବୁ ବିନାସର୍ତ୍ତରେ ସୋଭିଏଟଗୁଡ଼ିକୁ ସ୍ୱୀକାର କଲେ ଏହି ଆଲୋଚନା ହୋଇ ପାରିବ । ପ୍ରକୃତରେ ଦେଖିବାକୁ ଗଲେ ସୋଭିଏଟ ସରକାର ଅଙ୍ଗୀକାର ପତ୍ର ଅନୁସାରେ ଋଣ ପରିଶୋଧ ଦେବା ନିମନ୍ତେ ଇଂଲଣ୍ଡ, ଫ୍ରାନ୍ସ ଓ ଆମେରିକାକୁ ଅନେକ ନିର୍ଭରବାଣୀ ଦେଲା, କିନ୍ତୁ ରୁଷ ସହିତ ମିଳାମିଶା କରିବା ନିମନ୍ତେ ପୁଞ୍ଜିବାଦୀ ଦେଶମାନଙ୍କ ଭିତରେ ଆଦୌ ବ୍ୟଗ୍ରତା ନ ଥିଲା ।

ବ୍ରିଟିଶ ଦାବୀ ବିରୁଦ୍ଧରେ ସୋଭିଏଟ ଅଧିକ ଏକ ମଜାଦାର ପ୍ରତିଦାବୀ ବାଢ଼ିଲେ । ରୁଷ ଉପରେ ସରକାରୀ ଯୁଦ୍ଧଋଣ, ରେଳବାଇ ହୁଣ୍ଡି ଓ ବାଣିଜ୍ୟ ସମ୍ପର୍କୀୟ ମୂଳଧନ ଆଦି ମିଶାଇ ଇଂଲଣ୍ଡର ୮୪୦,୦୦୦,୦୦୦ ପାଉଣ୍ଡ ଦାବୀ ଥିଲା । ବଲସେଭିକମାନେ ପ୍ରତିଦାବୀରୂପେ ରୁଷ ଗୃହଯୁଦ୍ଧରେ ହୋଇଥିବା କ୍ଷତିର ଆଂଶିକ ଦାବୀ ବ୍ରିଟେନ ଉପରେ କଲେ, କାରଣ ସୋଭିଏଟ ଶତ୍ରୁମାନଙ୍କୁ ବ୍ରିଟେନ ଓ ବ୍ରିଟିଶସେନା ସାହାଯ୍ୟ କରିଥିଲେ । ମୋଟ କ୍ଷତି ୪,୦୬୭,୨୧୬,୦୪୦ ପାଉଣ୍ଡ ବୋଲି ଧରାଯାଇଥିଲା ଏବଂ ଏଥିରୁ ବ୍ରିଟେନର ଭାଗ ମୋଟାମୋଟି ୨,୦୦୦,୦୦୦,୦୦୦ ପାଉଣ୍ଡ ବୋଲି ଧରାଯାଉଥିଲା । ତେଣୁ ପ୍ରତିଦାବୀଟି ସପକ୍ଷ ଦାବୀର ପ୍ରାୟ ଅଢ଼େଇଗୁଣ ବେଶୀ ଥିଲା ।

ଏପରି ପ୍ରତିଦାବୀ ବଲସେଭିକମାନେ କିଛି ଦୁର୍ବଳ ଭିତ୍ତି ଉପରେ କରି ନ ଥିଲେ । ସେମାନେ 'ଆଲବାମା' ଯୁଦ୍ଧପୋତର ପ୍ରସିଦ୍ଧ ଦୃଷ୍ଟାନ୍ତ ଦେଲେ । ଏହି ଯୁଦ୍ଧପୋତ ( Cusser ) ୧୮୬୦-୭୦ର ଆମେରିକା ଗୃହଯୁଦ୍ଧ ସମୟରେ ଦକ୍ଷିଣସ୍ଥ ରାଜ୍ୟ ନିମନ୍ତେ ଇଂଲଣ୍ଡରେ ନିର୍ମାଣ ହୋଇଥିଲା । ଗୃହଯୁଦ୍ଧ ଆରମ୍ଭ ହେବା ପରେ ଏହା ଲିଭରପୁଲ ବନ୍ଦର ଛାଡ଼ିଲା ଏବଂ ଉତ୍ତରାଞ୍ଚଳ ରାଜ୍ୟର ଜାହାଜ ଓ ବେପାରର ଏହା ପ୍ରଚୁର ପରିମାଣରେ କ୍ଷତି କଲା । ଇଂଲଣ୍ଡ ଓ ଆମେରିକା ଯୁଦ୍ଧ ଆରମ୍ଭ ଅବସ୍ଥାରେ ପଡ଼ିଥିଲେ । ସଂଯୁକ୍ତ ରାଷ୍ଟ୍ର ସରକାର ଦାବୀ କଲା ଯେ, ଯୁଦ୍ଧକାଳ ଭିତରେ ସେହି ଯୁଦ୍ଧପୋତକୁ ଦକ୍ଷିଣାଞ୍ଚଳ ରାଷ୍ଟ୍ରଗୁଡ଼ିକୁ ଦେବା ଇଂଲଣ୍ଡର କିଛି ଦରକାର ନ ଥିଲା ଏବଂ ଏଥିରେ ଯାହା କ୍ଷତି ହୋଇଥିଲା, ତାର ପୂରଣ ଦାବୀ କଲା । ଏକ ପଞ୍ଚାୟତକୁ ଏହି ବ୍ୟାପାର ଦିଆଗଲା ଏବଂ ଶେଷରେ କ୍ଷତିପୂରଣ ସଂଯୁକ୍ତ ରାଷ୍ଟ୍ରକୁ ୩,୨୨୯,୧୬୬ ପାଉଣ୍ଡ ଇଂଲଣ୍ଡ ଦେବାକୁ ବାଧ୍ୟ ହେଲା ।

କେବଳ ସାମାନ୍ୟ ଯୁଦ୍ଧପୋତ ଦକ୍ଷିଣାଞ୍ଚଳକୁ ସାହାଯ୍ୟ କରିବା ଫଳରେ ଯେଉଁ ଗୁରୁତର କ୍ଷତିପୂରଣ ଦେବାକୁ ପଡ଼ିଥିଲା ତାହା ତୁଳନାରେ ରୁଷ ଗୃହଯୁଦ୍ଧବେଳେ ଇଂଲଣ୍ଡ ଯାହା କ୍ଷତି କରିଥିଲା ତାହା ଅତ୍ୟଧିକ । ବିଦେଶୀ ଶକ୍ତିମାନେ ରୁଷରେ ହସ୍ତକ୍ଷେପ କରି ଯୁଦ୍ଧ କଲାବେଳେ ୧,୩୫୦,୦୦୦ ଜୀବନ ନଷ୍ଟ ହୋଇଛି ବୋଲି ସୋଭିଏଟ ସରକାରୀ ଭାବରେ କୁହାହୋଇଥିଲା ।

ଏ ପର୍ଯ୍ୟନ୍ତ ରୁଷର ପୁରାତନ ଋଣ ସମସ୍ୟା ଆଂଶିକଭାବରେ ନିଷ୍ପତ୍ତି ହୋଇ ନାହିଁ, କିନ୍ତୁ ସମସ୍ତ ଅତିକ୍ରମ ହୋଇଯିବାରୁ ଏହାର ଗୁରୁତ୍ୱ କମିଯାଉଛି । ଏଥିଭିତରେ ଆମେ ଦେଖିଛେ ଯେଉଁ କ୍ରମରେ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ଇଟାଲୀ ପ୍ରଭୃତି ବଡ଼ ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ଦେଶମାନଙ୍କୁ ଏତେ ଆଘାତ ପହଞ୍ଚାଇଥିଲା ରୁଷ ବେଳକୁ ସେହିମାନେ ହିଁ ତାହା କଲେ । ଏ କଥା ସତ୍ୟ ଯେ ସେମାନେ ତାଙ୍କର ଋଣକୁ ଅସ୍ୱୀକାର କରି ନ ଥିଲେ

କମ୍ବା ପୁଞ୍ଜିବାଦୀ ବ୍ୟବସ୍ଥାର ଭିତ୍ତି ଦୋହଲଇ ଦେବାକୁ କହୁନଥିଲେ । ସେମାନେ କେବଳ ବାଙ୍କା ରଖିଲେ ଓ ଅସୁଲ ଦେଲେ ନାହିଁ ।

ଯେ କୌଣସି ମୂଲ୍ୟ ଦେଇ ଅନ୍ୟ ଜାତିମାନଙ୍କ ସହିତ ଶାନ୍ତିରେ ରହିବା ହେଲା ସୋଭିଏଟ ନୀତି, କାରଣ ସେମାନେ ଶକ୍ତି ଅର୍ଜନ କରିବାକୁ ଚାହୁଁଥିଲେ ଏବଂ ସାମ୍ୟବାଦ ଧାରାରେ ଏତେ ବଡ଼ ପ୍ରକାଣ୍ଡ ଦେଶକୁ ଗଠନ କରିବାର ମହାନ କର୍ତ୍ତବ୍ୟ ତାଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଅନ୍ୟ ଦେଶମାନଙ୍କ ନିକଟରେ କୌଣସି ସାମାଜିକ ବିପ୍ଳବ ହେବାର ସମ୍ଭାବନା ନ ଥିଲା ଏବଂ ତେଣୁ ସେହିକ୍ଷଣି ପାଇଁ "ପୃଥିବୀ ବିପ୍ଳବ" ଧାରଣା ମିଳେଇଗଲା । ପୂର୍ବୀୟ ରାଜ୍ୟମାନଙ୍କ ସହିତ ରୁଷ ବନ୍ଧୁତା ଓ ସହଯୋଗ ଭାବ ବୃଦ୍ଧି କଲା, ଯଦିଓ ସେଗୁଡ଼ିକ ପୁଞ୍ଜିବାଦୀ ବ୍ୟବସ୍ଥାନୁସାରେ ଶାସିତ ହେଉଥିଲେ । ରୁଷ, ତୁର୍କି, ପାରସ୍ୟ ଓ ଆଫଗାନସ୍ଥାନରେ ଯେଉଁସବୁ ସନ୍ଧି ହୋଇଥିଲା, ସେ ବିଷୟରେ ମୁଁ ତତେ ପୂର୍ବରୁ କହିଛି । ସେମାନଙ୍କ ଭିତରେ ଯୋଗସୂତ୍ର ଥିଲା—ପ୍ରଧାନ ସାମ୍ରାଜ୍ୟବାଦୀ ଦେଶମାନଙ୍କ ପ୍ରତି ଘୃଣା ଓ ସାଧାରଣ ଭୟ ।

୧୯୨୧ରେ ଲେନିନ ଯେଉଁ ନୂତନ ଅର୍ଥନୈତିକ ନୀତି ପ୍ରବର୍ତ୍ତନ କଲେ ତାର ଉଦ୍ଦେଶ୍ୟ ଥିଲା ମଧ୍ୟବିତ୍ତ କୃଷକ ସମ୍ପ୍ରଦାୟକୁ ସମାଜୀକରଣ ବାଟରେ ପ୍ରବର୍ତ୍ତାଇବା । ଧନୀ କୃଷକ ବା 'କୁଲକ'ମାନଙ୍କୁ ଉତ୍ସାହିତ କରାଗଲା ନାହିଁ । 'କୁଲକ୍' ଶବ୍ଦର ଅର୍ଥ ହେଉଛି ମୁଠା—ସେମାନେ ଶ୍ରେଷ୍ଠ ଆକାରରେ ପୁଞ୍ଜିବାଦୀ ଥିଲେ ଓ ସମାଜୀକରଣ ବାଟରେ ବାଧା ପହଞ୍ଚାଉଥିଲେ । ଗ୍ରାମ୍ୟ ଅଞ୍ଚଳ ବିଦ୍ୟୁତ୍ ଖଚିତ କରିବାର ଏକ ବିଶାଳ ଯୋଜନା ଲେନିନ୍ ଆରମ୍ଭ କଲେ ଏବଂ ପ୍ରକାଣ୍ଡ ବିଦ୍ୟୁତ କାରଖାନାମାନ ସ୍ଥାପିତ ହେଲା । କୃଷକମାନଙ୍କୁ ନାନା ପ୍ରକାରରେ ସାହାଯ୍ୟ କରିବା ଏବଂ ଦେଶକୁ ଶିଳ୍ପୋଦ୍ୟୋଗ ବାଟରେ ପ୍ରସ୍ତୁତ କରିବା ନିମନ୍ତେ ଏହା ହୋଇଥିଲା । ସର୍ବୋପରି କୃଷକଙ୍କ ଭିତରେ ଗୋଟାଏ ଶିଳ୍ପ ପ୍ରତି ଆଗ୍ରହ ମନୋଭାବ ଜାତ କରାଇବା ନିମନ୍ତେ ଏହା କରାଗଲା ଏବଂ ଏହିରୂପେ ସହରର ଶ୍ରମିକ ବା ସର୍ବହରାଙ୍କର ସେ ସମକକ୍ଷ ହୋଇପାରିବେ । କୃଷକମାନଙ୍କର ଗ୍ରାମସବୁ ବିଜୁଳିବତିରେ ଆଲୋକିତ ହୋଇଗଲା ଓ ବିଦ୍ୟୁତ ଶକ୍ତିଦ୍ୱାରା ସେମାନଙ୍କର ଚାଷକାମ ବର୍ଦ୍ଧିତ ହେଲା—ଏଥିରେ ସେମାନେ ପୁରୁଣା ପରମ୍ପରା ଓ କୁସଂସ୍କାର ଛାଡ଼ିଲେ ଏବଂ ନୂତନ ଧାରାରେ ଚିନ୍ତା କରିବାକୁ ଲାଗିଲେ । ସର୍ବଦା ସହର ଓ ଗ୍ରାମ, ସହରବାସୀ ଓ କୃଷକ ଭିତରେ ଝଗଡ଼ା ଲାଗି ଆସିଛି । ସହରର ଶ୍ରମିକ ମଫସଲରୁ ଶସ୍ତା ଖାଦ୍ୟ ଓ କଞ୍ଚାମାଲ ପାଇବାକୁ ଚାହେଁ ଏବଂ ସେ ଯେଉଁ କାରଖାନା ମାଲ ତିଆରି କରେ, ତାହାର ଦାମ୍ ବୃଦ୍ଧି ହେବାକୁ ଚାହେଁ, ଅନ୍ୟ ପକ୍ଷରେ କୃଷକ ଶସ୍ତା ଯନ୍ତ୍ରପାତି ଓ ଅନ୍ୟ କାରଖାନା ମାଲସବୁ ସହରରୁ ଚାହେଁ ଏବଂ ଯେଉଁ କଞ୍ଚାମାଲ ଓ ଖାଦ୍ୟ ଉତ୍ପନ୍ନ କରେ, ତାର ଉଚ୍ଚମୂଲ୍ୟ ଦାବୀ କରେ । ତିନିବର୍ଷ କାଳ "ସୈନିକ କମ୍ୟୁନିଜମ୍" ଫଳରେ ଏହି ଝଗଡ଼ା ରୁଷରେ ଗୁରୁତର ହୋଇ ଉଠିଥିଲା । ଅଧିକ ପରିମାଣରେ ଏହି ହେତୁ ଏବଂ କଠିନ ଅବସ୍ଥା କମ୍

କରିବା ନିମନ୍ତେ 'ନେପ୍' ପ୍ରଚଳନ କରାଗଲା ଏବଂ ବ୍ୟକ୍ତିଗତ ବେପାର କରିବା ନିମନ୍ତେ କୃଷକମାନଙ୍କୁ ସୁବିଧା ଦିଆଗଲା ।

ଲେନିନ୍ ତାଙ୍କ ବିଦ୍ୟୁତିକରଣ ଯୋଜନା ବିଷୟରେ ଏତେ ବ୍ୟଗ୍ର ଥିଲେ ଯେ ତାଙ୍କର ସିଦ୍ଧାନ୍ତ ଖୁବ ପ୍ରସିଦ୍ଧ ହୋଇପଡ଼ିଲା । ସେ କହୁଥିଲେ "ବିଦ୍ୟୁତ ଓ ସୋଭିଏଟ ମିଶି ସାମ୍ୟବାଦ ସଙ୍ଗେ ସମାନ ।" ଲେନିନଙ୍କ ମୃତ୍ୟୁ ପରେ ସୁଦ୍ଧା ଏହି ବିଦ୍ୟୁତିକରଣ କାର୍ଯ୍ୟ ପ୍ରଖର ଗତିରେ ଚାଲିଥିଲା । ହଳ ଓ ଅନ୍ୟ ଉଦ୍ଦେଶ୍ୟରେ ବହୁସଂଖ୍ୟକ ଟ୍ରାକ୍ଟର ବ୍ୟବହାର କରାଯାଇ ଚାଷପ୍ରଣାଳୀରେ ଉନ୍ନତ ଓ କୃଷକମାନଙ୍କୁ ପ୍ରଭାବିତ କରାଗଲା । ଆମେରିକାର ଫୋର୍ଡ କମ୍ପାନୀ ଏହାସବୁ ଯୋଗାଉଥିଲା । ରୁଷରେ ଏକ ପ୍ରକାଣ୍ଡ ମଟର କାରଖାନା ନିର୍ମାଣ ନିମନ୍ତେ ସୋଭିଏଟ ଫୋର୍ଡ ସହିତ ବଡ଼ ଚୁକ୍ତି କଲେ—ଏହି କାରଖାନାରେ ପ୍ରତି ବର୍ଷ ଅନ୍ତତଃ ୧୦୦,୦୦୦ ମଟର ତିଆରି ହୋଇପାରିବ । ଏହି କାରଖାନାଟି ଟ୍ରାକ୍ଟର ଲାଗି ମୁଖ୍ୟତଃ ହୋଇଥିଲା ।

ସୋଭିଏଟର ଆଉ ଏକ କାର୍ଯ୍ୟ ତେଲ ଓ ପେଟ୍ରୋଲ ଉତ୍ପାଦନ ଓ ବିଦେଶରେ ତାହା ବିକ୍ରି ଯୋଗୁଁ ବିଦେଶୀ ସ୍ୱାର୍ଥଗୁଡ଼ିକ ସହ ସଂଘର୍ଷ ଉପୁଜିଲା । କକେସସ୍‌ରେ ଆଜର ବୈଜାନ ଓ ଜର୍ଜିଆ ଏକ ସମୃଦ୍ଧଶାଳୀ ତେଲ-ଉତ୍ପାଦନକାରୀ ଅଞ୍ଚଳ । ସମ୍ଭବତଃ ପାରସ୍ୟ, ମସୁଲ ଓ ଇରାକ ବ୍ୟାପୀ ଯେଉଁ ବିସ୍ତୃତ ତେଲ ଅଞ୍ଚଳ ରହିଛି ଏହା ତାର ଅଂଶ ମାତ୍ର । କାସ୍ପିଆନ ସାଗରରେ ବାକୁ ଦକ୍ଷିଣ ରୁଷର ଏକ ପ୍ରଧାନ ତେଲ ସହର । ବଡ଼ ତେଲ କମ୍ପାନୀଙ୍କ ଅପେକ୍ଷା ଶସ୍ତାରେ ସୋଭିଏଟ ବିଦେଶରେ ତେଲ ଓ ପେଟ୍ରୋଲ ବିକ୍ରୀ ଆରମ୍ଭ କଲା । ଆମେରିକାର ଷ୍ଟାଣ୍ଡାର୍ଡ ତେଲ କମ୍ପାନୀ ଆଙ୍ଗ୍ଲୋ-ପର୍ସିଆନ, ରୟାଲ ଡଚସେଲକୋ ଓ ଅନ୍ୟ କମ୍ପାନୀ ପରି ଏହିସବୁ ତେଲ କମ୍ପାନୀ ଅତ୍ୟନ୍ତ ଶକ୍ତିଶାଳୀ ଏବଂ ପୃଥିବୀର ପେଟ୍ରୋଲ ବଜାର ପ୍ରାୟ ଏମାନଙ୍କ ହାତରେ । ସୋଭିଏଟର କମ୍ ଦରରେ ବିକ୍ରୀ ଫଳରେ ସେମାନଙ୍କର ବହୁ କ୍ଷତି ହେଲା ଓ ସେମାନେ କ୍ରୋଧାନ୍ୱିତ ହେଲେ । ସେମାନେ ସୋଭିଏଟ ତେଲ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ—ଏହାକୁ "ଚୋରା ତେଲ" ବୋଲି କହୁଥିଲେ—ଏପରି କହିବାର କାରଣ ହେଉଛି କକେସସରେ ଥିବା ତେଲ ଖଣିମାନ ପୂର୍ବତନ ପୁଞ୍ଜିବାଦୀ ମାଲିକମାନଙ୍କଠାରୁ ସୋଭିଏଟ ବାଜ୍ୟାପ୍ତ କରି ନେଇଥିଲା । ଯାହା ହେଉ କିଛିଦିନ ପରେ ସେମାନେ ଏହି "ଚୋରା ତେଲ" ସହିତ ଗୋଟାଏ ପ୍ରକାର ସର୍ତ୍ତ ବାନ୍ଧିଲେ ।

ମୁଁ ଏହି ଓ ଅନ୍ୟ ଚିଠିମାନଙ୍କରେ ବରାବର ସୋଭିଏଟକୁ "ସୋଭିଏଟସ" ବୋଲି ଉଲ୍ଲେଖ କରିଛି । ବେଳେ ବେଳେ ଏଠି ସେଠି 'ରୁଷିଆ' ବୋଲି କହିଛି । ଅନେକ ଅଧିକେ ହାଲୁକା ଭାବରେ ମୁଁ ଏସବୁ ବ୍ୟବହାର କରିଛି– ଏହାର ଅର୍ଥ ଏବଂ ଏହି ଜିନିଷ କଣ ମୁଁ ଏବେ ତୋତେ କହିବି । ଅବଶ୍ୟ ତୁ ଜାଣୁ ଯେ ବୋଲସେଭିକ ବିପ୍ଳବ ପରେ

୧୯୧୭ ନଭେମ୍ବର ମାସରେ ପେଟ୍ରୋଗ୍ରାଡ଼ରେ ସୋଭିଏଟ ପ୍ରଜାତନ୍ତ୍ର ଘୋଷିତ ହୋଇଥିଲା । ଜାର ସାମ୍ରାଜ୍ୟ ଏକ ମିଳିତ ଜାତୀୟ ରାଷ୍ଟ୍ର ନ ଥିଲା । ଇଉରୋପ ଓ ଏସିଆର ବହୁସଂଖ୍ୟକ ପରାଧୀନ ଜାତି ଉପରେ ଖାସ ରୁଷ ପ୍ରାଧାନ୍ୟ କରୁଥିଲା । ଏପରି ପ୍ରାୟ ୨୦୦ ଜାତି ରହିଛି ଏବଂ ସେଥିରେ ଭୀଷଣ ପାର୍ଥକ୍ୟ ରହିଛି । ଜାର ଅମଳରେ ସେମାନେ ପରାଧୀନ ଲୋକ ରୂପେ ବ୍ୟବହାର ପାଉଥିଲେ ଏବଂ ଅନେକ ଅଧିକେ ତାଙ୍କ ଭାଷା ଓ ସଂସ୍କୃତି ଦମନ କରାଯାଉଥିଲା । ମଧ୍ୟଏସିଆର ଅନୁନ୍ନତ ଲୋକଙ୍କ ଉନ୍ନତି ପାଇଁ ବ୍ୟାବହାରିକ ଭାବରେ କିଛି କରାଯାଇ ନ ଥିଲା । ଇହୁଦୀମାନଙ୍କର ନିଜର ବୋଲି କୌଣସି ବିଶେଷ ଅଞ୍ଚଳ ନ ଥିଲେ ସୁଦ୍ଧା ଅଳ୍ପସଂଖ୍ୟକ ସମ୍ପ୍ରଦାୟଙ୍କ ଭିତରେ ସେମାନେ ଖୁବ୍ ଖରାପ ଭାବରେ ବ୍ୟବହାର ପାଉଥିଲେ ଏବଂ ଇହୁଦୀ 'ପ୍ରୋଗ୍ରାମ' ବା ହତ୍ୟା ବଡ଼ ଜଘନ୍ୟ ଥିଲା । ଏହି କାରଣରୁ ଦଳିତ ଜାତିଙ୍କ ଭିତରୁ ଅନେକ ଲୋକ ରୁଷ ବିପ୍ଳବ ଆନ୍ଦୋଳନରେ ଯୋଗ ଦେଲେ—ଅବଶ୍ୟ ଏକ ଜାତୀୟ ବିପ୍ଳବରେ ହିଁ ତାଙ୍କର ଆଗ୍ରହ ଥିଲା—ସାମାଜିକ ବିପ୍ଳବ ନୁହେଁ । ୧୯୧୭ ଫେବୃୟାରୀ ବିପ୍ଳବ ପରେ ଅସ୍ଥାୟୀ ସରକାର ଏହିସବୁ ଜାତିମାନଙ୍କୁ ଅନେକ ପ୍ରତିଶ୍ରୁତି ଦେଲା, କିନ୍ତୁ କାର୍ଯ୍ୟରେ କିଛି କଲା ନାହିଁ । ଅନ୍ୟ ପକ୍ଷରେ ବିପ୍ଳବର ବହୁପୂର୍ବରୁ ବଲସେଭିକ ପାର୍ଟି ଆରମ୍ଭରୁ ଲେନିନ ପ୍ରତ୍ୟେକ ଜାତିକୁ ପୂର୍ଣ୍ଣ ଆତ୍ମନିୟନ୍ତ୍ରଣ ଅଧିକାର ଏପରି କି ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେବା ଓ ସ୍ୱାଧୀନତା ଦେବା ନିମନ୍ତେ ଦାବୀ କରି ଆସୁଥିଲେ । ପୁରୁଣା ବଲସେଭିକ କାର୍ଯ୍ୟକ୍ରମର ଏହା ଏକ ଅଙ୍ଗ ଥିଲା । ବିପ୍ଳବର ଠିକ୍ ପରେ ବଲସେଭିକ୍‌ମାନେ ଦେଶର ସରକାର ହେବା ପରେ ଏହି ଆତ୍ମନିୟନ୍ତ୍ରଣ ନୀତିରେ ନିଜର ବିଶ୍ୱାସ ପୁନର୍ବାର ସ୍ଥାପନ କଲେ ।

ଗୃହଯୁଦ୍ଧ ଭିତରେ ଜାର ସାମ୍ରାଜ୍ୟ ଚୂର୍ଣ୍ଣ ହୋଇଗଲା ଏବଂ କେତେକ କ୍ଷଣ ପର୍ଯ୍ୟନ୍ତ ସୋଭିଏଟ ପ୍ରଜାତନ୍ତ୍ର ଅଧୀନରେ ଲେନିନଗ୍ରାଡ଼ ଓ ମସ୍କୋ ଚତୁର୍ଦ୍ଦିଗସ୍ଥ ଅଳ୍ପ ଅଞ୍ଚଳ ରହିଲା । ପାଶ୍ଚାତ୍ୟ ଶକ୍ତିମାନଙ୍କର ଉତ୍ସାହ ପାଇ ବଲଟିକ ସାଗର ସଂଲଗ୍ନ କେତେକ ଜାତି ଫିନଲଣ୍ଡ, ଇସ୍ତୋନିଆ, ଲଟେଭିଆ ଓ ଲିଥୁଏନିଆ ସ୍ୱାଧୀନ ରାଷ୍ଟ୍ର ହୋଇଗଲା । ପୋଲଣ୍ଡ ବି ସେହିପରି ହେଲା । ଗୃହଯୁଦ୍ଧରେ ରୁଷ ସୋଭିଏଟ ଜୟଲାଭ କରିବାରୁ ଏବଂ ବିଦେଶୀ ସେନା ଉଠିଆସିବାରୁ ସାଇବେରିଆ ଓ ମଧ୍ୟଏସିଆରେ ସ୍ୱତନ୍ତ୍ର ଓ ସ୍ୱାଧୀନ ସରକାର ସବୁ ଗଢ଼ି ଉଠିଲା । ଏହି ସରକାରଗୁଡ଼ିକର ଏକା ଲକ୍ଷ୍ୟ ଥିବାରୁ ପରସ୍ପର ସହିତ ସଂଯୁକ୍ତ ହେବା ସ୍ୱାଭାବିକ । ୧୯୨୩ରେ ସୋଭିଏଟ ଇଉନିୟନ ଗଢ଼ିବା ନିମନ୍ତେ ସେଗୁଡ଼ିକ ଏକତ୍ର ମିଳିତ ହେଲେ ଅର୍ଥାତ୍ ଏହାର ପୂରା ସରକାରୀ ଉପାଧି ହେଲା ୟୁନିୟନ ଅଫ୍ ସୋସଲିଷ୍ଟ ସୋଭିଏଟ ରିପବ୍ଲିକସ । ଏହା ଇଉ. ଏସ୍. ଏସ୍. ଆର. ଭାବରେ ପରିଚିତ ।

୧୯୨୩ ଠାରୁ ଇଉନିୟନ ପ୍ରଜାତନ୍ତ୍ରଗୁଡ଼ିକରେ କିଛି ପରିବର୍ତ୍ତନ ହୋଇଛି—

ଗୋଟିଏ ଦୁଇଟି ପ୍ରଜାତନ୍ତ୍ରକୁ କେତେ ଭାଗରେ ବିଭକ୍ତ କରାଯାଇଛି । ବର୍ତ୍ତମାନ ସାତଟି ଉଜବେକିସ୍ତାନ ପ୍ରଜାତନ୍ତ୍ର ରହିଛି:—

(୧) ରୁଷିୟାନ ସୋସଲିଷ୍ଟ ଫେଡେରେଟିଭ ସୋଭିଏଟ ପ୍ରଜାତନ୍ତ୍ର ଆର. ଏସ୍. ଏଫ୍. ଏସ୍. ଆର. ।

(୨) ହ୍ୱାଇଟ ରୁଷିଆ ଏସ୍. ଏସ୍. ଆର. ।

(୩) ୟୁକ୍ରେନସ୍ଥାନ୍ ଏସ୍. ଏସ୍. ଆର. ।

(୪) ଟ୍ରାନ୍ସ-କକେସିଅନ ସୋସଲିଷ୍ଟ ଫେଡେରେଭିଟି ଏସ୍. ଆର. ।

(୫) ଟର୍କମେନସ୍ଥାନ ବା ଟର୍କମାନ୍ ଏସ୍. ଏସ୍. ଆର. ।

(୬) ଉଜବେକ୍ ଏସ୍. ଏସ୍. ଆର. ।

(୭) ଟାଡ଼ଜକିସ୍ଥାନ ବା ଟାଡ଼ଜକ୍ ଏସ୍. ଏସ୍. ଆର. ।

ମଙ୍ଗୋଲିଆ ମଧ୍ୟ ଏକପ୍ରକାର ସୋଭିଏଟ ଇଉନିୟନ ସହିତ ମିଳିତ ହୋଇଛି ।

ଏହି ରୂପେ ସୋଭିଏଟ୍ ଇଉନିୟନ କେତେକ ପ୍ରଜାତନ୍ତ୍ର ରାଷ୍ଟ୍ରସଂଘ । ଏହି ରାଷ୍ଟ୍ରସଂଘର ପ୍ରଜାତନ୍ତ୍ର ଭିତରୁ ମଧ୍ୟ କେତେକ ଆଉ କିଛି ରାଷ୍ଟ୍ର ନେଇ ଗଠିତ । ଏହିରୂପେ ରୁସିଅନ୍ ଏସ୍. ଏଫ୍. ଏସ୍. ଆର୍. ବାରଟି ସ୍ୱତନ୍ତ୍ର ପ୍ରଜାତନ୍ତ୍ରର ସମଷ୍ଟି ଏବଂ ଟ୍ରାନ୍ସ କକେସିଆନ ଏଫ୍. ଏସ୍. ଏସ୍. ଆର୍. ରେ ଆଜର ବୈଜାନ୍ ଏସ୍. ଏସ୍. ଆର. ଜର୍ଜିଆ ଏସ୍. ଏସ୍. ଆର. ଓ ଆର୍ମେନିଆ ଏସ୍. ଏସ୍. ଆର. ଏହିପରି ତିନୋଟି ପ୍ରଜାତନ୍ତ୍ରର ସମଷ୍ଟି । ଏହିସବୁ ପରସ୍ପର ସହିତ ସମ୍ପୃକ୍ତ ଓ ପରସ୍ପର ଉପରେ ନିର୍ଭର କରୁଥିବା ଅସଂଖ୍ୟ ପ୍ରଜାତନ୍ତ୍ର ବ୍ୟତୀତ ପ୍ରଜାତନ୍ତ୍ରଗୁଡ଼ିକରେ ଅନେକ "ଜାତୀୟ" ଓ "ସ୍ୱାୟତ୍ତଶାସିତ" ଅଞ୍ଚଳ ରହିଛି । ପ୍ରତ୍ୟେକ ସ୍ଥାନରେ ଏତେଗୁଡ଼ିଏ "ସ୍ୱାୟତ୍ତ ଶାସନ" ପ୍ରବର୍ତ୍ତନ କରିବାର ଉଦ୍ଦେଶ୍ୟ ହେଉଛି ପ୍ରତ୍ୟେକ ଜାତିର ସଂସ୍କୃତି ଓ ଭାଷାକୁ ଯଥାସମ୍ଭବ ଉତ୍ସାହିତ କରିବା ଏବଂ ଯଥାସମ୍ଭବ ସ୍ୱାଧୀନ କରିବା । ଯେତେଦୂର ସମ୍ଭବ ହୋଇ ପାରେ ଏକ ଜାତି ସମଷ୍ଟି ଉପରେ ଅନ୍ୟ ଏକ ଜାତିର ପ୍ରାଧାନ୍ୟ ନ କରିଦେବା ନିମନ୍ତେ ଉଦ୍ୟମ କରାଯାଇଛି । ସୋଭିଏଟମାନଙ୍କର ସଂଖ୍ୟାନ୍ୟୁନ ସମସ୍ୟା ସମାଧାନରେ ଆମର ଆଗ୍ରହ ରହିଛି, କାରଣ ଆମକୁ ବି ସେହିପରି ଏକ କଷ୍ଟକର ସଂଖ୍ୟାନ୍ୟୁନ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଛି । ଆମ ଅପେକ୍ଷା ସୋଭିଏଟର ଅସୁବିଧା ବହୁ ଅଧିକ ପରି ମନେହୁଏ, କାରଣ ସେମାନଙ୍କୁ ୧୮୨ଟି ବିଭିନ୍ନ ଜାତି ସମସ୍ୟା ଦେଖିବାକୁ ପଡ଼ିଥିଲା । ସେମାନେ ଏହି ସମସ୍ୟାର ଯାହା ସମାଧାନ କରିଛନ୍ତି; ତାହା ଖୁବ୍ ସଫଳ ହୋଇଛି । ସେମାନେ ଚରମ ସୀମାକୁ ଯାଇ ପ୍ରତ୍ୟେକ ଅଲଗା ଜାତିକୁ ସ୍ୱୀକାର କଲେ ଓ ନିଜ ଭାଷାରେ ତାହାର କାର୍ଯ୍ୟ ଓ ଶିକ୍ଷା ଚଳାଇବା ନିମନ୍ତେ ଉତ୍ସାହିତ କଲେ । କେବଳ ବିଭିନ୍ନ ସଂଖ୍ୟାନ୍ୟୁନ ସମ୍ପ୍ରଦାୟର ପୃଥକ ହେବାର

ପ୍ରବୃତ୍ତିକୁ ସନ୍ତୁଷ୍ଟ କରିବା ନିମନ୍ତେ ଏହା କରାଯାଇ ନଥିଲା, ମାତ୍ର ଏହା ଅନୁଭବ କରାଗଲା ଯେ ଦେଶୀୟ ଭାଷା ବ୍ୟବହାର କଲେ ଯାଇ ଜନତା ଭିତରେ ସଂସ୍କୃତିଗତ ପ୍ରଗତି ପ୍ରବେଶ କରିପାରିବ । ଏପର୍ଯ୍ୟନ୍ତ ଯାହା ଫଳଲାଭ ହୋଇଛି ତାହା ଅଲୌକିକ ।

ଇଉନିୟନରେ ଏପରି ସମଭାବ ରକ୍ଷା ନ କରିବା ପ୍ରବୃତ୍ତି ସତ୍ତ୍ୱେ, ବିଭିନ୍ନ ଅଂଶ ପରସ୍ପରର ନିକଟବର୍ତ୍ତୀ ହୋଇଛନ୍ତି । ଜାରର କେନ୍ଦ୍ର ସରକାର ଅଧୀନରେ କେବେ ଏପରି ହୋଇ ନ ଥିଲା । ଏହାର କାରଣ ହେଉଛି ସେମାନଙ୍କର ଏକ ଆଦର୍ଶ ଓ ଏକ ସାଧାରଣ ଉଦ୍ୟମରେ ସେମାନେ ଏକତ୍ର କାର୍ଯ୍ୟ କରୁଛନ୍ତି । ନୀତି ହିସାବରେ ଇଉନିୟନରେ ଥିବା ପ୍ରତ୍ୟେକ ପ୍ରଜାତନ୍ତ୍ର ଯେତେବେଳେ ଇଚ୍ଛା କରିବ ସେଥିରୁ ଅଲଗା ହୋଇଯିବାର ଅଧିକାର ତାର ରହିଛି, କିନ୍ତୁ ସେପରି କରିବା ଖୁବ୍ କମ୍ ସୁଯୋଗ ଥାଏ । କାରଣ ପୁଞ୍ଜିବାଦୀ ଜଗତର ବିରୋଧ ସମକ୍ଷରେ ସୋସଲିଷ୍ଟ ପ୍ରଜାତନ୍ତ୍ରଗୁଡ଼ିକର ରାଷ୍ଟ୍ରସଂଘ ଥିବାରୁ ଖୁବ୍ ସୁବିଧା ହୁଏ ।

ଇଉନିୟନ ଭିତରେ ଅବଶ୍ୟ ଶ୍ରେଷ୍ଠ ହେଉଛି ରସିଆନ—ଆର୍. ଏସ୍. ଏଫ୍. ଏସ୍. ଆର୍. । ଏହା ଲେନିନଗ୍ରାଡଠାରୁ ସାଇବେରିଆ ଅତିକ୍ରମ କରି ବିସ୍ତୃତ ହୋଇଛି । ରସିଆ ଏସ୍. ଏସ୍. ଆର୍. ପୋଲାଣ୍ଡକୁ ଲାଗିଛି, କୃଷ୍ଣସାଗର ଉପକୂଳରେ ଦକ୍ଷିଣରେ ୟୁକ୍ରେନ ଅବସ୍ଥିତ; ଏହା ରୁଷର ଅନ୍ନଭଣ୍ଡାର । ଟ୍ରାନ୍ସ କକେସିଆ, କାସ୍ପିଆନ ସାଗର ଓ କୃଷ୍ଣସାଗର ମଧ୍ୟବର୍ତ୍ତୀ କକେସସ୍ ପର୍ବତ ଅତିକ୍ରମ କରି ବିସ୍ତୃତ—ଏହାର ନାମରୁ ଜଣାପଡ଼େ । ଆର୍ମେନିଆ ଟ୍ରାନ୍ସ କକେସିଆନ ପ୍ରଜାତନ୍ତ୍ର ଅନ୍ତର୍ଗତ । ଏହିଠାରେ ଏପର୍ଯ୍ୟନ୍ତ ତୁର୍କ ଓ ଆର୍ମେନିଆନଙ୍କ ମଧ୍ୟରେ ଭୀଷଣ ହତ୍ୟାକାଣ୍ଡର କ୍ଷେତ୍ର ହୋଇଥିଲା । ଏକ ସୋଭିଏଟ ପ୍ରଜାତନ୍ତ୍ରରୂପେ ଏହା ଶାନ୍ତିପୂର୍ଣ୍ଣ ସଂଗଠନ କରିବାରେ ଲାଗିପଡ଼ିଲା । କାସ୍ପିଆନ ସାଗରର ଅପର ପାର୍ଶ୍ୱରେ ତିନୋଟି ମଧ୍ୟଏସିଆ ପ୍ରଜାତନ୍ତ୍ର ରହିଛି—ଏହା ହେଉଛି ତୁର୍କମେନିସ୍ଥାନ, ଉଜବେକିସ୍ଥାନ ଓ ଟାଡ଼ଜିକିସ୍ଥାନ । ଉଜବେକିସ୍ଥାନର ପ୍ରସିଦ୍ଧ ସହର ବୋଖାରା ଓ ସମରକନ୍ଦ ଅବସ୍ଥିତ । ଟାଡ଼ଜିକିସ୍ଥାନ ଆଫଗାନିସ୍ଥାନର ଠିକ ଉତ୍ତରରେ ଅବସ୍ଥିତ ଏବଂ ଭାରତର ନିକଟବର୍ତ୍ତୀ ସୋଭିଏଟ ସୀମାନ୍ତ ।

ଆମର ମଧ୍ୟଏସିଆ ସହ ବହୁଯୁଗ ଧରି ସମ୍ପର୍କ ହେତୁ ଏହି ମଧ୍ୟଏସିଆ ପ୍ରଜାତନ୍ତ୍ରଗୁଡ଼ିକ ପ୍ରତି ଆମର ବିଶେଷ ଆଗ୍ରହ ରହିଛି । ଗତ କେତେ ବର୍ଷ ଭିତରେ ସେଗୁଡ଼ିକ ଯେପରି ଅଲୌକିକ ପ୍ରଗତି କରିଛନ୍ତି ସେଥିଲାଗି ଏଗୁଡ଼ିକ ଅଧିକ ମନୋମୁଗ୍ଧକର । ଜାରଙ୍କ ଅଧୀନରେ ସେଗୁଡ଼ିକ ଅତ୍ୟନ୍ତ ଅନୁନ୍ନତ ଓ କୁସଂସ୍କାରପୂର୍ଣ୍ଣ ରାଜ୍ୟ ଥିଲା—ପ୍ରାୟ ଆଦୌ ଶିକ୍ଷା ନ ଥିଲା ଏବଂ ସ୍ତ୍ରୀଲୋକଙ୍କ ଭିତରୁ ଅଧିକାଂଶ ପର୍ଦ୍ଦା ଅନ୍ତରାଳରେ ରହୁଥିଲେ । ଆଜି ସେଗୁଡ଼ିକ ଅନେକ ଢଙ୍ଗରେ ଭାରତଠାରୁ ଆଗୁଆ ହୋଇ ଗଲେଣି ।

## ୪୮୦ : ପ୍ୟାଟିଲେଟ୍‌କା, ବା ରୁଷର ପଞ୍ଚବାର୍ଷିକ ଯୋଜନା

ଜୁଲାଇ ୯, ୧୯୩୩

ଲେନିନ୍ ବଞ୍ଚିଥିବା ପର୍ଯ୍ୟନ୍ତ ସୋଭିଏଟ ରୁଷର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ । ତାଙ୍କର ଶେଷ ସିଦ୍ଧାନ୍ତକୁ ସମସ୍ତେ ମାନୁଥିଲେ; ବିବାଦ ହେଲେ ତାଙ୍କ କଥାହିଁ ଆଇନ ରୂପେ କାର୍ଯ୍ୟ କରୁଥିଲା ଏବଂ କମ୍ୟୁନିଷ୍ଟ ପାର୍ଟି ଭିତରେ ବିବାଦ କରୁଥିବା ଦଳମାନଙ୍କୁ ସେ ଏକାଠି କରୁଥିଲେ । ଅନିବାର୍ଯ୍ୟ ରୂପେ ତାଙ୍କ ମୃତ୍ୟୁ ପରେ ଗୋଳମାଳ ଆସି ପହଞ୍ଚିଲା । ସେତେବେଳେ ପ୍ରତିଦ୍ୱନ୍ଦ୍ୱୀ ଦଳ ଓ ପ୍ରତିଦ୍ୱନ୍ଦ୍ୱୀ ଶକ୍ତିସବୁ ପ୍ରଭୁତ୍ୱ ପାଇଁ ଲଢ଼ାଇ କଲେ । ବାହାର ଦୁନିଆ ଆଗରେ ଏବଂ କେତେକ ପରିମାଣରେ ରୁଷରେ ମଧ୍ୟ ଲେନିନଙ୍କ ପରେ ବଲସେଭିକଙ୍କ ଭିତରେ ଟ୍ରଟସ୍କିହିଁ ପ୍ରଧାନ ବ୍ୟକ୍ତି ଥିଲେ । ଅକ୍‌ଟୋବର ବିପ୍ଳବରେ ଟ୍ରଟସ୍କି ହିଁ ମୁଖ୍ୟ ଭାଗ ନେଇଥିଲେ ଏବଂ ଅଦ୍ଭୁତ ଅସୁବିଧାର ସମ୍ମୁଖୀନ ହୋଇ ସେ ଲାଲଫୌଜ ସୃଷ୍ଟି କରିଥିଲେ—ଏହା ଗୃହଯୁଦ୍ଧରେ ଏବଂ ବିଦେଶୀ ହସ୍ତକ୍ଷେପ ସତ୍ତ୍ୱେ ଜୟଲାଭ କରିଥିଲା । ତଥାପି ବଲସେଭିକ ଦଳରେ ଟ୍ରଟସ୍କି ନୂଆ ପ୍ରବେଶ କରିଥିଲେ ଏବଂ ଲେନିନ୍‌ଙ୍କ ବ୍ୟତୀତ ଅନ୍ୟ ପୁରୁଣା ବଲସେଭିକମାନେ ତାଙ୍କୁ ଭଲ ପାଉ ନ ଥିଲେ କିମ୍ବା ଖୁବ୍ ବିଶ୍ୱାସ କରୁ ନ ଥିଲେ । ଏହି ପୁରୁଣା ବଲସେଭିକଙ୍କ ଭିତରୁ ଷ୍ଟାଲିନ୍ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ଥିଲେ ଏବଂ ସେହିରୂପେ ରୁଷର ପ୍ରଧାନ ଓ ଅତ୍ୟନ୍ତ ପ୍ରଭାବଶାଳୀ ଅନୁଷ୍ଠାନ ପରିଚାଳନା କରୁଥିଲେ । ଟ୍ରଟସ୍କି ଓ ଷ୍ଟାଲିନଙ୍କ ଭିତରେ ଭଲ ପଡ଼ୁ ନ ଥିଲା । ସେମାନେ ପରସ୍ପରକୁ ଘୃଣା କରୁଥିଲେ ଏବଂ ସେମାନେ ବି ସମ୍ପୂର୍ଣ୍ଣରୂପେ ପରସ୍ପରଠାରୁ ଭିନ୍ନ ଧରଣର ଥିଲେ । ଟ୍ରଟସ୍କି ଏକ ବିଚକ୍ଷଣ ଲେଖକ ଓ ବକ୍ତା ଥିଲେ, ଏବଂ ଜଣେ ପ୍ରଧାନ ସଙ୍ଗଠକ ଓ କାର୍ଯ୍ୟଦକ୍ଷ ଲୋକ ବୋଲି ନିଜକୁ ପ୍ରମାଣିତ କରି ଦେଇଥିଲେ । ତାଙ୍କର ତୀକ୍ଷ୍ଣ ଓ ଉଜ୍ଜ୍ୱଳ ଧୀଶକ୍ତି ଥିଲା; ବିପ୍ଳବର ତଥ୍ୟ ବାହାର କରୁଥିଲେ ଏବଂ ତାଙ୍କର ବିରୋଧୀମାନଙ୍କୁ ମାଡ଼ ଦେଲାବେଳେ ଏପରି ଶବ୍ଦ ପ୍ରୟୋଗ କରୁଥିଲେ ଯାହା ବିଛୁକ ଓ କଙ୍କଡ଼ାବିଛା ମାରିଲାପରି କାମୁଡ଼ି ପକାଉଥିଲା । ତାଙ୍କ ପାଖରେ ଷ୍ଟାଲିନ ଜଣେ ସାମାନ୍ୟ ଲୋକ, ନୀରବ, ବିଶେଷ ଚିତ୍ତାକର୍ଷକ ନୁହନ୍ତି ଏବଂ ବିଚକ୍ଷଣ ତ ନୁହନ୍ତି । ତଥାପି ସେ ମଧ୍ୟ ଜଣେ ମହାନ ସଙ୍ଗଠକ, ଶ୍ରେଷ୍ଠ ଓ ନିର୍ଭୀକ ଯୋଦ୍ଧା ଏବଂ ଦୃଢ଼ ଇଚ୍ଛାଶକ୍ତି ବିଶିଷ୍ଟ ଲୋକ ଥିଲେ । ବାସ୍ତବିକ ସେ "ଇସ୍ପାତ ଲୋକ" ବୋଲି ଜଣା ଥିଲେ । ଟ୍ରଟସ୍କିଙ୍କ ଗୁଣରେ ଲୋକେ ମୁଗ୍ଧ ହେଉଥିଲେ, ଷ୍ଟାଲିନ ଲୋକଙ୍କ ବିଶ୍ୱାସ ଅର୍ଜନ କରିଥିଲେ । ସେ ଜନତା ଭିତରର ଲୋକ—ଜର୍ଜିଆନ କୃଷକ ପରିବାରରେ ତାଙ୍କର ଜନ୍ମ । ଏହି ଦୁଇଟି ବିରାଟ ବ୍ୟକ୍ତିତ୍ୱ ପାଇଁ କମ୍ୟୁନିଷ୍ଟ ପାର୍ଟିରେ ସ୍ଥାନ ନ ଥିଲା ।

ଷ୍ଟାଲିନ ଓ ଟ୍ରଟସ୍କିଙ୍କ ଭିତରେ କେବଳ ବ୍ୟକ୍ତିଗତ ବିବାଦ ନ ଥିଲା, କିନ୍ତୁ ଏହା ପ୍ରକୃତରେ ସେଥିରୁ କିଛି ଅଧିକ ଥିଲା । ସେମାନଙ୍କ ଭିତରୁ ପ୍ରତ୍ୟେକେ ବିପ୍ଳବକୁ ଅଗ୍ରସର କରିବା ନିମନ୍ତେ ପୃଥକ ନୀତି, ପୃଥକ ପନ୍ଥା ବିଧାନ କରୁଥିଲେ । ବିପ୍ଳବର ଅନେକବର୍ଷ ପୂର୍ବରୁ ଟ୍ରଟସ୍କି "ସ୍ଥାୟୀ ବିପ୍ଳବ" ତଥ୍ୟ ବାହାର କରିଥିଲେ । ତାଙ୍କ ମତ ଅନୁସାରେ ଯେତେ ସୁବିଧାଜନକ ପରିସ୍ଥିତିରେ ଥିଲେ ସୁଦ୍ଧା କୌଣସି ଗୋଟିଏ ଦେଶପକ୍ଷରେ ପୂର୍ଣ୍ଣ ସାମ୍ୟବାଦ ପ୍ରତିଷ୍ଠା କରିବା ସମ୍ଭବ ନୁହେଁ । ଏକ ପୃଥିବୀ ବିପ୍ଳବ ପରେହିଁ ପ୍ରକୃତ ସାମ୍ୟବାଦ ଆସିବ—ସେତେବେଳେ କୃଷକମାନଙ୍କୁ ପୂରା ସାମ୍ୟବାଦୀ କରିହେବ । ପୁଞ୍ଜିବାଦ ପରେ ଆର୍ଥିକ ପ୍ରଗତିରେ ପରବର୍ତ୍ତୀ ଉଚ୍ଚତର ଅବସ୍ଥା ହେଉଛି ସୋସାଲିଜିମ୍ ବା ସାମ୍ୟବାଦ । ପୁଞ୍ଜିବାଦ ଅନ୍ତର୍ଜାତୀୟ ହେବା ପରେ ଭାଙ୍ଗିପଡ଼ିଲା; ଆଜି ଦୁନିଆଁରେ ଅଧିକ ଅଂଶରେ ଏହା ଘଟିବାର ଆମେ ଦେଖିଲେ । କେବଳ ସାମ୍ୟବାଦହିଁ ଏହି ଆନ୍ତର୍ଜାତିକ ଗଠନର ସଦୁପଯୋଗ କରିପାରେ; ତେଣୁ ସାମ୍ୟବାଦ ଅନିବାର୍ଯ୍ୟ । ଏହା ହେଉଛି ମାର୍କସୀୟ ତଥ୍ୟ । କିନ୍ତୁ ଯଦି କୌଣସି ଏକ ଦେଶରେ ସାମ୍ୟବାଦ କାର୍ଯ୍ୟକାରୀ କରିବା ନିମନ୍ତେ ଉଦ୍ୟମ ହୁଏ—ଅର୍ଥାତ ଅନ୍ତର୍ଜାତୀୟ ଭାବରେ ନ କରି ଜାତୀୟଭାବରେ କରାଯାଏ—ତେବେ ଏହାର ଅର୍ଥ ଏକ ନିମ୍ନ ଆର୍ଥିକ ଅବସ୍ଥାକୁ ଫେରିଯିବା । ସାମ୍ୟବାଦୀ ପ୍ରଗତି ସମେତ ସକଳ ପ୍ରଗତିର ଆବଶ୍ୟକୀୟ ଭିତ୍ତି ହେଉଛି ଅନ୍ତର୍ଜାତୀୟତା ଏବଂ ଏଥିରୁ ପଛକୁ ଯିବା ସମ୍ଭବ ବା ବାଞ୍ଛନୀୟ ନୁହେଁ । ଟ୍ରଟସ୍କିଙ୍କ ମତ ଅନୁସାରେ ତେଣୁ ଗୋଟିଏ ଦେଶରେ ସ୍ୱତନ୍ତ୍ରଭାବରେ ଅର୍ଥନୈତିକ ଦୃଷ୍ଟିରୁ ମଧ୍ୟ ସାମ୍ୟବାଦ ପ୍ରତିଷ୍ଠା କରିବା ସମ୍ଭବ ନୁହେଁ; ଏପରି କି ସୋଭିଏଟ ଇଉନିୟନ ବିଶାଳ ହେଲେ ସୁଦ୍ଧା ସେଠି ବି ନୁହେଁ । ଅନେକ ଜିନିଷ ସକାଶେ ସୋଭିଏଟରୁ ପାଶ୍ଚାତ୍ୟ ଇଉରୋପର ଶିଳ୍ପୋନ୍ନତ ଦେଶମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ଏହା ଠିକ୍ ସହର ଓ ଗ୍ରାମ ବା ଗ୍ରାମ୍ୟ ଅଞ୍ଚଳ ସମ୍ବନ୍ଧ ସହଯୋଗ ତୁଲ୍ୟ, ଶିଳ୍ପୋନ୍ନତ ପଶ୍ଚିମ ଇଉରୋପ ହେଲା ସହର, ଏବଂ ରୁଷ ହେଲା ଅଧିକଭାବରେ ଗ୍ରାମ୍ୟ । ଟ୍ରଟସ୍କିଙ୍କ ମତରେ ରାଜନୈତିକ ଦୃଷ୍ଟିରେ ମଧ୍ୟ ଏକ ପୁଞ୍ଜିବାଦୀ ପାରିପାର୍ଶ୍ୱିକ ଅବସ୍ଥା ଭିତରେ ସ୍ୱତନ୍ତ୍ର ସାମ୍ୟବାଦୀ ରାଜ୍ୟ ଦୀର୍ଘକାଳ ବଞ୍ଚିପାରିବ ନାହିଁ । ଏହି ଦୁଇଟିଯାକର ପରସ୍ପର ସହିତ ସମ୍ପୂର୍ଣ୍ଣ ଅସାମଞ୍ଜସ୍ୟ ରହିଛି । ଏହା କିପରି ସତ୍ୟ ଆମେ ଦେଖିଛେ । ହୁଏତ ପୁଞ୍ଜିବାଦୀ ଦେଶସବୁ ସାମ୍ୟବାଦୀ ରାଜ୍ୟକୁ ଦମନ କରିବେ ନଚେତ ପୁଞ୍ଜିବାଦୀ ରାଜ୍ୟମାନଙ୍କରେ ସାମାଜିକ ବିପ୍ଳବମାନ ହେବ ଏବଂ ପ୍ରତ୍ୟେକ ସ୍ଥାନରେ ସାମ୍ୟବାଦ ପ୍ରତିଷ୍ଠା ହେବ । ଅବଶ୍ୟ କେତେକାଳ ପର୍ଯ୍ୟନ୍ତ ବା କେତେକ ବର୍ଷ ପାଇଁ ଦୁଇଟିଯାକ ଏକ ଟଳମଳ ସମାନତା ଉପରେ ପାଖାପାଖି ରହିପାରନ୍ତି ।

ଅଧିକ ପରିମାଣରେ ବିପ୍ଳବ ପୂର୍ବରୁ ଓ ପରେ ସମସ୍ତ ବଲସେଭିକ ନେତା-ମାନଙ୍କର ଏହାର ମତ ଥିଲାପରି ବୋଧ ହେଉଥିଲା । ସେମାନେ ଅସ୍ଥିର ଭାବରେ ପୃଥିବୀ ବିପ୍ଳବଲାଗି ଅପେକ୍ଷା କରିଥିଲେ କିମ୍ବା ଅନ୍ତତଃ କେତେକ ଇଉରୋପୀୟ ଦେଶରେ ବିପ୍ଳବ

ହେବ ବୋଲି ଆଶା କରୁଥିଲେ । ଅନେକ ମାସ ପର୍ଯ୍ୟନ୍ତ ଇଉରୋପ ଆକାଶରେ ଗର୍ଜ୍ଜନ ଶୁଣାଗଲା, କିନ୍ତୁ ଝଡ଼ ବୋହିଗଲା, ବର୍ଷା ହେଲା ନାହିଁ । ରୁଷ 'ନେପ'ରେ ଲାଗିଗଲା ଏବଂ ଅଳ୍ପେ ଅଧିକେ ଏକ ନିରାଡ଼ମ୍ବର ଜୀବନ ଦେଖାଗଲା । ତେଣୁ ଟ୍ରଟସ୍କି ଆତଙ୍କ ଚିତ୍କାର ଉଠାଇଲେ ଏବଂ ଦର୍ଶାଇଲେ ଯେ ପୃଥିବୀ ବିପ୍ଳବ ଲକ୍ଷ୍ୟ ଆଗରେ ରଖି ଅଧିକ ଉଗ୍ର ନୀତି ଅନୁସରଣ ନ କଲେ ବିପ୍ଳବ ବିପଦମୁଖରେ ପଡ଼ିବ । ଏହି ଉକ୍ତି ଫଳରେ ଟ୍ରଟସ୍କି ଓ ଷ୍ଟାଲିନ୍‌ଙ୍କ ଭିତରେ ଶକ୍ତ ବିବାଦ ଲାଗିଲା—ଏହି ବିବାଦ ହେତୁ କେତେ ବର୍ଷ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ପାର୍ଟି ଦୋହଲିଗଲା । ଏହି ବିବାଦରେ ଷ୍ଟାଲିନ୍‌ଙ୍କର ପୂର୍ଣ୍ଣ ବିଜୟ ହେଲା, କାରଣ ପାର୍ଟି ସଂଗଠନ ତାଙ୍କ ହାତରେ ଥିଲା । ଟ୍ରଟସ୍କି ଓ ତାଙ୍କର ସମର୍ଥକମାନଙ୍କୁ ବିପ୍ଳବର ଶତ୍ରୁ ରୂପେ ଗଣ୍ୟ କରାଗଲା ଏବଂ ପାର୍ଟିରୁ ତଡ଼ିଦିଆଗଲା । ଟ୍ରଟସ୍କିଙ୍କୁ ପ୍ରଥମେ ସାଇବେରିଆକୁ ପଠାଇ ଦିଆଗଲା ଏବଂ ପରେ ଇଉନିୟନ ବାହାରକୁ ନିର୍ବାସନ କରାଗଲା ।

କୃଷକମାନଙ୍କୁ ସାମ୍ୟବାଦ ଆଡ଼କୁ ଆଣିବା ନିମନ୍ତେ ଏକ ଉଗ୍ର କୃଷି ସଂକ୍ରାନ୍ତ ପ୍ରସ୍ତାବ ଷ୍ଟାଲିନ କଲେ—ସେଥିଲାଗି ଷ୍ଟାଲିନ ଓ ଟ୍ରଟସ୍କିଙ୍କ ଭିତରେ ଜରୁରୀ ବିବାଦ ହେଲା । ଅନ୍ୟ ଦେଶ ଅବସ୍ଥା ଯାହା ଆନ୍ତୁ ପଛକେ ସେଥିକି ଲକ୍ଷ୍ୟ ନ ରଖି ରୁଷରେ ସାମ୍ୟବାଦ ପ୍ରତିଷ୍ଠା କରିବାର ଏହା ଏକ ଉଦ୍ୟମ ଥିଲା ଏବଂ ଟ୍ରଟସ୍କି ଏହାକୁ ଅଗ୍ରାହ୍ୟ କଲେ ଏବଂ ନିଜର ସ୍ଥାୟୀ ବିପ୍ଳବ ମତ ଧରି ବସିଲେ । ସେ କହିଲେ ଏହା ବ୍ୟତିରେକେ କୃଷକମାନଙ୍କୁ ପୂର୍ଣ୍ଣଭାବରେ ସାମ୍ୟବାଦୀ କରିହେବ ନାହିଁ । ପ୍ରକୃତରେ ଦେଖିବାକୁ ଗଲେ ଷ୍ଟାଲିନ୍ ଟ୍ରଟସ୍କିଙ୍କର ଅନେକ ପ୍ରସ୍ତାବ ଗ୍ରହଣ କରିଥିଲେ, କିନ୍ତୁ ସେ ଏହା ନିଜ ଢଙ୍ଗରେ କଲେ, ଟ୍ରଟସ୍କି ଯେପରି କହୁଥିଲେ ସେପରି ନୁହେଁ । ଏହାକୁ ଲକ୍ଷ୍ୟ କରି ଟ୍ରଟସ୍କି ତାଙ୍କ ଆତ୍ମକାହାଣୀରେ ଲେଖିଛନ୍ତି "ଯାହାହେଉ ରାଜନୀତିରେ କେବଳ କଣ ନୁହେଁ, ମଧ୍ୟ କିପରି ଓ କିଏ କରୁଛି ଏହା ସବୁ ନିଷ୍ପତ୍ତି କରେ ।"

ଏହିରୂପେ ଦୁଇ ଦଳାଙ୍କ ଭିତରେ ମହାନ୍ ସଂଗ୍ରାମ ଶେଷ ହେଲା ଏବଂ ଟ୍ରଟସ୍କି ଯେଉଁ ମଞ୍ଚରେ ଏଡ଼େ ସାହସିକ ଓ ବିଚକ୍ଷଣ ଭାଗ ନେଇଥିଲେ, ସେଥିରୁ ତାଙ୍କୁ ଧକ୍‌କା ମାରି ବାହାର କରି ଦିଆଗଲା । ଯେଉଁ ସୋଭିଏଟ ୟୁନିୟନର ସେ ଜଣେ ପ୍ରଧାନ କାରିଗର ଥିଲେ ତାହା ତାଙ୍କୁ ତ୍ୟାଗ କରିବାକୁ ପଡ଼ିଲା । ଏହି ବିପ୍ଳବାତ୍ମକ ବ୍ୟକ୍ତିଙ୍କୁ ପ୍ରାୟ ସବୁ ପୁଞ୍ଜିବାଦୀ ଦେଶ ଭୟ କରୁଥିଲେ ଏବଂ କେହି ତାଙ୍କୁ ଗ୍ରହଣ କଲେ ନାହିଁ । ଶେଷରେ ଇସ୍ତାନବୁଲ ନିକଟରେ ତୁର୍କିର ପ୍ରେଟ ପିଙ୍କିପୋ ଦ୍ୱୀପରେ ସେ କ୍ଷଣକାଳ ଲାଗି ଆଶ୍ରୟ ନେଲେ । ସେ ଲେଖାରେ ମନୋନିବେଶ କଲେ ଏବଂ ତାଙ୍କର ଅପୂର୍ବ ରୁଷ ବିପ୍ଳବର ଇତିହାସ ରଚନା କଲେ । ଷ୍ଟାଲିନଙ୍କ ପ୍ରତି ଘୃଣା ତାଙ୍କର ଏବେ ସୁଦ୍ଧା ସେହିପରି ରହିଛି ଏବଂ ସେ ତୀବ୍ରଭାଷାରେ ତାଙ୍କୁ ସମାଲୋଚନା ଓ ଆକ୍ରମଣ କରିବାକୁ ଲାଗିଲେ ।

ପୃଥିବୀର କେତେକ ଅଞ୍ଚଳରେ ଷ୍ଟାଲିନଙ୍କ ମତ ଟ୍ରଟସ୍କିଷ୍ଟ ପାର୍ଟି ଗଢ଼ି ଉଠିଲା ଏବଂ ଏହା ସୋଭିଏଟ ସରକାର ଓ କମିଣ୍ଟର୍ଣ୍ଣ ପ୍ରସ୍ତାବିତ କମ୍ୟୁନିଜିମ ବିରୁଦ୍ଧରେ ଠିଆ ହେଲା ।

ଟ୍ରଟସ୍କିଙ୍କୁ ବିଦାୟ କରିସାରି ଷ୍ଟାଲିନ୍ ଅସାଧାରଣ ସାହସର ସହିତ ତାଙ୍କ ନୂତନ କୃଷି ସଂକ୍ରାନ୍ତ ନୀତିରେ ମନୋନିବେଶ କଲେ । ଶିକ୍ଷିତ ସଂପ୍ରଦାୟଙ୍କ ଭିତରେ ଦୁଃଖ ଓ ଅକର୍ମା ସମସ୍ୟା ଥିଲା ଏବଂ ଶ୍ରମିକ ଧର୍ମଘଟ ବି ହୋଇଥିଲା । ସେ କୁଲକ ବା ଧନୀ କୃଷକମାନଙ୍କ ଉପରେ ଅଧିକ ଟିକସ ବସାଇଲେ ଏବଂ ତାପରେ ଗ୍ରାମ୍ୟ ସାମୂହିକ କ୍ଷେତରେ ଏହି ଧନ ଖଟାଇଲେ । ଅର୍ଥାତ୍ ବଡ଼ ବଡ଼ ସମବାୟ କ୍ଷେତ—ଏଥିରେ ବହୁସଂଖ୍ୟକ କୃଷକ ଏକତ୍ର କାର୍ଯ୍ୟ କଲେ ଓ ଲାଭ ବାଣ୍ଟି ନେଲେ । କୁଲକ ଓ ଧନୀ କୃଷକମାନେ ଏହି ନୀତିରେ ଅସନ୍ତୋଷ ପ୍ରକାଶ କଲେ ଏବଂ ସୋଭିଏଟ ସରକାର ଉପରେ ବଡ଼ ଖପା ହୋଇଗଲେ । ସେମାନେ ଭୟ କଲେ ଯେ, ତାଙ୍କର ଗୋରୁ ଓ କୃଷି ସାମଗ୍ରୀ ସବୁ ତାଙ୍କର ଗରିବ ପଡ଼ୋଶୀଙ୍କ କାର୍ଯ୍ୟରେ ବି ଲଗାହେବ ଏବଂ ଏହି ଭୟ ହେତୁ ସେମାନେ ପ୍ରକୃତରେ କୃଷି କାମରେ ଲଗିବା ପଶୁମାନଙ୍କୁ ମାରିଦେଲେ । ଗୋମହିଷାଦି ପଶୁ ଏତେ ସଂଖ୍ୟାରେ ମାରି ଦିଆଗଲା ଯେ, ତତ୍ପରବର୍ତ୍ତି ଖାଦ୍ୟ ପଦାର୍ଥ ମାଂସ ଓ ଗୋଶାଳାରୁ ଆମଦାନୀ ସବୁ ଖୁବ୍ କମିଗଲା ପଡ଼ିଗଲା ।

ଷ୍ଟାଲିନଙ୍କ ଉପରେ ଏହା ଏକ ଅପ୍ରତ୍ୟାଶିତ ଆଘାତ ହେଲା । କିନ୍ତୁ ସେ ଦୃଢ଼ ଭାବରେ ନିଜର କାର୍ଯ୍ୟପନ୍ଥାକୁ ଧରି ରଖିଲେ । ବାସ୍ତବିକ ସେ ଏହାକୁ ବୃଦ୍ଧି କଲେ ଏବଂ ଏକ ବିରାଟ ଯୋଜନା ତିଆରି କଲେ । ଏହା ସମଗ୍ର ଇଉନିୟନର କୃଷିଜାତ ଓ ଶିଳ୍ପ ଉଭୟ କ୍ଷେତ୍ରରେ ପ୍ରୟୋଗ ହେଲା । ସରକାର ତରଫରୁ ହୋଇଥିବା ବହୁସଂଖ୍ୟକ ଆଦର୍ଶ ଫାର୍ମ ଓ ସାମୂହିକ କ୍ଷେତ ଜରିଆରେ କୃଷକମାନଙ୍କୁ ଶିଳ୍ପୋଦ୍ୟୋଗ ଆଡ଼କୁ ଅଣା ହେବ ଏବଂ ପ୍ରକାଣ୍ଡ କାରଖାନାମାନ ଜଳରୁ ବିଦ୍ୟୁତ ଶକ୍ତି ବାହାର କରି ଖଣି କାମ ଇତ୍ୟାଦି ଅନ୍ୟ କାର୍ଯ୍ୟ କରି ସମଗ୍ର ଦେଶକୁ ଶିଳ୍ପୋନ୍ନତ କରାହେବ ଏବଂ ଏହା ପାଖେ ପାଖେ ଶିକ୍ଷା, ବିଜ୍ଞାନ, ସହଯୋଗମୂଳକ ଖରିଦ ଓ ବିକ୍ରୀ, ଲକ୍ଷ ଲକ୍ଷ ଶ୍ରମିକଙ୍କ ପାଇଁ ଗୃହ ନିର୍ମାଣ ଏବଂ ସାଧାରଣ ଭାବରେ ଜୀବନଧାରଣ ମାନ ବଢ଼ାଇବା ଇତ୍ୟାଦି ଅନେକ କାର୍ଯ୍ୟ ବି କରାହେଲା । ଏହା ହେଉଛି ବିଖ୍ୟାତ "ପଞ୍ଚବାର୍ଷିକ ଯୋଜନା" ଅଥବା ରୁଷ ଭାଷାରେ ଏହାକୁ କହନ୍ତି "ପ୍ୟାଟିଲେଟକା" । ଏହା ଏକ ବିଶାଳ କାର୍ଯ୍ୟପନ୍ଥା । ଏକ ସମ୍ପଦଶାଳୀ ଓ ଉନ୍ନତ ଦେଶରେ ବି ଏକ ପୁରୁଷ ଭିତରେ ହାସଲ କରିବା କଷ୍ଟକର । ଅନୁନ୍ନତ ଓ ଦରିଦ୍ର ରୁଷ ପକ୍ଷରେ ଏପରି ପ୍ରଚେଷ୍ଟା କରିବା ନିର୍ବୋଧତାର ଚୂଡ଼ାନ୍ତ ପରି ମନେହେଲା ।

ଅତ୍ୟନ୍ତ ଯତ୍ନ ସହକାରେ ଚିନ୍ତା ଓ ଅନୁସନ୍ଧାନ ପରେ ଏହି ପଞ୍ଚବାର୍ଷିକ ଯୋଜନା ତିଆରି କରାହୋଇଥିଲା । ବୈଜ୍ଞାନିକ ଓ ଇଞ୍ଜିନିୟରମାନେ ସାରା ଦେଶର ଅବସ୍ଥା ପରୀକ୍ଷା କଲେ ଏବଂ କାର୍ଯ୍ୟକ୍ରମର ଏକ ଅଂଶ ସହିତ ଅନ୍ୟ ଅଂଶ ଖାପ ଖାଉଛି କି

ନାହିଁ ଏହା ଅସଂଖ୍ୟ ବିଶେଷଜ୍ଞ ଆଲୋଚନା କରିଥିଲେ । କାରଣ ଏହି ଖାପ ଖୁଆଇବାରେ ହିଁ ପ୍ରକୃତ ଅସୁବିଧା ଆସି ପଡ଼ୁଥିଲା । କଞ୍ଚା ମାଲର ଯଦି ଅଭାବ ଘଟେ, ତେବେ ପ୍ରକାଣ୍ଡ କାରଖାନାମାନ କରିବାରେ କିଛି ମୂଲ୍ୟ ନାହିଁ । କଞ୍ଚାମାଲ ମିଳିଲେ ବି ଏହା ପୁଣି କାରଖାନାକୁ ଅଣାହେବା ଦରକାର । ତେଣୁ ଯାନବାହନ ସମସ୍ୟା ପୂରଣ କରିବାକୁ ପଡ଼ିଲା, ରେଳପଥ ତିଆରି କରିବାକୁ ହେଲା, ରେଳଓ୍ୱେ ପାଇଁ କୋଇଲା ଦରକାର । ତେଣୁ ସେଥିପାଇଁ କୋଇଲାଖଣି ଖୋଳାଇବାକୁ ପଡ଼ିଲା । କାରଖାନା ଚଳାଇବା ନିମନ୍ତେ ଶକ୍ତି ଲୋଡ଼ା । ଏହି ଶକ୍ତି କାରଖାନାଗୁଡ଼ିକୁ ଯୋଗାଇବା ନିମନ୍ତେ ବଡ଼ ବଡ଼ ନଦୀରେ ବନ୍ଧ ନିର୍ମାଣ କରି ଜଳଶକ୍ତିରୁ ବିଦ୍ୟୁତ୍ ବାହାର କରିବାକୁ ଏବଂ ଏହି ବିଦ୍ୟୁତ୍ ଶକ୍ତିକୁ ପୁଣି ତାର ଜରିଆରେ କାରଖାନା ଓ କୃଷିକ୍ଷେତ୍ରକୁ ଓ ସହର ଓ ଗ୍ରାମକୁ ଆଲୋକିତ କରିବା ନିମନ୍ତେ ପଠାଗଲା । ତାପରେ ଏଥିପାଇଁ ପୁଣି ଇଞ୍ଜିନିୟର, ମିସ୍ତ୍ରୀ ଓ କର୍ମପଟୁ ଶ୍ରମିକ ଲୋଡ଼ା ଏବଂ ଅଳ୍ପ ସମୟ ଭିତରେ ହଜାର ହଜାର ନରନାରୀଙ୍କୁ ତାଲିମ କରିବା କିଛି ହସଖେଳ ନୁହେଁ । ମଟର ଟ୍ରାକ୍ଟର ହଜାର ହଜାର ସଂଖ୍ୟାରେ କ୍ଷେତକୁ ପଠାଯାଇପାରେ, କିନ୍ତୁ ସେଗୁଡ଼ିକୁ ଚଳାଇବ କିଏ ?

ପଞ୍ଚବାର୍ଷିକ ଯୋଜନା ଫଳରେ ଯେଉଁ ଅଦ୍ଭୁତ ଜଟିଳ ସମସ୍ୟା ସବୁ ଉଠିଲା ତାର ଗୋଟାଏ ଧାରଣା ଦେବା ନିମନ୍ତେ ଏହା କେତୋଟି ମାତ୍ର ଦୃଷ୍ଟାନ୍ତ । ଏକ ସାମାନ୍ୟ ଭୁଲରେ ସୁଦୂରଗାମୀ ପରିଣତି ହୋଇଥାନ୍ତା; କାର୍ଯ୍ୟ ଜଞ୍ଜିରର ଏକ ଦୁର୍ବଳ ବା ପଶ୍ଚାତଗାମୀ ସଂଯୋଗରେ ସମଗ୍ର କାର୍ଯ୍ୟରେ ବିଳମ୍ବ ଘଟିବ ବା ଏହା ବନ୍ଦ ହୋଇଯିବ । କିନ୍ତୁ ପୁଞ୍ଜିବାଦୀ ଦେଶମାନଙ୍କ ଅପେକ୍ଷା ରୁଷର ଗୋଟାଏ ବଡ଼ ସୁବିଧା ଥିଲା । ପୁଞ୍ଜିବାଦ ଅଧୀନରେ ଏହିସବୁ କାର୍ଯ୍ୟ ବ୍ୟକ୍ତିଗତ ଉଦ୍ୟମ ଓ ସୁବିଧାକୁ ଛାଡ଼ି ଦିଆଯାଏ ଏବଂ ପ୍ରତିଯୋଗିତା ଯୋଗୁଁ ଅନେକ ପ୍ରଚେଷ୍ଟା ବୃଥା ଯାଏ । ବିଭିନ୍ନ ଉତ୍ପାଦକ ବା ବିଭିନ୍ନ ଶ୍ରମିକଙ୍କ ଭିତରେ ଆଦୌ ସହଯୋଗ ନ ଥାଏ । କେବଳ ଏକା ବଜାରକୁ ଆସୁଥିବା କ୍ରେତା ଓ ବିକ୍ରେତାଙ୍କ ଭିତରେ ଯାହା ବା ସହଯୋଗ ଆସି ପଡ଼ୁଛି । ସଂକ୍ଷେପରେ ବିସ୍ତୃତ ଆକାରରେ କୌଣସି ଯୋଜନା ନ ଥାଏ । ବ୍ୟକ୍ତି ଅଧିକାରରେ ଥିବା ଉଦ୍ୟୋଗସବୁ ସେଗୁଡ଼ିକର ଭବିଷ୍ୟତ କାର୍ଯ୍ୟକ୍ରମ ଯୋଜନା କରିପାରନ୍ତି ଓ କରନ୍ତି ମଧ୍ୟ; କିନ୍ତୁ ଏଥିରୁ ଅଧିକାଂଶ ଯୋଜନାରେ ପରସ୍ପରକୁ ଟପିଯିବା ବା ଅନ୍ୟ ବ୍ୟକ୍ତିବିଶେଷ ଉଦ୍ୟୋଗରୁ ଅଧିକ ଲାଭ କରିବା ନିମନ୍ତେ ଚେଷ୍ଟା କରାଯାଏ । ଜାତୀୟ ଦୃଷ୍ଟିରେ ଏଥିରେ ଯୋଜନାର ଠିକ୍ ବିପରୀତ ଫଳ ହୁଏ—ଏହାର ଅର୍ଥ ଏକ ସଙ୍ଗରେ ପ୍ରାଚୁର୍ଯ୍ୟ ଓ ଅଭାବ ଦେଖାଯାଏ । ସୋଭିଏଟ୍ ସରକାରର ସମସ୍ତ ଇଉନିୟନରେ ସକଳପ୍ରକାର ବିଭିନ୍ନ ଶିଳ୍ପ ଓ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବାର ସୁବିଧା ଥିଲା ଏବଂ ତେଣୁ ଏକ ସମ୍ମିଳିତ ଯୋଜନା ତିଆରି କରି ତାହା କାର୍ଯ୍ୟକାରୀ କରିବା ନିମନ୍ତେ ଚେଷ୍ଟା କରେ—ଏଥିରେ ପ୍ରତ୍ୟେକ କାର୍ଯ୍ୟ ଠିକଣା ଜାଗାରେ ଥାଏ । ଏଥିରେ ବିଶେଷ କ୍ଷତି ହୁଏନା, କେବଳ

ହିସାବ ବା କାର୍ଯ୍ୟର, ଭୁଲ ଯୋଗୁଁ ଯାହା ବୃଥା ଯାଏ ଏବଂ ଏପରିକି ଏହି ଭୁଲ ବି ଅନ୍ୟ ରାଷ୍ଟ୍ର ଅପେକ୍ଷା ମିଳିତ ନିୟନ୍ତ୍ରଣରେ ଶୀଘ୍ର ସଜାଡ଼ି ହୋଇଯାଏ ।

ଏହି ଯୋଜନାର ଉଦ୍ଦେଶ୍ୟ ହେଉଛି ସୋଭିଏଟ୍ ୟୁନିୟନରେ ଶିଳ୍ପ ଉଦ୍ୟମକୁ ଦୃଢ଼ ଭିତ୍ତି ଉପରେ ସ୍ଥାପନ କରିବା । ଲୁଗା ପ୍ରଭୃତି ଯେଉଁ ଜିନିଷ ପ୍ରତ୍ୟେକ ଲୋକ ଦରକାର କରେ ତାହା ଉତ୍ପନ୍ନ କରିବା ନିମନ୍ତେ କେତେକ କାରଖାନା ବସାଇବା ଏଥିରୁ ବୁଝାଉ ନାହିଁ । ଭାରତରେ ଯେପରି ହେଉଛି ସେପରି ବିଦେଶରୁ କଳକବ୍ଜା ଆଣି ସେଠାରେ ବସାଇଦେବା ଅତି ସହଜରେ ହୋଇପାରନ୍ତା । ବ୍ୟବସ୍ଥ ଉପଯୋଗୀ ମାଲସବୁ ଉତ୍ପନ୍ନ କରୁଥିବା ଏହି ସବୁ ଶିଳ୍ପକୁ "ହାଲୁକା ଶିଳ୍ପ" ବୋଲି କୁହାଯାଏ । ଏହି ହାଲୁକା ଶିଳ୍ପ ସବୁ ଆବଶ୍ୟକାନୁସାରେ "ଭାରି ଶିଳ୍ପ" ଉପରେ ନିର୍ଭର କରେ । ଲୁହା, ଇସ୍ପାତ ଓ ମେସିନ ତିଆରି ପ୍ରଭୃତିକୁ ଭାରିଶିଳ୍ପ କହନ୍ତି । ଏହା ହାଲୁକା ଶିଳ୍ପଗୁଡ଼ିକୁ କଳକବ୍ଜା ଓ ସରଞ୍ଜାମମାନ ଏବଂ ଇଞ୍ଜିନ ପ୍ରଭୃତି ମଧ୍ୟ ଯୋଗାଏ । ସୋଭିଏଟ ଗଭର୍ଣ୍ଣମେଣ୍ଟ ଆହୁରି ଦୂରକୁ ଦୃଷ୍ଟି ନିକ୍ଷେପ କଲି ଏବଂ ପଞ୍ଚବାର୍ଷିକ ଯୋଜନାରେ ଏହି ମିଲ ବା ବଡ଼ କାରଖାନା ସବୁ ନିର୍ମାଣ କରିବାରେ ମନୋନିବେଶ କରିବା ନିମନ୍ତେ ସ୍ଥିର କଲି । ଏହି ରୂପେ ଶିଳ୍ପୋଦ୍ୟୋଗର ଭିତ୍ତି ଦୃଢ଼ଭାବରେ ସ୍ଥାପିତ ହୋଇଯିବ ଏବଂ ପରେ ହାଲୁକା ଶିଳ୍ପ କରିବା ସହଜ ହୋଇଯିବ । ଭାରି ଶିଳ୍ପ ଫଳରେ କଳକବ୍ଜା ବା ଯୁଦ୍ଧ ସାମଗ୍ରୀ ପାଇଁ ରୁଷକୁ ବିଦେଶୀ ରାଜ୍ୟ ଉପରେ କମ୍ ନିର୍ଭର କରିବାକୁ ହେବ ।

ଏପରି ପରିସ୍ଥିତିରେ ବଡ଼ ବଡ଼ ଶିଳ୍ପ ବସାଇବା ସପକ୍ଷରେ ସିଦ୍ଧାନ୍ତ କାହିଁକି କରାଯାଇଥିଲି ତାହା ସୁସ୍ପଷ୍ଟ ବୋଧ ହେଉଛି, କିନ୍ତୁ ଏହାର ଅର୍ଥ ବହୁ ଅଧିକ ଉଦ୍ୟମ ଏବଂ ଲୋକଙ୍କ ପକ୍ଷରେ ପ୍ରଚଣ୍ଡ କଷ୍ଟ ସ୍ୱୀକାର । ହାଲୁକା ଅପେକ୍ଷା ଭାରି ଶିଳ୍ପଗୁଡ଼ିକ ଅତ୍ୟଧିକ ବ୍ୟୟସାପେକ୍ଷ ଏବଂ ଆହୁରି ଏକ ପ୍ରଧାନ ପାର୍ଥକ୍ୟ ହେଉଛି ଦୀର୍ଘକାଳ ପର୍ଯ୍ୟନ୍ତ ସେଥିରେ କିଛି ଲାଭ ହୁଏ ନାହିଁ । ଲୁଗା କଲରେ ଲୁଗା ତିଆରି ହୁଏ ଏବଂ ଏହା ସାଙ୍ଗେ ସାଙ୍ଗେ ଲୋକଙ୍କୁ ବିକ୍ରୀ କରାଯାଇପାରେ; ବ୍ୟବସ୍ଥୋପଯୋଗୀ ମାଲ ସବୁ ତିଆରି କରୁଥିବା ହାଲୁକା ଶିଳ୍ପମାନଙ୍କ ଅବସ୍ଥା ବି ସେହିପରି । କିନ୍ତୁ ଏକ ଲୁହା ଇସ୍ପାତ କାରଖାନାରେ ଇସ୍ପାତ ରେଲ ଓ ଇଞ୍ଜିନ ତିଆରି ହୋଇପାରେ । ଏକ ରେଲପଥ ନିର୍ମାଣ ନ ହେବା ପର୍ଯ୍ୟନ୍ତ ଏହା ବିକ୍ରୟ ହୋଇପାରିବ ନାହିଁ କିମ୍ବା ବ୍ୟବହାର କରାଯାଇ ପାରିବ ନାହିଁ । ଏହା ସମୟ ନିଏ ଏବଂ ସେ ପର୍ଯ୍ୟନ୍ତ ବହୁ ପରିମାଣରେ ଧନ ବନ୍ଧା ହୋଇ ପଡ଼ିଯାଏ ଏବଂ ଏଥିଲାଗି ଦେଶ ଅଧିକ ଦରିଦ୍ର ହୋଇଯାଏ ।

ତେଣୁ ରୁଷ ପକ୍ଷରେ ପ୍ରଖର ଗତିରେ ଏହି ସବୁ ଭାରି ଶିଳ୍ପ ଗଠନ କରିବା ଅର୍ଥ ବହୁତ ବଡ଼ ତ୍ୟାଗ । ଏହି ସବୁ ସଙ୍ଗଠନ, ଏହି ସବୁ କଳକବ୍ଜା ବାହାରୁ

ଅସୁଥିଲା, ସେଥିପାଇଁ ମୂଲ୍ୟ ଦେବାକୁ ପଡ଼େ ଓ ତାହା ପୁଣି ସୁନା ଓ ନଗଦ ରୂପେ ଦେବାକୁ ହୁଏ । ଏହାର କିପରି ବ୍ୟବସ୍ଥା ହେଲା ? ସୋଭିଏଟ ସୁନିଷ୍ଟନର ଲୋକେ ଖୁବ୍ ସଙ୍କୀର୍ଣ୍ଣରେ ଚଳିଲେ, ଅର୍ଦ୍ଧାହାରୀ ରହିଲେ, ଏବଂ ବିଦେଶକୁ ଅସୁଲି ଦିଆଯାଇ ପାରିବ ବୋଲି ନିତାନ୍ତ ଆବଶ୍ୟକୀୟ ଜିନିଷରୁ ସୁଦ୍ଧା ନିଜକୁ ବଞ୍ଚିତ କଲେ । ସେମାନେ ତାଙ୍କର ଖାଦ୍ୟ ସାମଗ୍ରୀ ବିଦେଶକୁ ପଠାଇଲେ ଏବଂ ସେଥିରୁ ଯାହା ମୂଲ୍ୟ ପାଇଲେ, ତାହା କଳକବ୍ଜା ପାଇଁ ଅସୁଲି ଦେଲେ । ଯାହା କିଛି ବିକ୍ରି ହେବାର ଦେଖିଲେ ସବୁ ପଠାଇଦେଲେ; ଗହମ, ତୁଳା, ବାର୍ଲି, ଶସ୍ୟ, ପନିପରିବା, ଫଳ, ଡିମ୍ବ, ଲହୁଣୀ, ମାଂସ, କୁକୁଡ଼ା, ମହୁ, ମାଛ, କାଭିଏର (ଲବଣାକ୍ତ ମାଛଡିମ୍ବରୁ ପ୍ରସ୍ତୁତ ଖାଦ୍ୟପଦାର୍ଥ), ଚିନି, ତେଲ, ମିଷ୍ଟାନ୍ନ ଦ୍ରବ୍ୟ ଇତ୍ୟାଦି । ଏହି ସବୁ ଭଲ ଜିନିଷମାନ ବିଦେଶକୁ ପଠାଇବା ଅର୍ଥ ସେମାନେ ନିଜେ ଏହା ପାଇଲେ ନାହିଁ । ରୁଷ ଲୋକଙ୍କର ଲହୁଣୀ ନ ଥିଲା କିମ୍ବା ଖୁବ୍ କମ୍ ଥିଲା, କାରଣ କଳକବଜାର ମୂଲ୍ୟ ଦେବା ନିମନ୍ତେ ଏହା ବିଦେଶ ପଠାଗଲା । ଅନ୍ୟ ଅନେକ ପଦାର୍ଥରେ ବି ତାହା ହୋଇଥିଲା ।

ପଞ୍ଚବାର୍ଷିକ ଯୋଜନା ଏହି ବିରାଟ ପ୍ରଚେଷ୍ଟା ସହି ୧୯୨୯ରେ ଆରମ୍ଭ ହେଲା । ଆହୁରି ମଧ୍ୟ ଦେଶରେ ବିପ୍ଳବ ଭାବ ପୂରି ରହିଥିଲା: ଏକ ଆଦର୍ଶର ଆହ୍ୱାନରେ ଜନତା ଅନୁପ୍ରେରିତ ହେଲେ ଏବଂ ସେମାନେ ନୂତନ ସଂଗ୍ରାମରେ ତାଙ୍କର ସମସ୍ତ ଶକ୍ତି ଅର୍ପଣ କରିବାକୁ ବାହାରିଲେ । ଏହି ସଂଗ୍ରାମ ଏକ ବିଦେଶୀ ସେନା ବା ଆଭ୍ୟନ୍ତରୀଣ ଶତ୍ରୁ ବିରୁଦ୍ଧରେ ହୋଇ ନ ଥିଲା । ଏହା ରୁଷର ଅନୁନ୍ନତ ଅବସ୍ଥା ବିରୁଦ୍ଧରେ ପୁଞ୍ଜିବାଦର ଅବଶେଷ ବିରୋଧରେ ଏବଂ ଜୀବନ ଧାରଣର ନ୍ୟୂନତମ ମାନ ବିରୁଦ୍ଧରେ, ଲଢ଼ାଇ । ଉତ୍ସାହ ସହକାରେ ଲୋକେ ଆହୁରି ତ୍ୟାଗ ବରଣ କଲେ ଏବଂ ଏକ କଠିନ ଓ ସରଳ ଜୀବନ ଯାପନ କଲେ; ମହାନ ଭବିଷ୍ୟତ ଲାଗି ସେମାନେ ବର୍ତ୍ତମାନକୁ ତ୍ୟାଗକଲେ — ଏହି ଭବିଷ୍ୟତ ତାଙ୍କ ଆଗରେ ଆଲୋକିତ ହେଉଥିଲା— ସେମାନେହିଁ ଏହି ଭବିଷ୍ୟତର ଗର୍ବି ଓ କ୍ଷମତାପ୍ରାପ୍ତ ନିର୍ମାତା ଥିଲେ ।

ଅତୀତକାଳରେ ଏକ ମହାନ କର୍ତ୍ତବ୍ୟ ସମ୍ପାଦନ କରିବା ନିମନ୍ତେ ଜାତିସବୁ ନିଜର ସମସ୍ତ ପ୍ରଚେଷ୍ଟା ନିୟୋଗ କରିଛନ୍ତି, କିନ୍ତୁ କେବଳ ଯୁଦ୍ଧକାଳରେ ଏହା ହୋଇପାରିଛି । ପୃଥିବୀ ଯୁଦ୍ଧବେଳେ ଜର୍ମାନୀ, ଇଂଲଣ୍ଡ ଓ ଫ୍ରାନ୍ସ କେବଳ ଏକ ଉଦ୍ଦେଶ୍ୟ— ଯୁଦ୍ଧରେ ଜିତିବା ପାଇଁ କାର୍ଯ୍ୟ କରୁଥିଲେ । ଏହି ଉଦ୍ଦେଶ୍ୟରେ ଅନ୍ୟ ସବୁ ଜିନିଷକୁ ଗୌଣ କରି ଦିଆଯାଇଥିଲା । ଇତିହାସରେ ପ୍ରଥମଥର ଲାଗି ସୋଭିଏଟ ରୁଷ ଧ୍ୱଂସ କରିବା ପାଇଁ ନୁହେଁ, ଶାନ୍ତିପୂର୍ଣ୍ଣ ଉଦ୍ୟମରେ ଗଠନ କରିବା ଲାଗି, ଗୋଟିଏ ଅନୁନ୍ନତ ଦେଶକୁ ଶିଳ୍ପୋନ୍ନତ ସାମ୍ୟବାଦ ଗଠନ ଭିତରେ ଆଣିବା ପାଇଁ ଦେଶର ସମସ୍ତ ଶକ୍ତି ନିୟୋଜିତ କଲା । କିନ୍ତୁ ବିଶେଷ ଭାବରେ ଉଚ୍ଚ ଓ ମଧ୍ୟବିତ୍ତ ଶ୍ରେଣୀର କୃଷକଙ୍କ ଦୁଃଖ ବହୁତ ବେଶୀ ହୋଇଗଲା ଏବଂ ବେଳେ ବେଳେ ମନେ ହେଲା ସତେ କି ଉଚ୍ଚକାମୀ

ଯୋଜନାର ବି ପତନ ହେବ ଏବଂ ବୋଧହୁଏ ଏହା ସଙ୍ଗେ ସଙ୍ଗେ ସୋଭିଏଟ୍ ସରକାର ବି ଶେଷ ପାଇଯିବ । ଏହାକୁ ଜାରି ରଖିବା ନିମନ୍ତେ ପ୍ରବଳ ସାହସ ଦରକାର ହେଲା । ଅନେକ ମୁଖିଆ ବଲସେଭିକ ଭାବିଲେ ଯେ କୃଷିସଂକ୍ରାନ୍ତ କାର୍ଯ୍ୟକ୍ରମରେ ଲୋକଙ୍କ ଉପରେ ଚାପ ଓ କଷ୍ଟଭୋଗ ଅତ୍ୟଧିକ ହୋଇଗଲାଣି ଏବଂ ଟିକିଏ ଲାଘବ ହେବା ଦରକାର । କିନ୍ତୁ ଷ୍ଟାଲିନ୍ ସେପରି କଲେ ନାହିଁ । ସେ ଦୃଢ଼ ଭାବରେ ଓ ନୀରବରେ ତାକୁ ଅନୁସରଣ କଲେ । ସେ କିଛି କୁହାଳିଆ ନ ଥିଲେ; ସେ ପ୍ରାୟ ସାଧାରଣରେ ଭାଷଣ ଦେଉ ନ ଥିଲେ । ମନେହେଲା ଯେଉଁ ଅନିବାର୍ଯ୍ୟ ଭାଗ୍ୟ ତାର ପୂର୍ବନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉଛି ସେ ତାର ଅଟଳ ପ୍ରତିମୂର୍ତ୍ତି । ତାଙ୍କର ସାହସ ଓ ଦୃଢ଼ ସଂକଳ୍ପ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଓ ରୁଷର ଅନ୍ୟ କର୍ମୀମାନଙ୍କ ଭିତରେ ମଧ୍ୟ କିଛିତ ପ୍ରବେଶ କଲା ।

ପଞ୍ଚବାର୍ଷିକ ଯୋଜନା ସପକ୍ଷରେ ଏକ ଅବିଚ୍ଛିନ୍ନ ପ୍ରଚାର ଫଳରେ ଲୋକଙ୍କର ଉତ୍ସାହ ଜାଗ୍ରତ ରହିଲା ଏବଂ ନୂତନ ପ୍ରଚେଷ୍ଟା ନିମନ୍ତେ ତାଙ୍କୁ ପ୍ରେରଣା ଦେଲା । ପାଣିରୁ ବିଜୁଳି ବାହାର କରିବା, ବଡ଼ ବଡ଼ କାରଖାନା, ବନ୍ଧ, ପୋଲ ଓ ସାମୂହିକ କ୍ଷେତରେ ଜନତାର ଖୁବ୍ ଆଗ୍ରହ ଦେଖାଦେଲା । ଇଞ୍ଜିନିୟରଙ୍କ ସର୍ବାପେକ୍ଷା ଆଦରଣୀୟ ବୃତ୍ତି ହୋଇ ପଡ଼ିଲା ଏବଂ ବଡ଼ ବଡ଼ ଇଞ୍ଜିନିୟରଙ୍କ କାର୍ଯ୍ୟର ବିସ୍ତୃତ ବିବରଣୀ ସବୁ ସମ୍ବାଦପତ୍ରମାନଙ୍କରେ ପୂର୍ଣ୍ଣ ହୋଇଗଲା । ମରୁଭୂମି ଓ ପ୍ରାନ୍ତର ଆଦି ଜନପୂର୍ଣ୍ଣ ହୋଇଗଲା ଏବଂ ପ୍ରତ୍ୟେକ ବଡ଼ ଶିଳ୍ପ କାରଖାନା ଚତୁଃପାର୍ଶ୍ୱରେ ବଡ଼ ବଡ଼ ନୂଆ ସହରମାନ ଗଢ଼ି ଉଠିଲା । ନୂତନ କେନାଲ, ନୂତନ ରାସ୍ତା, ନୂତନ ରେଲଓ୍ୱେ ବିଶେଷତଃ ଇଲେକ୍‌ଟ୍ରିକ୍ ରେଲଓ୍ୱେ ନିର୍ମାଣ ହେଲା ଏବଂ ଉଡ଼ାଜାହାଜରେ ଗମନାଗମନ ମଧ୍ୟ ବଢ଼ିଲା । ରାସାୟନିକ ପଦାର୍ଥର କାରଖାନା, ଯୁଦ୍ଧ ଶିଳ୍ପ ଓ ଗ୍ରେଟ ଯନ୍ତ୍ର ତିଆରି କାରଖାନା ସବୁ ନିର୍ମାଣ ହେଲା ଓ ସୋଭିଏଟ ୟୁନିୟନରେ ଟ୍ରାକ୍ଟର, ମଟର, ଅଧିକ ଶକ୍ତିସଞ୍ଚାଳିତ ରେଲ ଇଞ୍ଜିନ, ମଟର ଇଞ୍ଜିନ, ଟରବାଇନ (Turbine) ଓ ଉଡ଼ାଜାହାଜ ସବୁ ତିଆରି ହେବାକୁ ଲାଗିଲା । ବିସ୍ତୃତ ଅଞ୍ଚଳରେ ବିଦ୍ୟୁତଶକ୍ତି ବିସ୍ତୃତ ହେଲା ଏବଂ ରେଡ଼ିଓ ସାଧାରଣ ବ୍ୟବହାର ହୋଇଗଲା । ସମ୍ପୂର୍ଣ୍ଣ ଭାବରେ ଅକର୍ମା ଦୂର ହୋଇଗଲା । ଏତେ ନିର୍ମାଣ କାର୍ଯ୍ୟ ହେଉଥିଲା ଯେ ସମସ୍ତ ଶ୍ରମିକ ସେଥିରେ ଲାଗିଗଲେ । ବାସ୍ତବିକ ଅନେକ ଯୋଗ୍ୟ ଇଞ୍ଜିନିୟର ବିଦେଶୀ ରାଜ୍ୟରୁ ଆସିଲେ ଏବଂ ସେମାନଙ୍କୁ ସ୍ୱାଗତ କରାଗଲା । ଏହା ସ୍ମରଣ ରଖିବା ଉଚିତ ଯେ ଏହି ସମୟରେ ସମଗ୍ର ପଶ୍ଚିମ ୟୁରୋପ ଓ ଆମେରିକାରେ ଦୁର୍ଗତି ବ୍ୟାପିଥିଲା ଏବଂ ଅତିରିକ୍ତ ପରିମାଣରେ ଅକର୍ମା ବୃଦ୍ଧି ପାଇଥିଲା ।

ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟ ସୁରୁଖୁରରେ ଚାଲିଲା ନାହିଁ । ବରାବର ଗୋଳମାଳ, ସହଯୋଗର ଅଭାବ, ପ୍ରତିଦ୍ୱନ୍ଦ୍ୱିତା ଓ ହାନି ଲାଗି ରହିଥିଲା । କିନ୍ତୁ ଏ ସବୁ ସତ୍ତ୍ୱେ କାର୍ଯ୍ୟର

ଗତି ବଢ଼ି ଚାଲିଲ ଏବଂ ସର୍ବଦା ଅଧିକରୁ ଅଧିକ କାର୍ଯ୍ୟ ନିମନ୍ତେ ଚାହିଦା ବଢ଼ିଲ । ତା ପରେ ଧ୍ୱନି ଉଠିଲ "ଚାରିବର୍ଷ ଭିତରେ ପଞ୍ଚବାର୍ଷିକ ଯୋଜନା"—ସତେ ଯେପରି ଏହି ଅଦ୍ଭୁତ କାର୍ଯ୍ୟକ୍ରମ ନିମନ୍ତେ ପାଞ୍ଚଟି ବର୍ଷ ଖୁବ୍ କମ୍ ସମୟ ହୋଇ ନଥିଲା । ୧୯୩୨ ଡିସେମ୍ବର ୩୧ ତାରିଖରେ ନିୟମାନୁସାରେ ଯୋଜନା କାଳ ପୂରିଲା ଅର୍ଥାତ୍ ଚାରିବର୍ଷ ଶେଷରେ ଏହା ବି ଶେଷ ହେଲା ଏବଂ ତତ୍‌କ୍ଷଣାତ୍ ୧୯୩୩ ଜାନୁୟାରୀ ପହିଲାଠାରୁ ଏକ ନୂତନ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା ।

ଲୋକେ ଅନେକ ସମୟରେ ପଞ୍ଚବାର୍ଷିକ ଯୋଜନା ସମ୍ବନ୍ଧରେ ତର୍କ କରନ୍ତି; କେତେକ କହନ୍ତି ଏହା ଏକ ବିରାଟ ସଫଳତା ଏବଂ କେତେକ ଏହା ବ୍ୟର୍ଥ ବୋଲି କହନ୍ତି । ଯେଉଁଠି ଏହା ଅକୃତକାର୍ଯ୍ୟ ହୋଇଛି, ତାହା ଦର୍ଶାଇଦେବା ସହଜ, କାରଣ ଅନେକ କ୍ଷେତ୍ରରେ ଏହା ଆଶାନୁରୂପ ହୋଇପାରି ନ ଥିଲା । ଆଜି ରୁଷରେ ଅନେକ ଜିନିଷରେ ଖୁବ ବୈଷମ୍ୟ ରହିଛି । ଏବଂ ପ୍ରଧାନ ଅଭାବ ହେଉଛି ଶିକ୍ଷିତ ଓ ଦକ୍ଷ ଶ୍ରମିକ । ଯୋଗ୍ୟ ଇଞ୍ଜିନିୟରଙ୍କ ଅପେକ୍ଷା କାରଖାନା ଅଧିକ ଅଛି—ଯୋଗ୍ୟ ପାଚକଙ୍କ ଅପେକ୍ଷା ଅଧିକ ଭୋଜନାଳୟ ଓ ରୋଷାଇଶାଳ ରହିଛି । ଏହି ବେ ହିସାବୀ ଅବସ୍ଥା ନିଃସନ୍ଦେହ ରୂପେ ଶୀଘ୍ର ଦୂରୀଭୂତ ହେବ କିମ୍ବା ଅନ୍ତତଃ କମିଯିବ । ଗୋଟିଏ ଜିନିଷ ପରିଷ୍କାର ଅଟେ; ପଞ୍ଚବାର୍ଷିକ ଯୋଜନା ରୁଷର ରୂପ ପୂର୍ଣ୍ଣଭାବରେ ପରିବର୍ତ୍ତନ କରିଦେଇଛି । ଏକ ସାମନ୍ତ ଦେଶରୁ ଏହା ହଠାତ୍ ଏକ ଉନ୍ନତ ଶିଳ୍ପୋନ୍ନତ ଦେଶରେ ପରିଣତ ହୋଇଛି । ସେଠାରେ ଅପୂର୍ବ ଭାବରେ ସାଂସ୍କୃତିକ ପ୍ରଗତି ହୋଇଛି; ସାମାଜିକ ସେବା, ସମାଜର ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା ଓ ଦୁର୍ଘଟଣା ନିମନ୍ତେ ଜୀବନବୀମା ପ୍ରଥା ପୃଥିବୀ ଭିତରେ ଏଠି ଅତ୍ୟନ୍ତ ଅଧିକ ବ୍ୟାପକ ଓ ଉନ୍ନତ । ଦୁଃଖ ଭୋଗ ଓ ଅଭାବ ସତ୍ତ୍ୱେ ଅନ୍ୟ ଦେଶମାନଙ୍କର ଶ୍ରମିକଙ୍କ ଉପରେ ଯେଉଁ ଭୀଷଣ ଅକର୍ମା ଓ ଅନାହାର ଭୟ ଲଗିରହିଛି ତାହା ଏଠି ନାହିଁ । ଲୋକଙ୍କ ଭିତରେ ଏକ ନୂତନ ଆର୍ଥିକ ନିରାପଦତା ଭାବ ଆସିଛି ।

ପଞ୍ଚବାର୍ଷିକ ଯୋଜନାର ସାଫଲ୍ୟ ବା ବ୍ୟର୍ଥତା ବିଷୟରେ ଯୁକ୍ତି ଏକପ୍ରକାର ଅନାବଶ୍ୟକ ପରି ମନେହୁଏ । ସୋଭିଏଟ ଇଉନିୟନର ବର୍ତ୍ତମାନ ଅବସ୍ଥା ହିଁ ଏହାର ପ୍ରକୃତ ଜବାବ । ଆଉ ଏକ ପ୍ରତ୍ୟୁତ୍ତର ହେଉଛି ଏହି ଯୋଜନା ସମଗ୍ର ଜଗତର କଳ୍ପନା ଶକ୍ତି ଅଧିକାର କରିପାରିଛି । ଏବେ ପ୍ରତ୍ୟେକ ଦେଶ 'ଯୋଜନା କରିବା' କଥା ଉଠାଉଛନ୍ତି, ଏବଂ ପଞ୍ଚବାର୍ଷିକ, ଦଶବାର୍ଷିକ ଓ ତିନିବାର୍ଷିକ ଯୋଜନା ସବୁ ଶୁଣାଯାଉଛି । ଏହି ଶବ୍ଦରେ ସୋଭିଏଟ ଯାଦୁ ଲଗାଇ ଦେଇଛନ୍ତି ।

---

## ୧୮୧ : ସୋଭିଏଟ୍ ଇଉନିୟନର ଅସୁବିଧା, ବ୍ୟର୍ଥତା ଓ ସଫଳତା

ଜୁଲାଇ ୧୧, ୧୯୬୩

ସୋଭିଏଟ ରୁଷର ପଞ୍ଚବାର୍ଷିକ ଯୋଜନା ଏକ ପ୍ରକାଣ୍ଡ ପ୍ରଚେଷ୍ଟା । ପ୍ରକୃତରେ ଏହି ଯୋଜନା ଯେ କେତେ ବଡ଼ ବିପ୍ଳବ ସହିତ ସମାନ—ବିଶେଷ ଭାବରେ କୃଷି ବିପ୍ଳବରେ ପୁରୁଣାକାଳିଆ ଛୋଟ ଆକାରର ଚାଷ କରିବା ପ୍ରଣାଳୀ ସ୍ଥାନରେ ବ୍ୟାପକ ସାମୂହିକ ଓ ଯନ୍ତ୍ରଚାଳିତ ଫାର୍ମ ସ୍ଥାପନା କରାଗଲା ଏବଂ ଏକ ଶିଳ୍ପ ବିପ୍ଳବ ଫଳରେ ରୁଷ ପ୍ରଖର ଗତିରେ ଶିଳ୍ପୋନ୍ନତ ହେବାକୁ ଲାଗିଲା । କିନ୍ତୁ ଏହି ଯୋଜନାର ସର୍ବାପେକ୍ଷା ଆଗ୍ରହପ୍ରଦ ଲକ୍ଷଣ ହେଉଛି ଏହା ପଶ୍ଚାତ୍‌ରେ ଯେଉଁ ଭାବ ଥିଲା—ଏହା ରାଜନୀତି ଓ ଶିଳ୍ପରେ ଏକ ନୂତନ ଭାବର ପ୍ରବର୍ତ୍ତନ । ଏହି ଭାବ ହେଉଛି ବିଜ୍ଞାନର ଭାବ, ସମାଜ ଗଠନ ନିମନ୍ତେ ଏକ ସୁଚିନ୍ତିତ ବୈଜ୍ଞାନିକ ପ୍ରଣାଳୀ ପ୍ରୟୋଗର ପ୍ରଚେଷ୍ଟା । ପୂର୍ବରୁ କୌଣସି ଦେଶରେ ଏପରିକି ଅତି ଉନ୍ନତ ଦେଶମାନଙ୍କରେ ସୁଦ୍ଧା ଏପରି କୌଣସି ଜିନିଷ ହୋଇ ନ ଥିଲା ଏବଂ ମାନବିକ ଓ ସାମାଜିକ ବ୍ୟାପାରରେ ବୈଜ୍ଞାନିକ ପ୍ରଣାଳୀର ଏହି ପ୍ରୟୋଗ ହିଁ ସୋଭିଏଟ ଯୋଜନାର ପ୍ରଧାନ ଲକ୍ଷଣ । ଏହି କାରଣରୁ ସମଗ୍ର ଜଗତ ଆଜି ଯୋଜନା କଥା କହୁଛି, କିନ୍ତୁ ପୁଞ୍ଜିବାଦ ପରି ସାମାଜିକ ବ୍ୟବସ୍ଥାର ମୂଳଭିତ୍ତି ହେଉଛି ପ୍ରତିଯୋଗିତା ଓ ସମ୍ପତ୍ତିରେ ନ୍ୟସ୍ତ ଅଧିକାର ରକ୍ଷା କରିବା; ଏପରି ଅବସ୍ଥାରେ ସଫଳ ଯୋଜନା କରିବା କଷ୍ଟକର ।

କିନ୍ତୁ ମୁଁ ତତେ କହିଛି ଏହି ପଞ୍ଚବାର୍ଷିକ ଯୋଜନାରେ ଅନେକ କଷ୍ଟ ଭୋଗ, ଅସୁବିଧା ଓ ଅବ୍ୟବସ୍ଥା ହୋଇଗଲା । ଏଥିଲାଗି ଲୋକଙ୍କୁ ଭୀଷଣ ମୂଲ୍ୟ ଦେବାକୁ ପଡ଼ିଲା । ଅଧିକାଂଶ ଲୋକ ଏହି ମୂଲ୍ୟ ସ୍ୱେଚ୍ଛାକୃତ ଭାବରେ ପ୍ରଦାନ କଲେ ଏବଂ ପରେ ଭଲ କାଳ ଆସିବା ଆଶାରେ କେତେକ ବର୍ଷ ନିମନ୍ତେ ତ୍ୟାଗ ଓ କଷ୍ଟଭୋଗ ବରଣ କଲେ; କେତେକ ଅନିଚ୍ଛାସତ୍ତ୍ୱେ ଏବଂ କେବଳ ସୋଭିଏଟ ସରକାରର ବାଧ୍ୟତା ଯୋଗୁଁ ଏହି ମୂଲ୍ୟ ଦାନ କଲେ । ସର୍ବାପେକ୍ଷା ଅଧିକ କଷ୍ଟ ଭୋଗିଲେ କୁଲାକ ବା ଧନୀ କୃଷକମାନେ । ସେମାନଙ୍କର ଅଧିକ ସମ୍ପଦ ଓ ବିଶେଷ ପ୍ରଭାବ ଥିଲା ଓ ଏହି ନୂତନ ଯୋଜନାରେ ସେମାନେ ନିଜକୁ ଚଳାଇ ପାରିଲେ ନାହିଁ । ସେମାନେ ପୁଞ୍ଜିବାଦୀ ସମ୍ପ୍ରଦାୟ—ସାମ୍ୟବାଦ ଧାରାରେ ସାମୂହିକ ଚାଷ ହେବାରେ ବାଧା ଦେଲେ । ସେମାନେ ଅନେକ ସମୟରେ ଏହି ସମଷ୍ଟିକରଣର ବିରୋଧ କରୁଥିଲେ ବେଳେ ବେଳେ ଏହାକୁ ଭିତରୁ

ଦୁର୍ବଳ କରିବା ନିମନ୍ତେ କିମ୍ବା ଏଥିରୁ ନିଜର ଅଯଥା ବ୍ୟକ୍ତିଗତ ଲାଭ ଉଠାଇବା ନିମନ୍ତେ ସାମୁହିକ କ୍ଷେତରେ ସେମାନେ ପ୍ରବେଶ କଲେ । ସୋଭିଏଟ ସରକାର ସେମାନଙ୍କ ଉପରେ ଖୁବ୍ କଡ଼ା ବ୍ୟବସ୍ଥା କଲ । ଶତ୍ରୁଙ୍କ ତରଫରୁ ଷଡ଼ଯନ୍ତ୍ର ଓ ଗୁଇନ୍ଦାଗିରି କରୁଥିବା ସନ୍ଦେହରେ ଅନେକ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କ ପ୍ରତି ସରକାର ବଡ଼ କର୍କଶ ବ୍ୟବହାର କଲ । ଏହି କାରଣରୁ ବହୁସଂଖ୍ୟକ ଇଞ୍ଜିନିୟରଙ୍କୁ ଶାସ୍ତି ଦିଆଗଲ ଓ ଜେଲ ପଠାଗଲ । ଯେଉଁସବୁ ଅସଂଖ୍ୟ ବଡ଼ ଯୋଜନା କାର୍ଯ୍ୟକାରୀ କରାହେଉଥିଲ ସେଥିରେ ବିଶେଷ ଭାବରେ ଇଞ୍ଜିନିୟର ଦରକାର ହେଉଥିବାରୁ ଏଥିରେ ଯୋଜନାର ବି କ୍ଷତି ହେଲ ।

ପ୍ରାୟ ପ୍ରତ୍ୟେକ ସ୍ଥାନରେ ବୈଷମ୍ୟ ଥିଲ । ଯାନବାହନ ବ୍ୟବସ୍ଥା ପଛୁଇଗଲ ଏବଂ ତେଣୁ କାରଖାନା ଓ କ୍ଷେତମାନଙ୍କରେ ଯାହାସବୁ ଜିନିଷ ଉତ୍ପାଦନ କରାଯାଉଥିଲ ତାହା ଅନେକ ସମୟରେ ଯାନବାହନ ଅସୁବିଧା ସକାଶେ ପଡ଼ି ରହୁଥିଲ । ଏବଂ ଏଥିରେ ଅନ୍ୟନ୍ତ କାମ ଖରାପ ହେଉଥିଲ । ସବୁଠାରୁ ବଡ଼ ଅସୁବିଧା ହେଲ ସୁଯୋଗ୍ୟ ବିଶେଷଜ୍ଞ ଓ ଇଞ୍ଜିନିୟରଙ୍କ ଅଭାବ ।

ଏହି ପଞ୍ଚବାର୍ଷିକ ଯୋଜନା ବର୍ଷମାନଙ୍କରେ ପୃଥିବୀ ବରଂ ପୁଞ୍ଜିବାଦୀ ଦୁନିଆ କହିଲେ ଠିକ ହେବ, ସର୍ବାପେକ୍ଷା ବଡ଼ ଦୁର୍ଗତିରେ ପଡ଼ିଥିଲ—ପୂର୍ବରୁ ଏପରି କେବେ ଜଣା ନ ଥିଲ । ବେପାର ପଡ଼ିଗଲ, କାରଖାନା ବନ୍ଦ ହୋଇଗଲ ଏବଂ ଅକର୍ମୀ ସମସ୍ୟା ବଢ଼ିଲ । ଖାଦ୍ୟପଦାର୍ଥ ଓ କଞ୍ଚାମାଲ ଦର ପଡ଼ିଯିବାରୁ ସମଗ୍ର ଜଗତରେ କୃଷକମାନେ ଭୀଷଣ କଷ୍ଟ ଭୋଗିଲେ । ସୋଭିଏଟ ଇଉନିୟନରେ ଅଭୂତ କର୍ମକୁଶଳତା ଓ ନିଯୁକ୍ତି ସହିତ ଅନ୍ୟନ୍ତ କର୍ମହୀନତା ଓ ବେକାରୀର ଅଲୌକିକ ପାର୍ଥକ୍ୟ ଦେଖାଗଲ । ପୃଥିବୀ ଦୁର୍ଗତି ସୋଭିଏଟ ଇଉନିୟନକୁ ସ୍ପର୍ଶ କରି ନ ଥିଲ ପରି ବୋଧହେଲ—ଏହାର ଅର୍ଥନୀତି ଭିତ୍ତି ସମ୍ପୂର୍ଣ୍ଣ ଭିନ୍ନ ଥିଲ । କିନ୍ତୁ ଦୁର୍ଗତିର ଫଳାଫଳରୁ ସୋଭିଏଟ ବାଦ୍ ପଡ଼ିଲ ନାହିଁ; ତାହାସବୁ ଅପ୍ରତ୍ୟକ୍ଷ ଭାବରେ ପ୍ରବେଶ କଲ ଏବଂ ସୋଭିଏଟର ଅସୁବିଧା ଅତ୍ୟନ୍ତ ବଢ଼ାଇଲ । ମୁଁ ତତେ କହିଛି ସୋଭିଏଟ ବିଦେଶରୁ କଲ୍‌କବଜା କିଣୁଥିଲ ଏବଂ ବିଦେଶୀ ରାଜ୍ୟରେ କୃଷିଜାତ ଦ୍ରବ୍ୟ ବିକ୍ରୀ କରି ଏହା ତାର ଦାମ ଦେଉଥିଲ । ପୃଥିବୀ ବଜାରରେ ଖାଦ୍ୟ-ଦ୍ରବ୍ୟ ଇତ୍ୟାଦିର ଦର ପଡ଼ିଯିବାରୁ ସୋଭିଏଟ ପ୍ରାପ୍ୟରୁ କମ୍ ଧନ ପାଇଲ । କିନ୍ତୁ ଏହା ଯେଉଁ କଲକବଜା କିଣୁଥିଲ ସେଥିଲାଗି ଯଥେଷ୍ଟ ସୁନା ଉଠାଇବାକୁ ପଡ଼ିଲ ଏବଂ ତେଣୁ ଏହା ଅଧିକରୁ ଅଧିକ ଖାଦ୍ୟଦ୍ରବ୍ୟ ରପ୍ତାନୀ କଲ । ଏପରି ଭାବରେ ପୃଥିବୀ ବାଣିଜ୍ୟ ଦୁର୍ଗତି ଓ ଦରହ୍ରାସ ଫଳରେ ସୋଭିଏଟର ବହୁତ କ୍ଷତି ହେଲ ଓ ତାର ଅନେକ ହିସାବ ଓଲଟପାଲଟ ହୋଇଗଲ । ଏହା ଫଳରେ ଦେଶରେ ଅନେକ ଆବଶ୍ୟକ ଜିନିଷର ନିଅଣ୍ଟ ପଡ଼ିଲ ଏବଂ ଅଧିକ କଠିନ ବେଳ ପହୁଞ୍ଚିଲ ।

ଏକପାଖରେ ଖାଦ୍ୟଦ୍ରବ୍ୟର ନିଅଣ୍ଟ କ୍ରମେ ବଢ଼ିଲ ତେଣେ ସମଗ୍ର ଇଉନିୟନରେ

ଲୋକସଂଖ୍ୟା ଭୀଷଣ ଭାବରେ ବଢ଼ିବାରେ ଲାଗିଲା । ଶସ୍ୟ ଉତ୍ପନ୍ନର ମନ୍ଥର ପ୍ରଗତି ତୁଳନାରେ ଏହି ଲୋକସଂଖ୍ୟାର ଦ୍ରୁତ ବୃଦ୍ଧି ହିଁ ସୋଭିଏଟ୍ ପକ୍ଷରେ ପ୍ରଧାନ ସମସ୍ୟା ହେଲା । ବିପ୍ଳବ ପୂର୍ବରୁ ଇଉ. ଏସ. ଏସ୍. ଆର. ର ବର୍ତ୍ତମାନ ଅଞ୍ଚଳର ଲୋକସଂଖ୍ୟା ଥିଲା ୧,୩୦, ୦୦୦, ୦୦୦ । ଗୃହଯୁଦ୍ଧରେ ପ୍ରଭୂତ କ୍ଷତିସତ୍ତ୍ୱେ ପରବର୍ତ୍ତୀ ବର୍ଷମାନଙ୍କରେ କିପରି ବୃଦ୍ଧି ହୋଇଛି ଦେଖାଯାଉ ।

| | | |
|---|---|---|
| ୧୯୧୭ରେ | ଲୋକସଂଖ୍ୟା ଥିଲା | ୧୩୦,୦୦୦,୦୦୦ |
| ୧୯୨୬ରେ | ,, | ୧୪୯,୦୦୦,୦୦୦ |
| ୧୯୨୯ରେ | ,, | ୧୫୪,୦୦୦,୦୦୦ |
| ୧୯୩୦ରେ | ,, | ୧୫୮,୦୦୦,୦୦୦ |
| ୧୯୩୩ରେ | (ବସନ୍ତକାଳୀନ ହିସାବ) | ୧୬୫,୦୦୦,୦୦୦ |

ଏହିରୂପେ ପନ୍ଦର ବର୍ଷରୁ କିଛି ଅଧିକକାଳ ଭିତରେ ୩୫,୦୦୦,୦୦୦ ବୃଦ୍ଧି ହୋଇଛି—ଅର୍ଥାତ ଶତକରା ୨୬ ବୃଦ୍ଧି—ଏହା ଏକପ୍ରକାର ଅସାଧାରଣ ।

ମୋଟଉପରେ କେବଳ ଯେ ସମଗ୍ର ସୋଭିଏଟ୍ ଇଉନିୟନରେ ଲୋକସଂଖ୍ୟା ବୃଦ୍ଧି ହେଲା, ତାହା ନୁହେଁ, ମାତ୍ର ଏହା ବିଶେଷ ଭାବରେ ସହରମାନଙ୍କରେ ବୃଦ୍ଧିପାଇଲା । ପୁରୁଣା ସହରଗୁଡ଼ିକ ବିଶାଳରୁ ବିଶାଳତର ହେଲା ଏବଂ ଅନେକ ସମୟରେ ମରୁଭୂମି ଓ ପ୍ରାନ୍ତରମାନଙ୍କରେ ନୂତନ ଔଦ୍ୟୋଗିକ ସହରମାନ ଗଢ଼ି ଉଠିଲା । ପଞ୍ଚବାର୍ଷିକ ଯୋଜନାର ଅନେକ ପ୍ରକାଣ୍ଡ ଉଦ୍ୟମ ପାଇଁ ଗଠନ କାର୍ଯ୍ୟରେ ଆକୃଷ୍ଟ ହୋଇ ଗ୍ରାମମାନଙ୍କରୁ ବହୁ-ସଂଖ୍ୟକ କୃଷକ ସହରଗୁଡ଼ିକରେ ଆସି ଠୁଳ ହେଲେ । ୧୯୧୭ରେ ଇଉ. ଏସ୍. ଏସ୍. ଆର.ରେ ୨୪ଟି ସହର ଥିଲା; ପ୍ରତ୍ୟେକଟିର ଲୋକସଂଖ୍ୟା ୧୦,୦୦,୦୦୦ରୁ ଅଧିକ ହେବ । ୧୯୨୬ରେ ଏପରି ସହର ୩୧ଟି ହେଲା ଏବଂ ୧୯୩୩ ବେଳକୁ ଏହା ପଚାଶରୁ ଉପରକୁ ଉଠିଗଲା । ପନ୍ଦର ବର୍ଷ ଭିତରେ ସୋଭିଏଟ ଶହେରୁ ଅଧିକ ଶିଳ୍ପଜାତ ସହର ନିର୍ମାଣ କଲା । ୧୯୧୩ ଠାରୁ ୧୯୩୨ ଭିତରେ ମସ୍କୋର ଲୋକସଂଖ୍ୟା ଦ୍ୱିଗୁଣ ହୋଇଗଲା । ଏହା ୧,୬୦୦,୦୦୦ରୁ ୩,୨୦୦,୦୦୦ ହେଲା, ଲେନିନ୍‌ଗ୍ରାଡ଼ରେ ଆହୁରି ୧,୦୦୦,୦୦୦ ମିଶିଲା ଏବଂ ପ୍ରାୟ ୩,୦୦୦,୦୦୦ର ପାଖାପାଖି ହୋଇଥିଲା; ଟ୍ରାନସ କକେସିଆରେ ବାକୁର ଲୋକସଂଖ୍ୟା ମଧ୍ୟ ଦ୍ୱିଗୁଣିତ ହୋଇ ୩୩୪,୦୦୦ରୁ ୬୬,୦୦୦ ହେଲା । ସର୍ବମୋଟ ସହରର ଲୋକସଂଖ୍ୟା ୧୯୧୩ରେ ୨୦,୦୦୦,୦୦୦ ସ୍ଥାନରେ ୧୯୩୨ରେ ୩୫,୦୦୦,୦୦୦ ହୋଇଗଲା ।

ଯେଉଁ କୃଷକ ସହରକୁ ଗଲା ଓ ସେଠାରେ ଶ୍ରମିକ ହେଲା ସେ ତାର ଗ୍ରାମରେ ଯେପରି ଖାଦ୍ୟଶସ୍ୟ ଉତ୍ପନ୍ନ କରୁଥିଲା ଆଉ ତାହା କରିପାରିଲା ନାହିଁ । କାରଖାନାରେ

ମଜୁରିଆ ବା କର୍ମୀ ହିସାବରେ ସେ ମେସିନ ଜିନିଷ ବା ଗ୍ରେଡ଼ ଗ୍ରେଡ଼ ଯନ୍ତ୍ର ତିଆରି କଲ କିନ୍ତୁ ଖାଦ୍ୟଦ୍ରବ୍ୟ ଏବେ ତାକୁ ଖରିଦ କରିବାକୁ ପଡ଼ିଲା । ଏହିରୂପେ ବହୁସଂଖ୍ୟକ କୃଷକ ଗ୍ରାମରୁ ଚାଲିଆସିବାଦ୍ୱାରା ସେମାନେ ଖାଦ୍ୟ ଉତ୍ପାଦନ ପରିବର୍ତ୍ତେ ଖାଦ୍ୟଦ୍ରବ୍ୟ ଖିଆ ପାଲଟିଲେ । ଏହି ଜିନିଷଟି ଖାଦ୍ୟ ପରିସ୍ଥିତିକୁ ଆହୁରି କଷ୍ଟକର କରିଦେଲା ।

ତଥାପି ଆଉ ଏକ ଜିନିଷ ଥିଲା । ଦେଶର ଶିଳ୍ପବୃଦ୍ଧି ହେତୁ କାରଖାନାଗୁଡ଼ିକ ପାଇଁ ଅଧିକରୁ ଅଧିକ କଞ୍ଚାମାଲ ଆବଶ୍ୟକ ହେଲା । ଏହିରୂପେ ଲୁଗାକଲ ପାଇଁ ତୂଳା ଦରକାର ହେଲା । ତେଣୁ ଅନେକ ଅଞ୍ଚଳରେ ଖାଦ୍ୟଶସ୍ୟ ପରିବର୍ତ୍ତେ କପା ଓ ଅନ୍ୟ କଞ୍ଚାମାଲ ଚାଷ କରାଗଲା । ଏଥିରେ ପୁଣି ଖାଦ୍ୟଶସ୍ୟ କମ୍ ହୋଇଗଲା ।

ସୋଭିଏଟ ଇଉନିୟନର ଲୋକସଂଖ୍ୟାର ଅପୂର୍ବ ବୃଦ୍ଧି ହେଉଛି ସମୃଦ୍ଧିର ଏକ ଅଲୌକିକ ସଙ୍କେତ । ଆମେରିକା ପରି ବାହାରୁ ଲୋକ ଆସିବାରୁ ଏହା ହୋଇ ନ ଥିଲା । ଏଥିରୁ ଦେଖାଗଲା ଯେ ଯନ୍ତ୍ରଣା ଓ କ୍ଳେଶ ସତ୍ତ୍ୱେ ପ୍ରକୃତରେ ଖାଇବା ବିନା ମରିବାକୁ ପଡ଼ି ନ ଥିଲା । ଏକ କଡ଼ା କଡ଼ି ପ୍ରଥାହେତୁ ଲୋକମାନେ ଅତ୍ୟନ୍ତ ଆବଶ୍ୟକୀୟ ଖାଦ୍ୟ-ପଦାର୍ଥ ପାଇପାରିଲେ । ସୁଯୋଗ୍ୟ ନିରୀକ୍ଷକମାନେ କହନ୍ତି ଯେ ଲୋକଙ୍କ ଭିତରେ ଗୋଟାଏ ଆର୍ଥିକ ନିରାପଦତା ଭାବ ଆସିବାରୁ ଲୋକସଂଖ୍ୟା ବୃଦ୍ଧି ହେଲା । ସନ୍ତାନ ଆଉ ପରିବାର ଉପରେ ବୋଝ ହୋଇ ନ ଥିଲେ; ଷ୍ଟେଟ ବା ସରକାର ଏବେ ତାଙ୍କ ଲାଳନପାଳନ କରିବା, ଖାଇବାକୁ ଦେବା ଓ ଶିକ୍ଷା ଦେବାଲାଗି ପ୍ରସ୍ତୁତ ହୋଇଗଲା । ଆଉ ଏକ କାରଣ ହେଉଛି ସଫାଇ ଓ ଚିକିତ୍ସା ସୁବିଧା—ଏହା ଫଳରେ ଶିଶୁ ମୃତ୍ୟୁହାର ୬୭ରୁ ଶତକଡ଼ା ୧୬ ହୋଇଗଲା । ମସ୍କୋରେ ସାଧାରଣ ମୃତ୍ୟୁହାର ୧୯୧୩ରେ ହଜାର ପିଚ୍ଛା ୨୩ରୁ ବେଶି ଥିଲା; ୧୯୩୧ରେ ହଜାରକେ ଏହା ୧୩ରୁ କମ୍ ହେଲା ।

ଖାଦ୍ୟଦ୍ରବ୍ୟ ନିଅଣ୍ଟ ସାଙ୍ଗକୁ ପୁଣି ୧୯୩୧ରେ ଇଉନିୟନର କେତେକ ଅଞ୍ଚଳରେ ବର୍ଷାଭାବ ହୋଇ ଅନେକ ଅସୁବିଧା ଉପୁଜିଲା । ୧୯୩୧ ଓ ୧୯୩୨ରେ ମଧ୍ୟ ସୁଦୂର ପ୍ରାଚ୍ୟରେ ଯୁଦ୍ଧ ଭୟ ଥିଲା ଏବଂ ଅନ୍ୟ ପୁଞ୍ଜିବାଦୀ ଦେଶହିଁ ମିଳିତ ହୋଇ ଜାପାନ ଯୁଦ୍ଧ କରିବ ବୋଲି ଭୟ କରି ଦରକାର ବେଳେ ସୈନ୍ୟଙ୍କ ପାଇଁ ସୋଭିଏଟ୍ ଶସ୍ୟ ଓ ଅଧିକ ଖାଦ୍ୟଦ୍ରବ୍ୟ ସଞ୍ଚୟ କରିବାକୁ ଲାଗିଲା । ଗୋଟିଏ ପୁରାତନ ରୁଷୀୟ ପ୍ରବଚନ ଅଛି "ଭୟର ବଡ଼ ଚକ୍ଷୁ"—ତମେ ଏହାକୁ ଗ୍ରେଟ ପିଲ କମ୍ବା ସମ୍ପ୍ରଦାୟ ଓ ଜାତି ସେଉଁଥିରେ ଖଟାଅ ଦେଖିବ ଏହି ଉକ୍ତି କିପରି ସତ୍ୟ ! ଯେହେତୁ କମ୍ୟୁନିଜମ୍ ଓ ପୁଞ୍ଜିବାଦ ଭିତରେ କୌଣସି ପ୍ରକୃତ ଶାନ୍ତି ଆସିପାରେନା ଏବଂ ସାମ୍ରାଜ୍ୟବାଦୀ ଦେଶସବୁ କମ୍ୟୁନିଜମ୍ ଦମନ କରିବା ନିମନ୍ତେ ଅତ୍ୟନ୍ତ ବ୍ୟଗ୍ର ଓ ସେଥିପାଇଁ କୌଶଳ ଓ ଚକ୍ରାନ୍ତ କରିଥାନ୍ତି ସେହିହେତୁ ବଲସେଭିକମାନେ ସର୍ବଦା ଖଣ୍ଡାଧାରରେ ଚାଲୁଥାନ୍ତି ଏବଂ ସାମାନ୍ୟ ଉତ୍ତେଜନାରେ ସେମାନେ ବଡ଼ ଜିନିଷ ଘଟିବ ବୋଲି ଧରିନିଅନ୍ତି । ଅନେକ ସମୟରେ ଏପରି ବ୍ୟାକୁଳତାର

ଯଥାର୍ଥ କାରଣ ଥାଏ ଏବଂ ସେମାନଙ୍କୁ ଏପରି କି ଦେଶ ଭିତରେ ସେମାନଙ୍କର କାରଖାନା ବା ଅନ୍ୟାନ୍ୟ ବୃହତ୍ ଉଦ୍ୟମମାନ ଭିତରୁ ଭାଙ୍ଗିବା ବା ଧ୍ୱଂସକରିବା ପ୍ରଭୃତି ବ୍ୟାପକ ଉଦ୍ୟମସବୁର ସମ୍ମୁଖୀନ ହେବାକୁ ପଡ଼ିଲା ।

୧୯୩୬ ସୋଭିଏଟ୍ ଇଉନିୟନ ପକ୍ଷରେ ଏକ ସଙ୍କଟଜନକ ବର୍ଷ ଥିଲା । ସରକାର ସାମୂହିକ ସମ୍ପତ୍ତି ଚୋରି ବିରୁଦ୍ଧରେ ଅତି ଗୁରୁତର ବିଧାନ କଲା—ଅନେକ ସାମୂହିକ କ୍ଷେତରେ ଶସ୍ୟ ଚୋରି ହୋଇଥିଲା । ସାଧାରଣତଃ ରୁଷରେ କୌଣସି ମୃତ୍ୟୁଦଣ୍ଡ ନାହିଁ । କିନ୍ତୁ ପ୍ରତି-ବିପ୍ଳବରେ ଏହା ପ୍ରଚଳିତ କରାଯାଏ । ସୋଭିଏଟ୍ ସରକାର ହୁକୁମ ଜାରି କଲା ଯେ ସମ୍ପ୍ରଦାୟ-ସମ୍ପତ୍ତି ଚୋରିକରିବା ପ୍ରତି-ବିପ୍ଳବ ସଙ୍ଗେ ସମାନ ଏବଂ ତେଣୁ ଏଥିରେ ମୃତ୍ୟୁ ଦଣ୍ଡ ହେବ । କାରଣ ଷ୍ଟାଲିନ କହିଲେ "ଯଦି ପୁଞ୍ଜିବାଦୀମାନେ ବ୍ୟକ୍ତିଗତ ସମ୍ପତ୍ତି ପବିତ୍ର ଓ ଅଲଙ୍ଘନୀୟ ବୋଲି ଘୋଷଣା କରିଛନ୍ତି ଏବଂ ଏହିରୂପେ ସେମାନଙ୍କ ଅମଳର ପୁଞ୍ଜିବାଦୀ ସମାଜକୁ ଦୃଢ଼ କରନ୍ତି, ସେହିପ୍ରକାରେ ଆମେ କମ୍ୟୁନିଷ୍ଟମାନେ ତା'ଠାରୁ ବହୁତ ଅଧିକ ଭାବରେ ସାଧାରଣ ସମ୍ପତ୍ତି ପବିତ୍ର ଓ ଅଲଙ୍ଘନୀୟ ବୋଲି ଘୋଷଣା କରୁ—ଏଥିରେ ତାହା ହେଲେ ନୂତନ ସାମ୍ୟବାଦ ସାମ୍ୟବାଦୀ ଆକାରରେ ଅର୍ଥନୀତି ଶକ୍ତିଶାଳୀ ହେବ ।"

ସୋଭିଏଟ୍ ସରକାର ଅନ୍ୟ ଉପାୟରେ ଏହି ବିପତ୍ତି ଦୂର କରିବା ନିମନ୍ତେ ପ୍ରତିକାର କଲା । ଏଥିରୁ ଅତ୍ୟନ୍ତ ଗୁରୁତର ହେଉଛି ସାମୂହିକ ଓ ବ୍ୟକ୍ତିଗତ କ୍ଷେତମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସହରର ବଜାରରେ ବଳକା ଶସ୍ୟ ବିକ୍ରୀକରିବା ନିମନ୍ତେ ଅନୁମତି ଦିଆଗଲା । ଏହା ୧୯୨୧ରେ ସୈନିକ କମ୍ୟୁନିଜମ୍ କାଳପରେ 'ନେପ୍' ଆସିବା କଥା କେତେକ ପରିମାଣରେ ସ୍ମରଣ କରାଇଦିଏ, କିନ୍ତୁ ସେତେବେଳେ ଯାହାଥିଲା ସେଥିରୁ ସୋଭିଏଟ ଇଉନିୟନ ସମ୍ପୂର୍ଣ୍ଣ ପୃଥକ୍ ହୋଇଯାଇଛି । ସାମ୍ୟବାଦ ପଥରେ ଏହା ଅନେକ ଦୂର ଯାଇଛି; ଏହା ଶିଳ୍ପୋନ୍ନତ ହୋଇଛି ଏବଂ ଏହାର କୃଷି ଅଧିକ ପରିମାଣରେ ସମ୍ପ୍ରଦାୟ ହାତରେ ରହିଛି ।

୧୯୨୮ ରୁ ୧୯୩୩ ଭିତରେ ୨,୦୦,୦୦୦ ସାମୂହିକ କ୍ଷେତ ସଗଠନ କରାଗଲା ଏବଂ ଆହୁରି ମଧ୍ୟ ପ୍ରାୟ ୫,୦୦୦ ଷ୍ଟେଟ ଫାର୍ମ ଥିଲା । ଏହି ଷ୍ଟେଟ ଫାର୍ମଗୁଡ଼ିକ ଅନ୍ୟମାନଙ୍କ ପାଇଁ ଆଦର୍ଶରୂପେ ଥିଲା ଏବଂ ଏଥିରୁ କେତେକ ପ୍ରକାଣ୍ଡ ଥିଲା । ଏହିକାଳ ଭିତରେ ଅଧିକା ୧,୨୦,୦୦୦ ଟ୍ରାକ୍ଟର ପ୍ରବର୍ତ୍ତନ କରାଗଲା ଏବଂ ପ୍ରାୟ ଦୁଇ ତୃତୀୟାଂଶ କୃଷକ ଏହି ସାମୂହିକ କ୍ଷେତର ସଭ୍ୟ ହୋଇ ପଡ଼ିଲେ ।

ଆଶ୍ଚର୍ଯ୍ୟଜନକ ଭାବରେ ସମବାୟ ସଗଠନ ବୃଦ୍ଧି ପାଇଛି । ୧୯୨୮ରେ କ୍ରେତା ସମବାୟ ସମିତିର ସଭ୍ୟ ସଂଖ୍ୟା ଥିଲା '୬,୫୦୦,୦୦୦ । ୧୯୩୬ ବେଳକୁ ସଭ୍ୟସଂଖ୍ୟା ହେଲା ୭୫,୦୦୦,୦୦୦ । ଏହି ସମିତିର ବହୁତ ମୋଟା ଓ ଖୁଚୁରା ଦୋକାନ ସବୁ ରହିଛି—ଏହା ଇଉନିୟନର ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ—ସୁଦୂର ଅଭ୍ୟନ୍ତରରେ ବି ରହିଛି ।

୧୯୩୩ ଜାନୁୟାରୀ ପହିଲାରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା । ହାଲୁକା ଶିଳ୍ପଗଠନ ଲାଗି ଏଥିରେ କାର୍ଯ୍ୟ କରାଗଲା । ଏହା ଫଳରେ ଲୋକଙ୍କର ଜୀବନ ନିର୍ବାହ ମାନ ଦ୍ରୁତବେଗରେ ବୃଦ୍ଧିହେଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାର ଚାପ ଓ ଯନ୍ତ୍ରଣା ପରେ ଏଥିରେ ଅଧିକ ସ୍ୱାଚ୍ଛନ୍ଦ୍ୟ ଓ ଉତ୍ତମ ଜୀବନଧାରଣ ବ୍ୟବସ୍ଥା ମିଳିବ ବୋଲି ଆଶା କରାଯାଉଥିଲା । ସୋଭିଏଟ ରୁଷ ଶିଳ୍ପମାନଙ୍କରେ କଳକବଜା ସବୁ ତିଆର ହୋଇ ପାରୁଥିବାରୁ ଆଉ ମେସିନାରି କିଣିବା ନିମନ୍ତେ ବିଦେଶକୁ ଯିବା ଆବଶ୍ୟକ ହେଲା ନାହିଁ । କିଣିଥିବା ଜିନିଷର ମୂଲ୍ୟ ଦେବା ନିମନ୍ତେ ବହୁସଂଖ୍ୟକ ଖାଦ୍ୟଦ୍ରବ୍ୟ ଯେ ବାହାରକୁ ଦେବାକୁ ପଡ଼ୁଥିଲା ସେଥିରୁ ସୋଭିଏଟ ଏଥର ମୁକ୍ତି ପାଇଲା ।

୧୯୩୩ରେ ସାମୂହିକ ଫାର୍ମର କୃଷକ ସମ୍ମିଳନୀରେ ଭାଷଣ ଦେଇ ଷ୍ଟାଲିନ କହିଥିଲେ—

"ଆମର ଜରୁରୀ କାର୍ଯ୍ୟ ହେଉଛି ସବୁ ସାମୂହିକ ଚାଷୀମାନଙ୍କୁ ସଚ୍ଛଳସମ୍ପନ୍ନ କରିବା । ହଁ, ସାଥିଗଣ, ସଚ୍ଛଳସମ୍ପନ୍ନ ...... ବେଳେ ବେଳେ ଲୋକେ କହନ୍ତି; ସାମ୍ୟବାଦ ଯଦି ହେଲାଣି ତେବେ ଆମେ ଆଉ କାର୍ଯ୍ୟ କରିବୁ କାହିଁକି ? ଆଗେ ଆମେ କାର୍ଯ୍ୟ କରୁଥିଲୁ । ଆମେ ଏବେ କାର୍ଯ୍ୟ କରୁଛେ । ଆମେ କାର୍ଯ୍ୟ ବନ୍ଦ କରିବାର ବେଳ ପହଞ୍ଚି ନାହିଁ କି ? ନା, ସାମ୍ୟବାଦ ଶ୍ରମ ଉପରେ ଗଢ଼ା .....ସାମ୍ୟବାଦ ଦାବୀ କରେ ସମସ୍ତ ଲୋକ ସାଧୁଭାବରେ କାର୍ଯ୍ୟକରୁ—ଅନ୍ୟମାନଙ୍କ ପାଇଁ ନୁହେଁ, ଧନୀକ ପାଇଁ ନୁହେଁ, ଶୋଷକଙ୍କ ପାଇଁ ନୁହେଁ, ମାତ୍ର ନିଜ ପାଇଁ, ସମାଜ ପାଇଁ ।"

କାର୍ଯ୍ୟ ରହିଛି ଓ ଅବଶ୍ୟ ରହିବ, ଭବିଷ୍ୟତରେ ଯୋଜନାର ପ୍ରଥମ କାଳ ଅପେକ୍ଷା ଏହା ଆମୋଦାତ୍ମକ ଓ ହାଲୁକା ହେବାର ସମ୍ଭାବନା ରହିଛି । ବାସ୍ତବିକ ସୋଭିଏଟ ଇଉନିୟନର ନୀତିବାକ୍ୟ ହେଉଛି "ଯେ କାମ କରିବ ନାହିଁ, ସେ ଖାଇବାକୁ ପାଇବ ନାହିଁ ।" କିନ୍ତୁ ବଲ୍‌ଶେଭିକ୍‌ମାନେ କାର୍ଯ୍ୟରେ ଏକ ନୂତନ ଜିନିଷ ଯୋଗକଲେ; ଏହା ସାମାଜିକ ମଙ୍ଗଳପାଇଁ କାର୍ଯ୍ୟ କରିବାର ଆକାଂକ୍ଷା । ଅତୀତରେ ଏହି ଉଦ୍ୟମରେ ଆଦର୍ଶବାଦୀ ଓ କେହି କେହି ବ୍ୟକ୍ତି ବିଶେଷ କାର୍ଯ୍ୟ ପ୍ରେରଣା ଲାଭ କରିଛନ୍ତି କିନ୍ତୁ ସମଗ୍ର ସମାଜ ଏହା ଗ୍ରହଣ କରିଥିବାର ଓ ଏପରି ଉଦ୍ଦେଶ୍ୟର ପ୍ରତିଷ୍ଠା ତା ଉପରେ ପଡ଼ିଥିବାର ପୂର୍ବରୁ ଆଉ ଦୃଷ୍ଟାନ୍ତ ନାହିଁ । ପୁଞ୍ଜିବାଦର ଭିତ୍ତି ହେଉଛି ସର୍ବଦା ଅନ୍ୟମାନଙ୍କ ବିନିମୟରେ ପ୍ରତିଯୋଗିତା ଓ ବ୍ୟକ୍ତିଗତ ଲାଭ । ସୋଭିଏଟ ଇଉନିୟନରେ ଏହି ଲାଭ ମତଲବ ପରିବର୍ତ୍ତେ ସାମାଜିକ ମଙ୍ଗଳ ଅଭିପ୍ରାୟ ଦେଖା ଦେଇଛି ଏବଂ ଜଣେ ଆମେରିକାନ୍ ଲେଖକ ବର୍ଣ୍ଣନା କରିଛନ୍ତି ରୁଷର ଶ୍ରମିକମାନେ "ପରସ୍ପରର ଅଧୀନତା ସ୍ୱୀକାରର ଅଭାବ ଓ ଭୟର ସ୍ୱତନ୍ତ୍ରତା ଉପଭୋଗେ" ଏହା ଶିକ୍ଷା କରୁଛନ୍ତି । ପ୍ରତ୍ୟେକ ସ୍ଥାନରେ ଯେଉଁ ଦାରିଦ୍ର୍ୟ ଓ ଅନିଶ୍ଚିତତାର ଶୋଷଣ ଭୟ ହେତୁ ଜନତା ଦବିଯାଆନ୍ତି, ତାହା ଲୋପ ହେବା ଏକ ବଡ଼ ଲାଭ । ବୁଝାଯାଏ ଯେ ସୋଭିଏଟ ଇଉନିୟନରେ ଏହା ଫଳରେ ମାନସିକ ରୋଗ ବିଶେଷ ହୋଇଯାଉଛି ।

ତେଣୁ ଏହି ମଜଘଟା ବର୍ତ୍ତମାନଙ୍କରେ ରୁଷର ପ୍ରତ୍ୟେକ ସ୍ଥାନରେ ଏବଂ ପ୍ରାୟ ପ୍ରତ୍ୟେକ ଜନପଦରେ ବୃଦ୍ଧି ଦେଖା ଦେଇଛି—ଏହି ବୃଦ୍ଧି ଯନ୍ତ୍ରଣାଦାୟକ ଓ ଅସାମଞ୍ଜସ୍ୟ ପୂର୍ଣ୍ଣ; ମାତ୍ର ତଥାପି ଏଥିରେ ସହର ଓ ଶିଳ୍ପ ପ୍ରସାରିତ ହେଲା; ପ୍ରକାଣ୍ଡ ସାମୂହିକ କ୍ଷେତସବୁ ଓ ବଡ଼ବଡ଼ ସମବାୟ ସମିତି, ବେପାର, ଲୋକସଂଖ୍ୟା ଏବଂ ସଂସ୍କୃତି, ବିଜ୍ଞାନ ଓ ଶିକ୍ଷାଦିବୁ ବ୍ୟାପିଲା । ସର୍ବୋପରି ବଲଟିକ୍ ସାଗରରୁ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ଏବଂ ପାମୀର ଓ ହିନ୍ଦୁକୁଶ ପର୍ବତଠାରୁ ମଧ୍ଯ ଏସିଆ ପର୍ଯ୍ୟନ୍ତ ସୋଭିଏଟ୍ ରୁଷରେ ବାସ କରୁଥିବା ଅସଂଖ୍ୟ ବିଭିନ୍ନ ଲୋକଙ୍କ ଭିତରେ ଐକ୍ୟ ଓ ଦୃଢ଼ତା ବୃଦ୍ଧି ପାଇଥିବାର ଦେଖାଗଲା ।

ସାଧାରଣ ଭାବରେ ସୋଭିଏଟ୍ ରୁଷର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ଦିଗରେ ପ୍ରଗତି ସମ୍ବନ୍ଧରେ ତୋତେ ଲେଖିବା ନିମନ୍ତେ ମୋର ଲୋଭ ହେଉଛି, ମାତ୍ର ମୁଁ ନିଜକୁ ସଂଯତ କରିବି । ମୁଁ ତତେ କେତେ ଏଣୁତେଣୁ କଥା କହିବି—ଏଥିରେ ତୋର ଆଗ୍ରହ ଜାତ ହୋଇପାରେ । ଅନେକ ସୁଯୋଗ୍ୟ ବିଶେଷଜ୍ଞଙ୍କ ମତରେ ପ୍ରଚଳିତ ଶିକ୍ଷାପଦ୍ଧତି ଭିତରେ ରୁଷର ଶିକ୍ଷା ପଦ୍ଧତି ଉତ୍କୃଷ୍ଟ ଏବଂ ସମୟୋପଯୋଗୀ । ନିରକ୍ଷରତା ପ୍ରାୟ ଦୂର ହୋଇଛି ଏବଂ ମଧ୍ୟ-ଏସିଆର ଉଜ୍‌ବେକିସ୍ଥାନ ଓ ତୁର୍କମେନସ୍ଥାନର ଅତି ଅଦ୍ଭୁତ ଉନ୍ନତି ହୋଇଛି । ଏହି ମଧ୍ୟ-ଏସିଆ ଅଞ୍ଚଳରେ ୧୯୧୩ରେ ୧୬ ଟି ସ୍କୁଲ ଥିଲା ଓ ଛାତ୍ର ସଂଖ୍ୟା ଥିଲା ୬୬୦୦; ୧୯୩୬ରେ ସେଠାରେ ହେଲା ୬୯୭୫ଟି ସ୍କୁଲ—ଛାତ୍ର ସଂଖ୍ୟା ୭,୦୦,୦୦୦ ସେଥିରୁ ପୁଣି ବାଳିକା ହେଉଛନ୍ତି ୧।୩ ଅଂଶ । ବାଧ୍ୟତାମୂଳକ ବ୍ୟାପକ ଶିକ୍ଷା ପ୍ରବର୍ତ୍ତନ କରାଯାଇଛି । ଏହି ଅଲୌକିକ ପ୍ରଗତି ପସନ୍ଦ କରିବାକୁ ହେଲେ ସ୍ମରଣ ରଖିବା ଦରକାର ଯେ ଖୁବ୍ ଅଳ୍ପକାଳ ହେଲା ବାଳିକାମାନେ ଅନ୍ତଃପୁରରେ ରହୁଥିଲେ ଏବଂ ଦୁନିଆର ଏହି ଅଞ୍ଚଳରେ ସାଧାରଣରେ ବାହାରିବା ନିମନ୍ତେ ସେମାନଙ୍କୁ ଅନୁମତି ଦିଆଯାଉ ନ ଥିଲା । କୁହାଯାଏ ଯେ ଲଟିନ ଅକ୍ଷର ବ୍ୟବହାର ଯୋଗୁଁ ଏପରି ଦ୍ରୁତ ପ୍ରଗତି ହୋଇ ପାରିଲା—ସ୍ଥାନୀୟ ବିଭିନ୍ନ ଅକ୍ଷର ଅପେକ୍ଷା ଏଥିରେ ଶିକ୍ଷା ଖୁବ୍ ସହଜ ହୋଇପଡ଼ିଲା । ତୋର ମନେଥିବ କେମାଲ ପାଶା ପୁରାତନ ଆରବୀ ଭାଷା ପରିବର୍ତ୍ତେ ଲଟିନ ଅକ୍ଷର ପ୍ରଚଳନ କରିବା କଥା ମୁଁ କହିଥିଲି । ସେ ସୋଭିଏଟ ପ୍ରୟୋଗରୁହିଁ ଏହି ଭାବ ଓ ବିଭିନ୍ନ ସ୍ଥାନରେ ଏହା ପ୍ରୟୋଗ ହେବା କଥା ଜାଣିଲେ । ୧୯୨୩ରେ କକେସସ ପ୍ରଜାତନ୍ତ୍ର ସବୁ ଆରବୀ ଅକ୍ଷର ଛାଡ଼ି ଦେଲେ ଏବଂ ଲଟିନ ଅକ୍ଷର ଗ୍ରହଣ କଲେ । ନିରକ୍ଷରତା ଦୂରୀକରଣରେ ଏହା ଖୁବ୍ ସଫଳ ହେଲା ଏବଂ ସୋଭିଏଟ ଇଉନିୟନରେ ଅନ୍ୟ ଅଧିକାଂଶ ଜାତି—ଚୀନା, ମାଙ୍ଗୋଲ, ତୁର୍କି, ଟାଟାର, ବୁରିୟତ, ବସ୍‌କିର, ଟାଜିକ୍ ଓ ଆହୁରି ଅନେକ ଲଟିନ ଅକ୍ଷର ଗ୍ରହଣ କଲେ । ଭାଷା ସର୍ବଦା ସ୍ଥାନୀୟ ଭାଷା ହୋଇ ରହିଲା, କେବଳ ଅକ୍ଷର ବଦଳିଲା ।

ଶୁଣିଲେ ତୁ ବୋଧହୁଏ ଖୁସି ହେବୁ ଯେ ସୋଭିଏଟ୍ ଇଉନିୟନର ସବୁ ସ୍କୁଲ ପିଲାଙ୍କ ଭିତରୁ ୨।୩ ଅଂଶରୁ ଅଧିକ ପିଲାଙ୍କୁ ସ୍କୁଲରେ ଦ୍ୱିପ୍ରହରବେଳେ ଖାଇବାକୁ ଦିଆ-

ଯାଏ । ଏହା ଅବଶ୍ୟ ବିନା ପଇସାରେ ମିଳେ ଏବଂ ଶିକ୍ଷା ବି ସମ୍ପୂର୍ଣ୍ଣ ମାଗଣା—ଶ୍ରମିକ ରାଷ୍ଟ୍ରରେ ଏହା ଅବଶ୍ୟ ହେବାର କଥା ।

ସାକ୍ଷରତା ବୃଦ୍ଧି ଓ ଶିକ୍ଷା ପ୍ରଗତି ଫଳରେ ବିଶାଳ ପାଠକ ଶ୍ରେଣୀ ସୃଷ୍ଟି ହୋଇଛନ୍ତି ଏବଂ ସମ୍ଭବତଃ ଅନ୍ୟ କୌଣସି ଦେଶ ଅପେକ୍ଷା ଏଠାରେ ଅଧିକ ପୁସ୍ତକ ଓ ସମ୍ବାଦପତ୍ର ମୁଦ୍ରଣ କରାଯାଏ । ଏହିସବୁ ପୁସ୍ତକ ଭିତରୁ ଅଧିକାଂଶ ଗମ୍ଭୀର ଓ 'ଭାରି' ପୁସ୍ତକ —ଅନ୍ୟ ଦେଶ ପରି ହାଲୁକା ଉପନ୍ୟାସ ନୁହେଁ । ରୁଷ ଶ୍ରମିକ ଇଞ୍ଜିନିୟରିଙ୍ଗ୍ ଓ ଇଲେକ୍ଟ୍ରିକ୍ ବିଷୟରେ ଏତେ ଆଗ୍ରହାନ୍ୱିତ ଯେ ସେ ଗଳ୍ପ ପୁସ୍ତକ ଅପେକ୍ଷା ଏ ସମ୍ବନ୍ଧରେ ପୁସ୍ତକ ପଢ଼ିବାକୁ ପସନ୍ଦ କରେ । ମୋର ବିଶ୍ୱାସ ରକ୍ଷଣଶୀଳ ବଲସେଭିକମାନେ ପରୀ କାହାଣୀ ସବୁ ପସନ୍ଦ ନ କରୁଥିଲେ ମଧ୍ୟ ଛୋଟ ପିଲାମାନଙ୍କ ପାଇଁ ଅତି ସୁନ୍ଦର ପୁସ୍ତକ ଏପରିକି ପରୀ କାହାଣୀ ବର୍ଣ୍ଣିତ ବହି ବି ଅଛି ।

ନିର୍ମଳ ବିଜ୍ଞାନ ଓ ତାର ଅସଂଖ୍ୟ ପ୍ରୟୋଗ ଉଭୟ ଦିଗରେ ସୋଭିଏଟ୍ ରୁଷ ପ୍ରଥମ ଶ୍ରେଣୀରେ ରହିଛି । ବିଜ୍ଞାନର ବିଭିନ୍ନ ଶାଖାରେ ଓ ପ୍ରୟୋଗଶାଳାଲାଗି ଅସଂଖ୍ୟ ପ୍ରକାଣ୍ଡ ଅନୁଷ୍ଠାନ ସବୁ ଗଢ଼ି ଉଠିଛି । ଲେନିନଗ୍ରାଡରେ ଏକ ବିଶାଳ ଉଦ୍ଭିଦ ଶିଳ୍ପ ଅନୁଷ୍ଠାନ ରହିଛି—ଏଠାରେ ୨୮ ହଜାର ପ୍ରକାର ବିଭିନ୍ନ ଗହମ ରହିଛି । ଉଡ଼ାଜାହାଜ ଜରିଆରେ ଧାନ ବୁଣିବା ପ୍ରଣାଳୀ ଏହି ଅନୁଷ୍ଠାନରେ ପରୀକ୍ଷା ହେଉଛି ।

ଜାର ଓ ସାମନ୍ତମାନଙ୍କର ପୁରାତନ ପ୍ରାସାଦସବୁ ଏବେ ଯାଦୁଘର, ବିଶ୍ରାମାଗାର ଓ ଲୋକଙ୍କ ସ୍ୱାସ୍ଥ୍ୟ ନିବାସରେ ପରିଣତ ହୋଇଛି । ଲେନିନଗ୍ରାଡ ନିକଟରେ ଗୋଟିଏ ଛୋଟ ସହରକୁ ଜାରକୋ ସେଲୋ (ଅର୍ଥ "ଜାରର ଗ୍ରାମ") ବୋଲି କୁହାଯାଏ; ଏଠାରେ ଦୁଇଟି ପ୍ରକାଣ୍ଡ ପ୍ରାସାଦ ରହିଛି ଏବଂ ଜାର ଗ୍ରୀଷ୍ମକାଳରେ ସେଠାରେ ରହୁଥିଲା । ସେ ନାମ ବଦଳି ଏବେ ଡେଟସ୍କୋ ସେଲୋ ("ପିଲାଙ୍କ ଗ୍ରାମ") ହୋଇଛି ଏବଂ ମୋର ମନେ ହୁଏ ପୁରାତନ ପ୍ରାସାଦ ପିଲା ଓ ଯୁବକମାନଙ୍କ ପାଇଁ ବ୍ୟବହୃତ ହେଉଛି । ଆଜି ସୋଭିଏଟ ଭୂମିରେ ପିଲା ଓ ଯୁବକମାନେ ଅନୁଗୃହୀତ ବ୍ୟକ୍ତି ବୋଲି କୁହାଯାଇପାରେ, ଅନ୍ୟମାନେ ହୁଏତ ଅଭାବ ଭୋଗନ୍ତି । ମାତ୍ର ସେମାନେ ସବୁଥିରେ ଉତ୍କୃଷ୍ଟ ଜିନିଷ ପାଆନ୍ତି । ତାଙ୍କର ପାଇଁହିଁ ବର୍ତ୍ତମାନ ପୁରୁଷ କାର୍ଯ୍ୟ କରୁଛି, କାରଣ ତାଙ୍କ ଅମଳରେ ଯଦି ଶେଷରେ ସାମାଜିକରଣ ଓ ବୈଜ୍ଞାନିକ ରାଷ୍ଟ୍ର ପ୍ରତିଷ୍ଠା ହୋଇଯାଏ, ତାହା ହେଲେ ଏହିମାନେହିଁ ତାହାର ଉତ୍ତରାଧିକାରୀ ହେବେ । ମସ୍କୋରେ ଗୋଟିଏ ବିରାଟ "ମାତା ଓ ସନ୍ତାନର ରକ୍ଷା ନିମନ୍ତେ କେନ୍ଦ୍ର ଅନୁଷ୍ଠାନ" ରହିଛି ।

ଅନ୍ୟ ଯେକୌଣସି ଦେଶ ଅପେକ୍ଷା ବୋଧହୁଏ ରୁଷରେ ନାରୀମାନଙ୍କର ବେଶୀ ସ୍ୱାଧୀନତା ରହିଛି ଏବଂ ସେଥି ସଙ୍ଗେ ସଙ୍ଗେ ବି ରାଷ୍ଟ୍ର ତାଙ୍କ ସକାଶେ ବିଶେଷ ରକ୍ଷା

ବ୍ୟବସ୍ଥା କରୁଛି । ସେମାନେ ସବୁ ପେଶା ଧରନ୍ତି ଏବଂ ତାଙ୍କ ଭିତରୁ ବହୁ ସଂଖ୍ୟକ ଇଞ୍ଜିନିୟର ହୋଇଛନ୍ତି । ପ୍ରଥମ ନାରୀ ରାଷ୍ଟ୍ରଦୂତ ହୋଇଛନ୍ତି ବୁଢ଼ୀ ବଲସେଭିକ ମାଡାମ କୋଲେଣ୍ଟେଇ—ଅନ୍ୟ କୌଣସି ସରକାର ଏପରି କରିନାହିଁ । ଲେନିନଙ୍କ ବିଧବା ସ୍ତ୍ରୀ କ୍ରୁପ୍‌ସ୍କାୟା ସୋଭିଏଟ୍ ଶିକ୍ଷା ବିଭାଗର ଶ୍ରେଷ୍ଠକର୍ତ୍ତ୍ରୀ ହୋଇ ରହିଛନ୍ତି ।

ସୋଭିଏଟ୍ ଇଉନିୟନ ଏକ ଉତ୍ତେଜନାପୂର୍ଣ୍ଣ ସ୍ଥାନ—ସେଠାରେ ଦିନକୁ ଦିନ ଓ ଘଣ୍ଟାକୁ ଘଣ୍ଟା ଏହି ସବୁ ପରିବର୍ତ୍ତନ ହେଉଛି । କିନ୍ତୁ ସାଇବେରିଆର ମରୁପ୍ରାନ୍ତର ଓ ମଧ୍ୟ-ଏସିଆର ପୁରାତନ ଉପତ୍ୟକା ଅଞ୍ଚଳପରି ଏହି ଦେଶର ଅନ୍ୟ କୌଣସି ଅଞ୍ଚଳ ଏତେ ଉତ୍ତେଜନାପ୍ରଦ ଓ ଚିତ୍ତାକର୍ଷକ ନୁହେଁ । ଏହି ଦୁଇଟିଯାକ ଅଞ୍ଚଳ ଯୁଗ ଯୁଗ ଧରି ମନୁଷ୍ୟ ସମାଜର ପରିବର୍ତ୍ତନ ଓ ଉନ୍ନତିଠାରୁ ବିଚ୍ଛିନ୍ନ ହୋଇ ରହିଥିଲା ଏବଂ ଏବେ ପ୍ରଖର ଗତିରେ ଅଗ୍ରସର ହୋଇ ଚାଲିଛି । ଏହି ଦ୍ରୁତ ପରିବର୍ତ୍ତନ ସମ୍ବନ୍ଧରେ ତୋତେ ଗୋଟାଏ ଧାରଣା ଦେବା ନିମନ୍ତେ ମୁଁ ଟାଡ୍‌ଜାକିସ୍ଥାନ ବିଷୟରେ କିଛି କହିବି । ଏହା ସମ୍ଭବତଃ ସୋଭିଏଟ୍ ଇଉନିୟନରେ ସର୍ବାପେକ୍ଷା ଅନୁନ୍ନତ ଅଞ୍ଚଳ ଥିଲା ।

ପାମୀର ପର୍ବତ ଉପତ୍ୟକାରେ ଟାଡ୍‌ଜାକିସ୍ଥାନ ଅବସ୍ଥିତ—ଓକସସ ନଦୀ ଉତ୍ତରକୁ, ଆଫଗାନିସ୍ଥାନ ଓ ଚୀନା ତୁର୍କିସ୍ଥାନ ସୀମାନ୍ତକୁ ଲାଗିଛି ଏବଂ ଭାରତୀୟ ସୀମାନ୍ତରୁ ଏହା ବିଶେଷ ଦୂର ନୁହେଁ, ଏହା ବୋଖାରା ଅମୀରମାନଙ୍କ ଅଧୀନରେ ଥିଲା—ଏମାନେ ରୁଷ ସମ୍ରାଟଙ୍କର କରଦ ରାଜା ଥିଲେ । ୧୯୨୦ରେ ବୋଖାରାରେ ଏକ ସ୍ଥାନୀୟ ବିପ୍ଳବ ହେଲା —ଅମୀରକୁ ତଡ଼ି ଦିଆଗଲା ଏବଂ ଏକ ବୋଖାରା ଲୋକଙ୍କର ସୋଭିଏଟ୍ ପ୍ରଜାତନ୍ତ୍ର ସ୍ଥାପିତ ହେଲା । ତା ପରେ ଗୃହଯୁଦ୍ଧ ଆରମ୍ଭ ହେଲା ଏବଂ ଏହି ଗୋଳମାଳ ହେବା ପରେ ତୁର୍କିରେ ଜନପ୍ରିୟ ଥିବା ନେତା ଏନଭେର ପାଶାଙ୍କର ମୃତ୍ୟୁ ଘଟିଲା । ବୋଖାର ପ୍ରଜାତନ୍ତ୍ରକୁ ଉଜବେକ ସୋସାଲିଷ୍ଟ ସୋଭିଏଟ୍ ପ୍ରଜାତନ୍ତ୍ର ବୋଲି କହିଲେ ଏବଂ ଏହା ଇଉ. ଏସ୍. ଏସ୍. ଆର୍.ର ଏକ ଅଙ୍ଗୀଭୂତ ସାର୍ବଭୌମ ପ୍ରଜାତନ୍ତ୍ର ହୋଇ ରହିଲା । ୧୯୨୫ରେ ଉଜବେକ ଅଞ୍ଚଳ ଭିତରେ ଏକ ସ୍ୱତନ୍ତ୍ର ଟାଡ୍‌ଜାକି ପ୍ରଜାତନ୍ତ୍ର ଗଢ଼ାହେଲା । ୧୯୧୯ରେ ଟାଡ୍‌ଜାକିସ୍ଥାନ ଅଖଣ୍ଡ ପ୍ରଜାତନ୍ତ୍ର ହେଲା ଏବଂ ଏହା ସୋଭିଏଟ୍ ସଂଘ—ଇଉ. ଏସ୍. ଏସ୍. ଆର.ର ସାତଟି ପ୍ରଜାତନ୍ତ୍ରର ଗୋଟିଏ ହୋଇ ରହିଲା ।

ଟାଡ୍‌ଜାକିସ୍ଥାନ ଏ ମର୍ଯ୍ୟାଦା ଲାଭ କଲା, କିନ୍ତୁ ଏହା ଏକ କ୍ଷୁଦ୍ର ଓ ଅନୁନ୍ନତ ଅଞ୍ଚଳ ଥିଲା—ଏହାର ଲୋକ ସଂଖ୍ୟା ୧୦,୦୦,୦୦୦ରୁ କମ୍ ହେବ; ପ୍ରାୟ କୌଣସି ଠିକଣା ଗମନାଗମନ ପଥ ନ ଥିଲା—ରାସ୍ତା ବୋଲିଲେ କେବଳ ଓଟ ଯିବା ପଥ ଥିଲା । ନୂତନ ରାଜୁତି ଅଧୀନରେ ରାସ୍ତା ଉନ୍ନତି, ଜଳସେଚନ ଓ ଚାଷ, ଶିଳ୍ପ, ଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଜରୁରୀ ବିଧାନ କରାଗଲା । ମଟର ରାସ୍ତା ସବୁ ନିର୍ମିତ ହେଲା, କପା-ଚାଷ ଆରମ୍ଭ ହେଲା ଏବଂ ଜଳସେଚନ ସକାଶେ ଏହା ଖୁବ୍ ସଫଳ ହେଲା । ୧୯୩୧ ମଧ୍ୟଭାଗ ବେଳକୁ

କପା କ୍ଷେତର ଶତକଡ଼ା ୬୦ରୁ ଅଧିକ ସାମୂହିକ କ୍ଷେତ ହୋଇ ଯାଇଥିଲି ଏବଂ ଶସ୍ୟ ଉତ୍ପନ୍ନ ହେଉଥିବା ଅଧିକାଂଶ ଅଞ୍ଚଳ ବି ସାମୂହିକ କ୍ଷେତଦ୍ୱାରା ହେଉଥିଲି । ଏକ ବିଦ୍ୟୁତ ଶକ୍ତି-ଆଗାର ସ୍ଥାପିତ ହେଲି ଓ ଆଠଟି କପାମିଲ୍ ଏବଂ ପନୋଟି ତେଲ୍ କଲ ଗଢ଼ି ଉଠିଲି । ଏକ ରେଲ୍‌ପଥ ନିର୍ମିତ ହେଲି—ଏହା ଉଜବେକିସ୍ଥାନ ଦେଇ ସୋଭିଏଟ ଇଉନିୟନର ବଡ଼ ରେଲବାଇ ସହି ସଂଯୋଗ କରିଗଲି ଏବଂ ପ୍ରଧାନ ଆକାଶପଥ ସହିତ ସମ୍ପର୍କ ସ୍ଥାପନ କରିଇ ଏକ ଉଡ଼ାଜାହାଜ ବିଭାଗ ବି ସ୍ଥାପିତ ହେଲି ।

୧୯୨୯ରେ ସମଗ୍ର ରାଜ୍ୟରେ ଗୋଟିଏ ମାତ୍ର ଚିକିତ୍ସାଳୟ ଥିଲି । ୧୯୩୨ରେ ୬୧ଟି ଚିକିତ୍ସାଳୟ ଓ ୩୬ଟି ଦନ୍ତ ଚିକିତ୍ସାଳୟ ଥିଲି—ଏଥିରେ ୨୧୨୫ ରୋଗୀଙ୍କ ପାଇଁ ବ୍ୟବସ୍ଥା ଥିଲି ଓ ୨୦ ଜଣ ଡାକ୍ତର ଥିଲେ । ନିମ୍ନଲିଖିତ ହିସାବରୁ ଶିକ୍ଷା ଦିଗରେ ପ୍ରଗତି ଜଣାପଡ଼ିବ:—

୧୯୨୫ରେ କେବଳ ୬ଟି ଆଧୁନିକ ସ୍କୁଲ୍

୧୯୨୬ ଶେଷ ବେଳକୁ ୧୧୩ ସ୍କୁଲ ଓ ୨୩୦୦ ଛାତ୍ର

୧୯୨୯ରେ ୫୦୦ ସ୍କୁଲ

୧୯୩୧ରେ ୨୦୦୦ରୁ ଅଧିକ ଶିକ୍ଷାନୁଷ୍ଠାନ—ଛାତ୍ର ସଂଖ୍ୟା ୧୨୦,୦୦୦ରୁ ବେଶୀ ।

ଅବଶ୍ୟ ଶିକ୍ଷାଦିଗରେ ଅର୍ଥ ବ୍ୟୟ ଏକାଥରକେ ବୃଦ୍ଧି ପାଇଛି । ୧୯୨୯-୩୦ରେ ସ୍କୁଲ ଆୟବ୍ୟୟ ହିସାବ ଫର୍ଦ୍ଦ ଥିଲି ୮୦୦୦,୦୦୦ ରୁବେଲ୍ ପରିକାଶେ (ଏକ ରୁବେଲ୍ ଦୁଇ ଶିଲିଙ୍ଗ୍ ସଙ୍ଗେ ସମାନ; କିନ୍ତୁ ଏହାର ପ୍ରକୃତ ମୂଲ୍ୟ ପୃଥକ୍ ଅଛି); ୧୯୩୦-୩୧ ପାଇଁ ଆୟ-ବ୍ୟୟ ଫର୍ଦ୍ଦ ହେଲି ୨୮,୦୦୦,୦୦୦ ରୁବେଲ୍ । ସାଧାରଣ ସ୍କୁଲ ଛଡ଼ା କିଣ୍ଡରଗାର୍ଟନ, ଟ୍ରେନିଙ୍ଗ୍ ସ୍କୁଲ, ଲାଇବ୍ରେରି, ପଠନାଗାର ଆଦି ଖୋଲି ହୋଇଛି । ଲୋକଙ୍କ ଭିତରେ ଶିକ୍ଷାଲାଗି ଅଦ୍ଭୁତ ଲାଳସା ଦେଖାଯାଉଛି ।

ଏପରି ଅବସ୍ଥାରେ ନାରୀମାନଙ୍କୁ ପର୍ଦ୍ଦା ଅନ୍ତରାଳରେ ଅଲଗା କରି ରଖାଯାଇ ପାରେନା ଏବଂ ଏହା ଦ୍ରୁତଗତିରେ ଦୂର ହୋଇ ଯାଉଛି ।

ଏସବୁ ପ୍ରାୟ ଅବିଶ୍ୱାସଯୋଗ୍ୟ ପରି ମନେ ହେଉଛି । ୧୯୩୨ ପ୍ରଥମ ଭାଗରେ ଜଣେ ଦକ୍ଷ ଆମେରିକାନ ଟାଡ଼ଜାକିସ୍ଥାନ ଯାଇଥିଲେ । ତାଙ୍କ ଲେଖାରୁ ମୁଁ ଏହି ସମ୍ବାଦ ଓ ହିସାବ ଆଣିଛି । ସମ୍ଭବତଃ ସେହି ଦିନଠାରୁ ଆହୁରି ଅଧିକା ଅନେକ ପରିବର୍ତ୍ତନ ସେଠି ହୋଇଗଲାଣି ।

ଦେଖାଯାଏ ସୋଭିଏଟ ଇଉନିୟନ ଶିକ୍ଷା ଓ ଅନ୍ୟ ଉଦ୍ଦେଶ୍ୟରେ ଶିଶୁ ଟାଡଜାକୀ ପ୍ରଜାତନ୍ତ୍ରକୁ ସାହାଯ୍ୟ କରିଥିଲି; କାରଣ ଇଉନିୟନର ନୀତି ହେଉଛି ଅନୁନ୍ନତ ଅଞ୍ଚଳକୁ

ଉନ୍ନତ କରିବା । ଯାହାହେଉ ସେ ଦେଶରେ ଖଣିଜ ସମ୍ପଦ ପୂର୍ଣ୍ଣ ହୋଇ ରହିଛି । ସୁନା, ତେଲ ଓ କୋଇଲା ମିଳୁଛି ଏବଂ ଅନ୍ୟାନ୍ୟ ମଧ୍ୟ ଅନୁମାନ କରାଯାଉଛି, ସୁନାଖଣିମାନ ଖୁବ୍ ବିସ୍ତୃତ ଭାବରେ ରହିଛି । ଆଗ କାଳରେ ଚେଙ୍ଗିଜ୍ ଖାଁଙ୍କ ଅମଳ ପର୍ଯ୍ୟନ୍ତ ଏହି ସୁନା ଖଣି ସବୁ କାର୍ଯ୍ୟ କରୁଥିଲା, କିନ୍ତୁ ଆପାତତଃ ସେହିଦିନଠାରୁ ଆଉ କେହି ତାର ଉପଯୋଗ କରିନାହାନ୍ତି ।

୧୯୩୧ରେ ଟାଉଙ୍ଗଙ୍କାସ୍ଥାନରେ ଏକ ପ୍ରତି-ବିପ୍ଳବୀ ଦଳ ବିଦ୍ରୋହ କଲେ ଏବଂ ଯେଉଁସବୁ ଧନୀ ଭୂସ୍ୱାମୀ ଶ୍ରେଣୀ ଏହି ଦେଶରୁ ଆଫଗାନିସ୍ଥାନକୁ ପଳାଇ ଯାଇଥିଲେ ସେମାନଙ୍କ ଭିତରୁ ଅନେକେ ଦେଶକୁ ଆକ୍ରମଣ କଲେ । କୃଷକମାନେ ଏହାକୁ ସମର୍ଥନ ନ କରିବାରୁ ଏହି ଜାଗରଣ ଫିକ୍କା ଗଲା ।

ଏହି କାହାଣି ବଡ଼ ଦୀର୍ଘ ଓ ମିଶ୍ରିତ ହୋଇ ଯାଉଛି । କିନ୍ତୁ ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏଟ ଇଉନିୟନର କାର୍ଯ୍ୟକଳାପ ସମ୍ବନ୍ଧରେ ମୁଁ ତତେ କିଛି କହିବି । ତୁ ଆଗରୁ ଜାଣୁ ଯେ ସୋଭିଏଟ କେଲଗ ଶାନ୍ତିଚୁକ୍ତି ଦସ୍ତଖତ କରିଥିଲା—ଏହା ଯୁଦ୍ଧକୁ "ବେଆଇନ" କରିଥିଲା ବୋଲି ଧରାଯାଉଥିଲା । ସୋଭିଏଟ ଦେଶ ଓ ତାର ପଡ଼ୋଶୀ ରାଜ୍ୟମାନଙ୍କ ଭିତରେ ୧୯୨୯ରେ ଲିଟଭିନଭ ଚୁକ୍ତି ବି ହେଲା । ଶାନ୍ତି ଆଣିବା ଉଦ୍ଦେଶ୍ୟରେ ରୁଷ ବିଭିନ୍ନ ଦେଶମାନଙ୍କ ସହ 'ଅନାକ୍ରମଣ' ସନ୍ଧିସବୁ କଲା । ସୋଭିଏଟ ପଡ଼ୋଶୀ ରାଜ୍ୟଙ୍କ ଭିତରୁ କେବଳ ଜାପାନ ଏପରି ଚୁକ୍ତିରେ ସମ୍ମତ ହେଲାନାହିଁ । ୧୯୩୨ ନଭେମ୍ବର ମାସରେ ରୁଷ ଓ ଫ୍ରାନ୍ସର ଏକ ଅନାକ୍ରମଣ ଚୁକ୍ତି ହେଲା ଏବଂ ବିଶ୍ୱ ରାଜନୀତିରେ ଏହା ଏକ ପ୍ରଧାନ ଘଟଣା; କାରଣ ଏହା ରୁଷକୁ ପଶ୍ଚିମ ଇଉରୋପୀୟ ରାଜନୀତିକ ଜଞ୍ଜାଳ ଭିତରକୁ ଆଣିଲା ।

ଦୀର୍ଘ କାଳ ପର୍ଯ୍ୟନ୍ତ ନୀରବ ବିରୋଧ ଭାବ ପୋଷଣ କରି ଏବଂ କୌଣସି ପ୍ରକାର କୂଟନୀତିକ ସମ୍ପର୍କ ରକ୍ଷା ନ କରି ଶେଷରେ ମାଞ୍ଚୁରିଆରେ ଜାପାନ ମାଡ଼ ଦେବାରୁ ଚୀନ ସୋଭିଏଟ ସରକାରକୁ ସ୍ୱୀକାର କଲା । ଜାପାନ ସହ ରୁଷର ସାଧାରଣ କୂଟନୀତିକ ସମ୍ପର୍କ ଥିଲା, କିନ୍ତୁ ସେମାନଙ୍କର ପରସ୍ପର ସହିତ ସମ୍ପର୍କ ବହୁତ ଖରାପ ହୋଇ ଆସିଛି । ଏସିଆ ଭୂମିରେ ଜାପାନର ଅଭିଳାଷରେ ସୋଭିଏଟ ପ୍ରତିବନ୍ଧକ ହୋଇ ରହିଛି ଏବଂ ବାରମ୍ବାର ସୀମାନ୍ତ ନେଇ ବିବାଦ ଲାଗୁଛି । ଜାପାନୀ ସରକାର ବରାବର ସୋଭିଏଟକୁ ଉତ୍ତେଜିତ କରୁଛି ଏବଂ ଅନେକ ସମୟରେ ଉଭୟଙ୍କ ଭିତରେ ଯୁଦ୍ଧ ଲାଗିବା ରବ ଉଠୁଛି କିନ୍ତୁ ରୁଷ ଯୁଦ୍ଧକୁ ଡେଇଁବା ଅପେକ୍ଷା ଅପମାନ ସହ୍ୟ କରିବାକୁ ଶ୍ରେୟ ମନେ କରୁଛି ।

ଆନ୍ତର୍ଜାତିକ ରାଜନୀତିରେ ଇଂଲଣ୍ଡ ରୁଷ ବିବାଦ ଏକ ସ୍ଥାୟୀ ଲକ୍ଷଣ ହୋଇ-ଗଲାଣି । ୧୯୩୩ ଏପ୍ରିଲ ମାସରେ ମସ୍କୋରେ ବ୍ରିଟିଶ ଇଞ୍ଜିନିୟରମାନଙ୍କ ବିଚାର ଫଳରେ

ପ୍ରତିଶୋଧ ଓ ତା ବିରୁଦ୍ଧରେ ପ୍ରତିଶୋଧ ନେବା ଚାଲିଲା, କିନ୍ତୁ ଅବସ୍ଥା ଶାନ୍ତ ହୋଇଗଲା ଏବଂ ସାଧାରଣ ସମ୍ବନ୍ଧ ପୁନଃ ପ୍ରତିଷ୍ଠିତ ହେଲା । କିନ୍ତୁ ବ୍ରିଟେନର ଜାତି ସରକାର ସୋଭିଏଟ୍‌କୁ ପସନ୍ଦ କରନ୍ତି ନାହିଁ ଏବଂ ସେମାନଙ୍କ ଭିତରେ ବରାବର ସଙ୍ଘର୍ଷ ରହିଛି । ସଂଯୁକ୍ତରାଷ୍ଟ୍ର ଆମେରିକାରେ ରୁଷପ୍ରତି ବନ୍ଧୁତ୍ୱ ଭାବ ବଢ଼ୁଛି ଏବଂ ସଭାପତି ରୁଜଭେଲ୍‌ଟ୍ ସାଧାରଣରେ ସମ୍ବନ୍ଧ ସ୍ଥାପନ କରୁଛନ୍ତି । ପୃଥିବୀର କୌଣସି ସ୍ଥାନରେ ମଧ୍ୟ ଆମେରିକା ଓ ରୁଷର ସ୍ୱାର୍ଥରେ ସଙ୍ଘର୍ଷ ଘଟିବାର ନାହିଁ ।

ମାତ୍ର ଜର୍ମାନୀରେ ନାଜୀ ସରକାର ହେବା ପରେ ରୁଷର ଏକ ନୂତନ ଓ ଉଦ୍ଧତ ହିଂସ୍ରକ ଶତ୍ରୁ ବାହାରିଛି । ଯଦିଓ ରୁଷକୁ କିଛି ପ୍ରତ୍ୟକ୍ଷ କ୍ଷତି କରିବା ଲାଗି ଏହା ଅସମର୍ଥ ତଥାପି ଏହା ଏକ ଭବିଷ୍ୟତ ପାଇଁ ବଡ଼ ବିପଦ । ଇଉରୋପରେ ଫାସିଷ୍ଟ ପ୍ରବୃତ୍ତି ବଢ଼ି-ଚାଲିଛି ।

ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏଟ ରୁଷ ଅଧିକ ଭାବରେ ଏକ ତୃପ୍ତ ଶକ୍ତି ଭାବରେ ଆଚରଣ କରୁଛି—ସମସ୍ତ ଗୋଳମାଳ ଏଡ଼ାଇ ଦେଉଛି ଏବଂ ଯେ କୌଣସି ମତେ ଶାନ୍ତି ରକ୍ଷା ପାଇଁ ଚେଷ୍ଟା କରୁଛି । ଅନ୍ୟ ଦେଶରେ ବିପ୍ଳବ ସୃଷ୍ଟି କରିବା ନିମିତ୍ତ ଯେଉଁ ବୈପ୍ଳବିକ ନୀତିର ଲୋଡ଼ା ଏହା ତାହାର ବିପରୀତ । ଏକ ଦେଶରେ ସାମ୍ୟବାଦ ସ୍ଥାପନ କରିବା ଓ ବାହାରର ସମସ୍ତ ଜଟିଳତା ଏଡ଼ାଇ ଦେବା ସୋଭିଏଟର ଜାତୀୟ ନୀତି । ଆବଶ୍ୟକ ରୂପେ ଏହା ଫଳରେ ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀ ଶକ୍ତିଙ୍କ ଭିତରେ ଆପୋସ ରଫା ହୁଏ । କିନ୍ତୁ ସୋଭିଏଟ ଅର୍ଥନୀତିର ଅସଲ ସାମ୍ୟବାଦ ଭିତ୍ତି ରହିଛି ଏବଂ ଏହାର ସଫଳତାହିଁ ସାମ୍ୟବାଦ ସପକ୍ଷରେ ସର୍ବାପେକ୍ଷା ପ୍ରଭାବଶାଳୀ ଯୁକ୍ତି ।

୧୯୩୩ ଜୁଲାଇ ମାସକୁ ସୋଭିଏଟ ରୁଷର ଅବସ୍ଥା ଏପରି ଥିଲା । ସେତେବେଳେ ଲଣ୍ଡନରେ ଏକ ବିଶ୍ୱ ଅର୍ଥନୈତିକ ସମ୍ମିଳନୀ ବସୁଥିବାରୁ ରୁଷ ସେଠାରେ ଅନ୍ୟ ଶକ୍ତି-ମାନଙ୍କର ଉପସ୍ଥିତିର ସୁଯୋଗ ଉଠାଇଲା ଏବଂ ତାର ପଡ଼ୋଶୀମାନଙ୍କ ସହ ପୁନର୍ବାର ଅନାକ୍ରମଣ ସନ୍ଧି ସ୍ୱାକ୍ଷର କଲା—ଆଫଗାନିସ୍ଥାନ, ଇସ୍ତୋନିଆ, ଲାଟେଭିଆ, ପାରସ୍ୟ, ପୋଲଣ୍ଡ, ରୁମାନିଆ, ତୁର୍କି ଓ ଲିଥୁଆନିଆ ସବୁ ଦେଶ ସହିତ ସନ୍ଧି ହୋଇଗଲା । ପୂର୍ବପରି ଜାପାନ ଏଥିରୁ ଅଲଗା ରହିଥିଲା ।

# ୧୮୨ : ବିଜ୍ଞାନର ଅଗ୍ରଗତି

ଜୁଲାଇ ୧୩, ୧୯୩୩

ରାଜନୀତିକ ଘଟଣା ସମ୍ପର୍କରେ ତୋତେ ମୁଁ ବିସ୍ତୃତଭାବରେ ଲେଖିଛି ଏବଂ ଯୁଦ୍ଧୋତ୍ତର ବର୍ଷମାନଙ୍କରେ ସମଗ୍ର ପୃଥିବୀରେ ଯେଉଁ ଆର୍ଥିକ ପରିବର୍ତ୍ତନ ଘଟିଲା ସେ ସମ୍ପର୍କରେ ସାମାନ୍ୟ ଭାବରେ ଲେଖିଛି । ଏହି ଚିଠିରେ ମୁଁ ଅନ୍ୟ ବିଷୟରେ ଏବଂ ବିଶେଷ-ଭାବରେ ବିଜ୍ଞାନ ଓ ତାର ଫଳାଫଳ ବିଷୟରେ ଲେଖିବି ।

କିନ୍ତୁ ମୁଁ ବିଜ୍ଞାନ କଥା କହିବା ପୂର୍ବରୁ ପୃଥିବୀ ଯୁଦ୍ଧ ପରେ ନାରୀର ଅବସ୍ଥାରେ ଯେଉଁ ବିରାଟ ପରିବର୍ତ୍ତନ ହୋଇଛି ସେ ବିଷୟ ପୁଣି ଥରେ ତୋତେ ସ୍ମରଣ କରାଇ ଦେବାକୁ ଚାହେଁ । ଊନବିଂଶ ଶତାବ୍ଦୀରେ ବଡ଼ ବଡ଼ ଶିଳ୍ପୋଦ୍ୟୋଗ ହେବାରୁ ନାରୀ ଶ୍ରମିକ ନିଯୁକ୍ତ ହେଲେ ଏବଂ ସେହି ଦିନଠାରୁ ଅଇନଗତ ସାମାଜିକ ଓ ସଂସ୍କାର ବନ୍ଧନରୁ ନାରୀମାନଙ୍କର ତଥାକଥିତ "ମୁକ୍ତି" ଆରମ୍ଭ ହେଲା । ଏହା ମନ୍ଥର ଭାବରେ ଉନ୍ନତି କଲା ଏବଂ ଉପରେ ଯୁଦ୍ଧ ଅବସ୍ଥା ଏହି ଗତିକୁ ବେଗମାନ କଲା ଏବଂ ଯୁଦ୍ଧୋତ୍ତର ବର୍ଷମାନଙ୍କରେ ଏହା ପ୍ରାୟ ସମ୍ପୂର୍ଣ୍ଣ ହୋଇଗଲା । ଗତ ଚିଠିରେ ମୁଁ ଯେଉଁ ଟାଉଙ୍ଗାଙ୍ଗାସ୍ଥାନ ବିଷୟରେ ଲେଖିଛି ଆଜି ସେଠି ମଧ୍ୟ ନାରୀ ଡାକ୍ତର, ଶିକ୍ଷକ ଓ ଇଞ୍ଜିନିୟର ଅଛନ୍ତି—ଅଳ୍ପ କେତେକ ବର୍ଷ ପୂର୍ବେ ସେମାନେ ପରଦା ଆଡ଼ୁଆଳରେ ଥିଲେ ଏବଂ ତୋ ପରବର୍ତ୍ତୀ ବଂଶଧରମାନେ ସମ୍ଭବତଃ ଏହା ସ୍ୱାଭାବିକ ଜିନିଷପରି ଗ୍ରହଣ କରିବେ । ଅଥଚ ଖାଲି ଏସିଆରେ ନୁହେଁ, ଇଉରୋପରେ ମଧ୍ୟ ଏହା ଏକ ସମ୍ପୂର୍ଣ୍ଣ ନୂତନ ଜିନିଷ । ଶହେ ବର୍ଷରୁ କମ୍ ହେବ ୧୮୪୦ରେ ଲଣ୍ଡନରେ "ପୃଥିବୀର ଦାସତ୍ୱ ବିରୋଧୀ ସମ୍ମିଳନୀ" ପ୍ରଥମେ ହୋଇଥିଲା । ଆମେରିକାରୁ ସ୍ତ୍ରୀଲୋକମାନେ ଏଠାକୁ ପ୍ରତିନିଧି ହୋଇ ଆସିଥିଲେ—ସେଠାରେ ନିଗ୍ରୋ ଦାସତ୍ୱ ପ୍ରଥା ପ୍ରଚଳନ ଅନେକଙ୍କ ମନରେ ଆନ୍ଦୋଳିତ ହେଉଥିଲା । ଯାହା ହେଉ ଏହି ସମ୍ମିଳନୀରେ "ନାରୀ ପ୍ରତିନିଧିମାନଙ୍କୁ ପ୍ରବେଶାଧିକାର ଦିଆଯାଇ ନ ଥିଲା—କାରଣ କୌଣସି ସ୍ତ୍ରୀଲୋକ ପକ୍ଷରେ ସାଧାରଣ ସଭାରେ ଯୋଗଦେବା ଅନୁପଯୋଗୀ ଓ ସ୍ତ୍ରୀ ଜାତି ପକ୍ଷରେ ଅଧୋଗତି ସୂଚକ ।

ଏବେ ବିଜ୍ଞାନ ବିଷୟ ବିଚାର କରିବା । ସୋଭିଏଟ ରୁଷର ପଞ୍ଚବାର୍ଷିକ ଯୋଜନା ସମ୍ବନ୍ଧରେ ବର୍ଣ୍ଣନା କଲାବେଳେ ମୁଁ କହିଥିଲି ଯେ ଏହା ହେଉଛି ସାମାଜିକ ବ୍ୟାପାରରେ ବିଜ୍ଞାନ ଭାବର ପ୍ରୟୋଗ । ଆଂଶିକ ଭାବରେ ହେଲେ ପୁଞ୍ଜି କେତେକ ପରିମାଣରେ ଗତ

ଶହେ ବର୍ଷ ହେବ ଏହି ଭାବରେ ପାଶ୍ଚାତ୍ୟ ସଭ୍ୟତାର ପଶ୍ଚାତ୍ତରେ ରହିଛି । ଏହାର ପ୍ରଭାବ ବୃଦ୍ଧି ସଙ୍ଗେ ସଙ୍ଗେ ଅଯୁକ୍ତି, ଯାଦୁ ଓ କୁସଂସ୍କାର ଉପରେ ପ୍ରତିଷ୍ଠିତ ଭାବଧାରା ଦୂର ହୋଇ ଯାଉଛି ଏବଂ ବିଜ୍ଞାନ ବିରୁଦ୍ଧ ପ୍ରଣାଳୀ ଓ ନିୟମର ବିରୋଧ କରାଯାଉଛି । ଏହାର ଅର୍ଥ ଅବଶ୍ୟ ନୁହେଁ ଯେ ଅଯୁକ୍ତି, ଯାଦୁ ଓ କୁସଂସ୍କାର ଉପରେ ବିଜ୍ଞାନ ପୂର୍ଣ୍ଣ ବିଜୟ କରିପାରିଲାଣି । କିନ୍ତୁ ନିଃସନ୍ଦେହ ଭାବରେ ଏହା ଅନେକ ଦୂର ଅଗ୍ରଗତି କରିଛି ଏବଂ ଊନବିଂଶ ଶତାବ୍ଦୀରେ ଏହାର ଅନେକ ବିଜୟ ଘଟିଛି ।

ଊନବିଂଶ ଶତାବ୍ଦୀରେ ଶିଳ୍ପ ଓ ଜୀବନରେ ବିଜ୍ଞାନ ପ୍ରୟୋଗ ଦ୍ୱାରା ଯେଉଁସବୁ ଅପୂର୍ବ ପରିବର୍ତ୍ତନ ହେଲା ସେ ବିଷୟରେ ମୁଁ ତୋତେ ଆଗରୁ ଲେଖିଛି । ପୃଥିବୀ ଏବଂ ବିଶେଷ ଭାବରେ ପଶ୍ଚିମ ଇଉରୋପ ଓ ଉତ୍ତର ଆମେରିକାରେ ଯେପରି ପରିବର୍ତ୍ତନ ହେଲା ତାହା ଚହଲିଗଲା ନା; ପୂର୍ବ ହଜାର ବର୍ଷ ପୂର୍ବେ ହୋଇ ନ ଥିବା ପରିବର୍ତ୍ତନ ଅପେକ୍ଷା ଅଧିକ ପରିବର୍ତ୍ତନ ହେଲା । ··ଊନବିଂଶ ଶତାବ୍ଦୀରେ ଇଉରୋପର ଲୋକସଂଖ୍ୟା ବୃଦ୍ଧି ଏକ ବିସ୍ମିତ ବିଷୟ । ୧୮୦୦ ଖ୍ରୀ:ରେ ସମଗ୍ର ଇଉରୋପର ଲୋକସଂଖ୍ୟା ୧୮୦,୦୦୦,୦୦୦ ଥିଲା । ଯୁଗ ଯୁଗ ପରେ ଏହା ଏପରି ସଂଖ୍ୟାବୃଦ୍ଧି ହୋଇଥିଲା । ତାପରେ ଏହା ହଠାତ୍ ବୃଦ୍ଧି ପାଇଲା ଏବଂ ୧୯୧୪ ବେଳକୁ ୪୬୦,୦୦୦,୦୦୦ ହୋଇଗଲା । ଏହି କାଳ ମଧ୍ୟରେ ବି ଲକ୍ଷ ଲକ୍ଷ ଇଉରୋପବାସୀ ଅନ୍ୟ ମହାଦେଶକୁ ବିଶେଷ ଭାବରେ ଆମେରିକାକୁ ଯାଇଥିଲେ ଏବଂ ସେମାନଙ୍କ ସଂଖ୍ୟା ୪୦,୦୦୦,୦୦୦ ହେବ ବୋଲି ଆମେ ଧରିପାରୁ । ଏହିରୂପେ ପ୍ରାୟ ଶହେ ବର୍ଷରୁ ଅଧିକକାଳ ଭିତରେ ଇଉରୋପର ଲୋକସଂଖ୍ୟା ୧୮୦,୦୦୦,୦୦୦ରୁ ୫୦୦,୦୦୦,୦୦୦କୁ ଉଠିଲା । ଏହି ବୃଦ୍ଧି ବିଶେଷ ଭାବରେ ଇଉରୋପର ଶିଳ୍ପୋନ୍ନତ ଦେଶମାନଙ୍କରେ ଅଧିକ ପରିଲକ୍ଷିତ ହେଲା । ଊନବିଂଶ ଶତାବ୍ଦୀ ପ୍ରାରମ୍ଭରେ ଇଂଲଣ୍ଡର ଲୋକସଂଖ୍ୟା ମାତ୍ର ୫,୦୦୦,୦୦୦ ଥିଲା ଏବଂ ପଶ୍ଚିମ ଇଉରୋପରେ ଏହା ସର୍ବାପେକ୍ଷା ଦରିଦ୍ର ଦେଶ ଥିଲା । ଏହା ପୃଥିବୀର ସର୍ବାପେକ୍ଷା ଧନୀ ଦେଶ ହେଲା—ଲୋକସଂଖ୍ୟା ୪୦,୦୦୦,୦୦୦ ହୋଇଗଲା ।

ବିଜ୍ଞାନ ସମ୍ବନ୍ଧରେ ଜ୍ଞାନ ହେତୁ ପ୍ରକୃତିର ଗତି ଉପରେ ଅଧିକ ନିୟନ୍ତ୍ରଣ ବା ଏହାକୁ ଭଲ ବୁଝିପାରିବା ଫଳରେ ଏହି ବୃଦ୍ଧି ଓ ସମ୍ପଦ ହେଲା । ବହୁତ ଜ୍ଞାନବୃଦ୍ଧି ହେଲା, କିନ୍ତୁ ଅନୁମାନ କରିବୁ ନାହିଁ ଯେ ଏଥି ସଙ୍ଗେ ସଙ୍ଗେ ପାଣ୍ଡିତ୍ୟ ବି ବଢ଼ିଲା । ମନୁଷ୍ୟ ତାର ଜୀବନର ଲକ୍ଷ୍ୟ କଣ ବା କଣ ହେବା ଉଚିତ ସେ ସମ୍ବନ୍ଧରେ କୌଣସି ପରିଷ୍କାର ଧାରଣା ନ ଥାଇ ପ୍ରକୃତିର ଶକ୍ତିକୁ ନିୟନ୍ତ୍ରଣ କରି କାମରେ ଲଗାଇବାକୁ ଆରମ୍ଭ କଲା । ଏକ ଶକ୍ତିଶାଳୀ ମଟର ଦରକାରୀ ଓ ବାଞ୍ଛନୀୟ ବସ୍ତୁ; କିନ୍ତୁ ଏଥିରେ କେଉଁଠିକି ଯିବ ଏ ବିଷୟ ଜାଣିଥିବା ଦରକାର । ଠିକ୍‌ରୂପେ ଚାଳିତ ନ ହେଲେ, ଏହା ଏକ ପର୍ବତଶୃଙ୍ଗରେ ଧକ୍କା ଲଗିପାରେ । ନିକଟରେ ବ୍ରିଟିଶ ବିଜ୍ଞାନ ସମିତିର ସଭାପତି କହିଥିଲେ "ମଣିଷ

ନିଜକୁ କିପରି ଚଲାଇବ, ତାହାର ଜ୍ଞାନ ପାଇବା ପୂର୍ବରୁ ପ୍ରକୃତିର—ବାଗ୍‌ଡୋର ତା' ହାତକୁ ଆସିଯାଇଛି ।"

ରେଲ୍‌ଓ୍ୱେ, ଉଡ଼ାଜାହାଜ, ଇଲେକ୍‌ଟ୍ରିକ, ବେତାର ଓ ହଜାର ହଜାର ଅନ୍ୟ ବିଜ୍ଞାନଜାତ ଜିନିଷସବୁ କିପରି ଆସିଲା, ତାହା ଚିନ୍ତା ନ କରି ଆମେ ବ୍ୟବହାର କରୁ । ଆମେ ଏଗୁଡ଼ିକ ସିଦ୍ଧ ବୋଲି ଧରିନେଉ—ଯେତେ ଯେପରି ଆମର ଅଧିକାର ସ୍ୱରୂପ ଏହା ପାଇବାର ହକଦାର । ଆମେ ଏକ ଉନ୍ନତ ଯୁଗରେ ବାସ କରୁଛେ ଓ ନିଜେ ବି ଖୁବ୍ "ଉନ୍ନତ" ବୋଲି ଆମେ ଗର୍ବ ଅନୁଭବ କରୁ । ଏଥିରେ ସନ୍ଦେହ ନାହିଁ ଯେ, ପୂର୍ବଯୁଗ ଅପେକ୍ଷା ଆମ ଯୁଗ ସମ୍ପୂର୍ଣ୍ଣ ପୃଥକ୍ ଏବଂ ମୋର ମନେହୁଏ ଏହା ଅଧିକ ଉନ୍ନତ ବୋଲି କହିବାଟା ସମ୍ପୂର୍ଣ୍ଣ ଠିକ୍ । କିନ୍ତୁ ଆମେ ବ୍ୟକ୍ତିବିଶେଷ ବା ଗୋଷ୍ଠୀ ଅଧିକ ଉନ୍ନତ ବୋଲି କହିବା ଏକ ଅଲଗା ଜିନିଷ । ଇଞ୍ଜିନ ପରିଚାଳକ ଇଞ୍ଜିନ ଚଲାଇପାରେ, ମାତ୍ର ପ୍ଲେଟୋ ବା ସକ୍ରେଟିସ ତା କରିପାରୁ ନ ଥିଲେ—ତେଣୁ ପ୍ଲେଟୋ ବା ସକ୍ରେଟିସଙ୍କ ଅପେକ୍ଷା ଇଞ୍ଜିନ ପରିଚାଳକ ଅଧିକ ଉନ୍ନତ ବା ଉଚ୍ଚ ବୋଲି କହିବା ନିତାନ୍ତ ନିର୍ବୋଧତା । କିନ୍ତୁ ଏହା କହିବା ଠିକ୍ ହେବ ଯେ, ପ୍ଲେଟୋଙ୍କ ଗାଡ଼ି ଅପେକ୍ଷା ଇଞ୍ଜିନ ଏକ ଅଧିକ ଉନ୍ନତ ଧରଣର ଇଞ୍ଜିନ ।

ଆମେ ଆଜିକାଲି ବହୁତ ବହି ପଢ଼ୁଛେ—ମୋର ଭୟ ସେଥିରୁ ଅଧିକାଂଶ ଏକ-ପ୍ରକାର ବାଜେ ପୁସ୍ତକ । ପୂର୍ବକାଳରେ ଲୋକେ ଅଳ୍ପ ବହି ପଢ଼ୁଥିଲେ, କିନ୍ତୁ ସେଗୁଡ଼ିକ ଭଲ ବହି ଓ ସେମାନେ ତାହା ଭଲରୂପେ ଜାଣିଥିଲେ । ଇଉରୋପୀୟ ଦାର୍ଶନିକଙ୍କ ଭିତରେ ସ୍ପିନୋଜା ଜଣେ ଶ୍ରେଷ୍ଠବ୍ୟକ୍ତି । ସେ ଜଣେ ବିଦ୍ୱାନ ଓ ପଣ୍ଡିତ ଥିଲେ । ୧୭ଶ ଶତାବ୍ଦୀରେ ଆମଷ୍ଟରଡ଼ାମରେ ସେ ବାସ କରୁଥିଲେ । କୁହାଯାଏ ତାଙ୍କ ଲାଇବ୍ରେରିରେ ୬୦ରୁ ବେଶୀ ପୁସ୍ତକ ନ ଥିଲା ।

ସୁତରାଂ ଆମ ପକ୍ଷରେ ଏକଥା ଉପଲବ୍ଧି କରିବା ଭଲ ଯେ, ପୃଥିବୀରେ ଜ୍ଞାନ-ବୃଦ୍ଧି ହୋଇଗଲେ ଲୋକ ଯେ ଅଧିକ ଉତ୍ତମ ବା ଜ୍ଞାନୀ ହୋଇଯିବ, ଏପରି କିଛି କଥା ନୁହେଁ । ଆମେ ଏହା ଉପଯୋଗ କରିବା ପୂର୍ବରୁ କିପରି ସେ ଜ୍ଞାନର ବ୍ୟବହାର କରିବାକୁ ହେବ, ତାହା ଜାଣିବା ଦରକାର । ଆମେ ଆମର ଶକ୍ତିଶାଳୀ ମଟର ଗାଡ଼ିରେ ଆଗକୁ ଧାଇଁବା ପୂର୍ବରୁ କେଉଁଠିକି ଯିବାକୁ ହେବ ଜାଣିଥିବା ଦରକାର । ଆମର ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କଣ ହେବା ଉଚିତ ଏ ସମ୍ବନ୍ଧରେ ଆମର ଅବଶ୍ୟ କିଛି ଧାରଣା ହେବା ଉଚିତ । ବହୁସଂଖ୍ୟକ ଲୋକଙ୍କର ଆଜି ସେପରି ଧାରଣା ନାହିଁ ଏବଂ ଏ ସମ୍ବନ୍ଧରେ ମୁଣ୍ଡ ଆଦୌ ଘୂରାନ୍ତି ନାହିଁ । ସେମାନେ ଏକ ବିଜ୍ଞାନ ଯୁଗରେ ବାସ କରନ୍ତି, କିନ୍ତୁ ଯେଉଁ ଭାବ-ଧାରାରେ ସେମାନେ ଓ ସେମାନଙ୍କର କାର୍ଯ୍ୟ ପରିଚାଳିତ ହୁଏ, ତାହା କେଉଁ ଅତୀତଯୁଗର ଜିନିଷ । ତେଣୁ ଅସୁବିଧା ଓ ବିବାଦ ଉଠିବା ସ୍ୱାଭାବିକ । ଏକ ଧୂର୍ତ୍ତ ଚାଳକର ମଟରଗାଡ଼ି

ଚଳାଇବା ଶିଖିପାରେ, କିନ୍ତୁ ସେ ଗୋଟିଏ ନିର୍ଭରଯୋଗ୍ୟ ପରିଚାଳକ ନୁହେଁ ।

ଆଧୁନିକ ଜ୍ଞାନ ଅଦ୍ଭୁତଭାବରେ ଜଟିଳ ଓ ବ୍ୟାପକ । ଶହ ଶହ ହଜାର ହଜାର ତତ୍ତ୍ୱାନୁସନ୍ଧାନକାରୀ ଅବିରତ କାର୍ଯ୍ୟ କରି ଯାଉଛନ୍ତି, ପ୍ରତ୍ୟେକେ ତାଙ୍କର ବିଶେଷ ବିଭାଗରେ ବିଶ୍ଳେଷଣ କରୁଛନ୍ତି, ପ୍ରତ୍ୟେକେ ନିଜ କ୍ଷେତ୍ରରେ ଭିତରେ ପ୍ରବେଶ କରୁଛନ୍ତି ଏବଂ ଜ୍ଞାନ ପର୍ବତରେ ଢେଲା ଢେଲା କରି ଯୋଗ କରୁଛନ୍ତି । ଜ୍ଞାନକ୍ଷେତ୍ର ଏପରି ବିଶାଳ ଯେ, ପ୍ରତ୍ୟେକ ଶ୍ରମିକ ନିଜ ଧାରାରେ ବିଶେଷଜ୍ଞ ହୋଇପାରେ । ଅନେକ ସମୟରେ ଅନ୍ୟ ବିଭାଗ ସମ୍ବନ୍ଧରେ ତାର କିଛି ଜ୍ଞାନ ନ ଥାଏ ଏବଂ ଏହିରୂପେ ସେ କେତେକ ଜ୍ଞାନବିଭାଗରେ ଅତ୍ୟନ୍ତ ବିଦ୍ୱାନ ହୋଇଥିଲେ ସୁଦ୍ଧା ଅନେକ ଜଗନ୍ନାଥ ବିଷୟରେ ଅନଭିଜ୍ଞ ଥାଏ । ମାନବ କାର୍ଯ୍ୟକଳାପର ସମଗ୍ର କ୍ଷେତ୍ର ବିଷୟରେ ଗୋଟିଏ ବୁଦ୍ଧିସମ୍ମତ ଦୃଷ୍ଟି ନିକ୍ଷେପ କରିବା ତାହା ପକ୍ଷରେ କଷ୍ଟକର ହୋଇପଡ଼େ । ସଂସ୍କୃତି ଶବ୍ଦର ପୁରାତନ ଅର୍ଥ ଅନୁସାରେ ସେ ସଂସ୍କୃତ ହୋଇ ନ ଥାଏ ।

ଅବଶ୍ୟ କେହି କେହି ବ୍ୟକ୍ତିବିଶେଷ ଏହି ସଙ୍କୀର୍ଣ୍ଣ ବିଶେଷଜ୍ଞ କ୍ଷେତ୍ରରୁ ଉପରକୁ ଉଠିଛନ୍ତି ଏବଂ ସେମାନେ ନିଜେ ବିଶେଷଜ୍ଞ ହୋଇ ସୁଦ୍ଧା ବ୍ୟାପକ ଦୃଷ୍ଟି ନିକ୍ଷେପ କରି-ପାରିଛନ୍ତି । ଯୁଦ୍ଧ ଓ ମାନବିକ ଗୋଳମାଳରେ ବିଚଳିତ ନ ହୋଇ ଏମାନେ ନିଜର ବୈଜ୍ଞାନିକ ଗବେଷଣା ଚଳାଇଛନ୍ତି ଏବଂ ଗତ ପନ୍ଦରବର୍ଷ ବା ସେହିପରି ସମୟ ଭିତରେ ଜ୍ଞାନରେ ଅଲୌକିକ ଦାନ କରିଛନ୍ତି । ଆଜିକାଲି ଦୁନିଆର ସର୍ବାପେକ୍ଷା ବଡ଼ ବୈଜ୍ଞାନିକ ହେଉଛନ୍ତି ଆଲବର୍ଟ ଆଇନ-ଷ୍ଟାଇନ—ସେ ଜଣେ ଜର୍ମାନ ଇହୁଦୀ—ହିଟଲର ସରକାର ଇହୁଦୀମାନଙ୍କୁ ପସନ୍ଦ କରୁ ନ ଥିବାରୁ ତାଙ୍କୁ ଜର୍ମାନୀରୁ ବାହାର କରିଦେଇଛି ।

ଆଇନ୍‌ଷ୍ଟାଇନ ଗଣିତର ଜଟିଳ ହିସାବ କରିଆରେ ସମଗ୍ର ବିଶ୍ୱସ୍ପର୍ଶୀ ପଦାର୍ଥ ବିଜ୍ଞାନ (Physics)ର କେତେକ ନୂତନ ମୌଳିକ ନିୟମ ଆବିଷ୍କାର କଲେ ଏବଂ ଏହା-ଦ୍ୱାରା ନିଉଟନଙ୍କର ଯେଉଁ କେତେକ ତଥ୍ୟ ଦୁଇ ଶହ ବର୍ଷ ହେଲା ବିନା ପ୍ରଶ୍ନରେ ଗୃହୀତ ହୋଇଥିଲା, ସେଥିରୁ ଭିନ୍ନମତ ପ୍ରକାଶ କଲେ । ଅତ୍ୟନ୍ତ ମଜାଦାର ଭାବରେ ଆଇନଷ୍ଟାଇନଙ୍କ ତଥ୍ୟ ସ୍ୱୀକୃତ ହେଲା । ତାଙ୍କ ତଥ୍ୟ ଅନୁସାରେ ଆଲୋକ ଏକ ବିଶେଷ ଭାବରେ ଆଚରଣ କରେ ଏବଂ ସୂର୍ଯ୍ୟୋପରାଗ ବେଳେ ଏହା ପରୀକ୍ଷା କରାଯାଇପାରେ । ସୂର୍ଯ୍ୟୋପରାଗ ହେଲାରୁ ଦେଖାଗଲା ଯେ, ସେହିପରି ଭାବରେ ଆଲୋକ କିରଣ ଆଚରଣ କଲା ଏବଂ ତେଣୁ ଗଣିତ ହିସାବ ଫଳରେ ସେ ଯେଉଁ ସିଦ୍ଧାନ୍ତ କରିଥିଲେ, ତାହା ବାସ୍ତବ ପ୍ରୟୋଗରେ ସିଦ୍ଧ ହେଲା ।

ମୁଁ ଏହି ତତ୍ତ୍ୱ ତୋତେ ବୁଝାଇବାକୁ ଯାଉ ନାହିଁ, କାରଣ ଏହା ଅତ୍ୟନ୍ତ ଜଟିଳ । ଏହାକୁ ସାପେକ୍ଷବାଦ (Theory of relativity) କହନ୍ତି । ବିଶ୍ୱବ୍ରହ୍ମାଣ୍ଡ ସମ୍ବନ୍ଧରେ

ଆଲୋଚନା କରି ଆଇନଷ୍ଟାଇନ ଦେଖିଲେ ଯେ, ସମୟ ଓ ସ୍ଥାନର କଳ୍ପନା ପୃଥକ ଭାବରେ ପ୍ରୟୋଗ ହୋଇପାରିବ ନାହିଁ । ତେଣୁ ସେ ଉଭୟଙ୍କୁ ଛାଡ଼ିଦେଲେ ଏବଂ ଏକ ନୂତନ ଭାବ ଆଗତ କଲେ; ସେଥିରେ ଦୁଇଟିଯାକ ଏକତ୍ର ଥିଲା । ସେଇଥିରୁ ସ୍ଥାନ-ସମୟ (Space-Time) ର କଳ୍ପନା ହୋଇଛି ।

ଆଇନଷ୍ଟାଇନ ବ୍ରହ୍ମାଣ୍ଡ ବିଷୟରେ ଗବେଷଣା କରିଥିଲେ । ଅନ୍ୟ ବୈଜ୍ଞାନିକମାନେ କ୍ଷୁଦ୍ରାଦପି କ୍ଷୁଦ୍ରର ଅନୁସନ୍ଧାନ କରିଥିଲେ । କାଚ ବା ଅନ୍ୟ କିଛିର ସାହାଯ୍ୟ ନ ନେଇ ଖୋଲା ଆଖିରେ ଯେତେ ଛୋଟ ପଦାର୍ଥ ଦେଖା ହୋଇପାରେ—ଗୋଟିଏ ପିନକଣ୍ଟା ମୁନ । ବୈଜ୍ଞାନିକ ପଦ୍ଧତିଦ୍ୱାରା ଏହା ପ୍ରମାଣିତ ହୋଇଛି ଯେ ଏହି ପିନକଣ୍ଟା ମୁନ ଏକ ପ୍ରକାରେ ବ୍ରହ୍ମାଣ୍ଡପରି । ଏହାର ଅଣୁ (Molecules) ସବୁ ପରସ୍ପର ଚତୁର୍ଦ୍ଦିଗରେ ଘୂରୁଛନ୍ତି; ଏବଂ ପ୍ରତ୍ୟେକ ଅଣୁରେ କେତେକ ପରମାଣୁ (Atoms) ରହିଛି—ତାହା ମଧ୍ୟ ପରସ୍ପରକୁ ସ୍ପର୍ଶ ନ କରି ଘୂରିକଡ଼ରେ ଘୂରି ବୁଲେ, ଏବଂ ପ୍ରତ୍ୟେକ ପରମାଣୁ (Atom) ରେ ବହୁ-ସଂଖ୍ୟକ ବିଦ୍ୟୁତ ଅଂଶ ରହିଛି ବା ସେ ଯାହା ହୋଇଥାଉ ତାକୁ ପ୍ରୋଟନ୍ (Protons) ଓ ଇଲେକ୍‌ଟ୍ରନ (Electrons) କହନ୍ତି । ସେଗୁଡ଼ିକ ମଧ୍ୟ ଅବିରତ ଓ ଅଦ୍ଭୁତ ବେଗରେ ଗତିଶୀଳ । ପୋଜିଟ୍ରନ (Positron), ନିଉଟ୍ରନ (Neutron), ଡେଣ୍ଟନ (Dentons) ହେଉଛି ଆହୁରି ଛୋଟ ଏବଂ ଏକ ପ୍ରୋଜିଟ୍ରନ (Positron) ର ହାରାହାରି ଜୀବନ ଏକ ସେକେଣ୍ଡର ଏକ ହଜାର-କୋଟି ଭାଗ ବୋଲି ହିସାବ କରାଯାଇଛି । ଏହିସବୁ ଅତ୍ୟନ୍ତ କ୍ଷୁଦ୍ର ଆକାରରେ ଗ୍ରହ ଓ ତାରା ପରି ଘୂରି ଘୂରି ଗତି କରୁଛନ୍ତି । ସ୍ମରଣ ରଖିବା ଦରକାର ଯେ, ଅଣୁ ଏକ ଅତି ଛୋଟ ଜିନିଷ—ଏପରି କି ଅତି ଶକ୍ତିଶାଳୀ ଅଣୁବୀକ୍ଷଣ ଯନ୍ତ୍ରଦ୍ୱାରା ଏହା ଦେଖିପିବା କଷ୍ଟ । ପରମାଣୁ ପ୍ରୋଟନ ଓ ଇଲେକ୍‌ଟ୍ରନ ସବୁ ଅନୁମାନ କରିବା ହିଁ କଷ୍ଟକର । ତଥାପି ବୈଜ୍ଞାନିକ କୌଶଳ ଏପରି ଉନ୍ନତ ହୋଇଛି ଯେ, ଏହି ପ୍ରୋଟନ ଓ ଇଲେକ୍‌ଟ୍ରନ ସମ୍ବନ୍ଧରେ ବହୁତ ତଥ୍ୟ ସଂଗ୍ରହ କରାଯାଇଛି ଏବଂ ନିକଟରେ ପରମାଣୁ ମଧ୍ୟ ଭାଗ ଭାଗ ହୋଇଛି ।

ବିଜ୍ଞାନର ଶେଷ ତତ୍ତ୍ୱ ବିଚାର କଲେ ମଣିଷର ମୁଣ୍ଡ ଘୂରିଯାଏ ଏବଂ ତାହା ବୁଝିବା ମଧ୍ୟ ଅତ୍ୟନ୍ତ କଷ୍ଟକର । ମୁଁ ତେବେ ଆଉ କିଛି ଅଦ୍ଭୁତ କଥା କହିବି । ଆମେ ଜାଣୁ ଆମ ପୃଥିବୀ ଯାହା ଏଡ଼େ ବିରାଟ ପରି ଜଣାପଡ଼ୁଛି, ତାହା ସୂର୍ଯ୍ୟମଣ୍ଡଳରେ ଏକ କ୍ଷୁଦ୍ର ଗ୍ରହ ମାତ୍ର—ସୂର୍ଯ୍ୟ ବି ଅତ୍ୟନ୍ତ ନଗଣ୍ୟ ଛୋଟ ନକ୍ଷତ୍ର । ସମଗ୍ର ସୂର୍ଯ୍ୟ ମଣ୍ଡଳଟି ସ୍ଥାନ (Space) ସମୁଦ୍ରରେ ଏକ ବିନ୍ଦୁ ମାତ୍ର । ବିଶ୍ୱବ୍ରହ୍ମାଣ୍ଡରେ ଦୂରତା ଏତେ ଅଧିକ ଯେ କୌଣସି ଏକ ସ୍ଥାନରୁ ଆମ ପାଖରେ ଆଲୋକ ପହଞ୍ଚିବା ନିମନ୍ତେ ସହସ୍ର ସହସ୍ର ଓ ଲକ୍ଷ ଲକ୍ଷ ବର୍ଷ ଲାଗିଯାଏ । ଏହିରୂପେ ଆମେ ରାତିରେ ଯେତେବେଳେ ଗୋଟିଏ ନକ୍ଷତ୍ର ଦେଖୁ—ଆମେ ଯାହା ଦେଖୁ ତାହା ଏତେବେଳକୁ ସେପରି ନଥାଏ, ମାତ୍ର ଆମ ପାଖରେ ଯେଉଁ ଆଲୋକ

କିରଣ ଆସି ପହଞ୍ଚେ, ଏହା ନିଜର ବିଶେଷତ୍ୱ ଦୀର୍ଘ ପଥ ଯାତ୍ରା କରୁକରୁ ହଜାଇଥାଏ । ଏହି ଯାତ୍ରାରେ ତାକୁ ଶହ ଶହ ବା ହଜାର ହଜାର ବର୍ଷ ଲଗିଯାଏ । ସମୟ ଓ ସ୍ଥାନ ସମ୍ବନ୍ଧରେ ଯାହା ବା ଧାରଣା ରହିଛି ସେଥିକି ଏହା ଅତ୍ୟନ୍ତ ଗୋଳମାଳିଆ ଏବଂ ସେହି କାରଣରୁ ଏହିସବୁ ବିଷୟ ବିଚାର କରିବା ନିମନ୍ତେ ଆଇନଷ୍ଟାଇନଙ୍କର ସ୍ଥାନ-ସମୟ (Space-Time) ବଡ଼ ସାହାଯ୍ୟ କରେ । ଆମେ ଯଦି ସ୍ଥାନ ଛାଡ଼ି ଦେଇ କେବଳ ସମୟ ବିଚାର କରୁ, ତେବେ ଅତୀତ ଓ ବର୍ତ୍ତମାନ ମିଶ୍ରିତ ହୋଇଯାଏ । କାରଣ ଆମେ ବର୍ତ୍ତମାନ ଆମ ଆଗରେ ନକ୍ଷତ୍ର ଦେଖୁ, ଅଥଚ ଆମେ ଯାହା ଦେଖୁ ତାହା ଅତୀତ ଜିନିଷ । ଆମେ ବି ଜାଣୁ ଯେ ଆଲୋକ-ରଶ୍ମି ତାର ଯାତ୍ରା ଆରମ୍ଭ କଲା ପରେ ଏହା ହୁଏତ ଅନ୍ତର୍ହିତ ହୋଇ ଯାଇ ପାରିଥାଏ ।

ମୁଁ କହିଛି ଆମ ସୂର୍ଯ୍ୟ ହେଉଛି ଏକ ଅପ୍ରଧାନ କ୍ଷୁଦ୍ର ନକ୍ଷତ୍ର । ମୋଟ ପ୍ରାୟ ଏକ ଲକ୍ଷ ଅନ୍ୟ ନକ୍ଷତ୍ର ଅଛନ୍ତି ଏବଂ ଏହିସବୁ ଏକତ୍ର ମିଳିତ ହୋଇ ଏକ ନକ୍ଷତ୍ରପୁଞ୍ଜ ଗଠନ କରେ । ଆମେ ରାତିରେ ଯେଉଁସବୁ ନକ୍ଷତ୍ର ଦେଖୁ ସେଥିରୁ ଅଧିକାଂଶ ଏହି ନକ୍ଷତ୍ର ମଣ୍ଡଳୀରେ ଥାନ୍ତି । କିନ୍ତୁ ଆମେ ଯନ୍ତ୍ର ସାହାଯ୍ୟ ନ ନେଇ ଆଖିରେ ଖୁବ୍ ଅଳ୍ପ ନକ୍ଷତ୍ର ଦେଖିପାରୁ । ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆମେ ବହୁ ଅଧିକ ଦେଖିପାରିବା । ବିଜ୍ଞାନର ବିଶେଷଜ୍ଞମାନେ ହିସାବ କରିଛନ୍ତି ଯେ, ବିଶ୍ୱବ୍ରହ୍ମାଣ୍ଡରେ ଏକ ଲକ୍ଷ ବିଭିନ୍ନ ନକ୍ଷତ୍ରମଣ୍ଡଳୀ ରହିଛନ୍ତି !

ଆଉ ଏକ ଆଶ୍ଚର୍ଯ୍ୟଜନକ କଥା ଶୁଣ ! ଆମକୁ କୁହାଯାଏ ଯେ, ଏହି ବିଶ୍ୱ ଏକ ବ୍ୟାପକ ଜିନିଷ । ଗଣିତଜ୍ଞ ସାର୍ ଜେମସ୍ ଜିନ୍ସ ଏହାକୁ ସାବୁନ ଫେଣ ସହ ତୁଳନା କରିଛନ୍ତି । ଏହି ଫେଣ୍ଟାଣ ବଢ଼ି ବଢ଼ି ଚାଲିଛି; ବିଶ୍ୱବ୍ରହ୍ମାଣ୍ଡ ଏ ଫେଣର ସ୍ତର ମାତ୍ର ! ଏହି ଫେଣଭୁଲା ବିଶ୍ୱବ୍ରହ୍ମାଣ୍ଡ ଏଡ଼େ ବିଶାଳ ଯେ ଏହା ଅତିକ୍ରମ କରି ଆଲୋକ ଆସିବାକୁ ଲକ୍ଷ ଲକ୍ଷ ବର୍ଷ ଲଗିଯାଏ ।

ଆଶ୍ଚର୍ଯ୍ୟ ହେବାର କ୍ଷମତା ଯଦି ତୋର ହ୍ରାସ ହୋଇଥାଏ, ତେବେ ମୁଁ ଏହି ପ୍ରକୃତ ବିଚିତ୍ର ବ୍ରହ୍ମାଣ୍ଡ ସମ୍ବନ୍ଧରେ ତୋତେ ଆହୁରି ଅଧିକ ବିଷୟ କହିବାକୁ ଚାହେଁ । ଜଣେ ପ୍ରସିଦ୍ଧ କେମ୍ବ୍ରିଜ ଜ୍ୟୋତିର୍ବିଦ (Cambridge Astronomer) କହନ୍ତି ଯେ, ଯେପରି ଘଣ୍ଟାରେ ଚାବି ଶେଷ ହୋଇଗଲେ ବନ୍ଦ ହୋଇଯାଏ, ସେହିପରି ବ୍ରହ୍ମାଣ୍ଡ କ୍ରମେ ଧ୍ୱଂସ ଆଡ଼କୁ ଯାଉଛି ଏବଂ କୌଣସିମତେ ପୁଣି ଚାବି ନ ଦେଲେ ଏହା ବିଗିଡ଼ିଯିବ । ଅବଶ୍ୟ ଏସବୁ ଲକ୍ଷ ଲକ୍ଷ ବର୍ଷରେ ଘଟେ—ତେଣୁ ଆମର ବ୍ୟସ୍ତ ହେବା ଦରକାର ନାହିଁ ।

ଊନବିଂଶ ଶତାବ୍ଦୀରେ ପଦାର୍ଥ ବିଜ୍ଞାନ (Physics) ଓ ରସାୟନବିଦ୍ୟା (Chemistry) ମୁଖ୍ୟ ବିଜ୍ଞାନ ଥିଲା । ପ୍ରକୃତି ବା ବାହାର ଦୁନିଆ ଉପରେ ଅଧିକାର

ହାସଲ କରିବା ନିମନ୍ତେ ଏହା ମଣିଷକୁ ସାହାଯ୍ୟ କଲା । ତାହାପରେ ବୈଜ୍ଞାନିକ ମନୁଷ୍ୟ ଭିତରେ କାର୍ଯ୍ୟ କରିବାକୁ ଲାଗିଲେ ଓ ନିଜେ ଅଧ୍ୟୟନ କଲେ । ଜୀବତତ୍ତ୍ୱଜ୍ଞାନ (Biology) ପ୍ରଧାନ ହେଲା, ମଣିଷ, ପଶୁ ଓ ଉଦ୍ଭିଦରେ ଜୀବନର ଅଧ୍ୟୟନ ହେଲା । ଏହା ଅସାଧାରଣ ଭାବରେ ପ୍ରଗତି କରି ସାରିଛି ଏବଂ ଜୀବତତ୍ତ୍ୱବିତ୍‌ମାନେ କହନ୍ତି ଇଞ୍ଜେକ୍‌ସନ ବା ଅନ୍ୟ ଉପାୟରେ ମଣିଷର ଚରିତ୍ର ବା ମନୋଭାବରେ ପରିବର୍ତ୍ତନ ଆଣିପାରିବା ସମ୍ଭବ ହେବ । ସୁତରାଂ ଏହିରୂପେ ଏକ ଭୀରୁକୁ ସାହସିକ ରୂପେ ପରିଣତ କରାଯାଇପାରେ ଅଥବା ସବୁଠାରୁ ଅଧିକ ସମ୍ଭାବନା ହେଉଛି ଏହି ଉପାୟରେ ସରକାର ତାର ସମାଲୋଚକ ବା ବିରୋଧୀମାନଙ୍କର ପ୍ରତିରୋଧ ଶକ୍ତି କମାଇ ଦେଇପାରେ ।

ଜୀବତତ୍ତ୍ୱରୁ ପରବର୍ତ୍ତୀ ପାହାଚ ହେଲା ମନସ୍ତତ୍ତ୍ୱ – ଏ ବିଜ୍ଞାନ ମନ ନେଇ କାରବାର କରେ—ମନୁଷ୍ୟର ଚିନ୍ତା, ମତଲବ, ଭୟ ଓ ଅଭିଳାଷ ଅଧ୍ୟୟନ କରେ । ଏହିରୂପେ ବିଜ୍ଞାନ ନୂତନ କ୍ଷେତ୍ରକୁ ଯାଉଛି ଏବଂ ଆମକୁ ଆମ ବିଷୟରେ କହୁଛି ଏବଂ ତେଣୁ ଆମ ନିଜ ଉପରେ କର୍ତ୍ତୃତ୍ୱ କରିବା ନିମନ୍ତେ ବୋଧହୁଏ ସାହାଯ୍ୟ କରୁଛି ।

ସନ୍ତତିଶାସ୍ତ୍ର (Eugenics) ମଧ୍ୟ ଜୀବତତ୍ତ୍ୱରୁ ବାହାରିଛି । ଏହା ହେଉଛି ଜାତିବୃଦ୍ଧି ବିଜ୍ଞାନ ।

କେତେକ ପଶୁଙ୍କ ଅଧ୍ୟୟନ ବିଜ୍ଞାନ ବୃଦ୍ଧିରେ କିପରି ସାହାଯ୍ୟ କରିଛି, ଏହା ଲକ୍ଷ୍ୟ କଲେ ଆଗ୍ରହ ଜାତ ହୁଏ । ନାଡ଼ି ଓ ମାଂସପେଶୀ କିପରି ଚଳୁଛି ତାହା ବାହାର କରିବା ନିମନ୍ତେ ବହୁତ ବେଙ୍ଗକୁ କାଟି ଦିଆଗଲା । କ୍ଷୁଦ୍ର ଓ ଅତି ନଗଣ୍ୟ ମାଛି ଯେ ଅନେକ ସମୟରେ ବେଶି ପାଚିଲା କଦଳୀ ଉପରେ ବସିପଡ଼େ ଏବଂ ସେଥିପାଇଁ ତାକୁ ପୁଣି କଦଳୀ-ମାଛି ବୋଲି କହନ୍ତି—ତାକୁ ଅଧ୍ୟୟନ କରି ବଂଶାନୁକ୍ରମ କିପରି ହେଉଛି ସେହି ଜ୍ଞାନ ଅର୍ଜନ କରାହେଉଛି । ଯତ୍ନର ସହିତ ମାଛିକୁ ନିରୀକ୍ଷଣ କରି ଏକ ପୁରୁଷର ଭାବଭଙ୍ଗୀ କିପରି ଅନ୍ୟ ପୁରୁଷକୁ ଯାଏ ତାହା ଦେଖାଯାଇଛି । ଅନେକ ପରିମାଣରେ ମନୁଷ୍ୟର ବଂଶ ପରମ୍ପରା କିପରି କାର୍ଯ୍ୟ କରେ ଜାଣିବା ନିମନ୍ତେ ଏହା ସାହାଯ୍ୟ କରେ ।

ଏକ ସାଧାରଣ ଝିଣ୍ଟିକା ପୁଣି ଆମକୁ ବହୁତ କଥା ଶିକ୍ଷା ଦିଏ । ଆମେରିକାନ୍ ନିରୀକ୍ଷକମାନେ ଦୀର୍ଘକାଳ ପର୍ଯ୍ୟନ୍ତ ଯତ୍ନ ସହକାରେ ଝିଣ୍ଟିକା ଅଧ୍ୟୟନ କରି ଲିଙ୍ଗ ପଶୁ ତଥା ମାନବ ଦେହରେ କିପରି କାର୍ଯ୍ୟ କରେ, ତାହା ଦେଖାଇଛନ୍ତି । ଶ୍ରେଷ୍ଠ ବୀଜଟି ତାର ଜୀବନକାଳର ପ୍ରାରମ୍ଭଠାରୁ କିପରି ପୁରୁଷ ବା ନାରୀ ହୁଏ, କ୍ରମେ ଶ୍ରେଷ୍ଠ ପୁରୁଷ ବା ନାରୀ ପ୍ରାଣୀ ହୁଏ, ଶ୍ରେଷ୍ଠ ବାଳକ ବା ବାଳିକା ହୁଏ ଏ ସମ୍ବନ୍ଧରେ ଆମେ ଏବେ ବହୁତ କଥା ଜାଣିଲୁଣି ।

ଚତୁର୍ଥ ଦୃଷ୍ଟାନ୍ତ ହେଉଛି ସାଧାରଣ ପୋଷା କୁକୁର । ଆମ ଅମଳର ପାଭ୍ଲୋବ ନାମକ ଜଣେ ପ୍ରସିଦ୍ଧ ରୁଷୀୟ ବୈଜ୍ଞାନିକ ଯତ୍ନର ସହିତ କୁକୁରକୁ ନିରୀକ୍ଷଣ କରିବାକୁ

ଲଗିଲେ, ବଶେଷ ଭବରେ ଖାଦ୍ୟ ଦେଖିଲେ ତା ପାଟିରୁ କାହିଁକ ଲାଳ ବୁହେ, ତାହା ଲକ୍ଷ୍ୟ କଲେ । ସେ ପ୍ରକୃତରେ କୁକୁର ମୁହଁର ଲାଳକୁ ମାପିଲେ । ଖାଦ୍ୟ ଦେଖିଲେ ଏପର କୁକୁର ପାଟିରୁ ଲାଳ ଗଡ଼ିବା ଟା ଏକ ସ୍ୱେଚ୍ଛାପ୍ରଣୋଦତ କାର୍ଯ୍ୟ—ଏହାକୁ "Unconditioned reflex" ବା ଆପଣାଛାଏଁ ହେଉଥିବା ପ୍ରେରଣା ବୋଲ କହନ୍ତ । ଯେପର ପୂର୍ବରୁ କୌଣସି ଅଭଜ୍ଞତା ନ ଥାଇ ବ ଗ୍ଲେଟ ଶିଶୁ ଘୁଙ୍ଗୁଡ଼ି ମାରେ, ହାଇ ମାରେ ବା ଲମ୍ବ ହୋଇ ଶୋଇଯାଏ ।

ତାପରେ ପାଭ୍ଲବ "Conditioned reflexes" ବା ପ୍ରେରଣାକୁ ଜାତ- ଅର୍ଥାତ୍ କଛୁ ସଙ୍କେତ ପାଇଲେ ଖାଦ୍ୟ ଆଶା କରବା ନମନ୍ତେ କୁକୁରକୁ ଶିକ୍ଷା ଦେଲେ ଏବଂ ସେଥିରେ ଲାଳ ଗଡ଼ାଇବାର ଚେଷ୍ଟା କଲେ; ଫଳ ସ୍ୱରୂପ ଦେଖିଲେ କୁକୁର ମନରେ ଏହ ସଙ୍କେତଟା ଖାଦ୍ୟ ବୋଲ ବବେଚତ ହୋଇଗଲା ଏବଂ ଖାଦ୍ୟ ନ ଥିଲେ ସୁଦ୍ଧା ଖାଦ୍ୟ ଆସିଲେ ଯେଉଁ ଫଳ ହୁଏ ତାହା ହିଁ ଜାତକଲା ।

କୁକୁର ଓ ତାର ଲାଳ ଉପରେ ବଶ୍ଳେଷଣ ହିଁ ମାନବ ମନସ୍ତତ୍ତ୍ୱର ମୂଳଭତ୍ତି କରାଯାଇଛ ଏବଂ ଏହା ଦେଖାଇ ଦଆହୋଇଛ କପର ମନୁଷ୍ୟର ଶୈଶବାବସ୍ଥାରେ ଅନେକ "Unconditioned reflexes" ବା ଆପଣାଛାଏଁ କାମ ହୁଏ ଏବଂ ସେ ଯେତେ ବଡ଼ ହୁଏ ତେତେ "Conditioned reflexes" ପରସ୍ଥିତ ପ୍ରେରଣାରେ ହୁଏ । ପ୍ରକୃତରେ ଆମେ ଯାହା ସବୁ ଶିକ୍ଷା କରୁ ତାହା ଏହା ଉପରେ ପ୍ରତଷ୍ଠିତ । ଏହ ଉପାୟରେ ଆମର ଅଭ୍ୟାସ ଗଢ଼ି ଉଠେ ଏବଂ ଆମେ ଭାଷା ଆଦ ଶିକ୍ଷା କରୁ । ଆମର କାର୍ଯ୍ୟସବୁ ଆମର ପ୍ରତବମ୍ବ (Reflexes) ଦ୍ୱାରା ପରଚ୍ଚାଳତ ହୁଏ—ଏହା ଅବଶ୍ୟ ଉଭୟ ଆମୋଦ ଓ ନରାନନ୍ଦମୟ । ସାଧାରଣ ଭୟ କଥାଟାକୁ ଧର । ଜଣେ ମଣିଷ ଯେତେବେଳେ ତା ପାଖରେ ଗୋଟିଏ ସାପ ଦେଖେ କମ୍ବା ସାପ ପର ଦେଖାଯାଉଥିବା ଏକ ଦଉଡ଼ି ଦେଖେ, ସେତେବେଳେ ବନା ଚନ୍ତାରେ ଓ ବଡ଼ ବେଗରେ ସେ ଡେଇଁପଡ଼େ—ସେଠି ପାଭ୍ଲବଙ୍କ ପ୍ରୟୋଗ ଜ୍ଞାନର କୌଣସି ଆବଶ୍ୟକତା ହୁଏ ନାହିଁ ।

ପାଭ୍ଲବଙ୍କ ପ୍ରୟୋଗ ସମଗ୍ର ମନସ୍ତତ୍ତ୍ୱ ବଜ୍ଞାନକୁ ବୈପ୍ଲବକ କରଦେଇଛ । ସେଥିରୁ କେତେକ ପ୍ରୟୋଗ ବଡ଼ ଆଗ୍ରହଦାୟକ, କନ୍ତୁ ମୁଁ ସେ ବଷୟରେ ଆଉ ଏଠି ଆଲୋଚନା କରପାରବ ନାହିଁ । ମୁଁ କେବଳ ଏତକ ଅଧିକା କହପାରେ ଯେ ମନସ୍ତତ୍ତ୍ୱ ଅନୁସନ୍ଧାନର ଆଜୁର କେତେକ ପ୍ରଧାନ ପନ୍ଥା ରହଛ ।

ବୈଜ୍ଞାନକ କାର୍ଯ୍ୟପନ୍ଥାର ତୋତେ ଗୋଟାଏ ଧାରଣା ଦେବା ନମନ୍ତେ ମୁଁ ଏଠି କେତୋଟି ଦୃଷ୍ଟାନ୍ତ ଦେଲ । ପୁରାତନ ମନୋବୈଜ୍ଞାନକ ସ୍ତରରେ ବଡ଼ ବଡ଼ ଜନଷ ବଷୟରେ ଅସ୍ପଷ୍ଟ ଭବରେ କୁହାହେଉଥିଲା—ଏହା ବଶ୍ଳେଷଣ

କରିବା ବା ପୂର୍ଣ୍ଣ ରୂପେ ବୁଝିପାରିବା ସହଜ ବା ସମ୍ଭବ ବି ନ ଥିଲା । ଲୋକେ ଏ ବିଷୟରେ ତର୍କ ଉପରେ ତର୍କ କରୁଥିଲେ ଏବଂ ଅତ୍ୟନ୍ତ ଉତ୍ତେଜିତ ହୋଇ ଯାଉଥିଲେ, କିନ୍ତୁ ସେମାନଙ୍କ ଯୁକ୍ତିର ସତ୍ୟତା ବା ଅନ୍ୟଥା ବିଷୟରେ କୌଣସି ଦୃଷ୍ଟିଭିତ୍ତିମୂଳକ ପରୀକ୍ଷା ହୋଇ ନ ପାରୁଥିବାରୁ ଏ ବିଷୟଟି ସବୁବେଳେ ଖାଲି କଥାରେ ହିଁ ରହିଯାଉଥିଲା । ପର ସଂସାର ସମ୍ବନ୍ଧରେ ଯୁକ୍ତି କରିବା ବିଷୟରେ ସେମାନେ ଏତେ ବ୍ୟସ୍ତ ରହୁଥିଲେ ଯେ, ଏହି ଦୁନିଆର ସାଧାରଣ ଜିନିଷସବୁ ସେମାନେ ନିରୀକ୍ଷଣ କରିବାକୁ ସମୟ ପାଉ ନ ଥିଲେ । ବିଜ୍ଞାନର ପନ୍ଥା ସମ୍ପୂର୍ଣ୍ଣ ବିପରୀତ ।

ନିତାନ୍ତ ଶ୍ରେଷ୍ଠ ଓ ନଗଣ୍ୟ ବୋଲି ମନେ କରାଯାଉଥିବା ଜିନିଷକୁ ଯତ୍ନ ସହକାରେ ନିରୀକ୍ଷଣ କରାଯାଏ ଏବଂ ଏଥିରେ ମହତ୍ତ୍ୱ ଫଳଲାଭ ହୁଏ । ଏହି ଫଳ ଉପରେ ତତ୍ତ୍ୱ ଗଢ଼ାହୁଏ ଏବଂ ଆହୁରି ନିରୀକ୍ଷଣ ଓ ପ୍ରୟୋଗଦ୍ୱାରା ଏହି ତତ୍ତ୍ୱସବୁ ପୁନର୍ବାର ସୁଧାରି ଦିଆ ହୁଏ ।

ଏହାର ଅର୍ଥ ନୁହେଁ ଯେ, ବିଜ୍ଞାନରେ ଭୁଲ ହୁଏନା । ଏହା ଅନେକ ସମୟରେ ଭୁଲ ପଥରେ ଯାଏ ଏବଂ ନିଜର ପାଦ ପଛକୁ ହଟାଇବାକୁ ପଡ଼େ । କିନ୍ତୁ କୌଣସି ପ୍ରଶ୍ନ ସମସ୍ୟା ବୁଝିବା ନିମନ୍ତେ ଠିକଣା ଉପାୟ ହେଉଛି ବୈଜ୍ଞାନିକ ପନ୍ଥା । ଊନବିଂଶ ଶତାବ୍ଦୀରେ ବିଜ୍ଞାନର ଯେଉଁ ଔଦ୍ଧତ୍ୟ ଓ ଆତ୍ମପ୍ରାଚୁର୍ଯ୍ୟ ଭାବ ଥିଲା ଆଜି ତାହା ନାହିଁ । ଏହା ଯାହା ଲାଭ କରିଛି ସେଥିରେ ଗର୍ବିତ ଏବଂ ତଥାପି ସମ୍ମୁଖରେ ଆବିଷ୍କାର ନ ହୋଇ ଯେଉଁ ବିଶାଳ ଓ ସଦାବିସ୍ତୃତ ଜ୍ଞାନସମୁଦ୍ର ପଡ଼ିଛି, ତାହା ସମ୍ମୁଖରେ ଏହା ବଡ଼ କ୍ଷୁଦ୍ର ବୋଲି ନିଜକୁ ବିବେଚନା କରେ । ପଣ୍ଡିତ ଲୋକ ବୁଝେ ଯେ, ସେ କେତେ କମ୍ ଜାଣିଛି, ନିର୍ବୋଧ ଲୋକ ପ୍ରତ୍ୟେକ ଜିନିଷ ଜାଣିଛି ବୋଲି ଅନୁମାନ କରେ । ବିଜ୍ଞାନରେ ବି ସେହିପରି । ଏହା ଯେତେ ଅଗ୍ରଗତି କରୁଛି, ତେତେ କମ୍ ନିର୍ଦ୍ଦିଷ୍ଟ ମତ ଧରିବସିବା ( Dogmatic ) ସମ୍ଭବ ହେଉଛି ଏବଂ ତାହା ସମ୍ମୁଖରେ ଆସୁଥିବା ସମସ୍ୟାର ଜବାବ ଦେବା ନିମନ୍ତେ କେତେ ଅଧିକ ଭାବରେ ଦ୍ୱିଧା ଅନୁଭବ କରୁଛି । ଏଡ଼ିଙ୍ଗ୍‌ଟନ୍ କହନ୍ତି, "ଆମେ ଯେତେ ସଂଖ୍ୟକ ପ୍ରଶ୍ନର ଜବାବ ଦେଇପାରିବା, ସେଥିରୁ ନୁହେଁ, ମାତ୍ର ଯେତେ ସଂଖ୍ୟକ ପ୍ରଶ୍ନ ପଚାରି ପାରିବା ତାହାରି ଉପରେ ହିଁ ବିଜ୍ଞାନର ପ୍ରଗତି ମପାଯାଇପାରେ । ସମ୍ଭବତଃ ଏହା ଠିକ୍, କିନ୍ତୁ ତଥାପି ବିଜ୍ଞାନ ଅଧିକରୁ ଅଧିକ ପ୍ରଶ୍ନର ଜବାବ ଦିଏ, ଜୀବନକୁ ବୁଝିବାରେ ଆମକୁ ସାହାଯ୍ୟ କରେ ଏବଂ ଆମେ ଯଦି ଇଚ୍ଛା ପ୍ରକାଶ କରି ଏହାର ସୁବିଧା ଉଠାଇବାକୁ ଚାହୁଁ, ତାହା ହେଲେ ଏହା ଉନ୍ନତ ଜୀବନ ଧାରଣରେ ଆମକୁ ସମର୍ଥ କରାଏ—ଜୀବନର ଏହି ଉଦ୍ଦେଶ୍ୟ ହେବାର କଥା । ଅଯୁକ୍ତିର ଅସ୍ପଷ୍ଟ ଦ୍ୱିଧା ପରିବର୍ତ୍ତେ ଏହା ଆମକୁ ବାସ୍ତବତାର ସମ୍ମୁଖୀନ କରାଏ ଏବଂ ଆମ ଜୀବନର ଅନ୍ଧାର କୋଣଗୁଡ଼ିକୁ ଆଲୋକିତ କରେ ।"

## ୧୮୩ : ବିଜ୍ଞାନର ସଦୁପଯୋଗ ଓ ଦୁରୁପଯୋଗ

ଜୁଲାଇ ୧୮, ୧୯୩୩

ମୋର ଗତ ଚିଠିରେ ଅଦ୍ଭୁତ ବିଜ୍ଞାନ ଜଗତର ଶେଷ ପ୍ରଗତି ସମ୍ବନ୍ଧରେ ମୁଁ ତତେ ସାମାନ୍ୟ କିଛି କହିଲି । ମୁଁ ଜାଣେ ନା ଏହି ବିଷୟ ଦୃଷ୍ଟି ତୋ ମନରେ ଆଗ୍ରହ ଜାତ କରିବ କି ନାହିଁ ଏବଂ ସେହି ଚିନ୍ତା ଓ ବାହାଦୁରୀ ରାଜ୍ୟକୁ ତୁ ଆକୃଷ୍ଟ ହେବୁ କି ନାହିଁ । ଏହି ବିଷୟରେ ତୋର ଯଦି ଅଧିକ ଜାଣିବାର ଲାଳସା ଥାଏ, ତେବେ ତୁ ସହଜରେ ଅନେକ ପୁସ୍ତକ ପଢ଼ି ପାରିବୁ । କିନ୍ତୁ ମନେରଖ, ମାନବ ଚିନ୍ତା ସଦା ଅଗ୍ରଗତି କରୁଛି । ସର୍ବଦା ପ୍ରକୃତି ଓ ବିଶ୍ୱବ୍ରହ୍ମାଣ୍ଡର ସମସ୍ୟା ଧରି ତାହା ବୁଝିବା ନିମନ୍ତେ ଚେଷ୍ଟାକରୁଛି ଏବଂ ମୁଁ ତୋତେ ଆଜି ଯାହା କହୁଛି କାଲିକି ତାହା ସମ୍ପୂର୍ଣ୍ଣ ଭାବରେ ଅପର୍ଯ୍ୟାପ୍ତ ଓ ଅପ୍ରଚଳିତ ହୋଇ ଯାଇପାରେ । ମାନବ ମନ-ରାଜ୍ୟରେ ଏହି ଆଘାତ ମୋତେ ଖୁବ୍ ମୋହିତ କରେ—ଏହା କିପରି ବିଶ୍ୱର ଅଜଣା କୋଣକୁ ଯୁଝି ଯାଏ, ଏହାର ରହସ୍ୟ ଭେଦ କରିବା ନିମନ୍ତେ ଚେଷ୍ଟା କରେ ଏବଂ ଯେଉଁ ନିତାନ୍ତ ବୃହତ ତଥା ନିତାନ୍ତ କ୍ଷୁଦ୍ର ପରି ମନେ ହୁଏ ତାକୁ ଧରିବା ଲାଗି ସାହସ କରେ ଓ ମାପେ, ଏହା ମୋ ମନ ମୁଗ୍ଧ କରିଦିଏ ।

ଏହି ସବୁକୁ କହନ୍ତି "ନିର୍ମଳ" ବିଜ୍ଞାନ—ଅର୍ଥାତ୍ ବିଜ୍ଞାନ—ଯାହାର ଜୀବନ ଉପରେ କୌଣସି ପ୍ରତ୍ୟକ୍ଷ ବା ଜରୁରୀ କର୍ମଫଳ ହୁଏ ନାହିଁ । ଏହା ସୁସ୍ପଷ୍ଟ ଯେ ସାପେକ୍ଷାବାଦ ବା ସ୍ଥାନ-ସମୟର ଧାରଣା ବା ବ୍ରହ୍ମାଣ୍ଡର ଆକୃତିର ଆମର ଦୈନନ୍ଦିନ ଜୀବନ ସହିତ କୌଣସି ସମ୍ପର୍କ ନାହିଁ । ଏହିସବୁ ତତ୍ତ୍ୱରୁ ଅଧିକାଂଶ ଉଚ୍ଚତର ଗଣିତ ଉପରେ ନିର୍ଭର କରେନ୍ତି ଏବଂ ଏହି ଅର୍ଥରେ ଏହି ଜଟିଳ ଓ ଉଚ୍ଚ ଗଣିତସବୁ ମଧ୍ୟ ବିଶୁଦ୍ଧ ବିଜ୍ଞାନ । ଏପରି ବିଜ୍ଞାନରେ ଅଧିକାଂଶ ଲୋକଙ୍କର ଆଗ୍ରହ ନାହିଁ, ସେମାନେ ସ୍ୱାଭାବିକରୂପେ ଦୈନନ୍ଦିନ ଜୀବନରେ ବିଜ୍ଞାନର ପ୍ରୟୋଗରେ ଅଧିକ ଆଗ୍ରହୀ । ଗତ ୧୫୦ ବର୍ଷ ଭିତରେ ଏହି ବ୍ୟାବହାରିକ ବିଜ୍ଞାନହିଁ ଜୀବନକୁ ବୈପ୍ଳବିକ କରିପକାଇଛି । ବାସ୍ତବିକ ଏହି ବିଜ୍ଞାନର ଶାଖାମାନଙ୍କ ଦ୍ୱାରା ଆଜି ଜୀବନ ସମ୍ପୂର୍ଣ୍ଣରୂପେ ପରିଚାଳିତ ହୁଏ ଓ ନିର୍ଭର କରେ ଏବଂ ଏହା ବ୍ୟତିରେକେ ଆମର ସ୍ଥିତି କଳ୍ପନା କରିବା ଆମ ପକ୍ଷରେ କଷ୍ଟକର ହୋଇପଡ଼େ । ଲୋକେ ଅନେକ ସମୟରେ ଅତୀତର ସେହି ପୁରୁଣା ସୁଦିନ ସମ୍ବନ୍ଧରେ କହନ୍ତି—ସୁବର୍ଣ୍ଣଯୁଗ ଅତୀତ ହୋଇ ଯାଇଛି । ଅତୀତ ଇତିହାସର କେତେକ କାଳ ଅତ୍ୟନ୍ତ ଚିତ୍ତାକର୍ଷକ ଏବଂ କେତେକ ଭାବରେ ସେଗୁଡ଼ିକ ଆମ ଅମଳ ଅପେକ୍ଷା ବି ଉଚ୍ଚତର ଥିଲା । କିନ୍ତୁ ସମ୍ଭବତଃ ଏହି ଆକର୍ଷଣ ଅନ୍ୟ କିଛି ଅପେକ୍ଷା ଦୂରତା ଓ କେତେକ ଅସ୍ପଷ୍ଟତା ହେତୁ

ହୋଇଥିଲ ଏବଂ କେତେକ ଶ୍ରେଷ୍ଠ ମାନବ କୌଣସି ଯୁଗରେ ବାସ କରୁଥିଲେ ଓ ପ୍ରାଧାନ୍ୟ କରୁଥିଲେ ବୋଲି ଏହାକୁ ମହାନ୍ ଯୁଗ ବୋଲି ଆମେ ଭାବପାରୁ । ଇତିହାସ ସାରା ସାଧାରଣ ଲୋକର ଭାଗ୍ୟ ଅତ୍ୟନ୍ତ ଦୁର୍ଦ୍ଦଶାପୂର୍ଣ୍ଣ ହୋଇଛି । ତାଙ୍କର ଯୁଗ ଯୁଗ ଥିବା ବୋଝ ବିଜ୍ଞାନ କଅଣ୍ଡ ଲାଘବ କଲା ।

ଚାରିଆଡ଼କୁ ନଜର ଦେଲେ ତୁ ଦେଖିପାରିବୁ ପ୍ରାୟ ପ୍ରତ୍ୟେକ ଜିନିଷ କୌଣସି ନା କୌଣସି ପ୍ରକାରେ ବିଜ୍ଞାନ ସହ ସମ୍ପୃକ୍ତ । ଆମେ ବ୍ୟାବହାରିକ (Applied) ବିଜ୍ଞାନ ପନ୍ଥାରେ ଯାତ୍ରା କରୁ । ସେହି ଉପାୟରେ ଆମେ ପରସ୍ପର ସହିତ ଆଳାପ ଆଲୋଚନା କରୁ । ଅନେକ ସମୟରେ ଆମର ଖାଦ୍ୟ ସେହି ଉପାୟରେ ଜାତ ହୁଏ ଏବଂ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ତାକୁ ବୋହି ନିଆହୁଏ । ବିଜ୍ଞାନ ବିନା ଅନ୍ୟ କୌଣସି ପନ୍ଥାରେ ଆମେ ଯେଉଁ ପୁସ୍ତକ ଓ ସମ୍ବାଦପତ୍ର ପଢ଼ୁ, ତାହା ମୁଁ ଲେଖୁଥିବା କାଗଜ ବା କଲମ କିଛି ହୋଇ ପାରିବ ନାହିଁ । ସବୁଠାରେ, ସ୍ୱାସ୍ଥ୍ୟ ଏବଂ କେତେକ ରୋଗ ଉପରେ ଜୟ ବିଜ୍ଞାନ ଉପରେ ନିର୍ଭର କରେ । ବ୍ୟାବହାରିକ ବିଜ୍ଞାନ ଛଡ଼ା ଆଧୁନିକ ଜଗତର କାମ ଚଳିବା ସମ୍ପୂର୍ଣ୍ଣ ଅସମ୍ଭବ ହୋଇପଡ଼େ । ଅନ୍ୟସବୁ କାରଣ ଛଡ଼ା ଗୋଟିଏ କାରଣ ନିଷ୍ପତ୍ତିମୂଳକ ଓ ସିଦ୍ଧ ବିଜ୍ଞାନ ବ୍ୟତିରେକେ ପୃଥିବୀର ଲୋକସଂଖ୍ୟା ପାଇଁ ଯଥେଷ୍ଟ ଖାଦ୍ୟ ନ ଥାନ୍ତା ଏବଂ ତହିଁରୁ ଅର୍ଦ୍ଧେକ ବା ବେଶି ଅନାହାରରେ ମରିଯାଆନ୍ତେ । ଗତ ଶହେ ବର୍ଷ ଭିତରେ ଲୋକସଂଖ୍ୟା କପରି ସୀମାତିରିକ୍ତ ଭାବରେ ବୃଦ୍ଧି ପାଇଛି ମୁଁ ତତେ କହିଛି । ଯଦି ବିଜ୍ଞାନ ସାହାଯ୍ୟରେ ଖାଦ୍ୟ ଉତ୍ପନ୍ନ କରାହେବ ଏବଂ ଏହି ଖାଦ୍ୟକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଆହେବ, ତେବେ କେବଳ ଏହି ବର୍ଦ୍ଧିତ ଲୋକସଂଖ୍ୟା ବଞ୍ଚିପାରିବ ।

ମାନବ ଜୀବନରେ ବିଜ୍ଞାନ ବଡ଼ ମେସିନ ପ୍ରଚଳନ କଲାଦିନୁଁ ଏହାକୁ ଉନ୍ନତ କରିବାର କ୍ରମାନ୍ୱୟ ପ୍ରଚେଷ୍ଟା ଚାଲିଛି । ବର୍ଷକୁ ବର୍ଷ •ଅସଂଖ୍ୟ କ୍ଷୁଦ୍ର ପରିବର୍ତ୍ତନମାନ କରାଯାଉଛି—ଏପରି କି ମାସକୁ ମାସ ବି ହେଉଛି—ଏଥିରେ ମେସିନ ଅଧିକ କୁଶଳ ଓ ମାନବ ଶ୍ରମ ଉପରେ କମ୍ ନିର୍ଭର କରୁଛି । ବିଂଶ ଶତାବ୍ଦୀର ଗତ ତିରିଶ ବର୍ଷ ଭିତରେ କୌଶଳକ୍ରମେ ଏହି ଉନ୍ନତି ବିଶେଷ ଭାବରେ ଦ୍ରୁତତର ହୋଇଛି । ଶିଳ୍ପ ବିଷୟକ ଉନ୍ନତି ବୋଲି ଏହାକୁ କୁହାଯାଏ । ଆଜିକାଲି ପରିବର୍ତ୍ତନ ହାର୍ ଏଡ଼େ ପ୍ରଖର ହୋଇଛି—ଏବଂ ଏହା ଏବେସୁଦ୍ଧା ଚାଲିଛି ଯେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶିଳ୍ପ ବିପ୍ଳବ ପରି ଏହା ଶିଳ୍ପ ଓ ଉତ୍ପାଦନ ପ୍ରଣାଳୀକୁ ବୈପ୍ଳବିକ କରି ପକାଇଛି । ଉତ୍ପାଦନରେ ବିଦ୍ୟୁତ ଶକ୍ତିର ଅଧିକ ପ୍ରୟୋଗ ହେତୁ ଏହି ନୂତନ ବିପ୍ଳବ ଅନେକ ପରିମାଣରେ ହୋଇଛି । ଏହିରୂପେ ବିଂଶ ଶତାବ୍ଦୀରେ ବିଶେଷ ଭାବରେ ସଂଯୁକ୍ତରାଷ୍ଟ୍ରଆମେରିକାରେ ଆମେ ଏକ ବିରାଟ ବିଦ୍ୟୁତ୍‌ଶକ୍ତି ବିପ୍ଳବ ଦେଖିଲେ ଏବଂ ଏହା ଜୀବନ ଧାରଣର ସମ୍ପୂର୍ଣ୍ଣ ନୂତନ ଅବସ୍ଥା ସୃଷ୍ଟି କଲା । ଯେପରି ଅଷ୍ଟାଦଶ ଶତାବ୍ଦୀର ଶିଳ୍ପ ବିପ୍ଳବ ଫଳରେ ମେସିନ ଯୁଗ ଆରମ୍ଭ ହେଲା

ସେହିପରି ବିଦ୍ୟୁତିକ ବିପ୍ଳବ ଫଳରେ ଏବେ ଶକ୍ତିଯୁଗ (Power age) ହେଉଛି । ବିଦ୍ୟୁତଶକ୍ତି ଯାହା ଶିଳ୍ପ ରେଲଓ୍ୱେ ଓ ଅସଂଖ୍ୟ ଅନ୍ୟ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା ତାହା ପ୍ରତ୍ୟେକ ଜିନିଷ ଉପରେ ପ୍ରାଧାନ୍ୟ କରୁଥିଲା । ଏହି କାରଣରୁ ଲେନିନ୍ ବହୁତ ଆଗରୁ ଦୃଷ୍ଟିପାତ କରି ସମଗ୍ର ସୋଭିଏଟ ରୁଷରେ ପାଣିରୁ ବିଜୁଳି ଶକ୍ତି ବାହାର କରିବାର ବଡ଼ ବଡ଼ କାରଖାନା ସବୁ ନିର୍ମାଣ କରିବା ନିମନ୍ତେ ସ୍ଥିର କରିଥିଲେ ।

ଶିଳ୍ପରେ ବିଦ୍ୟୁତ୍ ଶକ୍ତି ପ୍ରୟୋଗ ଏବଂ ଅନ୍ୟ ଉନ୍ନତି ହେତୁ ଅନେକ ସମୟରେ ଅଧିକ କିଛି ମୂଲ୍ୟ ଦେବାକୁ ନପଡ଼ି ବି ବଡ଼ ବଡ଼ ପରିବର୍ତ୍ତନମାନ ହୋଇଯାଏ । ଏହି ରୂପେ ବିଦ୍ୟୁତ୍‌ଚାଳିତ ମେସିନର ସାମାନ୍ୟ ପରିବର୍ତ୍ତନରେ ଉତ୍ପାଦନ ଦ୍ୱିଗୁଣିତ ହୋଇ ଯାଇପାରେ । ଆସ୍ତେ ଆସ୍ତେ ଏଥିରୁ ମାନବଶ୍ରମ ବାଦ୍ ଦେବାକୁ ଏହା ଅନେକ ପରିମାଣରେ ସମ୍ଭବ ହେଉଛି—ଏହା ଅତ୍ୟନ୍ତ ଧୀରେ ଧୀରେ କାମ କରେ ଓ ମଣିଷ ଭୁଲ ବି କରିପାରେ । ତେଣୁ ମେସିନର ଉନ୍ନତି ସେବା ସଙ୍ଗେ ସଙ୍ଗେ ସେଥିରେ ଅଳ୍ପ ଶ୍ରମିକ ନିଯୁକ୍ତ ହୁଅନ୍ତି । ପ୍ରକାଣ୍ଡ ମେସିନ ସବୁ ଜଣେ ଲୋକ ଦଣ୍ଡଯନ୍ତ୍ର ଧରି ( Lever ) ଓ ସୁଇଚ୍ ( Switches ) ଦବାଇ ଦେଇ ଆୟତ୍ତ କରି ପାରୁଛି । ଏହା ଫଳରେ ପ୍ରଚୁର ପରିମାଣରେ ତିଆରି ମାଲ ଉତ୍ପନ୍ନ ହେଉଛି ଏବଂ ଏହା ସଙ୍ଗେ ଅନେକ ଶ୍ରମିକଙ୍କୁ କାରଖାନାରୁ ତଡ଼ି ଦିଆଯାଉଛି—ସେମାନଙ୍କର କାରଖାନାରେ ଆଉ ଆବଶ୍ୟକତା ରହୁନାହିଁ । ଏହା ସଙ୍ଗେ ସଙ୍ଗେ ମଧ୍ୟ ଶିଳ୍ପବିଦ୍ୟାରେ ( Technology ) ଉନ୍ନତି ଏତେ ଦ୍ରୁତବେଗରେ ହେଉଛି ଯେ ଅନେକ ସମୟରେ ନୂତନ ମେସିନ ଏକ କାରଖାନାରେ ବସାଇବା ପୂର୍ବରୁ ନୂତନ ଉନ୍ନତି ହେତୁ ଏହା ଆଂଶିକଭାବରେ ପୁରୁଣା ହୋଇ ପଡ଼ୁଛି ।

ଅବଶ୍ୟ କଳକବ୍‌ଜା ଆରମ୍ଭ ଦିନଠାରୁ ମେସିନ ଅଳ୍ପେ ଆସ୍ତେ ଲୋକଙ୍କ ସ୍ଥାନ ଅଧିକାର କରୁଛି ଏବଂ ମୋର ମନେହୁଏ ମୁଁ ତତେ କହିଛି, ସେ କାଳରେ ଅନେକ ଦଙ୍ଗା ହୋଇଥିଲା ଏବଂ ରାଗୀ ଶ୍ରମିକମାନେ ନୂତନ ମେସିନ ଭାଙ୍ଗିଦେଲେ । ଯାହା ହେଉ ଦେଖାଗଲା ଶେଷରେ କଳକବ୍‌ଜା ବସିବା ଫଳରେ ଅଧିକ ନିଯୁକ୍ତି ମିଳିଲା । ଶ୍ରମିକ କଳ ସାହାଯ୍ୟରେ ଖୁବ୍ ଅଧିକ ଶସ୍ୟ ଉତ୍ପନ୍ନ କରୁଥିବାରୁ ତାହାର ମଜୁରି ବଢ଼ିଲା ଏବଂ ଜିନିଷର ମୂଲ୍ୟ କମିଗଲା । ଏହିରୂପେ ଶ୍ରମିକ ଓ ସାଧାରଣ ଲୋକେ ଏହି ଜିନିଷ ଅଧିକ କିଣି ପାରିଲେ । ସେମାନଙ୍କର ଜୀବନ ନିର୍ବାହ ମାନ ବଢ଼ିଗଲା ଓ ତିଆରି ମାଲର ଚାହିଦା ବଢ଼ିଲା । ଏହା ଫଳରେ ଅଧିକ କାରଖାନା ତିଆରି ହେଲା ଓ ଅଧିକ ଲୋକ ନିଯୁକ୍ତ ହେଲେ । ତେଣୁ ଯଦିଓ ମୋଟ ଉପରେ ପ୍ରତ୍ୟେକ କାରଖାନାରେ ମେସିନ ଶ୍ରମିକମାନଙ୍କୁ ସ୍ଥାନଚ୍ୟୁତ କଲା, ତଥାପି ଅନେକ କାରଖାନା ହୋଇଥିବାରୁ ବହୁତ ଅଧିକ ଶ୍ରମିକ ନିଯୁକ୍ତ ହେଲେ ।

ଶିଳ୍ପୋନ୍ନତ ଦେଶମାନେ ଅନୁନ୍ନତ ଦେଶର ସୁଦୂର ବଜାର ଶୋଷଣ କରିବାରୁ ଏହି ରୀତି ଦୀର୍ଘକାଳ ପର୍ଯ୍ୟନ୍ତ ଚାଲିଲା । ଗତ କେତେବର୍ଷ ଭିତରେ ଏହି ରୀତି ବନ୍ଦ ହୋଇଗଲା ପରି ମନେହେଉଛି । ସମ୍ଭବତଃ ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥାର ଆଉ ବିସ୍ତୃତି ସମ୍ଭବ ନୁହେଁ ଏବଂ ଏହି ପ୍ରଥାରେ କିଛି ପରିବର୍ତ୍ତନ ଆବଶ୍ୟକ । ଆଧୁନିକ ଶିଳ୍ପ "ବିଶାଳ ଉତ୍ପାଦନ"ରେ ଲାଗିପଡ଼େ, କିନ୍ତୁ ଯେଉଁସବୁ ଜିନିଷ ଉତ୍ପନ୍ନ ହେଉଛି ତାହା ଯଦି ଜନସାଧାରଣ ଖର୍ଦ୍ଦି କରିପାରିବେ, ତେବେ ଏହା ଚାଲିପାରିବ । ଜନସାଧାରଣ ଯଦି ନିତାନ୍ତ ଗରିବ ବା ଅକର୍ମୀ ହୋଇଯାଆନ୍ତି ତେବେ ସେମାନେ ଏସବୁ ଜିନିଷ କିଣିପାରିବେ ନାହିଁ ।

ଏ ସବୁ ସତ୍ତ୍ୱେ ଶିଳ୍ପଗତ ଉନ୍ନତି ଅବିଶ୍ରାନ୍ତ ଚାଲିଛି ଏବଂ ଏହା ଫଳରେ ମଣିଷର ସ୍ଥାନ ମେସିନ୍ ଦଖଲ କରୁଛି ଏବଂ ଅକର୍ମୀ ସଂଖ୍ୟା ବୃଦ୍ଧି ହେଉଛି । ୧୯୨୯ ଠାରୁ ସମଗ୍ର ଦୁନିଆରେ ବେପାରରେ ବିଷମ ଦୁର୍ଗତି ଦେଖା ପଡ଼ିଅଛି, କିନ୍ତୁ ଏଥିରେ ବି ଶିଳ୍ପ-ବିଦ୍ୟା ଉନ୍ନତି ହେବାରେ ବାଧା ପାଇ ନାହିଁ । କୁହାହେଉଛି ଯେ ୧୯୨୯ଠାରୁ ସଂଯୁକ୍ତ ରାଷ୍ଟ୍ର ଆମେରିକାରେ ଏତେ ପରିବର୍ତ୍ତନ ହୋଇଛି ଯେ ଯେଉଁ ଲକ୍ଷ ଲକ୍ଷ ଶ୍ରମିକଙ୍କୁ ବେକାର କରି ଦିଆହୋଇଛି ସେଥିରେ ୧୯୨୯ର ଉତ୍ପାଦନ ଜାରି ରଖିଲେ ସୁଦ୍ଧା ଏତେ ଲୋକଙ୍କୁ ନିଯୁକ୍ତ କରାଯାଇ ପାରିବ ନାହିଁ ।

ସମଗ୍ର ଜଗତରେ ଏବଂ ବିଶେଷ ଭାବରେ ଉନ୍ନତ ଶିଳ୍ପୋଦ୍ୟୋଗ ଦେଶରେ ବିରାଟ ଅକର୍ମୀ ସମସ୍ୟା ଜାତ ହେବାର ଏହା ଗୋଟିଏ କାରଣ—ଆହୁରି ଅନେକ କାରଣ ବି ଅଛି । ଏହା ଏକ ବିଚିତ୍ର ଓ ବିପରୀତ ସମସ୍ୟା—ଆଧୁନିକ ଧରଣର କଳକବଜା ସାହାଯ୍ୟରେ ଅଧିକ ଉତ୍ପାଦନର ଅର୍ଥ ବା ଅର୍ଥ ହେବା ଉଚିତ ଜାତିର ସମ୍ପଦ ବୃଦ୍ଧି ଓ ପ୍ରତ୍ୟେକର ଉଚ୍ଚତର ଜୀବନଧାରଣ ମାନ । ଏହା ପରିବର୍ତ୍ତେ ଦାରିଦ୍ର୍ୟ ଓ ଶୋଷଣ କଷ୍ଟଭୋଗ ଏହାର ଫଳ ହୋଇଛି । ଜଣେ ଭାବିବାର କଥା ଯେ ଏହି ସମସ୍ୟାର ବୈଜ୍ଞାନିକ ସମାଧାନ କିଛି କଷ୍ଟକର ନୁହେଁ । ସମ୍ଭବତଃ ଏହା ନୁହେଁ । କିନ୍ତୁ ଏହାକୁ ବୈଜ୍ଞାନିକ ଭାବରେ ଓ ଯୁକ୍ତିଯୁକ୍ତ ଭାବରେ ସମାଧାନ କରିବାକୁ ଚେଷ୍ଟା କରିବାରେ ପ୍ରକୃତ ଅସୁବିଧା ଆସି ପଡ଼ୁଛି । କାରଣ ଏହା କରିବାକୁ ହେଲେ ଅନେକେ ସ୍ଥାପିତ ସ୍ୱାର୍ଥଙ୍କ ଦେହରେ ଆଞ୍ଚ ଲାଗିବ ଏବଂ ସେମାନେ ନିଜ ଦେଶର ସରକାରକୁ ଆୟତ୍ତରେ ରଖିବା ବିଷୟରେ ଦକ୍ଷ । ଆହୁରି ମଧ୍ୟ ବାସ୍ତବରେ ସେହି ସମସ୍ୟା ଆନ୍ତର୍ଜାତିକ ସମସ୍ୟା ଏବଂ ଆଜି ଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଅନ୍ତର୍ଜାତୀୟ ସମାଧାନରେ ବାଧା ଦେଉଛି । ସୋଭିଏଟ୍ ରୁଷ ବିଜ୍ଞାନ ପନ୍ଥା ସେହିପ୍ରକାର ସମସ୍ୟାମାନଙ୍କରେ ପ୍ରୟୋଗ କରୁଛି, କିନ୍ତୁ ତାକୁ ରାଷ୍ଟ୍ରୀୟ ଧାରରେ ଧୀରେ ଗତି କରିବାକୁ ପଡ଼ୁଛି; ଦୁନିଆର ଅବଶିଷ୍ଟ ଅଞ୍ଚଳ ପୁଞ୍ଜିବାଦୀ ଓ ତାର ବିରୋଧୀ ହୋଇ ଥିବାରୁ, ତାର ସାଧାରଣ ଭାବରେ ଯାହା ନଥିବାର କଥା ତଦପେକ୍ଷା ଅଧିକ ଅସୁବିଧା ଆସି ପଡ଼ୁଛି । ପୃଥିବୀର ରାଜନୈତିକ ଗଠନ ପଛରେ ପଡ଼ିଛି

ଏବଂ ସଙ୍କୀର୍ଣ୍ଣ ଭାବରେ ଜାତୀୟ ହେଲେ ସୁଦ୍ଧା ଆଜି ଦୁନିଆ ପ୍ରକୃତିରେ ଆନ୍ତର୍ଜାତିକ ହୋଇଗଲାଣି । ନିଷ୍ପତିମୂଳକ ଭାବରେ ସାମ୍ୟବାଦକୁ ଯଶସ୍ୱୀ ହେବାକୁ ହେଲେ, ଅନ୍ତର୍ଜାତୀୟ ପୃଥିବୀବ୍ୟାପୀ ସାମ୍ୟବାଦ ଆବଶ୍ୟକ । ଘଣ୍ଟା କଣ୍ଟା ପଛକୁ କରି ପାରିବ ନାହିଁ କିମ୍ବା ଆନ୍ତର୍ଜାତିକ ଗଠନ ଅସମ୍ପୂର୍ଣ୍ଣ ହୋଇଥିଲେ ସୁଦ୍ଧା ଜାତୀୟ ବିଚ୍ଛିନ୍ନତା ଯୋଗୁଁ ତାକୁ ଦାବି ଦେଇ ହେବ ନାହିଁ । ବିଭିନ୍ନ ଦେଶରେ ଆଜି ଫାସିଷ୍ଟମାନେ ଯେପରି କରୁଛନ୍ତି ସେହିପରି ଜାତୀୟତାକୁ ଘନୀଭୂତ କରିବାର ଉଦ୍ୟମ ଶେଷରେ ବିଫଳ ହେବାକୁ ବାଧ୍ୟ, କାରଣ ଆଜି ପୃଥିବୀ ଅର୍ଥନୀତିର ମୌଳିକ ଅନ୍ତର୍ଜାତୀୟ ଚରିତ୍ର ଏହା ବିରୁଦ୍ଧରେ ଗତି କରୁଛି । ଅବଶ୍ୟ କିଛିଏତ ପରେ ବିଫଳ ହେଲେ ସୁଦ୍ଧା ଏହା ନିଜ ମତରେ ଦୁନିଆକୁ ଟାଣି ନେଇ ଯାଇପାରେ ଏବଂ ଆଧୁନିକ ସଭ୍ୟତାକୁ ଯାହା କହନ୍ତି ସାଧାରଣ ଦୁର୍ଗତିରେ ପହଞ୍ଚାଇ ଦେଇପାରେ ।

ଏପରି ବିପତ୍ତି ପଡ଼ିବାର ଆଶଙ୍କା ଆଦୌ ଦୂର ଓ ଅଚିନ୍ତନୀୟ ନୁହେଁ । ଆମେ ଦେଖିଲେ ବିଜ୍ଞାନ ଅନେକ ଭଲ ଜିନିଷ ଆଣିଛି, ତାହା ସଙ୍ଗେ ସଙ୍ଗେ ଏହା ଯୁଦ୍ଧର ଭୟାବହତାକୁ ମଧ୍ୟ ବହୁ ପରିମାଣରେ ବଢ଼ାଇ ଦେଇଛି । ରାଷ୍ଟ୍ର ଓ ସରକାରସବୁ ଅନେକ ସମୟରେ ବିଶୁଦ୍ଧ ଓ ବ୍ୟାବହାରିକ ବିଜ୍ଞାନର ଅନେକ ବିଷୟକୁ ଅବହେଳା କରିଛନ୍ତି । କିନ୍ତୁ ସେମାନେ ବିଜ୍ଞାନର ଯୁଦ୍ଧ ସମ୍ବନ୍ଧୀୟ ତଥ୍ୟକୁ ଅବହେଳା କରିନାହାନ୍ତି ଏବଂ ସେମାନେ ନିଜକୁ ଅସ୍ତ୍ରସଜ୍ଜିତ ଓ ଦୃଢ଼ କରିବା ନିମନ୍ତେ ଶେଷ ବୈଜ୍ଞାନିକ କୌଶଳର ପୂର୍ଣ୍ଣ ସୁଯୋଗ ଉଠାଇଛନ୍ତି । ନିଷ୍ପତ୍ତିମୂଳକ ବିଶ୍ଳେଷଣରେ ଦେଖାଯାଏ, ଅଧିକାଂଶ ରାଷ୍ଟ୍ର ପଶୁବଳ ଉପରେ ନିର୍ଭର କରନ୍ତି ଏବଂ ବୈଜ୍ଞାନିକ କୌଶଳ ଏହି ରାଷ୍ଟ୍ରମାନଙ୍କୁ ଏତେ ବଳବାନ୍ କରି ଦେଉଛି ଯେ, ସେମାନେ କୌଣସି ଫଳାଫଳର ଭୟ ନ କରି ନିୟମିତ ଭାବରେ ଲୋକଙ୍କ ଉପରେ ଅତ୍ୟାଚାର କରିପାରନ୍ତି । ଅତ୍ୟାଚାରୀ ସରକାର ବିରୁଦ୍ଧରେ ପୁରୁଣାକାଳିଆ ଲୋକ ଜାଗରଣ, ଅବରୁଦ୍ଧ ପ୍ରାଚୀର ନିର୍ମାଣ ଏବଂ ଖୋଲା ମଇଦାନରେ ଲଢ଼ାଇ କରୁଥିଲେ—ବିରାଟ ଫରାସୀ ବିପ୍ଳବରେ ଏପରି ହୋଇଥିଲା । ମାତ୍ର ତାହା ବହୁକାଳରୁ ଗଲାଣି । ଏବେ ଏକ ନିରସ୍ତ୍ର ଏବଂ ଏପରିକି ସଶସ୍ତ୍ର ଜନତା ପକ୍ଷରେ ଏକ ସଂଗଠିତ ଓ ସୁସଜ୍ଜିତ ରାଷ୍ଟ୍ର ସେନା ସହ ଲଢ଼ାଇ କରିବା କଷ୍ଟକର । ରୁଷ ବିପ୍ଳବରେ ଯେପରି ହେଲା ସରକାରୀ ସେନା ସରକାର ବିରୁଦ୍ଧରେ ଯଦି ଯିବ ତେବେ ଅଲଗା କଥା; କିନ୍ତୁ ଏହା ନ ହେବା ପର୍ଯ୍ୟନ୍ତ ବଳପୂର୍ବକ ଏହାକୁ ପରାଜୟ କରିହେବ ନାହିଁ । ଏଥିଯୋଗୁଁ ସ୍ୱାଧୀନତା ଲାଗି ସଂଗ୍ରାମ କରୁଥିବା ଲୋକଙ୍କ ପକ୍ଷରେ ଗଣ ଆନ୍ଦୋଳନ ପାଇଁ ଆହୁରି ଓ ଅଧିକ ଶାନ୍ତିପୂର୍ଣ୍ଣ ସାମୂହିକ ପ୍ରଣାଳୀ ଦରକାର ହେଉଛି ।

ଏହିରୂପେ ବିଜ୍ଞାନ ଫଳରେ ଗୋଷ୍ଠୀ ବା ମୁଷ୍ଟିମେୟ ଲୋକେ ରାଷ୍ଟ୍ରକୁ ଆୟତ୍ତ କରୁଛନ୍ତି ଏବଂ ବ୍ୟକ୍ତିଗତ ସ୍ୱାଧୀନତା ଧ୍ୱଂସ ପାଉଛି ଓ ଊନବିଂଶ ଶତାବ୍ଦୀର ପୁରୁଣା

ଗଣତାନ୍ତ୍ରିକ ଭାବଧାରା ଆଉ ନାହିଁ । ଏପରି ମୁଷ୍ଟିମେୟ ବ୍ୟକ୍ତି-ଶାସନ ବିଭିନ୍ନ ରାଜ୍ୟରେ ଦେଖାଯାଏ—ବେଳେ ବେଳେ ବାହ୍ୟିକଭାବରେ ଗଣତନ୍ତ୍ର ନୀତିକୁ ଆଦର ଦେଖାନ୍ତି; ଅନ୍ୟ ସମୟରେ ପ୍ରକାଶ୍ୟରେ ତାର ନିନ୍ଦା କରନ୍ତି । ଏହି ବିଭିନ୍ନ ମୁଷ୍ଟିମେୟ ବ୍ୟକ୍ତି ଶାସନସବୁର ପରସ୍ପର ସହିତ ସଂଘର୍ଷ ହୁଏ ଏବଂ ଦେଶସବୁ ଯୁଦ୍ଧକୁ ଡାକନ୍ତି । ଏପରି କି ଏକ ମହାନ ଯୁଦ୍ଧ ଅଜି ବା ଭବିଷ୍ୟତରେ କେବଳ ଏହି ମୁଷ୍ଟିମେୟ ବ୍ୟକ୍ତି ଶାସନ ନୁହେଁ, ସଭ୍ୟତାକୁ ମଧ୍ୟ ଧ୍ୱଂସ କରି ଦେଇପାରେ । ଅଥବା ହୁଏତ ମାର୍କସୀୟ ଦର୍ଶନରେ ଯେପରି ଆଶା କରାଯାଉଛି ଏହି ଭସ୍ମରୁ ଆନ୍ତର୍ଜାତିକ ସାମ୍ୟବାଦୀ ସମାଜ ଉଠିପାରେ ।

ଯୁଦ୍ଧର ଯେଉଁସବୁ ନିଦାରୁଣ ବାସ୍ତବତା ରହିଛି, ସେଥିରେ ଏହା କଳ୍ପନା କରିବା କିଛି ଆନନ୍ଦଦାୟକ ନୁହେଁ ଏବଂ ଏହି କାରଣରୁ ସୁନ୍ଦର ବାକ୍ୟ, ଉଚ୍ଚ ସଙ୍ଗୀତ ଓ ଉଜ୍ଜ୍ୱଳ ପୋଷାକଦ୍ୱାରା ବାସ୍ତବତାକୁ ଲୁଚାଇ ଦିଆଯାଇଛି । କିନ୍ତୁ ଆଜି ଯୁଦ୍ଧ ବୋଇଲେ କଣ ବୁଝିବା ଆବଶ୍ୟକ । ଗତ ଯୁଦ୍ଧ—ପୃଥିବୀ ଯୁଦ୍ଧରେ ଯୁଦ୍ଧର ବିଭୀଷିକା ଆମେ କିଛିତ ବୁଝିପାରିଥିଲେ । ଅଥଚ କୁହାଯାଏ ଆସନ୍ତା ଯୁଦ୍ଧ ଯେପରି ହେବାର ସମ୍ଭାବନା କରାଯାଉଛି, ତାହା ତୁଳନାରେ ଗତ ଯୁଦ୍ଧ କିଛି ନୁହେଁ । କାରଣ ଯଦି ଗତ କେତେ ବର୍ଷ ଭିତରେ ଶିଳ୍ପ କୌଶଳ ଦଶ ଗୁଣ ବୃଦ୍ଧି ହୋଇଥାଏ, ତେବେ ଯୁଦ୍ଧ ବିଜ୍ଞାନ ଶହେ ଗୁଣ ଉନ୍ନତ ହୋଇଛି । ଯୁଦ୍ଧ ଆଜି ପଦାତିକ ସେନାର ଆକ୍ରମଣ ଓ ଅଶ୍ୱାରୋହୀ ସୈନ୍ୟର ଅଗ୍ରଧାବନ ବ୍ୟାପାର ହୋଇ ନାହିଁ; ଆଜି ଯୁଦ୍ଧରେ ଧନୁଶର ପରି ପଦାତିକ ସୈନ୍ୟ ଓ ଅଶ୍ୱାରୋହୀ ସୈନ୍ୟ ଅଦରକାରୀ ହୋଇ ପଡ଼ିଲଣି । ଆଜି ଯୁଦ୍ଧ ଯନ୍ତ୍ରଚାଳିତ ଟ୍ୟାଙ୍କ (ଚେନ୍‌ଲଗା ବାଟ୍ଟି ପରି ଚକଥିବା ଏକପ୍ରକାର ଗତିଶୀଳ ଯୁଦ୍ଧଜାହାଜ) ଉଡ଼ାଜାହାଜ ଓ ବୋମା ବିଶେଷତଃ ଶେଷୋକ୍ତ ଦୁଇଟିର ଯୁଦ୍ଧ । ଦିନକୁ ଦିନ ଉଡ଼ାଜାହାଜର ବେଗ ଓ କୁଶଳତା ବୃଦ୍ଧି ହେଉଛି ।

ଯଦି ଯୁଦ୍ଧ ଲାଗେ, ତେବେ ଯୁଦ୍ଧରତ ଦେଶସବୁକୁ ତତ୍‌କ୍ଷଣାତ୍ ଶତ୍ରୁ ଉଡ଼ାଜାହାଜଦ୍ୱାରା ଆକ୍ରମିତ ହେବାର ଆଶଙ୍କା କରାଯାଉଛି । ଯୁଦ୍ଧ ଘୋଷଣା ସଙ୍ଗେ ସଙ୍ଗେ ଏହି ଉଡ଼ାଜାହାଜ ସବୁ ଆସିବ କିମ୍ବା ଶତ୍ରୁ ଉପରେ ସୁବିଧା ନେବା ନିମନ୍ତେ ଏବଂ ବଡ଼ ବଡ଼ ସହର ଓ କାରଖାନାମାନଙ୍କରେ ଉଚ୍ଚବିସ୍ଫୋରକ ବୋମାବର୍ଷଣ ନିମନ୍ତେ ହୁଏତ ପୂର୍ବରୁ ଆସିପାରେ । କେତେକ ଶତ୍ରୁ ଉଡ଼ାଜାହାଜ ଧ୍ୱଂସ ହୋଇପାରେ, କିନ୍ତୁ ଅବଶିଷ୍ଟ ବାକିଥିବା ଜାହାଜ ସହର ଉପରେ ବୋମା ପକାଇବାକୁ ଯଥେଷ୍ଟ ହେବ । ଉଡ଼ାଜାହାଜରୁ ପଡ଼ୁଥିବା ବୋମାରୁ ବିଷାକ୍ତ ବାଷ୍ପ ବାହାରିବ ଏବଂ ଏହା ବିସ୍ତାର ଲଭି ସମଗ୍ର ଅଞ୍ଚଳ ଅବରୁଦ୍ଧ କରିବ—ଲୋକଙ୍କ ଶ୍ୱାସରୁଦ୍ଧ କରିଦେବ ଏବଂ ଏହା ଯେଉଁଠି ପହଞ୍ଚିବ ସେଠାରେ ପ୍ରତ୍ୟେକ ଜୀବନ୍ତ ଜୀବକୁ ବଧ କରିଦେବ । ଏତଦ୍ୱାରା ନିଷ୍ଠୁର ଓ ଅତ୍ୟନ୍ତ ଯନ୍ତ୍ରଣାଦାୟକ ଭାବରେ ବେସାମରିକ ଅଧିବାସୀମାନଙ୍କୁ ବ୍ୟାପକ ରୂପେ ଧ୍ୱଂସ

କରିଦେବ—ଏଥିରେ ଅସହ୍ୟ କଷ୍ଟ ରୋଗ ଓ ମାନସିକ ଦୁଃଖ ପହଞ୍ଚିବ । ପରସ୍ପର ସହିତ ଯୁଦ୍ଧରେ ବ୍ୟାପୃତ ଥିବା ପ୍ରତିଦ୍ୱନ୍ଦ୍ୱୀ ଶକ୍ତିର ବଡ଼ ବଡ଼ ସହରମାନଙ୍କରେ ଏହି ପ୍ରକାର ଜିନିଷ ଏକା ସମୟରେ ହୋଇପାରେ । ଇଉରୋପୀୟ ଯୁଦ୍ଧରେ ଲଣ୍ଡନ, ପାରିସ ଓ ବର୍ଲିନ କେତେକ ଦିନ ଓ ସପ୍ତାହ ଭିତରେ ଏକ ଲୁହୁଳୁଥିବା ଧ୍ୱଂସାବଶେଷର ଗଦା ହୋଇ ରହିବ ।

ଅନ୍ତୁରି ଅଧିକ ବିପଦ ଆସିବାର ବାକି ଅଛି । ଉଡ଼ାଜାହାଜରୁ ପଡ଼ୁଥିବା ବୋମାରେ ମାରାତ୍ମକ ରୋଗ ବୀଜାଣୁସବୁ ଥାଇପାରେ—ତାହାହେଲେ ସମସ୍ତ ସହରରେ ଏହି ରୋଗ ବ୍ୟାପିଯାଇପାରେ । ଏହି ପ୍ରକାର 'କୀଟାଣୁସମ୍ବନ୍ଧୀୟ ଯୁଦ୍ଧ' (Bacteriological) ଅନ୍ୟ ଉପାୟରେ ବି ହୋଇପାରେ; ଖାଦ୍ୟ ଓ ପିଇବା ପାଣିରେ ରୋଗ ବୀଜାଣୁ ମିଶାଇ ଦେଇ ଏବଂ ପ୍ଲେଗ ବୀଜାଣୁ ନେଇଥିବା ମୂଷା ଛାଡ଼ିଦେଇ କରିଯାଇପାରେ ।

ଏହିସବୁ ରାକ୍ଷସୀ ଓ ଅବିଶ୍ୱାସଯୋଗ୍ୟ ପରି ମନେହେଉଛି ଏବଂ ପ୍ରକୃତରେ ଏହା ସେଇଆ । ଜଣେ ରାକ୍ଷସ ସୁଦ୍ଧା ଏପରି କରିବାକୁ ଇଚ୍ଛା କରିବ ନାହିଁ । କିନ୍ତୁ ଯେତେବେଳେ ଲୋକେ ସମ୍ପୂର୍ଣ୍ଣ ଭାବରେ ଭୀତ ହୋଇଯାଆନ୍ତି ଏବଂ ଜୀବନମରଣ ସଂଗ୍ରାମରେ ଲାଗନ୍ତି, ସେତେବେଳେ ଅବିଶ୍ୱାସଯୋଗ୍ୟ ଜିନିଷ ସବୁ ଘଟେ । ଶତ୍ରୁ ଦେଶ ଯେ ଏପରି ଆସୁରିକ ଓ ଅବିବେକୀ ପନ୍ଥା ଗ୍ରହଣ କରିପାରେ, ଏହି ଭୟ ହେତୁ ପ୍ରତ୍ୟେକ ଦେଶ ଏହି କ୍ଷେତ୍ରରେ ସମସ୍ତଙ୍କଠାରୁ ଆଗୁଆ ହେବା ନିମନ୍ତେ ବ୍ୟଗ୍ର ହୋଇଉଠନ୍ତି । କାରଣ ସେହି ଅସ୍ତ୍ରସବୁ ଏପରି ଭୀଷଣ ଯେ ଯେଉଁ ଦେଶ ପ୍ରଥମେ ତାହା ବ୍ୟବହାର କରେ ତାହା ବହୁତ ସୁବିଧା ହୁଏ । ଡରର ଆଖି ବହୁତ ବଡ଼ !

ବାସ୍ତବିକ ଗତ ଯୁଦ୍ଧବେଳେ ବିସ୍ତୃତ ଭାବରେ ବିଷାକ୍ତ ବାଷ୍ପ ବ୍ୟବହାର ହୋଇଥିଲା ଏବଂ ଏହା ଭଲରୂପେ ଜଣା ଯେ, ଯୁଦ୍ଧ ଉଦ୍ଦେଶ୍ୟ ନିମନ୍ତେ ବାଷ୍ପ ତିଆରି କରିବା ପାଇଁ ପ୍ରଧାନ ଶକ୍ତିମାନେ ବଡ଼ ବଡ଼ କାରଖାନା ଖୋଲିଛନ୍ତି । ଏସବୁର ବିଚିତ୍ର ପରିଣତି ହେଉଛି ଆସନ୍ତା ମହାସମରରେ ଯୁଦ୍ଧଭୂମିରେ ଯେଉଁଠି କେତେକ ସେନା ଗାତ ଖୋଳି ଓ ପରସ୍ପର ଆଡ଼କୁ ସମ୍ମୁଖୀନ ହୋଇ ରହିଥାନ୍ତି, ସେଠି ପ୍ରକୃତ ଯୁଦ୍ଧ ହେବ ନାହିଁ, ମାତ୍ର ଯୁଦ୍ଧଭୂମିର ପଶ୍ଚାତରେ ବେସାମରିକ ଅଧିବାସୀ ଥିବା ନଗର ଓ ଗ୍ରାମମାନଙ୍କରେ ଏହା ହେବ । ହୁଏତ ଯୁଦ୍ଧବେଳେ ଯୁଦ୍ଧକ୍ଷେତ୍ର ହିଁ ସର୍ବାପେକ୍ଷା ନିରାପଦ ସ୍ଥାନ ହୋଇପାରେ, କାରଣ ସେଠାରେ ସେନାସବୁ ଉଡ଼ାଜାହାଜ ଆକ୍ରମଣ, ବିଷାକ୍ତ ବାଷ୍ପ ଓ ସଂକ୍ରାମକ ରୋଗରୁ ସମ୍ପୂର୍ଣ୍ଣରୂପେ ରକ୍ଷା ପାଇଥାନ୍ତି । କିନ୍ତୁ ପଛରେ ରହିଥିବା ଲୋକେ ସ୍ତ୍ରୀ ବା ପୁରୁଷଙ୍କ ପାଇଁ କୌଣସି ରକ୍ଷା ବ୍ୟବସ୍ଥା ନାହିଁ ।

ଏସବୁର ଫଳ କଣ ହେବ ? ବିଶ୍ୱବ୍ୟାପୀ ଧ୍ୱଂସଲୀଳା ! ଶତାବ୍ଦୀ ଶତାବ୍ଦୀ

ଉଦ୍ୟମରେ ଗଠିତ ସଂସ୍କୃତ ଓ ସଭ୍ୟତାର ସୁନ୍ଦର ଗଠନ ଏଥିରେ ଲୋପ ହୋଇଯିବ କି ?

କଣ ଘଟିବ କେହି ଜାଣେ ନାହିଁ । ଭବିଷ୍ୟତରେ ଗର୍ଭରେ କଣ ଛପି ରହିଛି ଦେଖାଯାଇପାରିବ ନାହିଁ । ଆମେ ଦେଖୁଛେ ଆଜ ଦୁନିଆରେ ଦୁଇଟି ଧାରା ଚାଲିଛି—ଦୁଇଟି ପ୍ରତିଦ୍ୱନ୍ଦ୍ୱୀମୂଳକ ଓ ପରସ୍ପରବିରୋଧୀ ସ୍ରୋତ । ଗୋଟିଏ ହେଉଛି ସହଯୋଗ ଓ ଯୁକ୍ତିର ପ୍ରଗତି ଏବଂ ସଭ୍ୟତାର ନିର୍ମାଣ । ଅନ୍ୟଟି ହେଉଛି ଧ୍ୱଂସକାରୀ ସ୍ରୋତ । ପ୍ରତ୍ୟେକ ଜିନିଷ ଟିକି ଟିକି କରି ଛିଣ୍ଡାଇଦେବା—ମନୁଷ୍ୟ ଜାତି ପକ୍ଷରେ ଆତ୍ମହତ୍ୟା କରିବାର ଉଦ୍ୟମ । ଉଭୟ ବେଗବତୀ ଭାବରେ ଧାଇଁଛନ୍ତି ଏବଂ ଉଭୟେ ଅସ୍ତ୍ରଶସ୍ତ୍ର ଓ ବିଜ୍ଞାନ କୌଶଳରେ ସଜ୍ଜିତ ହେଉଛନ୍ତି । କିଏ ଜୟ କରିବ ?

## ୧୮୪ : ମହାନ୍ ଦୁର୍ଗତ ବିଶ୍ୱ ସଂକଟ

ଜୁଲାଇ ୧୯, ୧୯୩୩

ବିଜ୍ଞାନ ମଣିଷ ହାତରେ ଯେଉଁ କ୍ଷମତା ଦେଇଛି ଏବଂ ମଣିଷ ତାହା ଯେପରି ଭାବରେ ବ୍ୟବହାର କରୁଛି ତାହା ଯେତେ ଅଧିକ ଚିନ୍ତା କରିବ ତେତେ ବେଶି ଆଶ୍ଚର୍ଯ୍ୟ ଲାଗିବ । କାରଣ ଆଜିକାଲିକାର ପୁଞ୍ଜିବାଦୀ ଦୁନିଆ ବାସ୍ତବିକ ଏକ ବିସ୍ମୟଜନକ ବିଷୟ । ରେଡ଼ିଓ ଜରିଆରେ ବିଜ୍ଞାନ ଆମର ବାଣୀ ସୁଦୂର ଦେଶକୁ ବୋହି ନେଉଛି, ବେତାର ଟେଲିଫୋନ ସାହାଯ୍ୟରେ ପୃଥିବୀର ଅନ୍ୟ ପ୍ରାନ୍ତରେ ଥିବା ଲୋକଙ୍କ ସହିତ ଆମେ କଥାବାର୍ତ୍ତା କରିପାରୁଛୁ ଏବଂ କିଛିଦିନ ପରେ 'ଦୂରବୀକ୍ଷଣ ଯନ୍ତ୍ର' (Television) ସାହାଯ୍ୟରେ ଆମେ ସେମାନଙ୍କୁ ଦେଖି ବି ପାରିବା । ଅଦ୍ଭୁତ ବିଜ୍ଞାନ କୌଶଳରେ ମନୁଷ୍ୟ ସମାଜର ଆବଶ୍ୟକୀୟ ସାମଗ୍ରୀ ପ୍ରଚୁର ପରିମାଣରେ ଜାତ ହୋଇପାରେ ଏବଂ ପୃଥିବୀରୁ ଦାରିଦ୍ର୍ୟର ଅଭିଶାପ ଦୂର ହୋଇପାରେ । ଆଦିମ କାଳରୁ ଇତିହାସ ଆରମ୍ଭ ବେଳୁଁ ଯେଉଁ ଦୈନନ୍ଦିନ ଶ୍ରମ ମନୁଷ୍ୟକୁ କଷ୍ଟ ଦେଉଛି ଅଥଚ ତାର ପ୍ରତିଫଳ ସ୍ୱରୂପରେ କିଛି ପାଉ ନାହିଁ ସେଥିରୁ ଉଦ୍ଧାର ପାଇବା ନିମନ୍ତେ ସେ ବାଟ ଖୋଜୁଛି; ଗୋଟିଏ ଏଲ୍ ଡୋରାଡୋ (El Dorado) ବା ସ୍ୱର୍ଗ ସ୍ୱପ୍ନ ଦେଖୁଛି ଯେଉଁ ଭୂମିରେ ଦୁଗ୍ଧ ଓ ମଧୁ ପ୍ରବାହିତ ହେଉଥିବ ଏବଂ ପ୍ରତ୍ୟେକ ଜିନିଷ ପ୍ରଚୁର ପରିମାଣରେ ମିଳିପାରିବ । ସେମାନେ ଅତୀତ ହୋଇ ଯାଇଥିବା ସୁବର୍ଣ୍ଣ ଯୁଗର କଳ୍ପନା କରନ୍ତି ଏବଂ ଏକ ସ୍ୱର୍ଗକୁ ଅନାଇ ରହିଥାଆନ୍ତି ଯେଉଁଠି ସେମାନେ ଅନ୍ତତଃ ଶାନ୍ତି ଓ ଆନନ୍ଦ ପାଇପାରିବେ । ତା'ପରେ

ଆସିଲା ବିଜ୍ଞାନ ଏବଂ ଏହା ଲୋକଙ୍କ ହାତରେ ପ୍ରଚୁର ଜିନିଷ ସୃଷ୍ଟି କରିବାର ପନ୍ଥା ସମର୍ପି ଦେଲା ଅଥଚ ଏହି ବାସ୍ତବ ଓ ସମ୍ଭାବ୍ୟ ପ୍ରାଚୁର୍ଯ୍ୟ ଭିତରେ ଏବେ ସୁଦ୍ଧା ମାନବ ସମାଜର ଅଧିକାଂଶ ଲୋକ ଦୁର୍ଦ୍ଦଶା ଓ ଦୁଃସ୍ଥ ଅବସ୍ଥାରେ ବାସ କରୁଛନ୍ତି । ଏହା ଏକ ଅଦ୍ଭୁତ ବୈଚିତ୍ର୍ୟ ନୁହେଁ କି ?

ଆମର ବର୍ତ୍ତମାନର ସମାଜ ପ୍ରକୃତରେ ବିଜ୍ଞାନ ଓ ତାହାର ପ୍ରଚୁର ଦାନଦ୍ୱାରା ହାଇରାଣ ହେଉଅଛି । ଏଗୁଡ଼ିକ ପରସ୍ପର ସହିତ ଖାପ ଖାଉ ନାହିଁ; ପୁଞ୍ଜିବାଦୀ ଧରଣର ସମାଜ ଓ ଶେଷ ବୈଜ୍ଞାନିକ କୌଶଳ ଓ ଉତ୍ପାଦନର ପ୍ରଣାଳୀ ମଧ୍ୟରେ ସଂଘର୍ଷ ଲାଗିଛି । କିପରି ଭାବରେ ଉତ୍ପନ୍ନ କରିବାକୁ ହେବ ସମାଜ ତାହା ଶିଖିଛି, ମାତ୍ର ଉତ୍ପନ୍ନ ଦ୍ରବ୍ୟର କିପରି ବଣ୍ଟନ ହେବ ତାହା ଜାଣେ ନାହିଁ ।

ଏ ମୁଖବନ୍ଧ ପରେ ଆମେ ଏବେ ଇଉରୋପ ଓ ଆମେରିକା ପ୍ରତି ଦୃଷ୍ଟିପାତ କରିବା । ପୃଥିବୀ ଯୁଦ୍ଧ ପରେ ପ୍ରଥମ ଦଶ ବର୍ଷ ଭିତରେ ସେ ଦେଶର ଗୋଲମାଲ ଓ ଅସୁବିଧା ସମ୍ବନ୍ଧରେ ମୁଁ ତୋତେ ଆଗରୁ କିଛି କହିଛି । ପରାଜିତ ଦେଶ—ଜର୍ମାନୀ ଓ ମଧ୍ୟ ଇଉରୋପର ଶ୍ରେଷ୍ଠ ରାଜ୍ୟ ସବୁ—ଯୁଦ୍ଧୋତ୍ତର ଅବସ୍ଥାରେ ଖୁବ୍ ଆଘାତ ପାଇଲେ ସେମାନଙ୍କର ମୁଦ୍ରାର ପତନ ହେଲା । ମଧ୍ୟବିତ୍ତ ଶ୍ରେଣୀ ଧ୍ୱଂସ ହେଲେ । ଇଉରୋପର ବିଜେତା ଓ ଋଣଦାତା ଶକ୍ତିଗୁଡ଼ିକର ଅବସ୍ଥା ଠିକ୍ ଏ ଭଲ ଥିଲା । ପ୍ରତ୍ୟେକ ଦେଶ ଆମେରିକାଠାରୁ କରଜ କରିଥିଲା ଏବଂ ଦେଶ ଭିତରେ ମଧ୍ୟ ପ୍ରବଳ ଜାତୀୟ ଋଣ ରହିଥିଲା ଏବଂ ଏ ଦୁଇ ଋଣରେ ସେଗୁଡ଼ିକ ହତବୁଦ୍ଧି ଓ ଟଳମଳ ହୋଇପଡ଼ିଲେ । ସେମାନେ କ୍ଷତିପୂରଣ ସ୍ୱରୂପ ଜର୍ମାନୀରୁ ଧନପାଇବାର ଆଶା କରିଥିଲେ ଏବଂ ଏଥିରୁ ଅନ୍ତତଃ ବିଦେଶୀ ଋଣ ଅସୁଲଦେଇ ପାରିବାର ଆଶା ଥିଲା । ଏହି ଆଶା ଏକ ଯୁକ୍ତିଯୁକ୍ତ ଜିନିଷ ନୁହେଁ; କାରଣ ଜର୍ମାନୀ ବି ଋଣ ସୁଝିବା ପାଇଁ କ୍ଷମ ନ ଥିଲା । କିନ୍ତୁ ଆମେରିକା ଜର୍ମାନୀକୁ ଧନ ଧାର ଦେବାରୁ ଏହି ଅସୁବିଧା ଦୂର ହୋଇଗଲା । କାରଣ ଜର୍ମାନୀ ସେହି ଧନରୁ କ୍ଷତିପୂରଣରୂପେ ଇଂଲଣ୍ଡ ଓ ଫ୍ରାନ୍‌ସ ଇତ୍ୟାଦିକୁ ଦେଲା ଓ ସେମାନେ ସେଥିରୁ ଆମେରିକାର ଋଣ ଶୁଝିଲେ ।

ଏହି ଦଶବର୍ଷ ଭିତରେ ଏକମାତ୍ର ସଂଯୁକ୍ତ ରାଷ୍ଟ୍ର ହିଁ ସମୃଦ୍ଧିଶାଳୀ ଥିଲା । ଏଠାରେ ଧନ ପ୍ରଚୁର ପରିମାଣରେ ଥିଲା ଏବଂ ଏହି ସମୃଦ୍ଧି ଯୋଗୁଁ ଅତ୍ୟଧିକ ଆଶା ଓ ସିକ୍ୟୁରିଟି (Securities) ଓ ଅଂଶ ବିକ୍ରୟାଦିର ପାଲା ଚାଲିଲା ।

ପୁଞ୍ଜିବାଦୀ ଜଗତରେ ସାଧାରଣ ଭାବରେ—ଧାରଣା ଥିଲା ଯେ ପୂର୍ବର ଦୁର୍ଗତିମାନଙ୍କ ପରି ଏହି ଅର୍ଥନୈତିକ ସଙ୍କଟ ମଧ୍ୟ ଅତିକ୍ରମ ହୋଇଯିବ ଏବଂ କ୍ରମେ ଦୁନିଆଁରେ ପୁଣି ଏକ ସମୃଦ୍ଧି ବେଳା ଆସିବ । ବାସ୍ତବିକ ପୁଞ୍ଜିବାଦର ଜୀବନକାଳ ବିପର୍ଯ୍ୟସ୍ତରୂପେ ସମୃଦ୍ଧି ଓ ସଙ୍କଟ ଭିତର ଦେଇ ଯିବା ପରି ମନେହୁଏ । ଦୀର୍ଘକାଳରୁ ଏହା ଦର୍ଶାଇ ଦିଆଯାଇଛି ଯେ

ପୁଞ୍ଜିବାଦର ଯୋଜନାହୀନ ଓ ଅବୈଜ୍ଞାନିକ ପ୍ରଣାଳୀରେ ଏହା ହେବା ସ୍ୱାଭାବିକ । ଶିଳ୍ପର ସମୃଦ୍ଧି ହେବାରୁ ଅଧିକ ଲାଭବେଳ ପହଞ୍ଚିଲା ଏବଂ ଏହାର ସୁବିଧା ଉଠାଇବା ପାଇଁ ପ୍ରତ୍ୟେକ ଲୋକ ଯେତେ ଅଧିକ ପାରନ୍ତି ଉତ୍ପାଦନ କରିବା ନିମନ୍ତେ ଚାହିଁଲେ । ଏହାର ଫଳ ସ୍ୱରୂପ ହେଲା ଅଧିକ ଉତ୍ପାଦନ—ଅର୍ଥାତ ବିକ୍ରୀ ହେବା ଅପେକ୍ଷା ଅଧିକ ଉତ୍ପନ୍ନ ହେଲା । ଭଣ୍ଡାରସବୁ ବଢ଼ି ବଢ଼ିବା ଚାଲିଲା । ସଙ୍କଟ ପହଞ୍ଚିଲା ଏବଂ ଶିଳ୍ପ ପୁନର୍ବାର ମନ୍ଥରଗତି ଧରିଲା । ଏକ ନିଶ୍ଚଳ ଅବସ୍ଥା ଭିତରେ ସଞ୍ଚିତ ମୌଜୁଦ ଭଣ୍ଡାରସବୁ ଆସ୍ତେ ଆସ୍ତେ ଖାଲି ହୋଇଗଲା ଏବଂ ତା'ପରେ ଶିଳ୍ପ ପୁନର୍ବାର ଚେଇଁ ଉଠିଲା ଓ ଅଚିରେ ଆଉ ଏକ ସମୃଦ୍ଧି କାଳ ପହଞ୍ଚିଲା । ସାଧାରଣ ଗତି ଏହିପରି ହୋଇଛି ଏବଂ ଲୋକେ ଆଶା କଲେ ଯେ, କେତେବେଳେ ହେଲେ ସମୃଦ୍ଧି ଫେରି ଆସିବ ।

ଯାହାହେଉ ୧୯୨୯ରେ ଅବସ୍ଥା ହଠାତ୍ ଖରାପ ହୋଇଗଲା । ଆମେରିକା ଜର୍ମାନୀ ଓ ଦକ୍ଷିଣ ଆମେରିକାନ ରାଜ୍ୟଗୁଡ଼ିକୁ ଧନ ଧାର ଦେବା ବନ୍ଦ କରିଦେଲା ଏବଂ ତେଣୁ ଋଣ ଓ ଧାର ଶୁଝିବାର ଯେଉଁ କାଗଜ କାରବାର ଚାଲୁଥିଲା ତାହା ଶେଷ ପାଇଗଲା । ଏହା ସ୍ପଷ୍ଟ କଥା ଯେ, ଆମେରିକାନ ପୁଞ୍ଜିପତିମାନେ ସବୁଦିନ ଧାର ଦେଇପାରନ୍ତେ ନାହିଁ, କାରଣ ଏଥିରେ ତାଙ୍କର ଖାତକମାନଙ୍କର ଋଣଭାର ବଢ଼ି ଯାଆନ୍ତା ଓ କେବେହେଲେ ଋଣ ଅସୁଲ ଦେବା ସେମାନଙ୍କ ପକ୍ଷେ ସମ୍ଭବ ହୁଅନ୍ତା ନାହିଁ । ଏ ପର୍ଯ୍ୟନ୍ତ ସେମାନଙ୍କ ପାଖରେ ଯେଉଁ ପ୍ରଚୁର ନଗଦ ଧନ ଥିଲା, ତାହାର କୌଣସି ବ୍ୟବହାର ହୋଇ ନ ପାରିବାରୁ ସେମାନେ ଧାର ଦେଉଥିଲେ । ଏହି ବଳକା ଧନର ପ୍ରାଚୁର୍ଯ୍ୟ ଯୋଗୁଁ ଷ୍ଟକ୍ ଏକ୍ସଚେଞ୍ଜ ( Stock Exchange )ରେ ଅଧିକ ଲାଭ ଆଶାରେ ପ୍ରବଳ ଖେଳ ଚାଲିଲା । ସ୍ୱାଧୀନମତ ଜୁଆଖେଳ ଚାଲିଲା ଏବଂ ପ୍ରତ୍ୟେକ ଲୋକ ଜଲଦୀ ଧନୀ ହେବା ପାଇଁ ଚେଷ୍ଟା କଲେ ।

ଜର୍ମାନୀକୁ ହଠାତ୍ ଧାର ଦେବା ବନ୍ଦ କରି ଦେବା ଫଳରେ ସଙ୍କଟ ଉପୁଜିଲା ଏବଂ କେତେକ ଜର୍ମାନ ବ୍ୟାଙ୍କ ଦେବାଳିଆ ହୋଇଗଲା । କ୍ରମେ କ୍ଷତିପୂରଣ ଓ କରଜ ଅସୁଲ ଦେବା ବୃତ୍ତି ବନ୍ଦ ହେଲା । ଅନେକ ଦକ୍ଷିଣ ଆମେରିକା ସରକାର ଓ ଅନ୍ୟ ଛୋଟ ରାଜ୍ୟସବୁ ଗଫଲତି କରିବାକୁ ଲାଗିଲେ । ସମସ୍ତ ଋଣଗଠନ ପତନ ହୋଇଯିବାର ଆଶଙ୍କା ଦେଖି ସଯୁକ୍ତ ରାଷ୍ଟ୍ରର ସଭାପତି ହୁଭର୍ ୧୯୩୧ ଜୁଲାଇରେ ଏକ ବର୍ଷ ନିମନ୍ତେ ଋଣ ମୂଲତବି ( Moratorium ) ଘୋଷଣା କଲେ । ଏହାର ଅର୍ଥ ଖାତକମାନଙ୍କୁ ଆରାମ ଦେବା ନିମନ୍ତେ ବର୍ଷକ ପାଇଁ ସମସ୍ତ ସରକାର ଭିତରେ ଋଣ ଓ କ୍ଷତିପୂରଣ ଦେବା ନେବା ବନ୍ଦ ରହିବ ।

ଇତ୍ୟବସରରେ ୧୯୨୯ ଅକ୍ଟୋବରରେ ଆମେରିକାରେ ଏକ ବିଚିତ୍ର ଘଟଣା ଘଟିଲା । ଷ୍ଟକ ଏକ୍ସଚେଞ୍ଜରେ ଦଲାଲଗିରି ଫଳରେ ଅଂଶର ମୂଲ୍ୟ ଅତ୍ୟନ୍ତ ବଢ଼ି ଗଲା ଏବଂ ତାପରେ ହଠାତ ପଡ଼ିଗଲା । ନିଉୟର୍କ ବ୍ୟବସାୟ କ୍ଷେତ୍ରରେ ମହାନ ସଙ୍କଟ ପହଞ୍ଚିଲା ଏବଂ

ସେହିଦିନଠାରୁ ଅମେରିକାର ସମୃଦ୍ଧିକାଳ ଶେଷ ହେଲା । ଅନ୍ୟ ଯେଉଁ ଦେଶସବୁ ଆର୍ଥିକ ଦୁର୍ଗତି ଫଳରେ କଷ୍ଟ ଭୋଗୁଥିଲେ ଆମେରିକା ଏବେ ସେମାନଙ୍କ ସମଦଶାପନ୍ନ ହୋଇଗଲା । ବେପାର ଓ ଶିଳ୍ପର ଦୁର୍ଗତି ଏବେ ମହାନ ଦୁର୍ଗତିରେ ପରିଣତ ହେଲା, ଏହା ସମଗ୍ର ବିଶ୍ୱବ୍ୟାପୀ ହେଲା । ମନେ କରିବୁ ନାହିଁ ଯେ ଷ୍ଟକ୍ ଏକ୍ସଚେଞ୍ଜର ଏହି ଦଲାଲଗିରି ବା ନିଉୟର୍କର ଆର୍ଥିକ ସଙ୍କଟ ହେତୁ ଆମେରିକାର ଏହି ପତନ ବା ଦୁର୍ଗତି ହେଲା । ଏହା 'ଠିକ୍ ବୋଝ ଉପରେ ନଳିତାବିଡ଼ା' କାମ ଦେଲା । ପ୍ରକୃତ କାରଣ ବହୁତ ଗମ୍ଭୀରରେ ଅଛି ।

ବେପାର ସମଗ୍ର ଦୁନିଆଁରେ ହ୍ରାସ ହେବାକୁ ଲାଗିଲା ଏବଂ ବିଶେଷଭାବରେ କୃଷିଜାତ ପଦାର୍ଥର ମୂଲ୍ୟ ଶୀଘ୍ର ପଡ଼ିଗଲା । ପ୍ରତ୍ୟେକ ପଦାର୍ଥ ଅଧିକ ଉତ୍ପାଦନ ହୋଇଥିଲା ବୋଲି କୁହାହେଲା । ଏହାର ପ୍ରକୃତ ଅର୍ଥ ହେଉଛି ଉତ୍ପନ୍ନ ଜିନିଷକୁ କିଣିବା ନିମନ୍ତେ ଲୋକଙ୍କ ପାଖରେ ଧନ ନ ଥିଲା, ଶିଳ୍ପଜାତ ପଦାର୍ଥର ଖର୍ଚ୍ଚ କମ୍ ହେଲା । ତିଆରି ମାଲ ବିକ୍ରୀ ହୋଇ ନ ପାରିବାରୁ ଜମିଗଲା ଏବଂ ସ୍ୱାଭାବିକରୂପେ ଯେଉଁ କଳରେ ସେସବୁ ତିଆରି ହେଉଥିଲା ତାହା ବନ୍ଦ ହୋଇଗଲା । ଯେଉଁ ଜିନିଷଗୁଡ଼ିକ ବିକ୍ରୀ ହେଉ ନାହିଁ ତାହା ତିଆରି କରାଯାଆନ୍ତା କାହିଁକି ? ଏହା ଫଳରେ ଇଉରୋପ, ଆମେରିକା ଓ ଅନ୍ୟତ୍ର ଅକର୍ମୀ ସଂଖ୍ୟା ଅଧିକ ଓ ଅଭୂତପୂର୍ବରୂପେ ବୃଦ୍ଧି ପାଇଲା । ସମସ୍ତ ଶିଳ୍ପୋନ୍ନତ ଦେଶ ଗୁରୁତର କ୍ଷତି ସହିଲା । ସେହିରୂପେ ମଧ୍ୟ ଯେଉଁସବୁ କୃଷିପ୍ରଧାନ ଦେଶ ଶିଳ୍ପ ଲାଗି ପୃଥିବୀ ବଜାରକୁ ଖାଦ୍ୟଦ୍ରବ୍ୟ ବା କଞ୍ଚାମାଲ ଯୋଗାଉଥିଲେ ସେମାନେ ମଧ୍ୟ କ୍ଷତିଗ୍ରସ୍ତ ହେଲେ ।

ଏହିରୂପେ ଭାରତର ଶିଳ୍ପ ମଧ୍ୟ କେତେକ ପରିମାଣରେ କ୍ଷତି ହେଲା । କିନ୍ତୁ ମୂଲ୍ୟହ୍ରାସ ଫଳରେ କୃଷକ ଶ୍ରେଣୀ ଅତ୍ୟଧିକ କଷ୍ଟ ଭୋଗିଲେ । ସାଧାରଣତଃ ଖାଦ୍ୟଦ୍ରବ୍ୟର ଏପରି ମୂଲ୍ୟହ୍ରାସକୁ ଲୋକେ ଏକ ମହାନ ଶୁଭବେଳ ବୋଲି ବିଚାରିଥାଆନ୍ତେ, କାରଣ ଏଥିରେ ସେମାନେ ତାଙ୍କର ଖାଦ୍ୟ ଶସ୍ତାରେ ପାଇପାରନ୍ତେ । କିନ୍ତୁ ପୁଞ୍ଜିବାଦୀ ବ୍ୟବସ୍ଥା ଅଧୀନରେ ଏହା ଏକ ଓଲଟପାଲଟ ଦୁନିଆ ଓ ଏହି ମାହେନ୍ଦ୍ରବେଳା ସେମାନଙ୍କ ପକ୍ଷରେ ଏକ ଅଭିଶାପ ପରି ବୋଧ ହେଲା । କୃଷକକୁ ତା'ର ଜମିଦାରକୁ ଖଜଣା କିମ୍ବା ସରକାରକୁ ରାଜସ୍ୱ ନଗଦ ଦେବାକୁ ପଡ଼ୁଥିଲା ଏବଂ ଏହା ଦେବା ନିମନ୍ତେ ନିଜର ଉତ୍ପନ୍ନ ଶସ୍ୟ ବିକ୍ରୀ କରିବାକୁ ପଡ଼ିଲା । ମୂଲ୍ୟ ଏତେ ଅସାଧାରଣ ଭାବରେ କମି ଯାଇଥିଲା ଯେ, ବେଳେବେଳେ ସେମାନେ ତାଙ୍କର ସମସ୍ତ ଉତ୍ପନ୍ନ ଦ୍ରବ୍ୟ ବିକ୍ରୀ କରି ସୁଦ୍ଧା ଯଥେଷ୍ଟ ଧନ ପାଇପାରୁ ନ ଥିଲେ । ଅନେକ ସମୟରେ ସେମାନଙ୍କୁ ତାଙ୍କର ଭୂମିରୁ ଓ ନିଜର ମାଟିକୁଡ଼ିଆରୁ ବାହାର କରି ଦିଆଯାଉଥିଲା ଏବଂ ଖଜଣା ଦେବା ନିମନ୍ତେ ତାଙ୍କର ସାମାନ୍ୟ ଘରୋଇ ମାଲସବୁ ନିଲାମ କରି ଦିଆଯାଉଥିଲା । ଏହିପରି ଭାବରେ ଖାଦ୍ୟ ଯେତେବେଳେ ଅତ୍ୟନ୍ତ ଶସ୍ତା ଥିଲା, ସେତେବେଳେ ଯେଉଁମାନେ ଏହା ଉତ୍ପନ୍ନ କରୁଥିଲେ, ସେମାନେ ଅର୍ଦ୍ଧାହାରରେ ସଢ଼ୁଥିଲେ ଏବଂ ବସବାସହୀନ ହେଲେ ।

ପୃଥିବୀର ପରସ୍ପର-ନିର୍ଭରଶୀଳତା ଯୋଗୁଁ ଏହି ଦୁର୍ଗତି ବିଶ୍ୱବ୍ୟାପୀ ହୋଇଗଲା । ମୋର ମନେହୁଏ, ବାହାର ଦୁନିଆରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହିଥିବା କେବଳ ତିବ୍ବତ ପରି ସ୍ଥାନ ଏଥିରୁ ମୁକ୍ତ ଥିଲା । ମାସକୁ ମାସ ଏହି ଦୁର୍ଗତି ବ୍ୟାପିଲା ଏବଂ ବେପାର ପଡ଼ିଗଲା । ଠିକ୍ ଯେପରି ପକ୍ଷାଘାତ ରୋଗ ପ୍ରବେଶ କଲା ଓ ସମଗ୍ର ସାମାଜିକ ଗଠନକୁ ଅକର୍ମଣ୍ୟ କରି ପକାଇଲା । ଏହି ପତନ ବିଷୟରେ ଏକ ଧାରଣା ଆଣିବାକୁ ହେଲେ ଲିଗ୍ ଅଫ୍ ନେଶନରୁ ପ୍ରକାଶିତ ପୃଥିବୀ ବେପାର ବିଷୟକ ହିସାବ ପରୀକ୍ଷା କଲେ ଜଣାପଡ଼ିବ । ନିମ୍ନଲିଖିତ ସଂଖ୍ୟାକୁ ଏକ ଲକ୍ଷ ହିସାବରେ ପଢ଼ିବ । ଏହା ପ୍ରତ୍ୟେକ ବର୍ଷର ପ୍ରଥମ ତିନି ମାସର ହିସାବ ।

| ପ୍ରଥମ କ୍ୱାର୍ଟର | ଆମଦାନୀ ମୂଲ୍ୟ | ରପ୍ତାନୀ ମୂଲ୍ୟ | ଆମଦାନୀ ରପ୍ତାନୀ ମୂଲ୍ୟ |
|---|---|---|---|
| ୧୯୨୯ | ୭୯୭୨୦ | ୭୩୧୭୦ | ୧୫୨୮୯୦ |
| ୧୯୩୦ | ୭୩୬୪୦ | ୬୫୨୦୦ | ୧୩୮୮୪୦ |
| ୧୯୩୧ | ୫୧୫୪୦ | ୪୫୩୧୦ | ୯୬୮୫୦ |
| ୧୯୩୨ | ୩୪୫୪୦ | ୩୦୨୭୦ | ୬୪୮୧୦ |
| ୧୯୩୩ | ୨୮୨୯୦ | ୨୫୫୨୦ | ୫୩୮୧୦ |

ପୃଥିବୀ ବେପାର କ୍ରମାନ୍ୱୟରେ କିପରି ପତନ ହେଲା ଏବଂ ୧୯୩୩ ମସିହାର ପ୍ରଥମ କ୍ୱାର୍ଟର ବେଳକୁ ପୂର୍ବ ଚାରି ବର୍ଷର ଶତକଡ଼ା ୩୫ ଭାଗ ବା ପ୍ରାୟ ଏହା ଏକ-ତୃତୀୟାଂଶ ଯେ ହୋଇଯାଇଥିଲା ତାହା ଏହି ହିସାବରୁ ଜଣାପଡ଼େ ।

ଏହି ମୋଟାମୋଟି ହିସାବରୁ ସଠିକ ଭାବରେ ବେପାର ସମ୍ବନ୍ଧରେ ଆମେ କ'ଣ ବୁଝୁଁ ? ଏଥିରୁ ବୁଝାହେଉଛି ଜନସାଧାରଣ ଏପରି ଦରିଦ୍ର ଥିଲେ ଯେ, ନିଜେ ଯାହା ଉତ୍ପନ୍ନ କରୁଥିଲେ ତାହା କିଣିପାରିଲେ ନାହିଁ । ବହୁସଂଖ୍ୟକ ଶ୍ରମିକ ଅକର୍ମୀ ହେଲେ ଏବଂ ଦୁନିଆର ସମଗ୍ର ସଦିଚ୍ଛା ଖଟାଇ ସୁଦ୍ଧା ତାଙ୍କୁ କାମ ଯୋଗାଇ ଦିଆଯାଇ ପାରିଲା ନାହିଁ । କେବଳ ଇଉରୋପ ଓ ସଯୁକ୍ତ ରାଷ୍ଟ୍ରରେ ୩୦,୦୦୦,୦୦୦ ବେକାର ଶ୍ରମିକ ଥିଲେ । ଏଥିରୁ ବ୍ରିଟେନରେ ୩,୦୦୦,୦୦୦ ଏବଂ ସଯୁକ୍ତ ରାଷ୍ଟ୍ରରେ ୧୩,୦୦୦,୦୦୦ । ଭାରତରେ ବା ଏସିଆର ଅନ୍ୟ ଦେଶଗୁଡ଼ିକରେ କେତେ ଅକର୍ମୀ ରହିଛନ୍ତି କେହି ଜାଣେ ନାହିଁ । ସମ୍ଭବତଃ କେବଳ ଭାରତରେ ସମଗ୍ର ଇଉରୋପ ଓ ଆମେରିକାଠାରୁ ଏକବାର ସଂଖ୍ୟା ଅଧିକ ହେବ । ସମଗ୍ର ଦୁନିଆର ଏହି ବହୁସଂଖ୍ୟକ ଅକର୍ମୀ ଓ ସେମାନଙ୍କ ଉପରେ ନିର୍ଭର କରୁଥିବା ତାଙ୍କ ପରିବାରର ଲୋକଙ୍କର କଥା ଚିନ୍ତା କର; ତାହାହେଲେ ଏହି ବାଣିଜ୍ୟ ଦୁର୍ଗତି ଫଳରେ ମାନବ ସମାଜ କିପରି କଷ୍ଟ ଲଭିଲା ତାହାର ଗୋଟାଏ ଧାରଣା ହେବ । ଇଉରୋପର ଅନେକ ଦେଶରେ ଏକ ପ୍ରକାର ରାଷ୍ଟ୍ର ଜୀବନବୀମା ପ୍ରଣାଳୀଦ୍ୱାରା ସମସ୍ତ-

ରେଜେଷ୍ଟ୍ରୀଭୁକ୍ତ ବେକାରଙ୍କ ଜୀବନ ନିର୍ବାହ ଭତ୍ତା ଦିଆଗଲା । ସଂଯୁକ୍ତ ରାଷ୍ଟ୍ରରେ ଦାନଶୀଳ ଲୋକେ ସେମାନଙ୍କୁ ମୁଷ୍ଟିଭିକ୍ଷା ଦେଲେ । କିନ୍ତୁ ଏ ଭତ୍ତା ଓ ମୁଷ୍ଟି ସାହାଯ୍ୟ ବିଶେଷ କିଛି ଅବସ୍ଥା ଲାଘବ କଲା ନାହିଁ ଏବଂ ଅନେକ ଏହା ବି ପାଇଲେ ନାହିଁ ଓ ଅନାହାରରେ ମଲେ । କେନ୍ଦ୍ର ଓ ମଧ୍ୟ ଇଉରୋପର କେତେକ ଅଞ୍ଚଳରେ ଅବସ୍ଥା ଅତି ନିଦାରୁଣ ହେଲା ।

ସମସ୍ତ ପ୍ରଧାନ ଶିଳ୍ପୋନ୍ନତ ଦେଶଗୁଡ଼ିକ ଭିତରେ ଆମେରିକାରେ ସର୍ବଶେଷରେ ଦୁର୍ଗତି ଦାଉ ବାଧିଲା; କିନ୍ତୁ ଅନ୍ୟ ସ୍ଥାନ ଅପେକ୍ଷା ଏଠାରେ ପ୍ରତିକ୍ରିୟା ଅଧିକ ହୋଇଥିଲା । ଆମେରିକାର ଲୋକେ ଦୀର୍ଘକାଳ ବ୍ୟାପୀ ବାଣିଜ୍ୟ ଦୁର୍ଗତି ଓ ଉତ୍ପୀଡ଼ନ ସହିବାକୁ ଅଭ୍ୟସ୍ତ ନ ଥିଲେ । ଗର୍ବୀ, ଧନଗର୍ବୀ ଆମେରିକା ଏହି ଆଘାତରେ ଚକିତ ହୋଇଗଲା ଏବଂ ଲକ୍ଷ ଲକ୍ଷ ସଂଖ୍ୟାରେ ଅକର୍ମୀ ବୃଦ୍ଧି ହେଲା । କ୍ଷୁଧା ଓ ଧୀର ଅନାହାର ଏକ ସାଧାରଣ ଦୃଶ୍ୟ ହୋଇଗଲା ଏବଂ ଜାତିର ନୈତିକତା ଭୁଷୁଡ଼ି ପଡ଼ିବାକୁ ଆରମ୍ଭ କଲା ବ୍ୟାଙ୍କ ଓ ମୂଳଧନମାନଙ୍କରେ ଲୋକଙ୍କର ବିଶ୍ୱାସ ତୁଟିଗଲା ଏବଂ ବ୍ୟାଙ୍କରୁ ଧନ କାଢ଼ି ଆଣି ସଞ୍ଚୟ କରାଗଲା । ବିଶ୍ୱାସ ଓ ଖାତିର ଉପରେ ଭିତ୍ତି କରି ବ୍ୟାଙ୍କ ତିଷ୍ଠି ରହିଥାଏ । ବିଶ୍ୱାସ ତୁଟିଗଲେ ବ୍ୟାଙ୍କ ବି ଶେଷ ପାଇଯାଏ । ସଂଯୁକ୍ତରାଷ୍ଟ୍ରରେ ହଜାର ହଜାର ବ୍ୟାଙ୍କର ପତନ ହେଲା ଏବଂ ପ୍ରତ୍ୟେକ ବ୍ୟାଙ୍କର ପତନ ସଙ୍ଗେ ସଙ୍ଗେ ସଙ୍କଟ ବୃଦ୍ଧି ହେଲା ଓ ସାଧାରଣ ଭାବରେ ଅବସ୍ଥା ଖରାପଆଡ଼କୁ ଗଲା ।

ବହୁସଂଖ୍ୟକ ବେକାର ନରନାରୀ ଭିକାରି ବୃତ୍ତି ଧରିଲେ ଏବଂ କାମ ପାଇଁ ସହରରୁ ସହର ବୁଲିବାକୁ ଲାଗିଲେ । ସେମାନେ ରାଜପଥରେ ଚାଲିଥାନ୍ତି । ଅତିକ୍ରମ କରି ଯାଉଥିବା ମଟରବାଲାଙ୍କୁ ତାଙ୍କୁ ଖଣ୍ଡେଦୂର ନେଇଯିବା ଲାଗି ଅନୁରୋଧ କରନ୍ତି କିମ୍ବା ଅନେକ ସମୟରେ ମନ୍ଥରଗତିରେ ଯାଉଥିବା ମାଲଗାଡ଼ି ଦେହରେ ଝୁଲି ଯାଆନ୍ତି । ଆହୁରି ମର୍ମସ୍ପର୍ଶୀ ଦୃଶ୍ୟ ହେଉଛି ବହୁସଂଖ୍ୟକ ବାଳକ ବାଳିକା ଏପରି କି ଶ୍ରେଣ୍ଟ ଶିଶୁ ମଧ୍ୟ ଏହି ବିଶାଳ ଦେଶରେ ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଏକାକୀ ବା ଗ୍ରେଣ୍ଟ ଗ୍ରେଣ୍ଟ ଦଳ ହୋଇ ବୁଲୁଥାନ୍ତି । ଇତ୍ୟବସରେ ପୁରୁଣା ଓ ସମର୍ଥ ଲୋକେ ଅଳସୁଆ ହୋଇ ବସିଥାନ୍ତି, କାମ ପାଇବାର ଆଶା ରଖି ଅପେକ୍ଷା କରିଥାନ୍ତି ଏବଂ ଆଦର୍ଶ କାରଖାନାସବୁ ବନ୍ଦ ହୋଇଯାଇଥାଏ ଅଥଚ ପୁଞ୍ଜିବାଦର ପ୍ରକୃତି ଏପରି ଯେ ଏତେବେଳେ ବି ଅନ୍ଧକାରମୟ ଓ ଦୁର୍ଗନ୍ଧଯୁକ୍ତ ମିଠାଇ ଦୋକାନସବୁ ଖୋଲାହେଲା ଏବଂ ସାମାନ୍ୟ ମଜୁରି ସକାଶେ ୧୨।୧୬ବର୍ଷର ପିଲାଙ୍କୁ ଏଠାରେ ଦୈନିକ ୧୦।୧୨ ଘଣ୍ଟା ଶ୍ରମ କରିବାକୁ ପଡ଼ିଲା । କେତେକ ମାଲିକ ଏହି ଯୁବକ ଯୁବତୀଙ୍କ ମଧ୍ୟରେ ଅଦ୍ଭୁତ ପ୍ରକାର ଅକର୍ମୀ ଅବସ୍ଥାର ସୁବିଧା ଉଠାଇଲେ ଏବଂ ସେମାନଙ୍କର ମିଲ ଓ କାରଖାନାରେ ତାଙ୍କୁ କଠିନ ଓ ଦୀର୍ଘକାଳ କାମରେ ଲଗାଇଲେ । ଏହିରୂପେ ଦୁର୍ଗତିହେତୁ ଆମେରିକାରେ ପୁଣି ଶିଶୁ

ଶ୍ରମିକ ଦେଖାଦେଲେ ଏବଂ ଏହା ନିଷେଧ କରାଯାଇଥିବା ଶ୍ରମିକ-ଆଇନ ସବୁ ପ୍ରକାଶ୍ୟଭାବରେ ଭଙ୍ଗ କରାଗଲା ।

ସ୍ମରଣ ରଖିବା ଦରକାର ଯେ, ଆମେରିକା କିମ୍ବା ପୃଥିବୀର ଅବଶିଷ୍ଟ ଅଞ୍ଚଳରେ ଖାଦ୍ୟ ବା ଉଆର ଜିନିଷର କିଛି ଅଭାବ ନ ଥିଲା । ବରଂ ଆପତ୍ତି ଉଠୁଥିଲା ଯେ ଅତ୍ୟଧିକ ରହିଯାଇଛି, ଅଧିକ ଉତ୍ପାଦନ ହୋଇଛି । ଦୁର୍ଗତିର ଦ୍ୱିତୀୟ ବର୍ଷ ଅର୍ଥାତ୍ ୧୯୩୧ ଜୁଲାଇରେ ଜଣେ ଜଣାଶୁଣା ଇଂରେଜ ଅର୍ଥନୀତିଜ୍ଞ ସାର୍ ହେନରି ଷ୍ଟ୍ରାକୋଶ୍ କହିଥିଲେ ଯେ, ପୃଥିବୀ ବଜାରରେ ଯେଉଁସବୁ ଜିନିଷ ରହିଛି, ସେଥିରେ ଲୋକେ ଦୁଇ ବର୍ଷ ଛଅ ମାସ କାଳ କୁଟାଖଣ୍ଡିକ ହି ଖଣ୍ଡ ନ କରି ସୁଦ୍ଧା ଏ ପର୍ଯ୍ୟନ୍ତ ଯେଉଁ ଭାବରେ ଚଳି ଆସିଅଛନ୍ତି ସେହିପରି ଖାଇପିଇ ରହିବା ପାଇଁ ଯଥେଷ୍ଟ ହେବ । ଅଥଚ ଏହିକାଳ ଭିତରେ ଲୋକେ ଯେଉଁ ପରିମାଣରେ ଯନ୍ତ୍ରଣା ଓ ଅନାହାର ଭୋଗିଲେ ତାହା ଆଧୁନିକ ଶିଳ୍ପୋନ୍ନତ ଦୁନିଆଁରେ କେବେ ଦେଖାଯାଇ ନ ଥିଲା । ଏହି ନିର୍ପୀଡ଼ନ ସଙ୍ଗେ ସଙ୍ଗେ ପ୍ରକୃତରେ ଖାଦ୍ୟଦ୍ରବ୍ୟ ନଷ୍ଟ କରାଯାଉଥିଲା । ଶସ୍ୟସବୁ ସଂଗ୍ରହ କରାଗଲା ନାହିଁ ଓ ଜମିରେ ପଡ଼ି ସଢ଼ିଯିବା ପାଇଁ ଛାଡ଼ି ଦିଆଗଲା, ଗଛରୁ ଫଳ ଆଦୌ ତୋଳା ହେଲା ନାହିଁ ଏବଂ ଅନେକ ଜିନିଷ ପ୍ରକୃତରେ ନଷ୍ଟ କରି ଦିଆଗଲା । ଗୋଟିଏ ଦୃଷ୍ଟାନ୍ତ ଦିଏ : ୧୯୩୧ ଜୁନଠାରୁ ୧୯୩୩ ଫେବୃୟାରୀ ଭିତରେ ବ୍ରାଜିଲରେ ୧୪,୦୦୦,୦୦୦ ବସ୍ତା କଫି ପୋଡ଼ି ଦିଆଯାଇଥିଲା । ପ୍ରତ୍ୟେକ ବସ୍ତାରେ ୧୩୨ ପାଉଣ୍ଡ ( ଏକ ପାଉଣ୍ଡ ୪୦ ତୋଳା ) ଥିଲା; ସୁତରାଂ ମୋଟ ୧,୮୪୮,୦୦୦,୦୦୦ ପାଉଣ୍ଡରୁ ଅଧିକ କଫି ନଷ୍ଟ କରି ଦିଆଗଲା । ଯଦି ପ୍ରତ୍ୟେକ ଲୋକକୁ ଏକ ପାଉଣ୍ଡ ହିସାବରେ ଦିଆଯାଇଥାନ୍ତା, ତେବେ ପୃଥିବୀର ସମଗ୍ର ଲୋକସଂଖ୍ୟା ପକ୍ଷରେ ଏହା ଯଥେଷ୍ଟରୁ ବେଶୀ ହୋଇଥାନ୍ତା। ଅଥଚ ଆମେ ଦେଖିଲେ ଲକ୍ଷ ଲକ୍ଷ ଲୋକ କଫି ଚାହୁଁଥିଲେ ସୁଦ୍ଧା କିଣି ପାରିଲେ ନାହିଁ ।

କଫି ଛଡ଼ା ଗହମ ମଧ୍ୟ ପୋଡ଼ି ଦିଆଗଲା ଏବଂ ସେହିପରି ତୁଳା ଓ ଆହୁରି ଅନେକ ଜିନିଷ ନଷ୍ଟ କରି ଦିଆଗଲା । ଭବିଷ୍ୟତରେ ଉତ୍ପାଦନ କମାଇବା ନିମନ୍ତେ କପା, ରବର, ଗହମ ପ୍ରଭୃତି ଚାଷ ସଙ୍କୁଚିତ କରି ଦିଆଗଲା । ଏହି ସବୁ ଧ୍ୱଂସ ଓ ନିରୋଧ କେବଳ କୃଷିଜାତ ଶସ୍ୟର ମୂଲ୍ୟବୃଦ୍ଧି ନିମନ୍ତେ କରାଯାଇଥିଲା । ଅଭାବ ପଡ଼ିଲେ ଚାହିଦା ବଢ଼ିବ ଏବଂ ମୂଲ୍ୟ ବୃଦ୍ଧି ହେବ । ଯେଉଁ କୃଷକ ବଜାରରେ ତାହାର ଜିନିଷ ବିକ୍ରୀ କରେ ତାହା ପକ୍ଷରେ ଏହା ଲାଭଜନକ ହେବା ସନ୍ଦେହ ନାହିଁ, ମାତ୍ର କିଣିଲାବାଲାର ଦଶା କଣ ହେବ ? ସତ କହିବାକୁ ଗଲେ ଆମର ଏ ଏକ ବିଚିତ୍ର ଦୁନିଆଁ । ଯଦି ଅଳ୍ପ ଉତ୍ପାଦନ ହେଲା ତେବେ ମୂଲ୍ୟଦ୍ରାସ ଏତେ ଅଧିକ ହୋଇଯାଏ ଯେ ଅଧିକାଂଶ ଲୋକେ କିଣିପାରନ୍ତି ନାହିଁ ଏବଂ ଦୁଃଖଭୋଗ ବଢ଼େ । ଯଦି ଅଧିକ ଉତ୍ପାଦନ ହେଲା ତେବେ ମୂଲ୍ୟର ଏପରି ପତନ ହୁଏ ଯେ, ଶିଳ୍ପ ଓ କୃଷି କାର୍ଯ୍ୟ ଚଳିପାରେ ନା, ବେକାର ବୃଦ୍ଧିପାଏ । ଅକର୍ମା ଲୋକ କିପରି ବା କିଣିବ—ତା

ପାଖରେ କିଣିବା ପାଇଁ ଧନ କୁଆଡ଼ୁ ଆସିବ ? ଅକାଳ ପଡ଼ୁ ବା ପ୍ରାଚୁର୍ଯ୍ୟ ହେଉ ଜନ-ସାଧାରଣଙ୍କର କପାଳରେ ଯେଉଁ ଦରିଦ୍ରଗଣ୍ଡକୁ ସେହି ଦରିଦ୍ରଗଣ୍ଡ ।

ମୁଁ ତ କହୁଛି ଏହି ଦୁର୍ଗତିକାଳ ଭିତରେ ଆମେରିକା ବା ଅନ୍ୟତ୍ର କେଉଁଠି ଜିନିଷର ଅଭାବ ନ ଥିଲା, କୃଷକମାନଙ୍କ ପାଖରେ ଶସ୍ୟ ପଡ଼ି ରହିଥିଲା, ତାହା ସେମାନେ ଖଲାସ କରିପାରୁ ନ ଥିଲେ ଏବଂ ସହରର ଲୋକଙ୍କ ପାଖରେ ତିଆରି ମାଲ ରହିଥିଲା ତାହା ସେମାନେ ବିକିପାରୁ ନ ଥିଲେ । ଅଥଚ ପ୍ରତ୍ୟେକ ପ୍ରତ୍ୟେକର ଜିନିଷ ଲୋଡ଼ୁଥିଲେ । ଦୁଇ ପାଖରେ ଧନର ଅଭାବ ହେତୁ ବିନିମୟ କ୍ରିୟା ଅଟକି ଗଲା, ତାପରେ ଅଧିକ ଶିଳ୍ପୋନ୍ନତ, ଅଗ୍ରଗାମୀ, ଯୁକ୍ତିବାଦୀ ଆମେରିକାରେ ଅନେକ ଲୋକ ପୁରୁଣା ଦ୍ରବ୍ୟ ବିନିମୟ (Barter) ରୀତି ଗ୍ରହଣ କଲେ; ପୂର୍ବକାଳରେ ମୁଦ୍ରା ପ୍ରଚଳନ ପୂର୍ବରୁ ଏହା ଚଳୁଥିଲା । ଆମେରିକାରେ ଶହ ଶହ ଦ୍ରବ୍ୟ ବିନିମୟ ସଂଗଠନ ଗଢ଼ି ଉଠିଲା । ମୁଦ୍ରା ଅଭାବରୁ ବିନିମୟ ପ୍ରଥା ଭାଙ୍ଗି ପଡ଼ିଲା; ଲୋକେ ବିନା ମୁଦ୍ରାରେ ଚଳିବାକୁ ଆରମ୍ଭ କଲେ ଓ ଦ୍ରବ୍ୟ ଏବଂ ସେବା ବଦଳାବଦଳି କରି ଚଳିଲେ । ସାର୍ଟିଫିକେଟ ଦେଇ ଏହି ଦ୍ରବ୍ୟ ବିନିମୟକୁ ସାହାଯ୍ୟ କରିବା ନିମନ୍ତେ ଏକ୍ସଚେଞ୍ଜ ସମିତି ଗଢ଼ି ଉଠିଲା । ଏହି ଦ୍ରବ୍ୟ ବିନିମୟର ଏକ ମଜାଦାର ଦୃଷ୍ଟାନ୍ତ ହେଉଛି ଜଣେ ଗଉଡ଼ ତାର ପିଲାଙ୍କୁ ବିଶ୍ୱବିଦ୍ୟାଳୟରେ ପଢ଼ାଇବା ନିମନ୍ତେ ବିଶ୍ୱବିଦ୍ୟାଳୟକୁ ଦୁଗ୍ଧ, ଲହୁଣୀ ଓ ଅଣ୍ଡା ଦେଉଥିଲା ।

ଅନ୍ୟ ଦେଶମାନଙ୍କରେ କେତେକ ପରିମାଣରେ ଦ୍ରବ୍ୟ ବିନିମୟ ଚଳିଲା । ଆନ୍ତର୍ଜାତିକ ଜଟିଳ ମୁଦ୍ରା ବିନିମୟ ପ୍ରଥା ଭାଙ୍ଗି ପଡ଼ିବାରୁ ଦେଶ ଦେଶ ଭିତରେ ମଧ୍ୟ ଦ୍ରବ୍ୟ ବିନିମୟ ପ୍ରଚଳନର ଅନେକ ଦୃଷ୍ଟାନ୍ତ ଦେଖାଦେଲା । ଏହିରୂପେ ସ୍କାଣ୍ଡିନେଭିଆର କାଠ ସକାଶେ ଇଂଲଣ୍ଡ କୋଇଲା ଦେଲା; ସୋଭିଏଟ ତେଲ ପାଇଁ କାନାଡ଼ା ଏଲୁମିନିୟମ ଦେଲା; ସଂଯୁକ୍ତ ରାଷ୍ଟ୍ର ବ୍ରାଜିଲର କଫି ପାଇବା ପାଇଁ ଗହମ ବଦଳ କଲା ।

ଏହି ମାନ୍ଦାହେତୁ ଆମେରିକାର କୃଷକମାନେ ବଡ଼ କଷ୍ଟ ଭୋଗିଲେ ଏବଂ ନିଜର ଜମି ବନ୍ଧାରଖି ବ୍ୟାଙ୍କମାନଙ୍କରୁ ସେମାନେ ଯାହା ଋଣ କରିଥିଲେ, ତାହା ପରିଶୋଧ କରିପାରିଲେ ନାହିଁ । ତେଣୁ ବ୍ୟାଙ୍କସବୁ କ୍ଷେତଗୁଡ଼ିକ ବନ୍ଦୀ କରି ଦେଇ ତାଙ୍କର ଧନ ଅସୁଲ କରିବାକୁ ଚେଷ୍ଟା କଲେ; କିନ୍ତୁ କୃଷକମାନେ ଏହା କରିବାକୁ ଦେଲେ ନାହିଁ ଓ ଏପରି ବନ୍ଦୀରେ ବାଧା ଦେବା ନିମନ୍ତେ ସେମାନେ କମିଟି ସବୁ ସଂଗଠନ କଲେ । ଫଳସ୍ୱରୂପ ନିଲାମରେ କୃଷକର ସମ୍ପତ୍ତି ଧରିବା ପାଇଁ କେହି ସାହସ କଲେ ନାହିଁ ଓ କୃଷକର ସର୍ତ୍ତରେ ରାଜି ହେବାକୁ ବ୍ୟାଙ୍କ ସବୁ ବାଧ୍ୟ ହେଲେ । ଏହି କୃଷକ ବିଦ୍ରୋହ ଆମେରିକାର ମଧ୍ୟ-ପଶ୍ଚିମ କୃଷି ପ୍ରଧାନ ଅଞ୍ଚଳରେ ବିସ୍ତାର ଲଭିଥିଲା ଏବଂ ସଙ୍କଟ ବୃଦ୍ଧି ସଙ୍ଗେ ସଙ୍ଗେ ଆମେରିକାର ଏହି ରକ୍ଷଣଶୀଳ କୃଷକମାନେ ଯେ କି ଆଜି ପର୍ଯ୍ୟନ୍ତ ଦେଶର ମେରୁଦଣ୍ଡ ଥିଲେ, ସେମାନେ ଉଗ୍ର ହୋଇ ଉଠିଲେ ଓ ତାଙ୍କର ଦୃଷ୍ଟିକୋଣ ବିପ୍ଳବୀ ହୋଇ ଉଠିଲା । ତାଙ୍କର ଆନ୍ଦୋଳନ ଏକ ସ୍ଥାନୀୟ ଆନ୍ଦୋଳନ ଓ ସେଥିସହିତ ସୋସାଲିଜମ ଓ କମ୍ୟୁନିଜମର କୌଣସି ସମ୍ପର୍କ ନ ଥିଲା ।

ଆର୍ଥିକ ଦୁର୍ଗତି ଫଳରେ ଏହି ବଳଶାଳୀ ମଧ୍ୟବର୍ତ୍ତୀ କୃଷକ ଶ୍ରେଣୀ କେବଳ ଭୂମି କର୍ଷଣକାରୀ କୃଷକରେ ପରିଣତ ହେଲେ ଏବଂ ତାଙ୍କର ଅତି ସାମାନ୍ୟ ସମ୍ପତ୍ତି ରହିଲା । ତାଙ୍କର ସ୍ଲୋଗାନ (ଧ୍ୱନି) ଥିଲା "ମାନବିକ ଅଧିକାର ଆଇନ ଓ ସମ୍ପତ୍ତି ଅଧିକାରଠାରୁ ବଡ଼" ଏବଂ "ପ୍ରଥମ ବନ୍ଧକ ହେଉଛନ୍ତି ନାରୀ ଓ ସନ୍ତାନ ।"

ମୁଁ ସଂଯୁକ୍ତ ରାଷ୍ଟ୍ର ଅବସ୍ଥା ଟିକିଏ ବିସ୍ତୃତ ଭାବରେ ଆଲୋଚନା କଲି, କାରଣ ଆମେରିକା ଅନେକ ପ୍ରକାରେ ଏକ ଚିତ୍ତାକର୍ଷକ ରାଜ୍ୟ । ପୁଞ୍ଜିବାଦୀ ଦେଶମାନଙ୍କ ମଧ୍ୟରେ ଏହା ସର୍ବାପେକ୍ଷା ଉନ୍ନତ ଏବଂ ଇଉରୋପ ଓ ଏସିଆ ପରି ଏଠାରେ ଅତୀତକାଳର ସାମନ୍ତ ପ୍ରଥା ପ୍ରଚଳନ ନ ଥିଲା; ତେଣୁ ପରିବର୍ତ୍ତନ ଦ୍ରୁତତର ହେବା କଥା । ଅନ୍ୟ ଦେଶର ଜନତା ଯନ୍ତ୍ରଣା ଭୋଗରେ ଅଭ୍ୟସ୍ତ ଥିଲା । ଆମେରିକାରେ ଏତେ ବଡ଼ ବିରାଟ ପରିମାଣରେ ଏହା ଏକ ନୂତନ ଓ ହୃଦୟବିଦାରକ ଦୃଶ୍ୟ । ମୁଁ ଯେତେ ଆମେରିକା ବିଷୟରେ କହୁଛି, ସେଥିରୁ ଦୁର୍ଗତି ସମୟରେ ଅନ୍ୟ ଦେଶର ଅବସ୍ଥା ରୁ ଅନୁମାନ କରିପାରିବୁ । କେତେକର ଅବସ୍ଥା ଅତି ଖରାପ ଥିଲା । କେତେକର ସାମାନ୍ୟ ଭଲ ଥିଲା । ମୋଟ ଉପରେ କୃଷିପ୍ରଧାନ ଓ ଅନୁନ୍ନତ ଦେଶ-ଗୁଡ଼ିକ ଉନ୍ନତ ଶିଳ୍ପୋଦ୍ୟୋଗୀ ଦେଶ ପରି ଏତେ ଖରାପ ଆଡ଼କୁ ଯାଇ ନ ଥିଲା । ସେଗୁଡ଼ିକର ଅନୁନ୍ନତ ପରିଆ ହିଁ ତାଙ୍କୁ କେତେକ ପରିମାଣରେ ରକ୍ଷା କଲା । ପ୍ରଧାନ ଗୋଲମାଲ ହେଲା ଶସ୍ୟର ମୂଲ୍ୟ ହ୍ରାସ, ଏଥିରେ କୃଷକର ଦୁଃଖଭୋଗ ବହୁତ ବଢ଼ିଲା । ଅଷ୍ଟ୍ରେଲିଆ ଦେଶ ମୁଖ୍ୟତଃ ଏକ କୃଷି ପ୍ରଧାନ ରାଜ୍ୟ; ଏହା ଇଂଲଣ୍ଡ ବ୍ୟାଙ୍କମାନଙ୍କର ଋଣ ଶୁଝିପାରିଲେ ନାହିଁ ଏବଂ ମୂଲ୍ୟ ପତନ ଯୋଗୁଁ ପ୍ରାୟ ଦେବାଳିଆ ଅବସ୍ଥାରେ ପଡ଼ିଥିଲା । ନିଜକୁ ରକ୍ଷା କରିବା ପାଇଁ ଇଂରେଜ ବ୍ୟାଙ୍କରମାନଙ୍କର କଠିନ ସର୍ତ୍ତରେ ସେମାନଙ୍କୁ ସମ୍ମତ ହେବାକୁ ପଡ଼ିଲା । ଦୁର୍ଗତି କାଳରେ ବ୍ୟାଙ୍କର ଶ୍ରେଣୀ ହିଁ ପ୍ରାଧାନ୍ୟ ଲଭନ୍ତି ଓ ଉନ୍ନତି ଲାଭ କରନ୍ତି ।

ଦକ୍ଷିଣ ଆମେରିକାରେ ସଂଯୁକ୍ତ ରାଷ୍ଟ୍ର ଋଣ ଦେବା ବନ୍ଦ କରିଦେବାରୁ ଓ ଦୁର୍ଗତି ହେତୁ ସଙ୍କଟ ପଡ଼ିଥିଲା, ଏହା ଅଧିକାଂଶ ପ୍ରଜାତନ୍ତ୍ର ସରକାରକୁ ଓଲଟାଇ ଦେଲା ଅଥବା ସେଠାରେ ଡିକ୍‌ଟେଟର ଶାସନ କଲେ । ସମଗ୍ର ଦକ୍ଷିଣରେ ତିନୋଟି ମୁଖ୍ୟ ରାଜ୍ୟ, ଯଥା ଆର୍ଜେଣ୍ଟିନ୍, ବ୍ରାଜିଲ ଓ ଚିଲି ରାଜ୍ୟରେ ବିପ୍ଳବ ହେଲା । ସମଗ୍ର ଦକ୍ଷିଣ ଆମେରିକାର ସବୁ ବିପ୍ଳବ ଏକ ରାଜପ୍ରାସାଦ ବ୍ୟାପାର ଥିଲା, କେବଳ ଉପରେ ଡିକ୍‌ଟେଟର ଓ ସରକାର ପରିବର୍ତ୍ତନ ହେଉଥିଲା । ଯେଉଁ ବ୍ୟକ୍ତି ବା ଦଳ ସୈନ୍ୟ ଓ ପୁଲିସକୁ ଆୟତ୍ତରେ ରଖିଲା, ତାହା ହିଁ ରାଜ୍ୟ ଶାସନ କରିପାରିଲା । ସମସ୍ତ ଦକ୍ଷିଣ ଆମେରିକା ସରକାର ଋଣରେ ବୁଡ଼ିଥିଲେ ଏବଂ ସେଥିରୁ ଅଧିକାଂଶ ଋଣ ଦେଇପାରୁ ନ ଥିଲେ ।

## ୧୮୪ : ସଂକଟର ହେତୁ

ଜୁଲାଇ ୨୧, ୧୯୩୩

ମହାନ ସଙ୍କଟ ପୃଥିବୀର ଚଣ୍ଟି ଚିପି ଧରିଲା ବା ପ୍ରାୟ ସମସ୍ତ କାର୍ଯ୍ୟକଳାପ ମନ୍ଥର କରିଦେଲା । ଅନେକ ସ୍ଥାନରେ ଶିଳ୍ପ ଚଳି ଚାଲିଲା ନାହିଁ, ଯେଉଁ ଭୂମିରେ ଖାଦ୍ୟ ଓ ଅନ୍ୟ ଶସ୍ୟ ଜାତ ହେଉଥିଲା ତାହା ଅନୁର୍ବର ଓ ଅନ୍ୟଦାୟୀ ହୋଇ ପଡ଼ିରହିଲା; ରବର ଗଛରୁ ରବର ହୋଇ ଆସିଲା, କିନ୍ତୁ ତାହା ସଂଗ୍ରହ କରିବାକୁ କେହି ନ ଥିଲେ; ଯେଉଁ ପାହାଡ଼ କଡ଼ରେ ସଯତ୍ନ ପାଳିତ ଗୁହାବାଗାନ ଥିଲା ତାହା ଜଙ୍ଗଲ ହୋଇଗଲା; କେହି ତାର ଯତ୍ନ ନେଲେ ନାହିଁ । ଯେଉଁମାନେ ଏ ସବୁ କାର୍ଯ୍ୟ କରୁଥିଲେ ସେମାନେ ମହାନ ଅକର୍ମୀସେନାର ଯୋଗ ଦେଲେ ଏବଂ କାର୍ଯ୍ୟ ଓ ନିଯୁକ୍ତି ପାଇଁ ଅପେକ୍ଷା କରି ରହିଲେ; ମାତ୍ର ତାହା ମିଳିଲା ନାହିଁ ଏବଂ ନିଃସହାୟ ଓ ପ୍ରାୟ ନିରଣ ହୋଇ କ୍ଷୁଧାର ସମ୍ମୁଖୀନ ହେଲେ ଓ ଯନ୍ତ୍ରଣା ଭୋଗିଲେ । ଅନେକ ଦେଶରେ ଆତ୍ମହତ୍ୟାକାରୀଙ୍କ ସଂଖ୍ୟା ବହୁତ ବଢ଼ିଗଲା ।

ମୁଁ କହିଛି, ସବୁ ଶିଳ୍ପରେ ଦୁର୍ଗତିର ଗୁରୁପାତ ହେଲା । କିନ୍ତୁ ଗୋଟିକରେ ପଡ଼ି ନ ଥିଲା; ଏହା ଅସ୍ତ୍ରଶସ୍ତ୍ର ଶିଳ୍ପ; ଏଥିରୁ ବିଭିନ୍ନ ଜାତୀୟସେନା, ନୌବାହିନୀ ଓ ଉଡ଼ାଜାହାଜ-ବାହିନୀଙ୍କୁ ଅସ୍ତ୍ର ଓ ଯୁଦ୍ଧସାମଗ୍ରୀ ଯୋଗାଇ ଦିଆଯାଉଥିଲା । ଏହି ବେପାର ସମୃଦ୍ଧି ଲାଭ କଲା ଏବଂ ଏହାର ଅଂଶୀଦାରମାନେ ମୋଟା ଲଭ୍ୟାଂଶ ପାଇଲେ । ଦୁର୍ଗତି ଏହାକୁ ସ୍ପର୍ଶ କରି ନ ଥିଲା । କାରଣ ଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଓ ବିବାଦରେ ଏହି ବେପାର ବଢ଼େ ଏବଂ ସଂକଟବେଳେ ଏହା ଖରାପ ହେଲା ।

ଏକ ବୃହତ ଅଞ୍ଚଳ—ସୋଭିଏଟ ଇଉନିୟନ—ଦୁର୍ଗତିର ପ୍ରତ୍ୟକ୍ଷ ଫଳ ହାତରୁ ରକ୍ଷା ପାଇଥିଲା । ସେଠାରେ କୌଣସି ଅକର୍ମା ନ ଥିଲେ ଏବଂ ପଞ୍ଚବାର୍ଷିକ ଯୋଜନା ଅନୁସାରେ ପୂର୍ବାପେକ୍ଷା ଅଧିକ କଠିନ କାର୍ଯ୍ୟ ଲାଗିଲା । ଏହା ପୁଞ୍ଜିବାଦ ପରିଚାଳନା କରୁଥିବା ରାଜ୍ୟ ବାହାରେ ଏବଂ ଏହାର ଅର୍ଥନୀତି ଥିଲା ପୃଥକ । କିନ୍ତୁ ମୁଁ ତଥାପି କହିଛି ଦୁର୍ଗତି ହେତୁ ଏହା ମଧ୍ୟ ଅପ୍ରତ୍ୟକ୍ଷ ଭାବରେ କ୍ଷତିଗ୍ରସ୍ତ ହେଲା । କାରଣ ଦରହ୍ରାସ ଯୋଗୁଁ ବିଦେଶରେ ବିକ୍ରୀ କରୁଥିବା ଶସ୍ୟରୁ ଏହା କମ୍ ଧନ ପାଇଲା ।

ଏହି ମହାନ ଦୁର୍ଗତି, ଏହି ବିଶ୍ୱସଂକଟ କେଉଁଥିପାଇଁ ହେଲା ? ଏହା ନିଜ ଢଙ୍ଗରେ ପ୍ରାୟ ପୃଥିବୀ ଯୁଦ୍ଧ ପରି ଭୀଷଣ ହେଲା । ଏହାକୁ ପୁଞ୍ଜିବାଦ ସଂକଟ କହନ୍ତି, କାରଣ ବିଶାଳ ଓ ଜଟିଳ ପୁଞ୍ଜିବାଦ ଯନ୍ତ୍ର ଏହା ଅଧୀନରେ ଖରାପଭାବରେ ଭାଙ୍ଗିପଡ଼ିଲା । ପୁଞ୍ଜିବାଦ ଏପରି ଆଚରଣ କଲା କାହିଁକି ? ଏହି ଅସ୍ଥାୟୀ ସଂକଟରୁ ପୁଞ୍ଜିବାଦ ଉଦ୍ଧାର ହିବ କି ନା, ଏତେ ଦୀନ

ପର୍ଯ୍ୟନ୍ତ ଏହି ଯେଉଁ ମହାନ ପ୍ରଥା ସାରା ଜଗତରେ ପ୍ରାଧାନ୍ୟ ବିସ୍ତାର କରୁଥିଲା ତାହାର ଅନ୍ତିମ ମୁଖର ଆର୍ତ୍ତନାଦର ଏହା ଆରମ୍ଭ ମାତ୍ର ? ଏହିପରି ଅନେକ ପ୍ରଶ୍ନ ଉଠେ ଏବଂ ଏହା ଆମର ମନମୁଗ୍‌ଧ କରେ, କାରଣ ଏହାର ଜବାବ ଉପରେ ମାନବସମାଜର ଭବିଷ୍ୟତ ନିର୍ଭର କରେ ଏବଂ ଆମର ମଧ୍ୟ । ୧୯୩୦ ଡିସେମ୍ବର ମାସରେ ବ୍ରିଟିଶ ସରକାର ଯୁଦ୍ଧ ଋଣ ଅସୁଲ ଦେବାରୁ ମୁକ୍ତ ପାଇବା ନିମନ୍ତେ ଆମେରିକା ସରକାରଙ୍କୁ ନିବେଦନ କଲା । ଏଥିରେ ଯେଉଁସବୁ ପ୍ରତିକାର ଚେଷ୍ଟା କରାଯାଇଥିଲା ସେଥିରେ ରୋଗ କପରି ବଢ଼ିଲା ତାହା ଦର୍ଶାଇ ଦେଇଥିଲେ । ସେମାନେ କହିଥିଲେ "ପ୍ରତ୍ୟେକ ସ୍ଥାନରେ ଟିକସ ନିର୍ମମ ଭାବରେ ବୃଦ୍ଧି ପାଇଛି ଏବଂ ବ୍ୟୟ ଭୀଷଣ ଭାବରେ କାଟି ଦିଆଯାଇଛି ଏବଂ ତଥାପି ଏହି ଗୋଳମାଳର ପ୍ରତିକାର ପାଇଁ ହୋଇଥିବା ନିୟନ୍ତ୍ରଣ କଟକଣା ଫଳରେ କେବଳ ଅବସ୍ଥା ଗୁରୁତର ଆକାର ଧାରଣ କରିଛି ।" ସେମାନେ ଆହୁରି ମଧ୍ୟ ଦର୍ଶାଇଲେ ଯେ "ଏହି କ୍ଷତି ଓ କଷ୍ଟଭୋଗ ପ୍ରକୃତିର କୃପଣତା ଯୋଗୁଁ ହୋଇ ନ ଥିଲା । ଶାରୀରିକ ବିଜ୍ଞାନର ବିଜୟ ବୃଦ୍ଧି ପାଉଛି ଏବଂ ପ୍ରକୃତ ସମ୍ପଦ ଉତ୍ପାଦନର ବିଶାଳ ସମ୍ଭାବନା ଅକ୍ଷତ ହୋଇ ରହିଛି ।" ଦୋଷ ପ୍ରକୃତିର ନୁହେ, କିନ୍ତୁ ଏହା ମଣିଷଠାରେ ଏବଂ ସେ ଯେଉଁ ପ୍ରଥା ସୃଷ୍ଟି କରିଥିଲା ତାହାଠାରେ ଥିଲା ।

ଏହି ପୁଞ୍ଜିବାଦ ରୋଗର ଏକ ଠିକଣା ନିଦାନ ଦେବା ସହଜ କଥା ନୁହେଁ କିମ୍ବା ଏଥିପାଇଁ ପ୍ରତିକାର ବତାଇବା ବି ସହଜ ନୁହେଁ । ଅର୍ଥନୀତିଜ୍ଞମାନେ ଏ ସମ୍ବନ୍ଧରେ ସବୁକଥା ଜାଣନ୍ତି ବୋଲି ଧରାଯାଏ—ସେମାନେ ମଧ୍ୟ ଏଥିରେ ଦ୍ୱିମତ ହୁଅନ୍ତି ଏବଂ ନାନାପ୍ରକାର କାରଣ ଓ ପ୍ରତିକାର ବତାନ୍ତି । କେବଳ କମ୍ୟୁନିଷ୍ଟ ଓ ସୋସାଲିଷ୍ଟଙ୍କ ମନରେ ଏ ସମ୍ବନ୍ଧରେ ପରିଷ୍କାର ଧାରଣା ଥାଏ ଏବଂ ସେମାନେ ଯଥାର୍ଥରୂପେ ପୁଞ୍ଜିବାଦ ନଷ୍ଟ ହୋଇଯିବାରେ ତାଙ୍କର ମତ ଓ ତଥ୍ୟ କାର୍ଯ୍ୟକାରୀ ହୋଇ ପାରିବ ବୋଲି ଦର୍ଶାନ୍ତି । ପୁଞ୍ଜିବାଦୀ ବିଶେଷଜ୍ଞ-ମାନେ ପରିଷ୍କାର ଭାବରେ ବିଚଳିତ ଓ ଚକିତ ହୋଇପଡ଼ନ୍ତି । ବ୍ରିଟିଶ ଧନପତିମାନଙ୍କ ଭିତରେ ଜଣେ ଶ୍ରେଷ୍ଠ ଓ ସମର୍ଥ ବ୍ୟକ୍ତି ଏବଂ ଇଂଲଣ୍ଡ ବ୍ୟାଙ୍କର ଗଭର୍ଣ୍ଣର ମଣ୍ଟେଗୁନରମାନ ଏକ ସାଧାରଣ ଉତ୍ସବରେ କହିଥିଲେ "ଅର୍ଥନୈତିକ ସମସ୍ୟା ମୋ ପକ୍ଷରେ ବହୁତ ବଡ଼ ଜିନିଷ । ଅସୁବିଧା ସବୁ ଏତେ ବିଶାଳ, ଏତେ ନବୀନ, ଏଥିର ପୂର୍ବ ନଜିର ନାହିଁ; ମୁଁ ସମଗ୍ର ସମସ୍ୟାକୁ ମୂର୍ଖତା ଓ ନମ୍ରତା ସହକାରେ ଦେଖେ । ଏହା ମୋ ପକ୍ଷରେ ଖୁବ୍ ବଡ଼ ସମସ୍ୟା । ଯେତେବେଳେ ଭବିଷ୍ୟତ ଆସି ପହଞ୍ଚିବ, ମୁଁ ଆଶାକରେ . ଆମେ ସୁଡ଼ଙ୍ଗର ଅନ୍ୟ ପ୍ରାନ୍ତରେ ଆଲୋକ ଦେଖିପାରିବା—କେହି କେହି ଆମକୁ ତାହା ଦର୍ଶାଇ ଦେବାରେ ସମର୍ଥ ହେବେ ।" କିନ୍ତୁ ଏହି ଆଲୋକ ଡାହାଣୀ ଆଲୁଅପରି, ଭ୍ରାନ୍ତିଜନକ ଭୂତ ପରି ଆମକୁ କେବଳ ବିତାଡ଼ିତ କରିବା ନିମନ୍ତେ ହିଁ ଆଶା ଜାଗ୍ରତ କରାଏ । ଜଣେ ସୁପରିଚିତ ବ୍ରିଟିଶ ରାଜନୀତିଜ୍ଞ ସାର୍ ଅକଲାଣ୍ଡ ଗେଡ୍‌ଡେସ କହିଛନ୍ତି "ଚିନ୍ତାଶୀଳ ଲୋକେ ବିଶ୍ୱାସ କରନ୍ତି ଯେ ସମାଜ ଭାଙ୍ଗି ପଡ଼ିବା ଆରମ୍ଭ ହେଲାଣି । ଇଉରୋପରେ ଆମେ ଜାଣୁ ଏକ ଯୁଗ ଲୋପ ପାଉଛି ।"

ଜର୍ମାନମାନେ ବିଶ୍ୱାସିଲେ ଯେ ସଙ୍କଟର ପ୍ରକୃତ କାରଣ ହେଉଛି କ୍ଷତିପୂରଣ, ଅନେକେ ବିଶ୍ୱାସିଲେ ଯେ ଦେଶ ଦେଶ ମଧ୍ୟରେ ତଥା ଆପଣା ଦେଶ ଭିତରେ ହୋଇଥିବା ଯୁଦ୍ଧ ଋଣ ହେତୁ ଦୁର୍ଗତି ପଡ଼ିଥିଲା । ଏହି ବୋଝ ସହ୍ୟ କରିବା କଠିଣ ଏବଂ ଏହା ସମସ୍ତ ଶିଳ୍ପ ଧ୍ୱଂସ କରୁଛି । ଏହି ରୂପେ ପୃଥିବୀର ସବୁ ଗୋଳମାଳ ପାଇଁ ମହାଯୁଦ୍ଧ ପ୍ରଧାନତଃ ଦାୟୀ ବୋଲି ଧରାଯାଉଛି । କେତେକ ଅର୍ଥନୀତିଜ୍ଞଙ୍କ ମତରେ ମୁଦ୍ରାର ଅଦ୍ଭୁତ ଆଚରଣ ଓ ବହୁତ ମୂଲ୍ୟ ହ୍ରାସରେ ହିଁ ପ୍ରକୃତ ଗୋଳମାଳ ହେଲା—ତାହା ମଧ୍ୟ ସୁନା ଅଭାବରୁ ଘଟିଲା । ପୃଥିବୀର ଆବଶ୍ୟକ ଅନୁସାରେ ଖଣିମାନଙ୍କରୁ ଯଥେଷ୍ଟ ଆମଦାନି ନ ହେବାରୁ ଏବଂ ଆହୁରି ବିଭିନ୍ନ ସରକାର ସୁନା ସଞ୍ଚୟ କରି ରଖିବାରୁ ଆଂଶିକଭାବରେ ସୁନା ଅଭାବ ଘଟିଲା । ଆହୁରି କେତେକେ କହିଲେ ଅର୍ଥନୈତିକ ଜାତୀୟବାଦ, ଶୁଳ୍କ ଓ ଅତିରିକ୍ତ କର ଫଳରେ ଆନ୍ତର୍ଜାତିକ ବେପାରରେ ବାଧା ପଡ଼ିଥିଲା ଏବଂ ସେଥିଯୋଗୁଁ ସବୁ ଗୋଳମାଳ ହେଲା । ଆଉ ଏକ ମତ ହେଉଛି ଶିଳ୍ପବିଦ୍ୟା ବା ବୈଜ୍ଞାନିକ କୌଶଳରେ ଅଗ୍ରଗତି ହେତୁ ଆବଶ୍ୟକ ଶ୍ରମିକଙ୍କ ସଂଖ୍ୟା କମ୍ କରିଦିଆଗଲା ଏବଂ ଏହିରୂପେ ଅକର୍ମା ବୃଦ୍ଧି ପାଇଲା ।

ଏହି ସବୁ ଓ ଅନ୍ୟ ପ୍ରସ୍ତାବ ସମ୍ବନ୍ଧରେ ଅନେକ କଥା କୁହାଯାଇପାରେ ଏବଂ ହୁଏତ ପୃଥିବୀର ମସ୍ତିଷ୍କ ବିକୃତ ଏହିସବୁ ଯୋଗୁଁ ହୋଇଛି । କିନ୍ତୁ ସଂକଟ ହେତୁ ପାଇଁ ସେଥିରୁ କୌଣସି ଗୋଟିକ ବା ସମସ୍ତଙ୍କ ଉପରେ ଦୋଷ ଦେବା ପ୍ରାୟ ଠିକ୍ ବା ଯଥାର୍ଥ ନୁହେଁ । ବାସ୍ତବିକ ଯଦିଓ ପ୍ରତ୍ୟେକ କାରଣ ଅବସ୍ଥା ଗୁରୁତର କରିବାରେ ସାହାଯ୍ୟ କରିଥିଲା, ତଥାପି ଅନେକ ତଥାକଥିତ କାରଣ ସଂକଟର ଫଳସ୍ୱରୂପ ହୋଇଥିଲା । ମୌଳିକ ଗୋଳମାଳ ବହୁତ ଗଭୀରରେ ଅଛି । ଯୁଦ୍ଧରେ ପରାଜୟ ଯୋଗୁଁ ଏହା ହୋଇ ନ ଥିଲା । କାରଣ ବିଜେତାମାନେ ବି ଏଥିରେ ଜଡ଼ିତ ଥିଲେ; ଏହା ଜାତୀୟ ଦାରିଦ୍ର୍ୟ ଯୋଗୁଁ ହୋଇ ନ ଥିଲା, କାରଣ ପୃଥିବୀରେ ସର୍ବଶ୍ରେଷ୍ଠ ଧନୀ ଦେଶ ଆମେରିକାର ସବୁଠାରୁ ବେଶି ନୋକସାନ ହେଲା । ଏଥିରେ ସନ୍ଦେହ ନାହିଁ ଯେ ପୃଥିବୀ ଯୁଦ୍ଧ ଏହି ସଂକଟକୁ ଶୀଘ୍ର କରିବାରେ ବଡ଼ କାରଣ ଥିଲା—ମହାନ ଯୁଦ୍ଧ ଋଣ ବୋଝ ଓ ଏହା ଯେ ପ୍ରକାରେ ଋଣ ଦାତା ଦେଶମାନଙ୍କ ଭିତରେ ବଣ୍ଟାଗଲା, ଏହି ଉଭୟ କାରଣରୁ ଏହା ହୋଇଥିଲା । ଅନ୍ତତଃ ମଧ୍ୟ ଯୁଦ୍ଧ ପରେ କେତେକ ବର୍ଷ ପର୍ଯ୍ୟନ୍ତ ପଦାର୍ଥମାନଙ୍କର ଉଚ୍ଚ ମୂଲ୍ୟ କୃତ୍ରିମ ଥିଲା ଏବଂ ଏହାର ପତନ ହେବାକୁ ବାଧ୍ୟ । କିନ୍ତୁ ଆମେ ଗଭୀରକୁ ଦୃଷ୍ଟିପାତ କରିବା ।

କୁହାଯାଏ ଅଧିକ ଉତ୍ପାଦନ ହେଉଛି ଅସଲ ଗୋଳମାଳ । ଏହା ଏକ ଭୁଲ ବାଟରେ ନେଇଯିବା ଶବ୍ଦ; କାରଣ ଯେତେବେଳେ ଲକ୍ଷ ଲକ୍ଷ ଲୋକ ନିତାନ୍ତ ଆବଶ୍ୟକୀୟ ପଦାର୍ଥ ଅଭାବରୁ କଷ୍ଟ ଭୋଗୁଛନ୍ତି ସେତେବେଳେ ଅଧିକ ଉତ୍ପାଦନ ନ ଥାଇପାରେ । ଶହ ଶହ ଲକ୍ଷ ଲକ୍ଷ ଲୋକ ଭାରତରେ ପିନ୍ଧିବାପାଇଁ ଯଥେଷ୍ଟ ଲୁଗା ପାଆନ୍ତି ନାହିଁ ଅଥଚ ଭାରତୀୟ ଗୁଦାମ କଳ ଓ ଖଦି ଭଣ୍ଡାରମାନଙ୍କରେ ବହୁତ ଲୁଗା ମହଜୁଦ ଥିବାର ଶୁଣାଯାଏ ଏବଂ ଲୁଗା

"ଅଧିକ ଉତ୍ପାଦନ" କଥା ଉଠେ । ପ୍ରକୃତ କଥା ହେଉଛି ଲୋକେ ଏତେ ଗରିବ ଯେ ଲୁଗା କିଣିପାରନ୍ତି ନାହିଁ—ସେମାନେ ଯେ ଦରକାର କରନ୍ତି ନାହିଁ ତାହା ନୁହେଁ, ଜନତା ହାତରେ ପଇସାର ଅଭାବ । ଏହି ଧନର ଅଭାବ ପୃଥିବୀରୁ ଧନ ଅନ୍ତର୍ହିତ ହୋଇ ଯାଇଥିବା ହେତୁ ହୋଇଛି ବୋଲି କେହି ଯେପରି ନ ବୁଝନ୍ତି । ଏହାର ଅର୍ଥ ପୃଥିବୀର ଲୋକଙ୍କ ଭିତରେ ଧନର ବଣ୍ଟନ ପରିବର୍ତ୍ତନ ହୋଇଛି ଓ ବରାବର ପରିବର୍ତ୍ତନ ହେଉଛି—ଅର୍ଥାତ୍ ଧନ ବଣ୍ଟନରେ ବୈଷମ୍ୟ ରହିଛି । ଏକ ପକ୍ଷରେ ଅତ୍ୟଧିକ ଧନ ରହିଛି ଏବଂ ଏହାର ମାଲିକମାନେ କିପରି ବ୍ୟବହାର କରିବେ ତାର ବୁଝି ତାକୁ ଦିଶୁ ନାହିଁ; ସେମାନେ କେବଳ ଏହା ରଖନ୍ତି ଓ ବ୍ୟାଙ୍କର ହିସାବ ବଢ଼ାଇବାରେ ଲାଗନ୍ତି । ବଜାରରେ ପଦାର୍ଥ କିଣିବାରେ ଏହି ଧନ ବ୍ୟବହାର କରାଯାଏ ନାହିଁ । ଅନ୍ୟପକ୍ଷରେ ଧନର ଅଧିକ ଅଭାବ ଦେଖାଯାଏ ଏବଂ ଧନ ଅଭାବରୁ ଦରକାରୀ ପଦାର୍ଥ କିଣାଯାଇ ପାରେ ନା ।

ଧନୀ ଓ ଗରିବ ଯେ ଅଛନ୍ତି ଏହା ଏଥିରେ ବୁଝାଇ କରି କୁହା ହୋଇଛି; ଏହା ଏକ ସୁସ୍ପଷ୍ଟ କଥା—ଏଥିରେ ଯୁକ୍ତି ଦରକାର ନାହିଁ । ଇତିହାସର ଆରମ୍ଭରୁ ଏହି ଧନୀ ଓ ଦରିଦ୍ର ରହିଛନ୍ତି । ତାହା ହେଲେ ବର୍ତ୍ତମାନର ସଙ୍କଟପାଇଁ ସେମାନେ କାହିଁକି ଦାୟୀ ହେବେ ? ମୋର ମନେହୁଏ ମୁଁ ପୂର୍ବର ଏହି ଚିଠିରେ ତତେ କହିଛି ଯେ ପୁଞ୍ଜିବାଦୀ ବ୍ୟବସ୍ଥାର ପ୍ରବୃତ୍ତି ହେଉଛି ଧନ ବଣ୍ଟନରେ ଅସାମଞ୍ଜସ୍ୟ ବୃଦ୍ଧି କରିବା । ସାମନ୍ତବାଦ ଅବସ୍ଥାରେ ପ୍ରାୟ ଧୀରେ ଧୀରେ ପରିବର୍ତ୍ତନ ହେଉଥିଲା, ବଡ଼ ବଡ଼ ମେସିନ ଓ ପୃଥିବୀ ବଜାର ପୁଞ୍ଜିବାଦରେ ଆସିଲା—କ୍ରିୟାତ୍ମକ ଏବଂ ବ୍ୟକ୍ତିବିଶେଷ ଓ ଦଳଦ୍ୱାରା ଧନ ସଞ୍ଚିତ ହେବାରୁ ଦ୍ରୁତ ପରିବର୍ତ୍ତନ ସବୁ ହେଲା । ଧନ ବଣ୍ଟନରେ ବୈଷମ୍ୟ ଓ ବୃଦ୍ଧି ସେଥିସହିତ ଅନ୍ୟ କେତେକ କାରଣ ହେତୁ ଶିଳ୍ପୋନ୍ନତ ଦେଶମାନଙ୍କରେ ପୁଞ୍ଜିବାଦ ଓ ଶ୍ରମିକଙ୍କ ଭିତରେ ନୂତନ ସଂଗ୍ରାମ ଜାତ ହେଲା । ଏହିସବୁ ଦେଶରେ ପୁଞ୍ଜିବାଦୀମାନେ ଉପନିବେଶ ଓ ଅନୁନ୍ନତ ରାଜ୍ୟମାନଙ୍କୁ ଶୋଷଣ କରି ଅଧିକ ମଜୁରି ଓ ଉନ୍ନତ ବଞ୍ଚିବା ବ୍ୟବସ୍ଥା ଆଦି କେତେକ ସୁବିଧା ଶ୍ରମିକମାନଙ୍କୁ ଦେଇ ସଂଘର୍ଷ କମ୍ କରିଦେଲେ । ଏହିପରି ଭାବରେ ଏସିଆ, ଆଫ୍ରିକା, ଦକ୍ଷିଣ ଆମେରିକା ଓ ପୂର୍ବ ୟୁରୋପର ଶୋଷଣ ପଶ୍ଚିମ ୟୁରୋପ ଓ ଉତ୍ତର ଆମେରିକା ପ୍ରଭୃତି ଶିଳ୍ପୋନ୍ନତ ଦେଶପକ୍ଷରେ ଧନ ଜମା କରିବାରେ ସାହାଯ୍ୟ କଲା ଏବଂ ଏଥିରୁ କିଛିତ ଅଂଶ ଶ୍ରମିକଙ୍କୁ ଦେଲେ । ନୂତନ ବଜାର ଆବିଷ୍କାର ହେବାରୁ ନୂତନ ଶିଳ୍ପ ବୃଦ୍ଧି ହେଲା ଅଥବା ପୁରାତନ ଶିଳ୍ପ ଚାଲୁ ହେଲା । ସାମ୍ରାଜ୍ୟବାଦ ଏହି ବଜାର ଓ କଞ୍ଚାମାଲ ଖୋଜିବା ନିମନ୍ତେ ଛଦ୍ମବେଶ ଧାରଣ କଲା ଏବଂ ବିଭିନ୍ନ ଶିଳ୍ପୋନ୍ନତ ଶକ୍ତିଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ପଥରେ ସେମାନଙ୍କ ଭିତରେ ସଂଘର୍ଷ ହେଲା । ଯେତେବେଳେ ବ୍ୟାବହାରିକ ଦୃଷ୍ଟିରେ ସମଗ୍ର ଦୁନିଆ ପୁଞ୍ଜିବାଦୀ ଶୋଷଣ ଅଧୀନକୁ ଆସିଗଲା, ସେତେବେଳେ ଏହି ବିସ୍ତାର କରିବା ଗତି ଲୋପ ହୋଇଗଲା ଏବଂ ବଡ଼ ଶକ୍ତିମାନ ଭିତରେ ସଂଘର୍ଷ ଫଳରେ ଯୁଦ୍ଧ ହେଲା ।

ମୁଁ ଏସବୁ ତୋତେ ଆଗରୁ କହିଛି, କିନ୍ତୁ ବିଶ୍ୱସଙ୍କଟ ବୁଝିବାରେ ତୋତେ ସାହାଯ୍ୟ କରିବ ବୋଲି ମୁଁ ଏହା ପୁନରୁକ୍ତି କରୁଛି । ଏହି ଉନ୍ନତ ପୁଞ୍ଜିବାଦ ଓ ବର୍ଦ୍ଧିତ ସାମାଜ୍ୟବାଦ କାଳରେ ପଶ୍ଚିମରେ ଅନେକ ସଙ୍କଟ ହେଲା—ଏକପକ୍ଷରେ ଅତ୍ୟଧିକ ସଞ୍ଚୟ ଓ ଅନ୍ୟ ପକ୍ଷରେ ବ୍ୟୟ କରିବା ନିମନ୍ତେ ଅତି କମ୍ ଧନଯୋଗୁଁ ଏହା ହେଲା । କିନ୍ତୁ ଏହି ସଙ୍କଟ ଅତିକ୍ରାନ୍ତ ହୋଇଗଲା । କାରଣ ପୁଞ୍ଜିବାଦୀଙ୍କ ପାଖରେ ଥିବା ବଳକା ଧନ ସେମାନେ ଅନୁନ୍ନତ ଅଞ୍ଚଳକୁ ବୃଦ୍ଧି ଓ ଶୋଷଣ କରିବାରେ ଖଟାଇଲେ ଏବଂ ସେଠାରେ ନୂତନ ବଜାର ସୃଷ୍ଟିକଲେ—ଏଥିରେ କ୍ଷନ୍ତର ବେଶୀ ବର୍ଦ୍ଧୀ ହେଲା । ସାମ୍ରାଜ୍ୟବାଦ ପୁଞ୍ଜିବାଦର ଅନ୍ତିମ ପର୍ଯ୍ୟାୟ ବୋଲି କହନ୍ତି । ସାଧାରଣତଃ ସମଗ୍ର ଜଗତ ଶିଳ୍ପୋନ୍ନତ ହେବା ପର୍ଯ୍ୟନ୍ତ ଏହି ଶୋଷଣଧାରା ଚାଲିଥାଆନ୍ତା । କିନ୍ତୁ ଅସୁବିଧା ଓ ପ୍ରତିରୋଧ ପଡ଼ିଥିଲା । ପ୍ରଧାନ ଅସୁବିଧା ହେଲା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ ଶୋଷଣ ପ୍ରତିଯୋଗିତା—ପ୍ରତ୍ୟେକେ ନିଜ ପାଇଁ ଏଥିରୁ ବଡ଼ ଭାଗ ନେବାକୁ ବସିଲେ । ଆଉ ଏକ ଅସୁବିଧା ହେଉଛି ଉପନିବେଶ ରାଜ୍ୟମାନଙ୍କରେ ନୂତନ ଜାତୀୟତାବାଦର ଆବିର୍ଭାବ ଏବଂ ଉପନିବେଶ ଶିଳ୍ପ ବୃଦ୍ଧି—ଏହା ଫଳରେ ଆମ ନିଜ ବଜାରକୁ ନିଜେ ମାଲ ଯୋଗାଇବାକୁ ଲାଗିଲେ । ଆମେ ଦେଖିଛେ ଏହିସବୁ କିପରି ଫଳରେ ଯୁଦ୍ଧ ଜାତ ହେଲା । କିନ୍ତୁ ପୁଞ୍ଜିବାଦର ଏହିସବୁ ଅସୁବିଧାକୁ ଯୁଦ୍ଧ ସମାଧାନ କରି ପାରେନା ଓ କରିନାହିଁ । ଏକ ବିଶାଳ ରାଜ୍ୟ ସୋଭିଏଟ ଇଉନିଅନ ପୁଞ୍ଜିବାଦ ଦୁନିଆରୁ ସମ୍ପୂର୍ଣ୍ଣରୂପେ ଦୂରରେ ରହିଲା ଏବଂ ଆଉ ତାର ବଜାର ଶୋଷଣ ହୋଇ ପାରିଲା ନାହିଁ । ପୂର୍ବର ଜାତୀୟତାବାଦ ଅଧିକ ଆକ୍ରମଣଶୀଳ ହେଲା ଏବଂ ଶିଳ୍ପୋଦ୍ୟୋଗ ବିସ୍ତାର ଲଭିଲା । ବୈଜ୍ଞାନିକ କୌଶଳ ଯୋଗୁଁ ଅଭୂତ ପ୍ରଗତି ଫଳରେ ଯୁଦ୍ଧ ପୂର୍ବରୁ ଓ ଯୁଦ୍ଧ ପରେ ଅସମାନ ଧନ ବଣ୍ଟନ ହେଲା ଏବଂ ବେକାର ସୃଷ୍ଟି ହେଲା । ଯୁଦ୍ଧ ଋଣ ମଧ୍ୟ ଏକ ପ୍ରବଳ କାରଣ ଥିଲା ।

ପ୍ରବଳ ଯୁଦ୍ଧ ଋଣ ଥିଲା ଏବଂ ମନେ ରଖିବା ଦରକାର ଯେକୌଣସି ପ୍ରକାର ନିର୍ଦ୍ଦିଷ୍ଟ ଧନ ଏହା ପଛରେ ନ ଥିଲା । କୌଣସି ଦେଶ ଯଦି ଏକ ରେଲଓ୍ୱେ, ଜଳସେଚନ କାର୍ଯ୍ୟ କିମ୍ବା ଦେଶ ପକ୍ଷରେ ମଙ୍ଗଳକର ଅନ୍ୟ କିଛି ନିର୍ମାଣ କରିବା ନିମନ୍ତେ ଧନ ଧାର କରେ, ତେବେ ଧାର ଓ ବ୍ୟୟ କରିଥିବା ଧନ ପରିବର୍ତ୍ତେ ଏହା କିଛି ଯଥାର୍ଥ କ୍ଷନ୍ତ ପାଏ । ବାସ୍ତବିକ ଏହି କାର୍ଯ୍ୟରେ ଯେତେ ଧନ ଖର୍ଚ୍ଚ କରାଯାଏ, ସେଥିରୁ ଏଥିରେ ଅଧିକ ଧନ ଉତ୍ପନ୍ନ ହୋଇପାରେ; ତେଣୁ ଏଗୁଡ଼ିକୁ "ଉତ୍ପାଦନକ୍ଷମ କାର୍ଯ୍ୟ" ବୋଲି କହନ୍ତି । ଯୁଦ୍ଧକାଳରେ ଧାର କରାଯାଇଥିବା ଧନ ଏପରି କୌଣସି ଉଦ୍ଦେଶ୍ୟରେ ବ୍ୟୟିତ ହୋଇ ନ ଥିଲା । ଏହା କେବଳ ଅନୁତ୍ପାଦକ ନୁହେଁ, ଧ୍ୱଂସକାରୀ ଥିଲା । ବିଶାଳ ପରିମାଣ ବ୍ୟୟ କରାଗଲା ଏବଂ ଏଗୁଡ଼ିକ ଏକ ଧ୍ୱଂସର ଅବଶେଷ ରଖିଗଲା । ଏହିରୂପେ ଯୁଦ୍ଧ ଋଣ ଏକ ବିଶୁଦ୍ଧ ଓ ଅମିଶ୍ରିତ ବୋଝ ଥିଲା । ତିନି ପ୍ରକାର ଯୁଦ୍ଧ ଋଣ ଥିଲା । କ୍ଷତିପୂରଣ—ବିଜିତ ଦେଶଗୁଡ଼ିକ ଏହା ଦେବା ନିମନ୍ତେ ବାଧ୍ୟ ହୋଇ ସମ୍ମତ ହୋଇଥିଲେ; ସରକାର ଭିତରେ ପରସ୍ପରଠାରୁ

ଋଣ—ଏହା ମିଳିତ ରାଜ୍ୟ ପରସ୍ପରଠାରୁ ଆଣିଥିବେ ଓ ବିଶେଷ ଭାବରେ ଆମେରିକାର ପ୍ରାପ୍ୟ ଥିଲା ଏବଂ ଜାତୀୟ ଋଣ—ଏହା ପ୍ରତ୍ୟେକ ଦେଶ ତାର ନିଜ ଦେଶର ନାଗରିକମାନଙ୍କଠାରୁ ଧାର କରିଥିଲା ।

ଏହି ବିଭିନ୍ନ ପ୍ରକାର ଋଣ ଭିତରୁ ପ୍ରତ୍ୟେକଟି ପ୍ରକାଣ୍ଡ ଥିଲା, ମାତ୍ର ପ୍ରତ୍ୟେକ ଦେଶ ପକ୍ଷରେ ସର୍ବାପେକ୍ଷା ଅଧିକ ଥିଲା ଜାତୀୟ ଋଣ । ଏହିରୂପେ ଯୁଦ୍ଧ ପରେ ବ୍ରିଟିଶ ଜାତୀୟ ଋଣ ପରିମାଣ ହେଲା ୭,୫୦୦,୦୦୦,୦୦୦ପାଉଣ୍ଡ । ଏପରି ଋଣର ସୁଧ ଦେବା ବି ଏକ ଶକ୍ତ ବୋଝ ଓ ଏହାର ଅର୍ଥ ଅତ୍ୟନ୍ତ ଅଧିକ ଟିକସ ଧାର୍ଯ୍ୟ । ଜର୍ମାନୀ ମୁଦ୍ରାସ୍ଫୀତିଦ୍ୱାରା ତାର ବିଶାଳ ଜାତୀୟ ଋଣ ମୂଳପୋଛ କରିଦେଲା—ଏଥିରେ ପୁରୁଣା ମାର୍କ ଶେଷ ହୋଇଗଲା ଏବଂ ତେଣୁ ଏଥିରେ ଯେଉଁ ଲୋକେ ତାକୁ ଧନ କରଜ ଦେଇଥିଲେ ସେହିମାନଙ୍କ ବ୍ୟୟରେ ତାହା ଏକ ମହାନ ବୋଝରୁ ରକ୍ଷା ପାଇପାରିଲା । ଫ୍ରାନ୍ସ ସେତେ ପରିମାଣରେ ନ ହେଲେ ବି ସେହି ମୁଦ୍ରାସ୍ଫୀତି ପ୍ରଣାଳୀ ଗ୍ରହଣ କରି ନିଜର ଫ୍ରାଙ୍କର ମୂଲ୍ୟ ଆଗରୁ ଯାହା ଥିଲା ତାହାର ଏକ-ପଞ୍ଚମାଂଶ କରିଦେଲା ଏବଂ ଏହିରୂପେ ଏକ କଲମଗାରରେ ତାର ଆଭ୍ୟନ୍ତରୀଣ ଜାତୀୟ ଋଣ ପାଞ୍ଚଭାଗରୁ ଚାରିଭାଗ କମିଗଲା । ଅନ୍ୟ ଦେଶର ଋଣ (କ୍ଷତିପୂରଣ ବା ଅନ୍ତଃ ସରକାର ଋଣସବୁ) ନଗଦ ସୁନାରେ ଦେବାକୁ ପଡ଼ିବାରୁ ଏହି ଖେଳରେ ତାକୁ ପରିଶୋଧ କରିଦେବା ସମ୍ଭବ ହେଲା ନାହିଁ ।

ଏହି ଅନ୍ତଃସରକାର ଋଣକୁ ଗୋଟିଏ ସରକାର ଅନ୍ୟ ସରକାରକୁ ଦେବା ହେତୁ ଅସୁଲ ଦେବା ରାଜ୍ୟର ବହୁତ ଧନ କ୍ଷତି ଘଟିଲା ଓ ତାହା ଦାରିଦ୍ର୍ୟତର ହୋଇଗଲା । କିନ୍ତୁ ଆଭ୍ୟନ୍ତରୀଣ ଜାତୀୟ ଋଣ ଅସୁଲ ଦେବାଦ୍ୱାରା ଦେଶ ଅବସ୍ଥାରେ କିଛି ପାର୍ଥକ୍ୟ ଘଟିଲା ନାହିଁ କାରଣ ସେ ଧନ ଯୁଆଡ଼େ ହେଲେ ଦେଶ ଭିତରେ ରହିଲା । ତଥାପି ଅନ୍ୟ ପ୍ରକାରେ ଏହା ବହୁତ ପାର୍ଥକ୍ୟ କଲା । ଟିକସ ଧାର୍ଯ୍ୟଦ୍ୱାରା ଧନୀ ଦରିଦ୍ର ଦେଶର ସମସ୍ତ ଟିକସ-ଦାତାଙ୍କଠାରୁ ଧନ ଅସୁଲ କରି ଏହି ଋଣ ଅସୁଲ ଦିଆଗଲା । ଯେଉଁ ସବୁ ହୁଣ୍ଡୀ-ଦାତା ସରକାରକୁ ଧନ ଋଣ ଦେଲେ ସେମାନେ ଧନୀ ଥିଲେ । ତେଣୁ ଧନୀକ ଦେବା ନିମନ୍ତେ ଧନ ଦରିଦ୍ର ଉଭୟଙ୍କୁ ଫଳସ୍ୱରୂପ ଟିକସ ଦେବାକୁ ପଡ଼ିଲା; ଧନୀ ଟିକସ ଭାବରେ ସରକାରକୁ ଯାହା ଦେଲେ ତାହା ଫେରି ପାଇଲେ ଏବଂ ତାହାଠାରୁ ଅଧିକ ପାଇଲେ; ଗରିବ ଦେଲା କିନ୍ତୁ କିଛି ଫେରି ପାଇଲା ନାହିଁ । ଧନୀ ଅଧିକ ଧନୀ ହେଲା ଏବଂ ଦରିଦ୍ର ଅଧିକ ଦରିଦ୍ର ହେଲା ।

ଇଉରୋପର ଖାତକ ରାଜ୍ୟ ସବୁ ତାଙ୍କର ଋଣ ବାବତ ଆମେରିକାକୁ ଯାହା ଅସୁଲ ଦେଲେ ସେ ଧନ ବଡ଼ ବଡ଼ ବ୍ୟାଙ୍କର ଓ ଧନକୁବେରଙ୍କ ହାତକୁ ଗଲା । ତେଣୁ ଯୁଦ୍ଧଋଣ ଫଳରେ ଆଗରୁ ଖରାପ ହୋଇଥିବା ଅବସ୍ଥା ଅଧିକ ଖରାପ ହେଲା ଏବଂ ଗରିବ ବ୍ୟୟରେ ଧନୀ ଲୋକ ଉପରେ ଧନର ଅଧିକ ବୋଝ ଲଦି ଦିଆଗଲା । ଧନୀ ଏହି ଧନ

ଖଟାଇବାକୁ ଗ୍ରୁହିଁଲ । କାରଣ କୌଣସି ବ୍ୟବସାୟୀ ତାର ଧନ ନିକମା କରି ରଖିବାକୁ ଗ୍ରୁହେଁନା । ସେମାନେ ନୂତନ କାରଖାନା, କଳକବଜା ଓ ଅନ୍ୟ ବଡ଼ ବଡ଼ ବ୍ୟୟରେ ଏହି ଧନ ଅଧିକ ପରିମାଣରେ ଖଟାଇଲେ—ସାଧାରଣ ଭାବରେ ଲୋକଙ୍କର ଯେଉଁ ଦରିଦ୍ର ଅବସ୍ଥା ଥିଲା ସେଥିରେ ଏହା କରିବା ଯଥାର୍ଥ ନୁହେଁ । ସେମାନେ ଷ୍ଟକ୍ ଏକ୍ସଚେଞ୍ଜରେ ଲାଭ ଆଶାରେ ଚେଷ୍ଟା କରିବାକୁ ଲାଗିଲେ । ସେମାନେ ବହୁ ପରିମାଣରେ ଅଧିକରୁ ଅଧିକ ମାଲ ତିଆରି କରିବାକୁ ପ୍ରସ୍ତୁତ ହେଲେ; କିନ୍ତୁ ଜନତା ହାତରେ ଏହା ଖର୍ଚ୍ଚ କରିବା ନିମନ୍ତେ ପଇସା ନ ଥିବାବେଳେ ଏହା କିଏ କିଣିବ ? ତେଣୁ ଅଧିକ-ଉତ୍ପାଦନ ହେଲା ଏବଂ ମାଲ ବିକ୍ରୀ ହୋଇ ପାରିଲା ନାହିଁ— ଶିଳ୍ପ ସବୁ ଧନ ହରାଇବାକୁ ଲାଗିଲା ଏବଂ ସେମାନଙ୍କ ଭିତରୁ ଅନେକ ଦୋକାନ ବନ୍ଦ କରିଦେଲେ । ବ୍ୟବସାୟୀ ଲୋକେ ସେମାନଙ୍କ କ୍ଷତିରେ ଆତଙ୍କିତ ହୋଇ ଶିଳ୍ପରେ ଧନ ଖଟାଇବା ବନ୍ଦ କରିଦେଲେ ଏବଂ ନିଜ ହାତରେ ଧନ ରଖିଲେ—ଏହା ନିକମା ହୋଇ ବ୍ୟାଙ୍କରେ ପଡ଼ି ରହିଲା । ତେଣୁ ଅକର୍ମା ସମସ୍ୟା ବିସ୍ତୃତ ହୋଇଗଲା ଓ ଦୁର୍ଗତି ବିଶ୍ୱବ୍ୟାପୀ ହେଲା ।

ସଙ୍କଟ ଯେଉଁସବୁ ବିଭିନ୍ନ କାରଣରୁ ହେଉଛି ବୋଲି କୁହାହେଉଥିଲା, ମୁଁ ତାହା ଅଲଗା ଅଲଗା ଆଲୋଚନା କଲି । ମାତ୍ର ଏସବୁ ଏକତ୍ର କାମ କରୁଥିଲା ଏବଂ ଏହିରୂପେ ପୂର୍ବାପେକ୍ଷା ବାଣିଜ୍ୟ ଦୁର୍ଗତିକୁ ବୃଦ୍ଧି କଲା । ମୂଳତଃ ପୁଞ୍ଜିବାଦରେ ହେଉଥିବା ବଳକା ଆୟର ଅସମାନ ବଣ୍ଟନ ହେତୁ ଏହା ହୋଇଥିଲା । ଅନ୍ୟ ଭାବରେ କହିଲେ ଜନସାଧାରଣ ନିଜ ଶ୍ରମରେ ଯେଉଁ ଜିନିଷ ଉତ୍ପାଦନ କଲେ, ତାହା କିଣିବା ନିମନ୍ତେ ମଜୁରି ବା ବେତନ ଭାବରେ ଯଥେଷ୍ଟ ଧନ ପାଇଲେ ନାହିଁ । ସେମାନଙ୍କର ମୋଟ ଆୟ ଅପେକ୍ଷା ଜିନିଷର ମୂଲ୍ୟ ଅଧିକ ଥିଲା । ଜନସାଧାରଣଙ୍କ ପାଖରେ ଯେଉଁ ଧନ ଥିଲେ, ସେମାନେ ଏହିସବୁ ଜିନିଷ କିଣିପାରିଥାନ୍ତେ, ତାହା ଅପେକ୍ଷାକୃତ ଅତି ଅଳ୍ପ ଧନୀ ବ୍ୟକ୍ତିଙ୍କ ହାତରେ ରହିଥିଲା—ସେମାନେ ଏତେ ଧନ ନେଇ କଣ କରିବେ ବୁଝିପାରୁ ନ ଥିଲେ । ଏହି ବଳକା ଧନ ଆମେରିକାରୁ ଋଣରୂପେ ଜର୍ମାନୀ, କେନ୍ଦ୍ର ଇଉରୋପ ଓ ଦକ୍ଷିଣ ଆମେରିକାକୁ ଗଲା । ଏହି ବିଦେଶୀ ଧାର ଫଳରେ ଯୁଦ୍ଧକ୍ଲାନ୍ତ ଇଉରୋପ ଓ ପୁଞ୍ଜିବାଦୀ ଯନ୍ତ୍ର କେତେକ ବର୍ଷ ପାଇଁ କାର୍ଯ୍ୟକାରୀ ହେଲା ଏବଂ ତଥାପି ଏହା ଏକ ସଙ୍କଟର କାରଣ ହୋଇ ରହିଲା । ଏହିସବୁ ବିଦେଶୀ ଋଣ ବନ୍ଦ ହୋଇଯିବାରୁ ଶେଷରେ ସଙ୍କଟ ଉପୁଜିଲା ।

ପୁଞ୍ଜିବାଦ ସଙ୍କଟର ନିଦାନ ଯଦି ଠିକ୍ ହୋଇଥାଏ, ତେବେ କେବଳ ଆୟ ସମାନ ହେବାରେ ବା ଅନ୍ତତଃ ସେହି ଦଗରେ ଗତି କରିବାରେ ହିଁ ଏହାର ଏକମାତ୍ର ପ୍ରତିକାର ହୋଇପାରେ । ଏହାକୁ ସମ୍ପୂର୍ଣ୍ଣରୂପେ ବଦଳାଇବା ଅର୍ଥ ସାମ୍ରାଜ୍ୟବାଦ ଗ୍ରହଣ କରିବା, କିନ୍ତୁ ପରିସ୍ଥିତି ବାଧ୍ୟ ନ କରିବା ପର୍ଯ୍ୟନ୍ତ ପୁଞ୍ଜିବାଦୀମାନେ ସେପରି କରିବା ସମ୍ଭାବନା ନାହିଁ । ଲୋକେ ଯୋଜନା ଯୁକ୍ତ ପୁଞ୍ଜିବାଦ, ଅନୁନ୍ନତ ଅଞ୍ଚଳକୁ ଶୋଷଣ କରିବା ନିମନ୍ତେ ଅନ୍ତର୍ଜାତୀୟ

ବ୍ୟବସାୟ ସ୍ୱଚ୍ଛ ଆଦି କଥା କହୁଛନ୍ତି । କିନ୍ତୁ ଏହି କଥା ପଶ୍ଚାତରେ ଜାତୀୟ ପ୍ରତିଦ୍ୱନ୍ଦ୍ୱିତା ଓ ପୃଥିବୀ ବଜାର ପାଇଁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ ସଂଗ୍ରାମ ଭୀଷଣ ଆକାର ଧାରଣ କରେ । କେଉଁଥିପାଇଁ ଯୋଜନା ହେବ ? ସରକାରୀ ବ୍ୟୟରେ ଜଣେ ଲାଭ କରିବା ପାଇଁ ? ପୁଞ୍ଜିବାଦର ମତଲବ ହେଲା ବ୍ୟକ୍ତିଗତ ଲାଭ, ପ୍ରତିଯୋଗିତା ହେଉଛି ଏହାର ନୀତିବାଣୀ—ପ୍ରତିଯୋଗିତା ଓ ଯୋଜନା ଏକତ୍ର ଯାଇପାରେନା ।

ଏପରି କି ସୋସାଲିଷ୍ଟ ଓ କମ୍ୟୁନିଷ୍ଟଙ୍କ ଛଡ଼ା ଅନେକ ଚିନ୍ତାଶୀଳ ବ୍ୟକ୍ତି ବର୍ତ୍ତମାନ ଅବସ୍ଥାରେ ପୁଞ୍ଜିବାଦର ଉପଯୋଗିତାରେ ସନ୍ଦେହ କରିବାକୁ ଆରମ୍ଭ କଲେଣି । ଅନେକେ ବଡ଼ ବିସ୍ମୟକର ପ୍ରତିକାର ପ୍ରସ୍ତାବ କରିଛନ୍ତି—ଖାଲି ପ୍ରଚଳିତ ଲାଭ ପ୍ରଥା ନୁହେଁ, ମୂଲ୍ୟ ପ୍ରଥା ଅର୍ଥାତ୍ ଯେଉଁ ପ୍ରଥାରେ ଜଣେ ଯେଉଁ ଜିନିଷ ଖର୍ଚ୍ଚ କରେ ତାହାର ମୂଲ୍ୟ ମୁଦ୍ରାରେ ଦିଏ, ତାକୁ ଉଠାଇ ଦେବା ନିମନ୍ତେ କହିଲେଣି । ଏସବୁ ଅତି ଜଟିଳ—ଏଠି କହି ହେବ ନାହିଁ ଏବଂ କେତେକ ମଧ୍ୟ ଅତି ଅଦ୍ଭୁତ । ଲୋକଙ୍କର ମନ କିପରି ଦୋହଲି ଗଲଣି ସେକଥା ଦେଖାଇ ଦେବାପାଇଁ ମୁଁ ଏଠି ଏହା ଉଲ୍ଲେଖ କଲି—ଯେଉଁ ଲୋକେ ବିପ୍ଳବଠାରୁ ବହୁଦୂରରେ, ସେମାନେ ବୈପ୍ଳବିକ ପ୍ରସ୍ତାବକୁ ବାଢ଼ୁଛନ୍ତି ।

ଜେନେଭାର ଆଇ. ଏଲ. ଓ. (ଆନ୍ତର୍ଜାତିକ ଶ୍ରମିକ ଅଫିସ) ହଠାତ୍ ସପ୍ତାହରେ ଶ୍ରମ କରିବା ସମୟ ୪୦ ଘଣ୍ଟା ନିର୍ଦ୍ଧାର୍ଯ୍ୟ କରିଦେଇ ଅକର୍ମା କମାଇ ଦେବାର ଏକ ସରଳ ପ୍ରସ୍ତାବ କରିଛି । ଏହା ଫଳରେ ଲକ୍ଷ ଲକ୍ଷ ଅଧିକ ଶ୍ରମିକ ନିଯୁକ୍ତ ହୋଇଥାନ୍ତେ ଏବଂ ସେହି ପରିମାଣରେ ଅକର୍ମା ସମସ୍ୟା କମିଯାଇଥାନ୍ତା । ସମସ୍ତ ଶ୍ରମିକ-ପ୍ରତିନିଧି ଏହାର ସ୍ୱାଗତ କଲେ, କିନ୍ତୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଏହାର ବିରୋଧ କଲା ଏବଂ ଜର୍ମାନୀ ଓ ଜାପାନ ସାହାଯ୍ୟରେ ଏ ପ୍ରସ୍ତାବକୁ କୌଣସି ପ୍ରକାରେ ଟଳାଇ ଦିଆଗଲା । ଏହି ଯୁଦ୍ଧୋତ୍ତର ବର୍ଷ-ମାନଙ୍କରେ ଆନ୍ତର୍ଜାତିକ ଶ୍ରମିକ ଅଫିସରେ ବ୍ରିଟେନ ବରାବର ପ୍ରତିକ୍ରିୟାଶୀଳଭାବରେ କାର୍ଯ୍ୟ କରିଛି ।

ସଙ୍କଟ ଓ ଦୁର୍ଗତି ବିଶ୍ୱବ୍ୟାପକ ଏବଂ ଜଣେ ଅନୁମାନ କରେ ଯେ ଏହାର ପ୍ରତିକାର ବି ଆନ୍ତର୍ଜାତିକ ବିଶ୍ୱ ପ୍ରତିକାର ହେବା ଦରକାର । କୌଣସି ପ୍ରକାର ଏକ ସହଯୋଗ ପନ୍ଥା ବାହାର କରିବା ନିମନ୍ତେ ବିଭିନ୍ନ ଦେଶ ଉଦ୍ୟମ କରିଛନ୍ତି, କିନ୍ତୁ ସମସ୍ତେ ଏ ପର୍ଯ୍ୟନ୍ତ ବିଫଳ ହୋଇଛନ୍ତି । ତେଣୁ ପୃଥିବୀ ସମସ୍ୟା ସମାଧାନରେ ହତାଶ ହୋଇ ପ୍ରତ୍ୟେକ ଦେଶ ଅର୍ଥ-ନୈତିକ ଜାତୀୟବାଦଦ୍ୱାରା ଜାତୀୟ ପ୍ରତିକାର ବାହାର କରିବାର ଚେଷ୍ଟା କରିଛି । ଯୁକ୍ତି କରାଯାଇଛି ଯେ, ଯଦି ପୃଥିବୀ ବାଣିଜ୍ୟ ହ୍ରାସ ହୋଇଯାଉଛି ତେବେ ଭଲ, ଅନ୍ତତଃ ଆମେ ଆମ ହାତରେ ନିଜ ଦେଶ ବାଣିଜ୍ୟ ରଖିବା ଏବଂ ବିଦେଶୀ ମାଲ ଆସିବାରେ ବାଧା ଦେବା । ରପ୍ତାନୀ ବେପାର ଉପରେ ଭରସା କରାଯାଇ ପାରେନା ଓ ଏହା ବଦଳୁଥିବାରୁ ପ୍ରତ୍ୟେକ ଦେଶ ନିଜ ଦେଶର ବଜାରରେ ଦୃଷ୍ଟି କେନ୍ଦ୍ରୀଭୂତ କରିବାକୁ ଚେଷ୍ଟା କଲେ । ବିଦେଶୀ

ମାଲ ବାହାରେ ରହିବା ନିମନ୍ତେ ଶୁଳ୍କ ବସାଗଲା ବା ଅଧିକ କର ଦିଆଯାଇଛି ଏବଂ ଏହା କରିବାରେ ସେମାନେ ସଫଳ ହୋଇଛନ୍ତି । ସେମାନେ ଆନ୍ତର୍ଜାତିକ ବେପାରର କ୍ଷତି କରିବାରେ ମଧ୍ଯ କୃତକାର୍ଯ୍ୟ ହୋଇଛନ୍ତି, କାରଣ ପ୍ରତ୍ୟେକ ଦେଶର ଶୁଳ୍କ ପୃଥିବୀ ବେପାରରେ ପ୍ରତିବନ୍ଧକ । ଇଉରୋପ ଓ ଆମେରିକା ଏବଂ କେତେକ ପରିମାଣରେ ଏସିଆ ଏହି ଉଚ୍ଚ ଶୁଳ୍କ ପ୍ରାଚୀରରେ ପୂର୍ଣ୍ଣ । ଶୁଳ୍କ ଫଳରେ ଜୀବନଧାରଣ ମୂଲ୍ୟ ବଢ଼ିଗଲା, କାରଣ ଖାଦ୍ୟଦ୍ରବ୍ୟ ଓ ଅନ୍ୟ ଯେ ସବୁ ଜିନିଷ ଶୁଳ୍କଦ୍ୱାରା ରକ୍ଷା କରାଗଲା ତାହାର ଦର ବଢ଼ିଗଲା । ଶୁଳ୍କ ଏକ ଜାତୀୟ ଏକାଧିପତ୍ୟ ଜାତ କରାଏ ଏବଂ ବାହାରର ପ୍ରତିଯୋଗିତାରେ ବାଧାଦିଏ ବା ଅଧିକ କଷ୍ଟକର କରିପକାଏ । ଏକଥିରୁ ହିଆ ହେବାରୁ ଦର ବୃଦ୍ଧି ହୁଏ । ଶୁଳ୍କଦ୍ୱାରା ସୁରକ୍ଷିତ ନିର୍ଦ୍ଦିଷ୍ଟ ଶିଳ୍ପ ଲାଭ ଦେଇପାରେ ଅଥବା ଏଥିଦ୍ୱାରା ଯେଉଁ ରକ୍ଷା କରାଯାଏ, ସେଥିରେ ମାଲିକମାନେ ଲାଭବାନ ହୋଇ ପାରନ୍ତି, କିନ୍ତୁ ଅଧିକ ପରିମାଣରେ ଯେଉଁ ଲୋକେ ଜିନିଷ କିଣନ୍ତି ସେହିମାନଙ୍କ ମୂଲ୍ୟରେ ଏହା ହୁଏ, କାରଣ ସେମାନଙ୍କୁ ଉଚ୍ଚଦର ଦେବାକୁ ପଡ଼େ । ଏହିରୂପେ ଶୁଳ୍କ କେତେକ ବିଶେଷ ଶ୍ରେଣୀକୁ ସାହାଯ୍ୟ ଦିଏ ଏବଂ ଏହା ସ୍ଥାପିତ ସ୍ୱାର୍ଥ ସୃଷ୍ଟି କରେ କାରଣ ଶୁଳ୍କଦ୍ୱାରା ଲାଭବାନ ହେଉଥିବା ଶିଳ୍ପ ଶୁଳ୍କ ରଖିବାକୁ ଚାହାନ୍ତି । ଏହିରୂପେ ଭାରତରେ ଖୁବ୍ ଉଚ୍ଚ ଶୁଳ୍କ ହେବାରୁ ଜାପାନ ବିରୁଦ୍ଧରେ ଭାରତର ଲୁଗାକଲକୁ ରକ୍ଷା କରାଯାଇଛି । ଏହା ଭାରତୀୟ କଳ-ମାଲିକଙ୍କ ପାଖରେ ଅତ୍ୟନ୍ତ ଲାଭପ୍ରଦ—ନଚେତ ସେମାନେ ଜାପାନ ସହିତ ପ୍ରତିଯୋଗିତା କରିପାରୁ ନ ଥିଲେ ଏବଂ ଏଥିରେ ସେମାନେ ଉଚ୍ଚ ଦର ବି କରିପାରନ୍ତି । ଏଠାରେ ଚିନି ଶିଳ୍ପକୁ ବି ସଂରକ୍ଷଣ କରାଯାଇଛି; ଫଳସ୍ୱରୂପ ବହୁସଂଖ୍ୟକ ଚିନି କଳ ଭାରତ ସାରା ବିଶେଷତଃ ଯୁକ୍ତ ପ୍ରଦେଶ ଓ ବିହାରରେ ଗଢ଼ି ଉଠିଛି । ଏହିରୂପେ ଏକ ସ୍ଥାପିତ ସ୍ୱାର୍ଥ ସୃଷ୍ଟି ହୁଏ ଏବଂ ଯଦି ଚିନି ଶୁଳ୍କ ଉଠିଯାଏ, ତେବେ ଏହି ସ୍ୱାର୍ଥ କ୍ଷତି ହେବ ଏବଂ ଅନେକ ନୂତନ ଚିନିକଳ ବନ୍ଦ ହୋଇଯିବ ।

ଦୁଇ ପ୍ରକାର ଏକାଧିପତ୍ୟ ବୃଦ୍ଧି ହେଲା । ଶୁଳ୍କ ସାହାଯ୍ୟରେ ଜାତି ଭିତରେ ବାହାର ଏକାଧିପତ୍ୟ ଏବଂ ବଡ଼ ବଡ଼ ଉଦ୍ୟମ ଗ୍ରୁପମାନଙ୍କୁ ଗ୍ରାସ କରିଦେବା ଫଳରେ ଆଭ୍ୟନ୍ତରୀଣ ଏକାଧିପତ୍ୟ । ଅବଶ୍ୟ ଏକଥିରୁ ହିଆ ଭାବ ବୃଦ୍ଧି କିଛି ନୂତନ ଘଟଣା ନୁହେଁ । ଅନେକ କାଳ ହେଲା ଏପରିକି ପୃଥିବୀ ଯୁଦ୍ଧ ପୂର୍ବରୁ ଏହା ହୋଇ ଆସିଛି । ଏବେ ଏହା ବେଗବତୀ ହେଲା । ଅନେକ ଦେଶରେ ଶୁଳ୍କ ଲାଗୁଛି । ବଡ଼ ଦେଶମାନଙ୍କରୁ ଇଂଲଣ୍ଡ ଏକାକୀ ଏ ପର୍ଯ୍ୟନ୍ତ ଅବାଧ ବାଣିଜ୍ୟରେ ନିର୍ଭର କରୁଥିଲା ଏବଂ ବିନା ଶୁଳ୍କରେ ଚଳୁଥିଲା; କିନ୍ତୁ ଏବେ ତାକୁ ତାର ପୂର୍ବ ପରମ୍ପରା ଭାଙ୍ଗିବାକୁ ପଡ଼ିଲା ଏବଂ ଆମଦାନୀ ରପ୍ତାନୀ ଶୁଳ୍କ କର ବସାଇ ଅନ୍ୟ ଦେଶର ସମାନ ହେବାକୁ ପଡ଼ିଲା । ଏଥିରେ ତାର କେତେକ ଶିଳ୍ପ ତତ୍‌କ୍ଷଣାତ୍ ଟିକିଏ ଆରାମ ପାଇଲେ ।

ଏହିସବୁ ଘଟଣା ସ୍ଥାନୀୟ ଓ ଅସ୍ଥାୟୀ ସାହାଯ୍ୟ କଲା; ତଥାପି ମୋଟ ଉପରେ ସମଗ୍ର ଦୁନିଆରେ ଏହା ଅବସ୍ଥା ଖରାପ କଲା । ଏହା ଯେ କେବଳ ଆନ୍ତର୍ଜାତିକ ବାଣିଜ୍ୟକୁ ଆହୁରି କମାଇ ଦେଲା ତାହା ନୁହେଁ; ମାତ୍ର ଏହା ଧନର ଅସମାନ ବଣ୍ଟନକୁ ରକ୍ଷା କଲା ଓ ବୃଦ୍ଧି କଲା । ଏହା ଫଳରେ ପ୍ରତିଦ୍ୱନ୍ଦ୍ୱୀ ଦେଶ ଭିତରେ ଝମାନ୍ତିସ୍ଥ ବିବାଦ ଲାଗିଲା; ପ୍ରତ୍ୟେକ ଅପର ବିରୁଦ୍ଧରେ ଶୁଳ୍କ ଉଠାଇଲେ—ଏହାକୁ ଶୁଳ୍କ ଯୁଦ୍ଧ କହନ୍ତି । ପୃଥିବୀ ବଜାର ସଙ୍କୁଚିତ ଏବଂ ଅଧିକରୁ ଅଧିକ ସ୍ୱତନ୍ତ୍ରରେ ରକ୍ଷିତ ହେବାରୁ ସେଥିପାଇଁ ସଂଗ୍ରାମ କଠିନତର ହେଲା ଏବଂ ମାଲିକମାନେ ତାଙ୍କ ଶ୍ରମିକଙ୍କର ମଜୁରି କାଟିବା ନିମନ୍ତେ ଚାପ ଦେଲେ—ତାହାହେଲେ ସେମାନେ ଅନ୍ୟ ଦେଶ ସହିତ ପ୍ରତିଯୋଗିତା କରିପାରିବେ । ତେଣୁ ଦୁର୍ଗତି ବଢ଼ିଲା ଏବଂ ଅକର୍ମା ଶ୍ରେଣୀ ବୃଦ୍ଧି ପାଇଲା । ପ୍ରତ୍ୟେକ ଥର ମଜୁରି କାଟ ହେବାରୁ ଶ୍ରମିକମାନଙ୍କର କିଣିବା ଶକ୍ତି କମ୍ ହୋଇଗଲା ।

## ୧୮୭ : ଆମେରିକା ଓ ଇଂଲଣ୍ଡ ଭିତରେ ନେତୃତ୍ୱ ପାଇଁ ଝଗଡ଼ା

ଜୁଲାଇ ୨୫, ୧୯୩୩

ଦୁର୍ଗତି କାଳରେ ଆନ୍ତର୍ଜାତିକ ବାଣିଜ୍ୟ ହ୍ରାସ ସମ୍ବନ୍ଧରେ ମୁଁ ତତେ କହିଛି—ଶେଷକୁ ଏହାର ଏକ-ତୃତୀୟାଂଶ ମାତ୍ର ରହିଲା । ଲୋକଙ୍କର କିଣିବା ଶକ୍ତି କମିଯିବାରୁ ଦେଶ ଭିତରେ ବାଣିଜ୍ୟ ବି କମ୍ ହୋଇଗଲା । ବେକାରି ବଢ଼ିବାରେ ଲାଗିଲା ଏବଂ ଏହିସବୁ ଲକ୍ଷ ଲକ୍ଷ ଅକର୍ମା ଶ୍ରମିକଙ୍କୁ ସାହାଯ୍ୟ ଦେବା ବିଭିନ୍ନ ସରକାର ପକ୍ଷରେ ମହାନ ବୋଝ ହୋଇପଡ଼ିଲା । ଉଚ୍ଚ ଟିକସ ହାର ସତ୍ତ୍ୱେ ଆୟବ୍ୟୟ ତୁଳାଇବା ଅନେକ ସରକାର ପକ୍ଷରେ କଷ୍ଟକର ହୋଇପଡ଼ିଲା; ସେମାନଙ୍କର ରାଜସ୍ୱ ପଡ଼ିଗଲା ମିତବ୍ୟୟିତା ଓ ଦରମା କାଟିବା ସତ୍ତ୍ୱେ ତାଙ୍କର ବ୍ୟୟ ବଢ଼ିବାରେ ଲାଗିଲା । କାରଣ ସେନା; ନୌବାହିନୀ ଓ ଉଡ଼ାଜାହାଜ ଶକ୍ତି ରକ୍ଷା କରିବାରେ ଏବଂ ଆଭ୍ୟନ୍ତରୀଣ ତଥା ବୈଦେଶିକ ଋଣ ପରିଶୋଧ କରିବାରେ ଅଧିକାଂଶ ବ୍ୟୟ ହେଉଥିଲା । ଜାତୀୟ ବଜେଟରେ ନିଅଣ୍ଟ ହେଲା—ଅର୍ଥାତ୍ ଆୟ ଅପେକ୍ଷା ବ୍ୟୟ ଅଧିକ ହେଲା । ଏହି ନିଅଣ୍ଟ କେବଳ ଅଧିକ ଧନ ଋଣ କରିବାଦ୍ୱାରା କିମ୍ବା ଅନ୍ୟ ରକ୍ଷିତ ପାଣ୍ଠିରୁ ଧନ ଆଣିବା ଦ୍ୱାରା ପୂରଣ ହୋଇପାରେ—ଏଥିରେ ସଂପୃକ୍ତ ଦେଶର ଆର୍ଥିକ ଅବସ୍ଥା ଖରାପ ହୋଇଗଲା ।

ଏହା ସାଙ୍ଗେ ସାଙ୍ଗେ ବହୁ ପରିମାଣରେ ମହଜୁଦ ମାଲ ଅବିକ୍ରୀ ରହିଗଲା; କାରଣ ଏହା କିଣିବା ନିମନ୍ତେ ଲୋକଙ୍କ ପାଖରେ ଯଥେଷ୍ଟ ଧନ ନ ଥିଲା ଏବଂ ଅନ୍ୟ ପକ୍ଷରେ

ଲୋକଙ୍କର ଏହା ଅତ୍ୟନ୍ତ ଆବଶ୍ୟକ ହେଉଥିଲେ ମଧ୍ୟ କେତେକ କ୍ଷେତ୍ରରେ "ବଳକା" ଖାଦ୍ୟଦ୍ରବ୍ୟ ଓ ଅନ୍ୟ ଜିନିଷସବୁ ପ୍ରକୃତରେ ଧ୍ୱଂସ କରି ଦିଆଗଲା । ଏହି ସଙ୍କଟ ଓ ପତନ ବିଶ୍ୱବ୍ୟାପକ ଥିଲା ( ସୋଭିଏଟ ଇଉନିୟନ ବ୍ୟତୀତ ) ଏବଂ ଅଥଚ ଏହାକୁ ଅନ୍ତ କରିବା ନିମନ୍ତେ ଆନ୍ତର୍ଜାତିକ ଭାବେ ବିଭିନ୍ନ ଦେଶମାନେ ସହଯୋଗ କରିବାରେ ବିଫଳ ହେଲେ । ପ୍ରତ୍ୟେକ ଦେଶ ନିଜ କଥାରେ ବ୍ୟସ୍ତ; ଅନ୍ୟକୁ ଟପିଯିବାର ଚେଷ୍ଟାରେ ଅଛନ୍ତି ଏବଂ ଏପରିକି ଅନ୍ୟର ଦୁର୍ଭାଗ୍ୟରେ ଲାଭ ଉଠାଇବା ନିମନ୍ତେ ଉଦ୍ୟମ କରୁଛନ୍ତି । ଏହିସବୁ ବ୍ୟକ୍ତିଗତ ଓ ସ୍ୱାର୍ଥପର କାର୍ଯ୍ୟ ତଥା ଅନ୍ୟ ଆଂଶିକ ପ୍ରତିକାରର ଚେଷ୍ଟା ଫଳରେ ପରିସ୍ଥିତି ଗୁରୁତର ହୋଇଗଲା । ବିଶ୍ୱ ବ୍ୟାପାରରେ ଦୁଇଟି ପ୍ରଧାନ ଘଟଣା ବା ପ୍ରବୃତ୍ତି ଏହା ଉପରେ ପ୍ରଚୁର ପ୍ରଭାବ ପକାଇଲା । ଏହା ବାଣିଜ୍ୟ ଦୁର୍ଗତିଠାରୁ ସମ୍ପୂର୍ଣ୍ଣ ଅଲଗା । ଗୋଟିଏ ହେଉଛି ପୁଞ୍ଜିବାଦୀ ଜଗତର ସୋଭିଏଟ ଇଉନିୟନ ସହ ପ୍ରତିଦ୍ୱନ୍ଦ୍ୱିତା; ଅନ୍ୟଟି ହେଉଛି ଇଂଲଣ୍ଡ ଆମେରିକାର ପ୍ରତିଦ୍ୱନ୍ଦ୍ୱିତା ।

ପୁଞ୍ଜିବାଦୀ ସଙ୍କଟ ସମସ୍ତ ପୁଞ୍ଜିବାଦ ରାଜ୍ୟକୁ ଦୁର୍ବଳ ଓ ଦରିଦ୍ର କରିପକାଇଛି ଏବଂ ଏକ ପ୍ରକାର ଯୁଦ୍ଧର ସମ୍ଭାବନା କମ୍ କରି ଦେଇଛି । ପ୍ରତ୍ୟେକ ଦେଶ ନିଜ ଘର ସଜାଡ଼ିବାରେ ବ୍ୟସ୍ତ ଏବଂ ଏ ପ୍ରକାର ଦୁଃସାହସ ପାଇଁ ପାଖରେ ଧନ ନାହିଁ । ତଥାପି ସ୍ୱବିରୋଧ ଭାବରେ ଏହି ସଙ୍କଟ ହିଁ ଯୁଦ୍ଧର ବିପଦ ବଢ଼ାଇଛି । କାରଣ ଏହା ଦେଶ ଓ ତାର ସରକାରମାନଙ୍କୁ ହତାଶ କରି ପକାଇଛି ଏବଂ ହତାଶ ଲୋକେ ଅନେକ ସମୟରେ ଦେଶାନ୍ତରରେ ଯୁଦ୍ଧକରି ସେମାନଙ୍କର ଆଭ୍ୟନ୍ତରୀଣ ଅସୁବିଧା ଦୂର କରିବାକୁ ଚାହାନ୍ତି । ଯେତେବେଳେ ଏକ ଡିକଟେଟର ବା ଅଳ୍ପ ମୁଷ୍ଟିମେୟ ଲୋକଙ୍କ ହାତରେ ଶାସନ କ୍ଷମତା ଥାଏ ସେତେବେଳେ ଏହା ବିଶେଷ ଭାବରେ ହୁଏ । କ୍ଷମତା ଛାଡ଼ିବା ପରିବର୍ତ୍ତେ ଏହା ନିଜ ଦେଶକୁ ଶୀଘ୍ର ଯୁଦ୍ଧରେ ବ୍ୟାପୃତ କରାଏ ଏବଂ ଏହି ରୂପେ ନିଜ ଦେଶର ଗୋଳମାଳରୁ ଲୋକଙ୍କର ମନ ଅନ୍ୟଆଡ଼କୁ ଘେନିଯାଏ । ଏହିରୂପେ ସୋଭିଏଟ ଇଉନିୟନ ଓ କମ୍ୟୁନିଜମ ବିରୁଦ୍ଧରେ ଏକ ଆକ୍ରମଣର ଆଶଙ୍କା ସର୍ବଦା ରହିଛି ଏବଂ ଏଥିରେ ଅନେକ ପୁଞ୍ଜିବାଦୀ ଦେଶ ଏକତ୍ର ହୋଇଯିବେ ବୋଲି ଆଶା କରାଯାଇପାରେ । ମୁଁ ତତେ ଆଗରୁ କହିଛି ପୁଞ୍ଜିବାଦ ସଙ୍କଟ ସୋଭିଏଟ ଇଉନିୟନକୁ ପ୍ରତ୍ୟକ୍ଷ ଭାବରେ ସ୍ପର୍ଶ କରି ନ ଥିଲା । ଏହା ପଞ୍ଚବାର୍ଷିକ ଯୋଜନାରେ ବ୍ୟସ୍ତ ରହି ଯେ କୌଣସି ପ୍ରକାରେ ଯୁଦ୍ଧରୁ ଅଲଗା ରହିବାକୁ ଚାହୁଁ ଥିଲା ।

ଯୁଦ୍ଧପରେ ଇଂଲଣ୍ଡ ଓ ଆମେରିକା ଭିତରେ ପ୍ରତିଦ୍ୱନ୍ଦ୍ୱିତା ଅନିବାର୍ଯ୍ୟ ଥିଲା । ସେମାନେ ପୃଥିବୀର ଦୁଇଟି ସର୍ବପ୍ରଧାନ ଶକ୍ତି ଏବଂ ପ୍ରତ୍ୟେକେ ବିଶ୍ୱ ବ୍ୟାପାରରେ ପ୍ରାଧାନ୍ୟ କରିବାକୁ ଚାହାନ୍ତି । ପୃଥିବୀ ଯୁଦ୍ଧ ପୂର୍ବରୁ ଇଂଲଣ୍ଡର ଅପ୍ରତିଦ୍ୱନ୍ଦ୍ୱୀ କର୍ତ୍ତୃତ୍ୱ ଥିଲା । ଯୁଦ୍ଧ ଯୁକ୍ତ ରାଷ୍ଟ୍ରକୁ ଧନୀ ଓ ସର୍ବାପେକ୍ଷା ଶକ୍ତିଶାଳୀ ଦେଶ କରିଦେଲା ଏବଂ ସ୍ୱାଭାବିକରୂପେ ଏ ପର୍ଯ୍ୟନ୍ତ ତାହା ଯେଉଁ ସ୍ଥାନ ଅଧିକାର କରିବାକୁ ଚାହୁଁଥିଲା ଅର୍ଥାତ୍ ପୃଥିବୀରେ ତାହା ଆଗୁଆ ହେବାକୁ

ସୃଷ୍ଟିଥିଲା । ଭବିଷ୍ୟତରେ ଇଂଲଣ୍ଡ ପରୁଥିରେ ସର୍ବେସର୍ବା ହେବାକୁ ତାହା ସହଜରେ ଛାଡ଼ିଲା ନାହିଁ । ଇଂଲଣ୍ଡ ନିଜେ ବି ଭଲ ଭାବରେ ବୁଝିଥିଲା ଯେ ସମସ୍ତ ପରିବର୍ତ୍ତନ ହୋଇଯାଇଛି ଏବଂ ତାହା ଆମେରିକା ସହ ବନ୍ଧୁତା ବାନ୍ଧ ସେଥିରେ ନିଜକୁ ଖାପଖୁଆଇ ନେବାକୁ ଚେଷ୍ଟା କଲା । ଏପରି କି ଆମେରିକାକୁ ସନ୍ତୁଷ୍ଟ କରିବା ନିମନ୍ତେ ସେ ତାର ଜାପାନ ସହିତ ବନ୍ଧୁତା ଛାଡ଼ିବା ପର୍ଯ୍ୟନ୍ତ ଗଲା ଏବଂ ଅନେକ ଭଲ ଡ୍ରେଡ଼ନଟ ଜାହାଜ ଭାଙ୍ଗି ଦେଲା । କିନ୍ତୁ ଇଂଲଣ୍ଡର ନିଜର ବିଶେଷ ସ୍ୱାର୍ଥ ଓ ପ୍ରତିଷ୍ଠା ଏବଂ ବିଶେଷଭାବରେ ତାର ଆର୍ଥିକ ନେତୃତ୍ୱ ଛାଡ଼ିବା ନିମନ୍ତେ ପ୍ରସ୍ତୁତ ନ ଥିଲା । କାରଣ ତାର ଶ୍ରେଷ୍ଠତ୍ୱ ଓ ସାମ୍ରାଜ୍ୟ ଏଥି ସହିତ ମିଳିତ ହୋଇ ରହିଥିଲା ଏବଂ ଆମେରିକା ଠିକ୍ ଏହି ଆର୍ଥିକ ନେତୃତ୍ୱ ହିଁ ଚାହୁଁ ଥିଲା । ଦୁଇ ଦେଶ ମଧ୍ୟରେ ବିବାଦ ଅନିବାର୍ଯ୍ୟ ହେଲା । ନରମ ଶବ୍ଦ ଓ ଆମୋଦପ୍ରଦ ବାକ୍ୟ ପଶ୍ଚାତରେ ସରକାରର ସମର୍ଥନ ପାଇ ଦୁଇ ଦେଶର ବ୍ୟାଙ୍କରମାନେ ଏହି ପ୍ରଧାନ ପୁରସ୍କାର ଅର୍ଥ ଓ ଶିଳ୍ପ କ୍ଷେତ୍ରରେ ପୃଥିବୀର ନେତୃତ୍ୱ ନିମନ୍ତେ ଲଢ଼ାଇ କଲେ । ଏହି ଖେଳରେ ଆମେରିକା ହାତରେ ସବୁ ଜିତିବା ତାସ ଥିଲା, କିନ୍ତୁ ଇଂଲଣ୍ଡର ଦୀର୍ଘ ଅଭିଜ୍ଞତା ଓ ଭଲ ଖେଳିବା ପ୍ରଣାଳୀ ଥିଲା ।

ଯୁଦ୍ଧ ଋଣ ଦୁଇ ଦେଶ ଭିତରେ ତିକ୍ତତା ବଢ଼ାଇଦେଲା ଏବଂ ନିଜର ଧନ ପାଇବା ନିମନ୍ତେ ବ୍ୟସ୍ତ ହେଉଛନ୍ତି ବୋଲି ଇଂଲଣ୍ଡରେ ଆମେରିକାନମାନଙ୍କୁ ସାଇଲକ (ଲୋଭି ମହାଜନ) ବୋଲି ଗାଳିଦେଲେ । ପ୍ରକୃତରେ ଦେଖିବାକୁ ଗଲେ ଯୁଦ୍ଧ କାଳରେ ଯେଉଁସବୁ ଘରୋଇ ବ୍ୟାଙ୍କ ଧନ ଧାର ଦେଇଥିଲେ ଓ ଆଗତୁରା ଦେଇଥିଲେ ସେମାନଙ୍କର ବ୍ରିଟିଶ ସରକାରଠାରୁ ପାଇବାର କଥା । ସଂଯୁକ୍ତ ରାଷ୍ଟ୍ର ସରକାର ସେମାନଙ୍କୁ କେବଳ ନିର୍ଭରବାଣୀ ଦେଇଥିଲା । ସୁତରାଂ ସଂଯୁକ୍ତ ରାଷ୍ଟ୍ର ସରକାର ଋଣ ଛାଡ଼ିଦେବା ପ୍ରଶ୍ନ ଉଠୁନାହିଁ । ଇଂଲଣ୍ଡକୁ ସୁଧ ଅସୁଲ ଦେବାରୁ ଅବ୍ୟାହତ ଦିଆଯାଏ ତେବେ ନିର୍ଭରବାଣୀ ଶୁଣାଇଥିବା ସଂଯୁକ୍ତ ରାଷ୍ଟ୍ର ସରକାରକୁ ଏହା ଦେବାକୁ ପଡ଼ନ୍ତା । ବିଶେଷତଃ ସଙ୍କଟବେଳେ ଏପରି ଆଉ ଏକ ଅଧିକା ବୋଝ ବୋହିବାର କୌଣସି କାରଣ ଆମେରିକାନ କଂଗ୍ରେସ ଦେଖିପାରିଲା ନାହିଁ ।

ଏହିରୂପେ ଆମେରିକା ଓ ଇଂଲଣ୍ଡର ଅର୍ଥନୈତିକ ସ୍ୱାର୍ଥ ବିଭିନ୍ନ ଦିଗକୁ ଟାଣିଲି ଏବଂ ଅନ୍ୟ କୌଣସି ଆକର୍ଷଣ ଅପେକ୍ଷା ଅର୍ଥନୈତିକ ସ୍ୱାର୍ଥର ଆକର୍ଷଣ ଅଧିକ ଶକ୍ତ । ଦୁଇ ଦେଶ ଲୋକଙ୍କ ଭିତରେ ଏତେ ସାମଞ୍ଜସ୍ୟ ରହିଛି, ଅଥଚ ସେଠାରେ ଏହି ଅନିବାର୍ଯ୍ୟ ବିବାଦ ହେଲା । ଏଥିରେ ସଂଯୁକ୍ତ ରାଷ୍ଟ୍ରର ଧନ ଓ ସମ୍ପଦ ବହୁ ଅଧିକ । ଏହି ବିବାଦ ଏକ ଗୁରୁତର ସଂଗ୍ରାମ ଆକାର ଧାରଣ କରିପାରେ ନଚେତ୍ ବିପଯ୍ୟସ୍ତ ଭାବରେ ଇଂଲଣ୍ଡକୁ ଧୀରେ ଧୀରେ ଓ ଅନିଚ୍ଛାକୃତ ଭାବରେ ନିଜର ବିଶେଷ ସୁବିଧା ଓ ପ୍ରାଧାନ୍ୟ ସଂଯୁକ୍ତ ରାଷ୍ଟ୍ର ହାତରେ ଦେବାକୁ ପଡ଼ିବ । ସେମାନେ ଯାହା ମୂଲ୍ୟବାନ ମନେକରିଛନ୍ତି ତାକୁ ଛାଡ଼ିବା ପୁରାତନ ଲୋକ ହିସାବରେ ନିଜର ମର୍ଯ୍ୟାଦା ତଥା ସାମ୍ରାଜ୍ୟବାଦୀ-ଶୋଷଣ ଲାଭ ହରାଇବା, ପୃଥିବୀରେ ଏକ ପଛୁଆ ସ୍ଥାନ ନେବା, ଆମେରିକାର ସଦିଚ୍ଛା ଉପରେ ନିର୍ଭର କରିବା ଏସବୁ

ଇଂରେଜଙ୍କ ପକ୍ଷରେ ଆନନ୍ଦଦାୟକ ନୁହେଁ ଏବଂ ସେମାନେ ବିନା ସଂଗ୍ରାମରେ ବଶ୍ୟତା ସ୍ୱୀକାର କରିପାରିବେ ବୋଧ ହେଉନାହିଁ । ଇଂଲଣ୍ଡର ବର୍ତ୍ତମାନ ଅବସ୍ଥାର ଏହି ହେଉଛି ଶୋଚନୀୟ ଅବସ୍ଥା । ତାର ପୁରାତନ ଶକ୍ତିର ସମସ୍ତ ଉପାୟ ନାଶ ହୋଇଯାଉଛି ଏବଂ ଭବିଷ୍ୟତ ଅନିବାର୍ଯ୍ୟ ରୂପେ ପତନ ଆଡ଼କୁ ଯାଉଛି । କିନ୍ତୁ ପୁରୁଷ ପୁରୁଷ ଧରି ପ୍ରାଧାନ୍ୟ କରିବାରେ ଅଭ୍ୟସ୍ତ ଇଂରେଜ ଲୋକେ ଏପରି ବିପର୍ଯ୍ୟୟ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ଏବଂ ସେମାନେ ଯୁଦ୍ଧ କରୁଛନ୍ତି ଓ ଏହା ବିରୁଦ୍ଧରେ ସାହସର ସହିତ ଯୁଦ୍ଧ କରିବେ ।

ଆଜି ପୃଥିବୀରେ ଦୁଇଟି ପ୍ରଧାନ ଶକ୍ତି ଭିତରେ ପ୍ରତିଦ୍ୱନ୍ଦ୍ୱିତାର ବିଷୟ ମୁଁ ଦର୍ଶାଇ ଦେଇଛି, ବର୍ତ୍ତମାନ ଘଟୁଥିବା ଘଟଣାମାନଙ୍କ ମଧ୍ୟରୁ ଅନେକ କଥା ଆମେ ଏଥିରୁ ବୁଝିପାରିବା । ଅବଶ୍ୟ ସର୍ବଦା ଦେଶ ଦେଶ ଭିତରେ ଅନେକ ପ୍ରତିଦ୍ୱନ୍ଦ୍ୱିତା ରହିଛି; ସମଗ୍ର ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ବ୍ୟବସ୍ଥା ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ଉପରେ ପ୍ରତିଷ୍ଠିତ ।

ସଙ୍କଟ ଭିତରେ ଘଟଣାର ପ୍ରଗତି ସମ୍ବନ୍ଧରେ ବର୍ଣ୍ଣନା କରିବା । ୧୯୩୦ ଜୁନ ମାସରେ ଫରାସୀ ରାଇନଲ୍ୟାଣ୍ଡ ଛାଡ଼ିଲେ, ଏଥିରେ ଜର୍ମାନମାନେ ଟିକିଏ ଆରାମବୋଧ କଲେ, କିନ୍ତୁ ସେମାନେ ବହୁତ ଡେରିରେ ଛାଡ଼ିଲେ, ଏଥିରେ ସଦିଚ୍ଛାର ଗନ୍ଧ ନ ଥିଲା ଓ ଦୁର୍ଗତିର ଛାୟା ପ୍ରତ୍ୟେକ ଜନପଦକୁ ଘୋଡ଼ାଇ ପକାଇଥିଲା । ବାଣିଜ୍ୟ ଅବସ୍ଥା ଖରାପ ହେବାରୁ ଖାତକ ରାଜ୍ୟମାନଙ୍କଠାରେ ଧନର ଅଭାବ ଘଟିଲା ଏବଂ କ୍ଷତିପୂରଣ ଓ ଋଣ ଆଦାୟ ଦେବା କଷ୍ଟକର ବା ଅସମ୍ଭବ ମଧ୍ୟ ହୋଇଗଲା । ଏହି ଅସୁଲ ଦେବା ଅସୁବିଧା ଅତିକ୍ରମ କରିବା ପାଇଁ ରାଷ୍ଟ୍ରପତି ହୁଭର ବର୍ଷକ ସକାଶେ ଋଣ ମୁଲତବୀ ଘୋଷଣା କଲେ । ସମଗ୍ର ଯୁଦ୍ଧ ଋଣ ପ୍ରଶ୍ନର ପୁନର୍ବିଚାର କରିବା ନିମନ୍ତେ ଚେଷ୍ଟା କରାଗଲା, କିନ୍ତୁ ସଂଯୁକ୍ତ ରାଷ୍ଟ୍ର କଂଗ୍ରେସ ପୁନଃ ଆଲୋଚନା କରିବା ପାଇଁ ଅସ୍ୱୀକାର କଲା । ଫରାସୀ ସରକାର ଜର୍ମାନୀଠାରୁ କ୍ଷତିପୂରଣ ପ୍ରଶ୍ନରେ ସମାନ ଭାବରେ କଠୋର ହୋଇଥିଲା । ବ୍ରିଟିଶ ସରକାର ଋଣଦାତା ଓ ଗ୍ରହୀତା ଉଭୟ ହୋଇଥିବାରୁ କ୍ଷତିପୂରଣ ଓ ଋଣ ଦୁଇଟିଯାକ ମୂଳପୋଛ କରି ପୁଣି ନୂଆଖାତା ଆରମ୍ଭ କରିବା ସପକ୍ଷରେ ଥିଲା । ପ୍ରତ୍ୟେକ ଦେଶ ନିଜ କଥା ଚିନ୍ତା କଲେ, ଫଳ ସ୍ୱରୂପ ସାଧାରଣ ଭାବରେ କୌଣସି କାର୍ଯ୍ୟ ହୋଇ ପାରିଲା ନାହିଁ । ୧୯୩୧ ମଧ୍ୟ ବେଳକୁ ଜର୍ମାନୀରେ ଅର୍ଥନୀତି ଅଚଳ ଅବସ୍ଥା ଧରିଲା ଓ ବ୍ୟାଙ୍କମାନ ଫେଲ ମାରିଲା । ଏହା ଫଳରେ ଇଂଲଣ୍ଡରେ ସଙ୍କଟ ପହଞ୍ଚିଲା ସେ ତା'ର ଦେଣା ଦେଇ ପାରିଲା ନାହିଁ । ଏଦେଶ ମଧ୍ୟ ଆର୍ଥିକ ପତନର ପୂର୍ବାବସ୍ଥାରେ ପହଞ୍ଚିଲା । ଏହି ଆଶଙ୍କା ଭିତରେ ଶ୍ରମିକ ସରକାରର ପ୍ରଧାନମନ୍ତ୍ରୀ ମ୍ୟାକଡୋନାଲଡ଼ ନିଜ ସରକାର ଛାଡ଼ିଲେ, ସେ ଏବେ ଏକ "ଜାତୀୟ ସରକାର"ର କର୍ତ୍ତା ହୋଇ ବାହାରିଲେ, ଏଥିରେ ଜାଠ ଦଳ ପ୍ରାଧାନ୍ୟ କରୁଥିଲେ । କିନ୍ତୁ ଏହି "ଜାତୀୟ ସରକାର" ସୁଦ୍ଧା ପାଉଣ୍ଡକୁ ରକ୍ଷା କରି ପାରିଲା ନାହିଁ । ଏତିକିବେଳକୁ

ମଜୁରି-କଟା ପ୍ରଶ୍ନରେ ଆଟଲାଣ୍ଟିକ ନୌ-ବାହିନୀର ବ୍ରିଟିଶ ନାବିକମାନେ ବିଦ୍ରୋହ କଲେ । ଏହି ଶାନ୍ତିପୂର୍ଣ୍ଣ ବିଦ୍ରୋହର ଉଦ୍‌ବେଗ ଓ ବ୍ରିଟେନ ଉପରେ ଅଦ୍ଭୁତ ପ୍ରଭାବ ପଡ଼ିଲା । ରୁଷ ବିପ୍ଳବ ଓ ସେଠାର ନାବିକମାନଙ୍କର ସ୍ମୃତି ଲୋକଙ୍କ ମନରେ ଜାଗ୍ରତ ହେଲା ଏବଂ ତାଙ୍କ ଭିତରେ ବଲସେଭିଜମ ଆସିବାର ଭୟ ଜାତ ହେଲା । କୌଣସି ବିପତ୍ତି ପଡ଼ିଥିବା ପୂର୍ବରୁ ବ୍ରିଟିଶ ପୁଞ୍ଜିପତିମାନେ ସେମାନଙ୍କର ପୁଞ୍ଜି ରକ୍ଷାକରିବା ନିମନ୍ତେ ସ୍ଥିର କଲେ ଏବଂ ବହୁ ପରିମାଣରେ ପୁଞ୍ଜି ବିଦେଶକୁ ପଠାଇ ଦେଲେ । ଧନୀଲୋକଙ୍କର ଦେଶପ୍ରେମ ଅର୍ଥ ଆପାତତଃ ନିଜର ଧନ ବା ସ୍ଥାପିତ ସ୍ୱାର୍ଥକୁ ଛାଡ଼ିବାର ଅର୍ଥ ବିପଦ ବରଣ କରିବା ନୁହେଁ ।

ବ୍ରିଟିଶ ପୁଞ୍ଜି ବିଦେଶକୁ ଯିବାରୁ ପାଉଣ୍ଡର ଅଧିକ ପତନ ହେଲା, ଏବଂ ଶେଷରେ ୧୯୩୧ ସେପ୍‌ଟେମ୍ବର ୨୩ ତାରିଖରେ ଇଂଲଣ୍ଡକୁ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ ଛାଡ଼ିବାକୁ ପଡ଼ିଲା— ଅର୍ଥାତ୍ ନିଜର ସ୍ୱର୍ଣ୍ଣ ରକ୍ଷା କରିବା ନିମନ୍ତେ ସୁନାରୁ ପାଉଣ୍ଡକୁ ଅଲଗା କରିବାକୁ ପଡ଼ିଲା । ଏହିଠାରୁ ଆଗପରି ଆଉ ଯାହାର ପାଉଣ୍ଡ ନୋଟ ଥିଲା ସେ ସୁନା ଦାବୀ କରିପାରିବ ନାହିଁ ।

ପାଉଣ୍ଡର ଏପରି ମୂଲ୍ୟ ପରିବର୍ତ୍ତନ (Devaluation) ବ୍ରିଟିଶ ସାମ୍ରାଜ୍ୟ ଓ ଇଂଲଣ୍ଡର ପୃଥିବୀରେ ସ୍ଥାନ ଦୃଷ୍ଟିରୁ ଏକ ଅପୂର୍ବ ଘଟଣା । ଏହାର ଅର୍ଥ ଅନ୍ତତଃ କ୍ଷଣକାଳ ଲାଗି ଇଂଲଣ୍ଡକୁ ଆର୍ଥିକ ନେତୃତ୍ୱ ଛାଡ଼ିବାକୁ ପଡ଼ିଲା । ଏହାହିଁ ଲଣ୍ଡନକୁ ଅର୍ଥ ବ୍ୟାପାରରେ ପୃଥିବୀର କେନ୍ଦ୍ର ଓ ରାଜଧାନୀ କରିଥିଲା । ଏହା ରକ୍ଷା କରିବା ନିମନ୍ତେ ୧୯୨୫ରେ ଇଂଲଣ୍ଡ ନିଜର ଶିଳ୍ପକୁ କ୍ଷତି ପହଞ୍ଚାଇ ପୁରୁଣା ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡକୁ ଫେରି ଆସିଥିଲା ଓ ବେକାରୀ, କୋଇଲା ଧର୍ମଘଟ ଇତ୍ୟାଦିର ସମ୍ମୁଖୀନ ହୋଇଥିଲା । କିନ୍ତୁ ଏସବୁ କିଛି କାମରେ ଆସିଲା ନାହିଁ ଏବଂ ଅନ୍ୟ ରାଜ୍ୟମାନଙ୍କର କାର୍ଯ୍ୟ ଫଳରେ ବାଧ୍ୟ ହୋଇ ପାଉଣ୍ଡକୁ ସୁନାରୁ ଅଲଗା କରିବାକୁ ପଡ଼ିଲା । ଏହାହିଁ ବ୍ରିଟିଶ ସାମ୍ରାଜ୍ୟ ଅବସାନର ଆରମ୍ଭ ବୋଲି ମନେ ହେଲା ଏବଂ ଦୁନିଆସାରା ସମସ୍ତେ ଏହାର ଏହି ଅର୍ଥ କଲେ । ୧୯୩୧ ସେପ୍‌ଟେମ୍ବର ୨୩ ତାରିଖରେ ଏହି ଐତିହାସିକ ଘଟଣା ନିର୍ଦ୍ଦିଷ୍ଟ ହୋଇଥିବାରୁ ଏହା ଉଲ୍ଲେଖଯୋଗ୍ୟ ହୋଇଗଲା ।

କିନ୍ତୁ ଇଂଲଣ୍ଡ ଏକ ଶକ୍ତ ଲଢ଼ୁଆ ଦେଶ ଏବଂ ତା'ର ଅଧୀନରେ ପରାଧୀନ ଓ ନିଃସହାୟ ସାମ୍ରାଜ୍ୟ ରହିଥିଲା । ତା'ର ପୂର୍ଣ୍ଣ କର୍ତ୍ତୃତ୍ୱରେ ଥିବା ଭାରତ ଓ ଇଜିପ୍ଟରୁ ସୁନା ଆଣି ଅନେକ ପରିମାଣରେ ଏହି ସଙ୍କଟରୁ ଖସି ପାରିଲା । ପାଉଣ୍ଡର ପତନ ଦ୍ୱାରା ତା'ର ଶିଳ୍ପ ଲାଭବାନ ହେଲା, କାରଣ ସେ ବିଦେଶରେ ତା'ର ମାଲ ଶସ୍ତାରେ ବିକ୍ରୀ କରିପାରିଲା । ଅଲୌକିକ ଭାବରେ ପରିବର୍ତ୍ତନ ହେଲା ।

କ୍ଷତିପୂରଣ ଓ ଯୁଦ୍ଧ ଋଣ ପ୍ରଶ୍ନ ତଥାପି ରହିଥିଲା । ଏହା ସ୍ପଷ୍ଟ ଯେ ଜର୍ମାନୀ କ୍ଷତି-ପୂରଣ ଦେଇ ପାରନ୍ତା ନାହିଁ ଏବଂ ବାସ୍ତବିକ ସେ ସରକାରୀ ଭାବରେ ଦେବାକୁ ଅସ୍ୱୀକାର

କରିଦେଲା । ଶେଷରେ ୧୯୩୨ରେ ଲୁଜେନରେ ହୋଇଥିବା ଏକ ସମ୍ମିଳନୀରେ କ୍ଷତିପୂରଣ ଏକ ନାମକୁ ମାତ୍ର ସଂଖ୍ୟା କରି ଦିଆଗଲା, ଆଶା କରାଯାଉଥିଲା ଯେ ସଂଯୁକ୍ତ ରାଷ୍ଟ୍ର ସେହି ପରିମାଣରେ ତାହାର ଋଣ ବି କମାଇ ଦେବ । କିନ୍ତୁ ସଂଯୁକ୍ତ ରାଷ୍ଟ୍ର ସରକାର ଋଣ ସହିତ କ୍ଷତିପୂରଣ ମିଶାଇବାକୁ କିମ୍ବା ଋଣ ଛାଡ଼ିଦେବାକୁ ଅସ୍ୱୀକାର କଲା । ଆଉ ସରଗ ଗ୍ରନ୍ଥି ମିଳିବା ହୋଇ ପାରିଲା ନାହିଁ ଏବଂ ଇଉରୋପର ଲୋକେ ଆମେରିକା ଉପରେ ଭାରି ଖପ୍‌ପା ହେଲେ ।

ସଂଯୁକ୍ତ ରାଷ୍ଟ୍ରକୁ ପାଉଣା ଆଦାୟ ଦେବାର କିସ୍ତି ୧୯୩୨ ଡିସେମ୍ବରରେ ପହଞ୍ଚିଲା ଏବଂ ଇଂଲଣ୍ଡ ଫ୍ରାନ୍‌ସ ପ୍ରଭୃତିର କରୁଣ ନିବେଦନ ସତ୍ତ୍ୱେ ଆମେରିକା ତା'ର ପାଉଣା ଦାବୀ କଲା । ଅନେକ ଯୁକ୍ତିତର୍କ ପରେ ଇଂଲଣ୍ଡ ଅସୁଲ ଦେଲା କିନ୍ତୁ କହିଲା ଏହା ଶେଷ କିସ୍ତି । ଫ୍ରାନ୍‌ସ ଓ ଆଉ କେତେକ ରାଜ୍ୟ ଦେବାକୁ ଅସ୍ୱୀକାର କଲେ ଏବଂ ବକେୟା ପଡ଼ି ରହିଲା । ଏହା ପରେ ନୂଆ ରଫାନାମା କିଛି ହେଲା ନାହିଁ ଏବଂ ୧୯୩୩ ଜୁନ୍ ମାସରେ ଋଣର ଦ୍ୱିତୀୟ କିସ୍ତି ଦେବାର ସମୟ ପହଞ୍ଚିଲା । ଫ୍ରାନ୍‌ସ ପୁନର୍ବାର ଦେବାକୁ ଅସ୍ୱୀକାର କଲା; ଯାହା ହେଉ ଆମେରିକା ଇଂଲଣ୍ଡ ପ୍ରତି ସଦୟ ହୋଇ ଅଳ୍ପ ପରିମାଣରେ ଗ୍ରହଣ କଲା, ବାକିତକ ପରେ ସ୍ଥିର କରାଯିବ ବୋଲି ଛାଡ଼ି ଦେଲା ।*

ଇଂଲଣ୍ଡ ଓ ଫ୍ରାନ୍‌ସ ପରି ବୃହତ୍ ଓ ଧନୀ ପୁଞ୍ଜିପତି ଶକ୍ତିମାନେ ନିଜର ଷ୍ଟାଣ୍ଡାର୍ଡ଼ ଓ ପ୍ରଥା ଅନୁସାରେ କରିଜ ଥିବା ଋଣରୁ ଯେତେବେଳେ ମୁକ୍ତ ହେବା ନିମନ୍ତେ ଚେଷ୍ଟା କରୁଥିଲେ ସେତେବେଳେ ସୋଭିଏଟ୍ ତା'ର ସମସ୍ତ ଋଣ ଅଗ୍ରାହ୍ୟ କରିଥିବାରୁ ଏମାନେ କିପରି ତୀବ୍ର ନିନ୍ଦାବାଦ କରିଥିଲେ ତାହା ମନେ କଲେ ହସଲାଗେ । ଭାରତରେ ମଧ୍ୟ କଂଗ୍ରେସ ତରଫରୁ ଯେପରି ଦାବୀ ହୋଇଛି ସେହିପରି ·ଯେତେବେଳେ ଇଂଲଣ୍ଡ ପ୍ରତି ଭାରତର ସମଗ୍ର ଋଣ ପ୍ରଶ୍ନ ବିଚାର କରିବା ନିମନ୍ତେ ଏକ ନିରପେକ୍ଷ ପଞ୍ଚାୟତ ନିଯୁକ୍ତ ପ୍ରସ୍ତାବ କରାଯାଏ ସେତେବେଳେ ସରକାରୀ ମହଲରେ ଏକ ଆନ୍ଦୋଳନ ଲାଗିଯାଏ । ଜାତୀୟ ଦେଣା ଅସୁଲ ଦେବା ପ୍ରଶ୍ନ ଯୋଗ ହେବାପରି ଆୟର୍ଲାଣ୍ଡ ଓ ଇଂଲଣ୍ଡ ଭିତରେ ଗୁରୁତର ବିବାଦ ଲାଗିଲା ଏବଂ ବେପାର ନେଇ ଲଢ଼ାଇ ଦୁହିଁଙ୍କ ଭିତରେ ଏବେ ସୁଦ୍ଧା ଚାଲିଛି ।

ମୁଁ ବାରମ୍ବାର ଇଂଲଣ୍ଡର ଆର୍ଥିକ ନେତୃତ୍ୱ ଓ ଆମେରିକାର ହେଥିଲାଗି ଯୁଦ୍ଧ, ବ୍ୟାଙ୍କ ସଙ୍କଟ ଓ ବିଭିନ୍ନ ଦେଶର ଆର୍ଥିକ ପତନ ସମ୍ବନ୍ଧରେ ଉପରେ ଉଲ୍ଲେଖ କରିଛି ।

* ୧୯୩୩ରୁ ୧୯୩୮ ପର୍ଯ୍ୟନ୍ତ ୫ ବର୍ଷ ଭିତରେ ଇଂଲଣ୍ଡ ବା ଫ୍ରାନ୍‌ସ କେହି ସଂଯୁକ୍ତ ରାଷ୍ଟ୍ରକୁ ଆଉ ଋଣ ଅସୁଲ ଦେଇ ନାହାନ୍ତି । ଟମାଦି ରକ୍ଷା ପାଇଁ ସୁଦ୍ଧା କିଛି ଦେଇ ନାହାନ୍ତି । ଯେପରି ଧରି ନିଆଯାଇଛି ଯେ ଋଣ କଥା ଚାଲିଗଲାଣି ଏବଂ ଆଉ ଅସୁଲ ଦିଆଯିବ ନାହିଁ ।

ଏସବୁ ଶବ୍ଦର ଅର୍ଥ କଣ ? ତୁ ଏ ପ୍ରଶ୍ନ ପଚାରିପାରୁ କାରଣ ତୁ ଏହା ବୁଝି ପାରୁଛୁ କି ନା ସନ୍ଦେହ । ବୋଧ ହୁଏ ଏ ବିଷୟପ୍ରତି ତୋର ଆଗ୍ରହ ହେଉ ନାହିଁ । କିନ୍ତୁ ମୁଁ ଯେତେ-ବେଳେ ଏ ସମ୍ବନ୍ଧରେ ଏତେ କଥା କହିଲିଣି ସେତେବେଳେ ଟିକିଏ ସ୍ପଷ୍ଟ ଭାବରେ ବୁଝାଇ-ଦେବାର ଚେଷ୍ଟା କରିବା ମୋର ଉଚିତ । ଆମେ ଆଗ୍ରହ ଦେଖାଉଁ ବା ନ ଦେଖାଉଁ ଉଭୟ ଜାତୀୟ ଓ ବ୍ୟକ୍ତିଗତ ଭାବରେ ଏହି ଆର୍ଥିକ ଘଟଣାସବୁ ଆମ ଉପରେ ଖୁବ୍ ପ୍ରଭାବ ପକାଏ ଏବଂ ଯାହା ଆମର ବର୍ତ୍ତମାନ ଓ ଭବିଷ୍ୟତ ନିର୍ଦ୍ଧାରଣ କରେ ସେଥିରୁ କିଛି ବୁଝିବା ଭଲ । ଅନେକ ଲୋକ ପୁଞ୍ଜିବାଦୀ ଦୁନିଆର ଆର୍ଥିକ ବ୍ୟବସ୍ଥାକୁ ଆଶ୍ଚର୍ଯ୍ୟ ଓ ଭୟ ସହକାରେ ଦେଖନ୍ତି, ସେମାନେ ଏହାର ରହସ୍ୟପୂର୍ଣ୍ଣ କାର୍ଯ୍ୟରେ ଏତେ ମୁଗ୍ଧ ହୋଇ ଥାଆନ୍ତି ଯେ ଏହା ବୁଝିବା ନିମନ୍ତେ ଚେଷ୍ଟା କରିବା ମଧ୍ୟ ତାଙ୍କ ପକ୍ଷରେ ଅତ୍ୟନ୍ତ ଜଟିଳ ଓ ଗୋଳ-ମାଳିଆ ବୋଧହୁଏ, ତେଣୁ ସେମାନେ ଏହାକୁ ବିଶେଷଜ୍ଞ ଓ ବ୍ୟାଙ୍କର ପ୍ରଭୃତିଙ୍କ ହାତରେ ଛାଡ଼ି ଦିଅନ୍ତି । ଏଥିରେ ସନ୍ଦେହ ନାହିଁ ଯେ ଏହା ଜଟିଳ ଓ ବିଷମ ସମସ୍ୟା, କୌଣସି ଜିନିଷ ଆବଶ୍ୟକରୂପେ ଜଟିଳ ହେବା କିଛି ଗୋଟାଏ ସଦ୍‌ଗୁଣ ନୁହେଁ; କିନ୍ତୁ ତଥାପି ଆମର ବର୍ତ୍ତମାନ ଦୁନିଆକୁ ବୁଝିବାକୁ ହେଲେ ଏ ସମ୍ବନ୍ଧରେ ଧାରଣା ହେବା ଦରକାର । ମୁଁ ତୋତେ ସମଗ୍ର ବ୍ୟବସ୍ଥା ଏଠାରେ ବୁଝାଇବାକୁ ଯାଉନାହିଁ । ଏହା କରିବା ମୋର ଶକ୍ତିର ବାହାରେ କାରଣ ମୁଁ ଏଥିରେ ବିଶେଷଜ୍ଞ ନୁହେଁ, ଏକ ଛାତ୍ର ମାତ୍ର । ମୁଁ ତୋତେ କେତେକ ବିଷୟ କହିବି, ମୋର ବିଶ୍ୱାସ ତାହା ସାହାଯ୍ୟରେ ପୃଥିବୀର କେତେକ ଘଟଣା ଓ ସମ୍ବାଦପତ୍ରରେ ଆମେ ଯେଉଁ ସମ୍ବାଦ ପଢ଼ୁ ତୁ ତାହା ବୁଦ୍ଧି ସହକାରେ ଅନୁସରଣ କରି-ପାରିବୁ । ସମ୍ଭବତଃ ମୁଁ ତୋତେ ଆଗରୁ କହିଥିବା କଥା ଏଠାରେ ପୁନରୁକ୍ତ କରିବି ମାତ୍ର ଯଦି ଏହା ତୋତେ ବୁଝିବାରେ ସାହାଯ୍ୟ କରେ ତେବେ ତୁ କିଛି ମନରେ ଧରିବୁ ନାହିଁ । ମନେରଖ ଏହା ହେଉଛି ପୁଞ୍ଜିବାଦୀ ବ୍ୟବସ୍ଥା—ଏଥିରେ ଯଉଥ କମ୍ପାନୀ ଅଂଶ ସବୁ ରହିଛି, ବ୍ୟକ୍ତିଗତ ବ୍ୟାଙ୍କ ରହିଛି ଓ ଷ୍ଟକ ଏକ୍‌ସଚେଞ୍ଜରେ ଅଂଶ ଖରିଦ ବିକ୍ରୀ ଚାଲିଛି । ସୋଭିଏଟ୍ ଇଉନିୟନରେ ଆର୍ଥିକ ଓ ଔଦ୍ୟୋଗିକ ବ୍ୟବସ୍ଥା ସମ୍ପୂର୍ଣ୍ଣ ବିଭିନ୍ନ ଧରଣର । ସେଠାରେ ଏପରି କମ୍ପାନୀ, ବ୍ୟକ୍ତିଗତ ବ୍ୟାଙ୍କ ବା ଷ୍ଟକ ଏକ୍‌ସଚେଞ୍ଜ ନାହିଁ; ପ୍ରାୟ ପ୍ରତ୍ୟେକ ଜିନିଷ ଷ୍ଟେଟ ବା ସରକାରର ଅଧିକାରରେ ଓ ନିୟନ୍ତ୍ରଣରେ ରହିଛି ଏବଂ ବିଦେଶୀ ବେପାର ମୁଖ୍ୟତଃ ଦ୍ରବ୍ୟ ବିନିମୟଦ୍ୱାରା ହୁଏ ।

ତୁ ଜାଣୁ ପ୍ରତ୍ୟେକ ଦେଶରେ ବ୍ୟବସାୟ ପ୍ରାୟ ପୂର୍ଣ୍ଣ ଭାବରେ ଚେକ୍‌ଦ୍ୱାରା ଚଳେ ଏବଂ ଅଳ୍ପ ପରିମାଣରେ ବ୍ୟାଙ୍କ ନୋଟରେ ଚଳେ; ଛୋଟ ଛୋଟ ଖରିଦ ଛଡ଼ା ସୁନା ଓ ରୁପା ପ୍ରାୟ ବ୍ୟବହୃତ ହୁଏ ନା (ବାସ୍ତବିକ ସୁନା ପ୍ରାୟ ମିଳୁ ନାହିଁ) । କାଗଜ ମୁଦ୍ରା ହିଁ ପ୍ରକୃତ ଅର୍ଥର ପ୍ରତୀକ (Credit) ଏବଂ ଯେତେ ଧନ ପର୍ଯ୍ୟନ୍ତ ବ୍ୟାଙ୍କରେ ଏବଂ ଦେଶର ସରକାର ଯେଉଁସବୁ ମୁଦ୍ରାନୋଟ ବାହାର କରେ ସେଥିରେ ଲୋକଙ୍କର ବିଶ୍ୱାସ ଥାଏ ଯେ

ପର୍ଯ୍ୟନ୍ତ ଏହା ନଗଦ ମୁଦ୍ରାର କାର୍ଯ୍ୟକରେ । କିନ୍ତୁ ଏକ ଦେଶରୁ ଅନ୍ୟ ଦେଶକୁ ନେଣ-ଦେଣ କରିବାରେ ଏହି କାଗଜ ମୁଦ୍ରା କିଛି କାମରେ ଆସେ ନାହିଁ କାରଣ ପ୍ରତ୍ୟେକ ଦେଶରେ ନିଜର ନିଜସ୍ୱ ମୁଦ୍ରା ପ୍ରଚଳିତ ଅଛି । ତେଣୁ ଅନ୍ତର୍ଜାତୀୟ ନେଣଦେଣ ସୁନା ଦ୍ୱାରା କରାଯାଏ, ସୁନାର ଏକ ସ୍ୱାଭାବିକ ମୂଲ୍ୟ ରହିଛି; ଏହା ସ୍ୱର୍ଣ୍ଣମୁଦ୍ରା ବା ସୁନାଖଣ୍ଡ (ବୁଲିୟନ କହନ୍ତି) ରୂପେ ବ୍ୟବହାର ହୁଏ । କିନ୍ତୁ ଏକ ଦେଶରୁ ଅନ୍ୟ ଦେଶକୁ ପ୍ରତ୍ୟେକ ନେଣ ଦେଣ ଯଦି ପ୍ରକୃତ ସୁନା ଦ୍ୱାରା କରାଯାଏ ତେବେ ଏହା ଏକ ଅପୂର୍ବ ଉତ୍ପାତ ଉପୁଜାଇବ ଏବଂ ଆନ୍ତର୍ଜାତିକ ବାଣିଜ୍ୟ ପ୍ରାୟ ବୃଦ୍ଧିପାଇବ ନାହିଁ । ଏହା ଛଡ଼ା ପୃଥିବୀରେ ଯେତେ ପ୍ରକୃତ ସୁନା ରହିଛି ସେହି ଅନୁସାରେ ଆନ୍ତର୍ଜାତିକ ବାଣିଜ୍ୟର ପରିମାଣ ବା ମୂଲ୍ୟ ସୀମାବଦ୍ଧ କରିଦେବ, କାରଣ ଯେତେବେଳେ ଏହି ସୀମାରେ ପହଞ୍ଚିବ, ସେତେବେଳେ ନେଣ ଦେଣ ପାଇଁ ଆଉ ସୁନା ନ ଥିବାରୁ, ପୁନର୍ବାର ସୁନା ଖଲାସ ହୋଇ ବଜାରକୁ ଫେରି ନ ଆସିବା ପର୍ଯ୍ୟନ୍ତ ଆଉ ଅଧିକ ବିଦେଶୀ ବାଣିଜ୍ୟ କାରବାର ହୋଇ ପାରିବ ନାହିଁ ।

କିନ୍ତୁ ଏହା ହୁଏନା । ୧୯୨୯ରେ ପୃଥିବୀରେ ମୋଟ ସୁନା ମୁଦ୍ରା ଥିଲା ଏଗାର ହଜାର ନିୟୁତ ଡଲାର । ସେହି ବର୍ଷ ଏକ ଦେଶରୁ ଅନ୍ୟ ଦେଶକୁ ପଠାଯାଇଥିବା ଜିନିଷର ମୋଟ ଦାମ ହେଉଛି ୩୬ ହଜାର ନିୟୁତ ଡଲାର; ଆହୁରି ମଧ୍ୟ ଚାରିହଜାର ନିୟୁତ ବିଦେଶୀ ଧାର କାରବାର ହୋଇଛି ଏବଂ ପରିବ୍ରାଜକଙ୍କ ଖର୍ଚ୍ଚ, ଜାହାଜ ଭଡ଼ା, ବିଦେଶରେ ଥିବା ଲୋକ ନିଜ ଦେଶକୁ ପଠାଇବା ଧନପରି ବିଶେଷ ନେଣ ଦେଣର ପରିମାଣ ପ୍ରାୟ ଚାରି ହଜାର ନିୟୁତ ଥିଲା । ତେଣୁ ମୋଟ ଆନ୍ତର୍ଜାତିକ ନେଣଦେଣ ପରିମାଣ ପ୍ରାୟ ଚାଳିଶ ହଜାର ନିୟୁତ ଡଲାର, ଏହା ପୃଥିବୀର ମୋଟ ସୁନା ପରିମାଣର ପ୍ରାୟ ଦୁଇଗୁଣ ।

ବିଦେଶୀ ନେଣ ଦେଣ ତାହାହେଲେ କିପରି ହୁଏ ? ଏହା ସ୍ପଷ୍ଟ ଯେ ସୁନାରେ ସେଗୁଡ଼ିକ କରାଯାଇ ପାରେ ନାହିଁ । ସାଧାରଣତଃ ସାହାଯ୍ୟକାରୀ ଧନ (auxiliary) କିମ୍ବା ଚେକ୍ ବା ଏକ୍‌ସଚେଞ୍ଜ ବିଲ ଆଦି କାଗଜ ଦ୍ୱାରା ଏହା କରାଯାଏ, ବଣିକମାନେ ନିଜର ଧାର ସ୍ୱୀକାର କରି ଏହା ବିଦେଶକୁ ପଠାନ୍ତି । ଯେଉଁ ବ୍ୟାଙ୍କସବୁ ଏକ୍‌ସଚେଞ୍ଜ ବ୍ୟବସାୟ କରନ୍ତି ତାଙ୍କର ଜରିଆରେ ଏହି ବେପାର କରାଯାଏ । ଏକ୍‌ସଚେଞ୍ଜ ବ୍ୟାଙ୍କ ବିଭିନ୍ନ ଦେଶର କ୍ରେତା ଓ ବିକ୍ରେତାଙ୍କ ସମ୍ପର୍କରେ ଆସେ ଏବଂ ଯେଉଁ ଏକ୍‌ସଚେଞ୍ଜ ବିଲ ପାଏ ତାହା ଜରିଆରେ ଜମା ଖର୍ଚ୍ଚ ନିର୍ଣ୍ଣୟ କରେ । ଯଦି କୌଣସି ମୁହୂର୍ତ୍ତରେ ବ୍ୟାଙ୍କରେ ଏକ୍‌ସଚେଞ୍ଜ ବିଲର ଅଭାବ ହୁଏ ତେବେ ଏହା ସରକାରୀ ବଣ୍ଡ, ଧାର ବା ଆନ୍ତର୍ଜାତିକ କମ୍ପାନୀରେ ଅଂଶ ପରି ପ୍ରଚଳିତ ସିକ୍ୟୁରିଟି ଜରିଆରେ ପରିଶୋଧ କରିପାରେ । ଏହି ଅଂଶ ସବୁ ତାର ବାର୍ତ୍ତା ଦ୍ୱାରା ବିକ୍ରୀ କରାଯାଇପାରେ ବା ବଦଳାଇ ଦିଆଯାଇ ପାରେ ଏବଂ ତେଣୁ ଅନ୍ୟ ପ୍ରାନ୍ତରେ ତତ୍‌କ୍ଷଣାତ୍ ପରିଶୋଧ ହୋଇପାରେ ।

ଏହିରୂପେ ଆନ୍ତର୍ଜାତିକ ବାଣିଜ୍ୟରେ ପ୍ରକୃତ ନେଣ ଦେଣ ବାଣିଜ୍ୟ ସମ୍ବନ୍ଧୀୟ କାଗଜ (ଏକ୍‌ସଚେଞ୍ଜ ବିଲ୍ ଇତ୍ୟାଦି) ଓ ଆର୍ଥିକ କାଗଜ (ସିକ୍ୟୁରିଟି ଇତ୍ୟାଦି) ଦ୍ୱାରା କେନ୍ଦ୍ର ଏକ୍‌ସଚେଞ୍ଜବ୍ୟାଙ୍କ ମଧ୍ୟସ୍ଥତାରେ କରାଯାଏ । ଏହି ବ୍ୟାଙ୍କସବୁ ବ୍ୟବସାୟର ଦୈନନ୍ଦିନ କାରବାର ନିମନ୍ତେ ଏକ୍‌ସଚେଞ୍ଜ ବିଲ୍ ଓ ସିକ୍ୟୁରିଟି ବନ୍ଦୋବସ୍ତ ରଖିଥାନ୍ତି । ସେମାନେ ସେମାନଙ୍କ ପାଖରେ କେତେ ସୁନା ଓ ଏପରି ବିଦେଶୀ କାଗଜ ଅଛି ତାହାର ହିସାବ ସାପ୍ତାହିକ ତାଲିକାରେ ପ୍ରକାଶ କରନ୍ତି । ସାଧାରଣତଃ ବିଦେଶରେ ପରିଶୋଧ ସକାଶେ ସୁନା ବିଦେଶକୁ କେଭେ ପଠାଯାଏ ନାହିଁ, କିନ୍ତୁ ଯେତେବେଳେ ଦେଖାଯାଏ ଯେ ଅନ୍ୟ କୌଣସି ପ୍ରକାରେ ପରିଶୋଧ କରିବା ଅପେକ୍ଷା ବିଦେଶକୁ ସୁନା ପଠାଇବା ଦ୍ୱାରା ପ୍ରକୃତରେ ଶସ୍ତା ପଡ଼େ ତାହା ହେଲେ ବ୍ୟାଙ୍କର ସ୍ୱର୍ଣ୍ଣ ଧାତୁ ପଠାଏ ।

ସ୍ୱର୍ଣ୍ଣ-ଷ୍ଟାଣ୍ଡାର୍ଡ ଦେଶମାନଙ୍କରେ ଜାତୀୟ ମୁଦ୍ରାର ସ୍ୱର୍ଣ୍ଣ ମୂଲ୍ୟ ନିରୂପିତ ହୋଇଥାଏ ଏବଂ ଯେ କୌଣସି ଲୋକ ତାହା ବଦଳରେ ସୁନା ଦାବୀ କରିପାରେ । ତେଣୁ ଏହିସବୁ ମୁଦ୍ରା ବ୍ୟାବହାରିକରୂପେ ନିର୍ଦ୍ଦିଷ୍ଟ ଓ ଅପରିବର୍ତ୍ତନୀୟ କାରଣ ଏହାକୁ ସୁନାରେ ପରିଣତ କରାଯାଇ ପାରେ ନା ! କେବଳ ଗୋଟିଏ ସମ୍ଭବ ବାଟ ରହିଛି, ତାହା ହେଉଛି ଏକ ଦେଶରୁ ଅନ୍ୟ ଦେଶକୁ ସ୍ୱର୍ଣ୍ଣ ଧାତୁ ପ୍ରେରଣର ମୂଲ୍ୟ; କାରଣ ଯଦି ନିଜ ଦେଶରେ ମୂଲ୍ୟ ଅଧିକ ହୋଇଥାଏ, ତାହା ହେଲେ ବଣିକ ଅନ୍ୟ ଦେଶରୁ ସହଜରେ ସୁନା ଆଣିପାରେ । ଏହାହିଁ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ ପ୍ରଥା, ଏହି ପ୍ରଥା ଅନୁସାରେ ବିଭିନ୍ନ ଜାତୀୟ ମୁଦ୍ରା ଦୃଢ଼ ହୋଇ ଥାଏ ଏବଂ ୧୯ଶ ଶତାବ୍ଦୀଠାରୁ ପୃଥିବୀ ଯୁଦ୍ଧ ପର୍ଯ୍ୟନ୍ତ ଆନ୍ତର୍ଜାତିକ ବାଣିଜ୍ୟ ଏହି ଅନୁସାରେ ଚାଲୁଥିଲା । ଏହି ପ୍ରଥା ଆଜି ଭାଙ୍ଗି ପଡ଼ିଛି ଏବଂ ଫଳସ୍ୱରୂପ ମୁଦ୍ରା ଅଦ୍ଭୁତ ଆଚରଣ କରୁଛି ଏବଂ ଅଧିକାଂଶ ଜାତୀୟ ମୁଦ୍ରା ଅନିଶ୍ଚିତ ହୋଇଯାଇଛି ।

ଏକ ଦେଶର ରପ୍ତାନୀ ମୋଟାମୋଟି ସେ ଦେଶର ଆମଦାନୀକୁ ସମାନ କରିଦିଏ । ଅନ୍ୟ ଅର୍ଥରେ କହିଲେ ଗୋଟିଏ ଦେଶ ଯାହା ମାଲ ପାଏ ତାକୁ ବିଦେଶକୁ ନିଜେ ମାଲ ପଠାଇ ପରିଶୋଧ କରେ । କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ ଏବଂ ପ୍ରାୟ ଦୁଇଟିରେ ସାମାନ୍ୟ ଅବଶିଷ୍ଟ କିଛି ରହିଯାଏ, ସେତେବେଳେ ଆମଦାନୀର ମୂଲ୍ୟ ରପ୍ତାନୀ ଅପେକ୍ଷା ଅଧିକ ହୋଇ-ଥାଏ, ଏହାକୁ ଦେଣା-ବାକୀ (advance balance) କହନ୍ତି ଏବଂ ଦେଶ ତା'ର ହିସାବ ତୁଟାଇବା ପାଇଁ ଅଧିକା ପରିଶୋଧ କରିବାକୁ ପଡ଼େ ।

ବିଭିନ୍ନ ଦେଶ ମଧ୍ୟରେ ଯେଉଁ ଜିନିଷ-ସ୍ରୋତ ଚାଲିଥାଏ ତାହା କେବେହେଁ ନିୟମିତ ନୁହେଁ । ଏହା ବରାବର ବଦଳେ, ଉତ୍ଥାନ ପତନ ଲାଗିଥାଏ ଏବଂ ଏହା ବଦଳିବା ହେତୁ ଏକ୍‌ସଚେଞ୍ଜ ବିଲର ସରବରାହ ଓ ପ୍ରୟୋଜନରେ ବି ପାର୍ଥକ୍ୟ ଘଟେ । ଏପରି ହୁଏ ଯେ ଗୋଟିଏ ଦେଶ ଏକସମୟରେ ଦରକାର ନ କରୁଥିବା ଭଳି ଏକ୍‌ସଚେଞ୍ଜ ବିଲ୍ ପ୍ରଚୁର ପରିମାଣରେ ପାଏ ଏବଂ ଦରକାରୀ ବିଲ୍ ଯଥେଷ୍ଟ ନ ଥାଏ । ଏହିରୂପେ ଧର

ଫ୍ରାନ୍ସରେ ଜର୍ମାନୀ ଅପେକ୍ଷା ଜର୍ମାନ ମାର୍କର ଏକ୍ସଚେଞ୍ଜ ବିଲ ବେଶୀ ଅଛି, କିନ୍ତୁ ଆମେରିକା ସହିତ ହିସାବ ତୁଟାଇବା ନିମନ୍ତେ ଡଲାରରେ ଏକ୍ସଚେଞ୍ଜ ବିଲ ଯଥେଷ୍ଟ ନାହିଁ । ତାହା ହେଲେ ଫ୍ରାନ୍ସ ସେହି ଏକ୍ସଚେଞ୍ଜ ବିଲ ବିକ୍ରି ତା ପରିବର୍ତ୍ତେ ଆମେରିକା ଡଲାରରେ ବିଲ କିଣିବାକୁ ଚାହିଁବ । ଏହା କରିବା ପାଇଁ ଏହିସବୁ ଏକ୍ସଚେଞ୍ଜ ବିଲର ଆନ୍ତର୍ଜାତିକ ବିନିମୟ ହେଉଥିବା ଏକ କେନ୍ଦ୍ର ବଜାର ଅବଶ୍ୟ ରହିବା ଉଚିତ । ଯେଉଁ ଦେଶର ନିମ୍ନଲିଖିତ ତିନୋଟି ଯୋଗ୍ୟତା ଥିବ କେବଳ ସେଠାରେ ହିଁ ଏପରି ବଜାର ରହିପାରେ ।

୧—ଏହାର ବିଦେଶୀ ବାଣିଜ୍ୟ ବ୍ୟାପକ ଓ ବିଭିନ୍ନ ପ୍ରକାରର ହୋଇଥିବ, ତାହା ହେଲେ ସମସ୍ତ ପ୍ରକାର ଏକ୍ସଚେଞ୍ଜ ବିଲର ପ୍ରଚୁର ସରବରାହ ଏହା କରିପାରିବ ।

୨—ସେଠି ସକଳ ପ୍ରକାର ସିକ୍ୟୁରିଟି ଅବଶ୍ୟ ମିଳୁଥିବ—ଅର୍ଥାତ୍ ଏହା ପୁଞ୍ଜି ପାଇଁ ପ୍ରଧାନ ବଜାର ହେବ ।

୩—ଏହା ମଧ୍ୟ ସ୍ୱର୍ଣ୍ଣର ଶ୍ରେଷ୍ଠ ବଜାର ହୋଇଥିବ ତାହା ହେଲେ କେତେବେଳେ ଯଦି ଏକ୍ସଚେଞ୍ଜ ବିଲ ଓ ସିକ୍ୟୁରିଟି ଅଭାବ ଘଟେ ତାହାହେଲେ ସହଜରେ ଯେପରି ସୁନା ମିଳିପାରିବ ।

୧୯ଶ ଶତାବ୍ଦୀ ସାରା ଏକମାତ୍ର ଇଂଲଣ୍ଡ ଦେଶରେ ଏହି ତିନୋଟିଯାକ ସର୍ତ୍ତ ପୂରା ହୋଇଥିଲା । ଶିଳ୍ପକ୍ଷେତ୍ରରେ ପ୍ରଥମେ ଆସିଥିବାରୁ ଏବଂ ଏକାଧିପତ୍ୟ ଅଞ୍ଚଳରୂପେ ବିସ୍ତୃତ ସାମ୍ରାଜ୍ୟ ଥିବା ହେତୁ ପୃଥିବୀରେ ସର୍ବାପେକ୍ଷା ଅଧିକ ବିଦେଶୀ ବେପାର ତାର ଥିଲା । ଶିଳ୍ପ ବଢ଼ାଇବା ନିମନ୍ତେ ସେ ତାର କୃଷିକୁ ତ୍ୟାଗ କଲା । ତାହାର ଜାହାଜସବୁ ପ୍ରତ୍ୟେକ ବନ୍ଦରରୁ ବାଣିଜ୍ୟ ସାମଗ୍ରୀ ଓ ଏକ୍ସଚେଞ୍ଜ ବିଲ ବୋହିବାକୁ ଲାଗିଲା । ଏହି ବିରାଟ ଔଦ୍ୟୋଗିକ ଉନ୍ନତି ହେତୁ ତାହା ସ୍ୱାଭାବିକ ରୂପେ ପୁଞ୍ଜିର ଶ୍ରେଷ୍ଠ ବଜାର ହେଲା ଏବଂ ସକଳ ପ୍ରକାର ବିଦେଶୀ ସିକ୍ୟୁରିଟି ସେଠାରେ ଠୁଳ ହେଲା । ଆଉ ଗୋଟିଏ ବିଷୟ ମଧ୍ୟ ତାକୁ ସାହାଯ୍ୟ କଲା । ତାହା ହେଉଛି ବ୍ରିଟିଶ ସାମ୍ରାଜ୍ୟ ଭିତରେ—ଦକ୍ଷିଣ ଆଫ୍ରିକା, ଅଷ୍ଟ୍ରେଲିଆ, କାନାଡ଼ା ଏବଂ ଭାରତରେ ପୃଥିବୀର ସ୍ୱର୍ଣ୍ଣ-ସରବରାହର ଏକ ବୃହତ୍ତମାଂଶ ଥିଲା । ଏହି ସ୍ୱର୍ଣ୍ଣଖଣିସବୁ ଲଣ୍ଡନରେ ଏକ ପ୍ରସ୍ତୁତ ବଜାର ପାଇଲା । ସେଠାରେ ଇଂଲଣ୍ଡର ବ୍ୟାଙ୍କ ନିର୍ଦ୍ଦିଷ୍ଟ ଦରରେ ସମସ୍ତ ସୁନା କିଣି ଆଣିଲା ।

ଏହିରୂପେ ଏକ୍ସଚେଞ୍ଜ ବିଲ, ସିକ୍ୟୁରିଟି ଓ ସୁନାର କେନ୍ଦ୍ର ବଜାର ହେଲା ଲଣ୍ଡନ ନଗରୀ । ଏହା ପୃଥିବୀର ଆର୍ଥିକ ରାଜଧାନୀ ହେଲା ଏବଂ ଯେଉଁ ସରକାର ବା ବ୍ୟାଙ୍କର ବିଦେଶରେ ନିଜର ହିସାବ ତୁଟାଇବାକୁ ଚାହୁଁଥିଲା, କିନ୍ତୁ ତାହା କରିବା ନିମନ୍ତେ ଆପଣା ଦେଶରେ କିଛି ଉପାୟ ନ ଥିଲା ସେ ଲଣ୍ଡନକୁ ଆସିଲା, ସେଠାରେ ପ୍ରତ୍ୟେକ ପ୍ରକାର

ବାଣିଜ୍ୟ ସଂକ୍ରାନ୍ତ ଓ ଆର୍ଥିକ କାଗଜ ତଥା ସୂନା ସେ ପାଇପାରନ୍ତି । ପାଉଣ୍ଡର ନୋଟ ବ୍ୟବସାୟର ଯଥାର୍ଥ ପ୍ରତୀକ ହେଲା । ଯଦି ଡେନମାର୍କ ବା ସୁଇଡ଼େନ ଦକ୍ଷିଣ ଆମେରିକାରୁ କିଛି କିଣିବାକୁ ଚାହିଁଲା ତେବେ ଲଣ୍ଡନକୁ ସେ ଜିନିଷ କେବେହେଁ ନ ଆସିଲେ ସୁଦ୍ଧା ପାଉଣ୍ଡର ନୋଟରେ ଚୁକ୍ତି କରାଗଲା ।

ଇଂଲଣ୍ଡ ପକ୍ଷରେ ଏହା ଖୁବ୍ ଲାଭଜନକ ବ୍ୟବସାୟ, କାରଣ ସମଗ୍ର ଜଗତ ଏହି କାର୍ଯ୍ୟ ସକାଶେ ତାକୁ କର ସ୍ୱରୂପ କିଛି କିଛି ଦେଉଥିଲା । ପ୍ରତ୍ୟକ୍ଷ ଲାଭ ତ ଥିଲା, ଏବଂ ତାପରେ ଉପେକ୍ଷିତ କେଣ ଦେଶ ପାଇଁ ବିଦେଶୀ ବେପାରୀମାନେ ଅବଶିଷ୍ଟାଂଶ ବା ପ୍ରାପ୍ତି ଇଂରେଜ ବ୍ୟାଙ୍କରେ ଜମା କରୁଥିଲେ । ଏହି ଜମା ଧନକୁ ବ୍ୟାଙ୍କସବୁ ଅଳ୍ପକାଳ ପାଇଁ ଅନ୍ୟ ଗ୍ରାହକମାନଙ୍କୁ ଧାର ଦେଇ ଲାଭ କରୁଥିଲେ । ଇଂରେଜ ବ୍ୟାଙ୍କସବୁକୁ ବିଦେଶୀ ଶିଳ୍ପୋଦ୍ୟୋଗୀମାନଙ୍କର ବେପାର ସମ୍ବନ୍ଧରେ ସମସ୍ତ ବିଷୟ ଜାଣିବାକୁ ପଡ଼ୁଥିଲା । ତାଙ୍କ ଜରିଆରେ ଯେଉଁ ଏକ୍‌ସଚେଞ୍ଜ ବିଲ ଯାଉଥିଲା ସେଥିରେ ଜର୍ମାନୀ ବା ଅନ୍ୟ ବିଦେଶୀ ବେପାରୀ କି ଦର ଧାର୍ଯ୍ୟ କରୁଥିଲେ ତାହା ଏବଂ ଏପରି କି ବିଦେଶରେ ସେମାନଙ୍କର ଗ୍ରାହକମାନଙ୍କର ନାମ ମଧ୍ୟ ଜାଣି ପାରୁଥିଲେ । ବ୍ରିଟିଶ ଶିଳ୍ପ ପକ୍ଷରେ ଏହା ଅତ୍ୟନ୍ତ ଦରକାରୀ ହେଉଥିଲା, କାରଣ ଏଥିରେ ବିଦେଶୀ ପ୍ରତିଯୋଗୀମାନଙ୍କୁ ହଟାଇ ଦେବାରେ ସେମାନେ ସମର୍ଥ ହେଉଥିଲେ ।

ଏହି ଅନ୍ତର୍ଜାତୀୟ ବ୍ୟବହାରକୁ ବଢ଼ାଇବା ଓ ଶକ୍ତିଶାଳୀ କରିବା ନିମନ୍ତେ ଇଂରେଜ ବ୍ୟାଙ୍କସବୁ ସମଗ୍ର ପୃଥିବୀରେ ଶାଖା ଓ ଏଜେନ୍‌ସିମାନ ଖୋଲିଲେ । ବ୍ରିଟିଶ ଶିଳ୍ପର ପ୍ରଭାବ ଅଧୀନକୁ ବିଦେଶୀ ରାଜ୍ୟମାନଙ୍କୁ ଆଣିବାରେ ସାହାଯ୍ୟ କରିବା ଛଡ଼ା ବ୍ରିଟିଶ ଦୃଷ୍ଟିକୋଣରୁ ଏହି ବ୍ୟାଙ୍କସବୁ ଆଉ ଏକ ଅତ୍ୟନ୍ତ ଦରକାରୀ କାର୍ଯ୍ୟ କଲା । ସେମାନେ ଅନୁସନ୍ଧାନ କରି ସ୍ଥାନୀୟ କାରଖାନା ଓ ବ୍ୟବସାୟୀମାନଙ୍କ ସମ୍ବନ୍ଧରେ ବିବରଣ ରଖିଥିଲେ । ତେଣୁ କୌଣସି ସ୍ଥାନୀୟ କାରଖାନା ଯେତେବେଳେ କୌଣସି ଏକ୍‌ସଚେଞ୍ଜ ବିଲ୍ ବାହାର କରେ, ସ୍ଥାନୀୟ ବ୍ରିଟିଶ ବ୍ୟାଙ୍କ ବା ଏଜେଣ୍ଟ ବିଲର କିମତ କଣ ଜାଣିଥାଏ ଏବଂ ନିରାପଦ ବୋଲି ଭାବିଲେ ଦେବାପାଇଁ ରୁହେ । ଏହାକୁ "ଗ୍ରହଣ କରିବା" ବୋଲି କହନ୍ତି, କାରଣ ବ୍ୟାଙ୍କ ତା' ଉପରେ "ଗୃହୀତ" ବୋଲି ଲେଖିଦିଏ । ବ୍ୟାଙ୍କ ଏଥିଲାଗି ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ଏହି ବିଲ୍ ପଛରେ ବ୍ୟାଙ୍କର ଖାତିର ଥିବାରୁ ଏହା ସହଜରେ ବିକ୍ରୀ ବା ହସ୍ତାନ୍ତର କରାଯାଇପାରେ । ଗୋଟିଏ ଅଜଣା ବିଦେଶୀ କାରଖାନାର ଏକ୍‌ସଚେଞ୍ଜ ବିଲକୁ ଏପରି ଗ୍ୟାରେଣ୍ଟି ବା ଗୃହୀତ ନ ହେଲେ ଲଣ୍ଡନ ବା ଅନ୍ୟ ସୁଦୂର ବଜାରରେ ଏହା କୌଣସି କ୍ରେତା ପାଏ ନାହିଁ; କାରଣ କାରଖାନାକୁ କେହି ଜାଣି ନ ଥାନ୍ତି । ବ୍ୟାଙ୍କ ବିଲ୍‌କୁ ଗ୍ରହଣ କରି ଗୋଟିଏ ବିପଦ ନିଏ, କିନ୍ତୁ ସ୍ଥାନରେ ଥିବା ଶାଖା ଅଫିସ ଦ୍ୱାରା ପୂର୍ଣ୍ଣରୂପେ ତଦନ୍ତ କରି ଏହା କରନ୍ତି । ଏହିପରି ଭାବରେ "ଗ୍ରହଣ" ପ୍ରଥା, ଏକ୍‌ସଚେଞ୍ଜ ବିଲ ହସ୍ତାନ୍ତର ଓ ବ୍ୟବସାୟ ସାଧାରଣ ଭାବରେ ସୁବିଧା କରେ ଏବଂ ଏହା

ସଙ୍ଗେ ସଙ୍ଗେ ଲଣ୍ଡନ ନଗରୀର କର୍ତ୍ତୃତ୍ୱ ଦୃଢ଼ କରେ । ଅନ୍ୟ କୌଣସି ଦେଶ ବିସ୍ତୃତ ଭାବରେ ଏହି ଋଣଦାନ କାର୍ଯ୍ୟ କରିବାକୁ ଚାହେଁନା, କାରଣ ବିଦେଶରେ ତାହାର ବେଶି ବ୍ୟାଙ୍କ ନ ଥାଏ ।

ଏହିରୂପେ ଶହେ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଲଣ୍ଡନ ପୃଥିବୀର ଆର୍ଥିକ ଓ ଅର୍ଥ-ନୀତିର ରାଜଧାନୀ ହେଲା ଏବଂ ସମସ୍ତ ଆନ୍ତର୍ଜାତିକ ଅର୍ଥ ବ୍ୟବସ୍ଥା ଓ ବେପାର ସୂତ୍ର ତାଙ୍କ ହାତ ଦେଇଗଲା । ପ୍ରଚୁର ଧନ ସେଠି ଥିଲା ଏବଂ ଏହି କାରଣରୁ ଶସ୍ତା ଦରରେ ତାହା ମିଳୁଥିଲା । ଏହା ସବୁ ବ୍ୟାଙ୍କରଙ୍କୁ ସେଠାକୁ ଆକୃଷ୍ଟ କଲା । ପୃଥିବୀର ଚତୁଷ୍କୋଣରୁ ବେପାର ଓ ଆର୍ଥିକ ଅବସ୍ଥା ସମ୍ବନ୍ଧରେ ସମସ୍ତ ସମ୍ବାଦ ଇଂଲଣ୍ଡ ବ୍ୟାଙ୍କର ଗଭର୍ଣ୍ଣର ପାଖକୁ ଆସିଲା ଏବଂ ତାର ବହି ଓ କାଗଜ ପତ୍ର ଦେଖି କୌଣସି ଦେଶର ଆର୍ଥିକ ଅବସ୍ଥା ସମ୍ବନ୍ଧରେ ସେ କହିପାରିଲା । ବାସ୍ତବିକ ସେ ଦେଶର ଗଭର୍ଣ୍ଣମେଣ୍ଟ ଅପେକ୍ଷା ସେ ବେଶି ଜାଣିଥିଲେ । ବିଦେଶୀ ସରକାରର ତରକାରୀ ସିକ୍ୟୁରିଟିକୁ କିଣିବା ଓ ବିକିବାର ସାମାନ୍ୟ ଏକଡ଼ ସେକଡ଼ କରି ଅଥବା ଅଳ୍ପ ସୁଧରେ ଋଣ ଦେଇ ବିଦେଶୀ ସରକାରର ରାଜନୀତିକ ନୀତି ଉପରେ ଚାପ ଦିଆଯାଉଥିଲା । ଏହାକୁ ଉଚ୍ଚ ଅର୍ଥନୀତି ବୋଲି କହନ୍ତି—ଏହା ଥିଲା ଓ ଏବେ ବି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ବଳପ୍ରୟୋଗର ସବୁଠାରୁ ଫଳପ୍ରଦ ପନ୍ଥା ହୋଇ ରହିଛି ।

ପୃଥିବୀ ଯୁଦ୍ଧ ପୂର୍ବରୁ ଅବସ୍ଥା ଏପରି ଥିଲା । ଲଣ୍ଡନ ନଗରୀ ବ୍ରିଟିଶ ସାମ୍ରାଜ୍ୟର ରାଜଧାନୀ ଓ କ୍ଷମତା ଏବଂ ସମୃଦ୍ଧିର ପ୍ରତୀକ ଥିଲା । ଯୁଦ୍ଧ ଅନେକ ପରିବର୍ତ୍ତନ ଆଣିଲା ଏବଂ ପୁରାତନ ବ୍ୟବସ୍ଥା ଓଲଟାଇ ଦେଲା । ଏହା ଏକ ବିରାଟ ବିଜୟ ଆଣିଦେଲା, କିନ୍ତୁ ଏହି ବିଜୟରେ ଇଂଲଣ୍ଡ ଓ ଇଂଲଣ୍ଡକୁ ବହୁତ ମୂଲ୍ୟ ଦେବାକୁ ପଡ଼ିଲା ।

ଯୁଦ୍ଧ ପରେ କଣ ହେଲା ମୁଁ ପର ଚିଠିରେ କହିବ ।

## ୧୮୭ : ଡଲାର ପାଉଣ୍ଡ ଓ ଟଙ୍କା

ଜୁଲାଇ ୨୭, ୧୯୩୩

ପୃଥିବୀ ଯୁଦ୍ଧ ପୃଥିବୀକୁ ତିନିଭାଗରେ ବିଭକ୍ତ କଲା, ଯୁଦ୍ଧରତ ଦେଶଗୁଡ଼ିକ ଦୁଇଭାଗ ଏବଂ ଅନ୍ୟଟି ନିରପେକ୍ଷ ଦେଶ । କେବଳ ପରସ୍ପର ବିରୁଦ୍ଧରେ ଲୁଇହାରିବା ପାଇଁ ରୁପ୍ତ

କାର୍ଯ୍ୟଛଡ଼ା ବିରୋଧୀ ଯୁଦ୍ଧରତ ଅଞ୍ଚଳ ଭିତରେ କୌଣସି ପ୍ରକାର ବେପାର ବା ଅନ୍ୟ ଚୁକ୍ତି ରହିଲା ନାହିଁ । ଅବଶ୍ୟ ଆନ୍ତର୍ଜାତିକ ବାଣିଜ୍ୟ ସଂପୂର୍ଣ୍ଣରୂପେ ଓଲଟପାଲଟ ହୋଇଗଲା । ସମୁଦ୍ର ଉପରେ ତାଙ୍କର କର୍ତ୍ତୃତ୍ୱ ଥିବାରୁ, ମିତ୍ରପକ୍ଷ ନିରପେକ୍ଷ ଦେଶ ଓ ଉପନିବେଶସବୁ ସହିତ କିଛି ବେପାର ଚଳାଇଲେ, କିନ୍ତୁ ଜର୍ମାନ ବୁଡ଼ାଜାହାଜ ଆକ୍ରମଣଦ୍ୱାରା ଏହା ବି ସଙ୍କୁଚିତ କରି ଦିଆଗଲା ।

ଯୁଦ୍ଧରତ ଦେଶଗୁଡ଼ିକର ସମସ୍ତ ସମ୍ପଦ ଯୁଦ୍ଧରେ ଲଗାହେଲା ଏବଂ ପ୍ରକାଣ୍ଡ ପରିମାଣ ଅର୍ଥ ବ୍ୟୟ କରାଗଲା । ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ଇଂଲଣ୍ଡ ଓ ଫ୍ରାନ୍ସ ତାର ଦରିଦ୍ରତର ମିତ୍ର ରାଜ୍ୟମାନଙ୍କୁ ଅର୍ଥ ସାହାଯ୍ୟ ଦେଉଥିଲେ, ଉଭୟେ ନିଜ ରାଜ୍ୟର ଲୋକଙ୍କଠାରୁ ଧନ କରଜ କରୁଥିଲେ ତଥା ଆମେରିକା ବିଲ୍ ବି ବଢ଼ୁଥିଲା । ଇଂଲଣ୍ଡ ଅଭୁ ଏକ ବର୍ଷ ପର୍ଯ୍ୟନ୍ତ ଏହି ବୋଝ ବୋହିଲା ଏବଂ ୧୯୧୭ ମାର୍ଚ୍ଚ ମାସବେଳକୁ ଏହାର ସବୁ ନିଃଶେଷ ହୋଇଗଲା । ଏତେବେଳେ ସଂଯୁକ୍ତ ରାଷ୍ଟ୍ରକୁ ୫୦,୦୦୦,୦୦୦ ଦେୟ ବି ଅସୁଲ ଦେଇପାରିଲା ନାହିଁ । ଇଂଲଣ୍ଡ, ଫ୍ରାନ୍ସ ଓ ତାର ମିତ୍ରଙ୍କ ସୌଭାଗ୍ୟକୁ ଏହି ସଙ୍କଟ ସମୟରେ ଆମେରିକା ତାଙ୍କ ପକ୍ଷରେ ଯୁଦ୍ଧରେ ଯୋଗଦେଲା—ଏତେବେଳକୁ କାହାର ପାଖରେ କିଛି ଅର୍ଥ ନ ଥିଲା । ସେହି ଦିନଠାରୁ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ସଂଯୁକ୍ତ ରାଷ୍ଟ୍ର ତାର ମିତ୍ର ରାଜ୍ୟମାନଙ୍କୁ ଯୁଦ୍ଧଲାଗି ଧନ ଯୋଗାଉଥିଲା । ସେମାନେ ନିଜ ଦେଶ ଲୋକଙ୍କଠାରୁ ପ୍ରଚୁର ପରିମାଣରେ "ସ୍ୱାଧୀନତା" ଓ "ବିଜୟ" ଋଣ ଉଠାଇଲେ ଏବଂ ନିଜେ ଏହା ପ୍ରଚୁର ପରିମାଣରେ ଖରଚ କଲେ ଏବଂ ମିତ୍ରରାଜ୍ୟମାନଙ୍କୁ ଧାର ଦେଲେ । ତେବେ ମୁଁ ଯାହା କହୁଛି ଫଳସ୍ୱରୂପ ଯୁଦ୍ଧ ଶେଷକୁ ସଂଯୁକ୍ତ ରାଷ୍ଟ୍ର ପୃଥିବୀର ମହାଜନ ହେଲା—ସମସ୍ତ ଦେଶ ତାହା ପାଖରୁ ଧାର କରିଥିଲେ । ଯୁଦ୍ଧ ଆରମ୍ଭ ହେଲାବେଳକୁ ଆମେରିକା ସରକାର ଇଉରୋପଠାରୁ ପାଞ୍ଚ ହଜାର ନିୟୁତ ପାଉଣ୍ଡ ଡଲାର ଋଣ କରିଥିଲା; ଯୁଦ୍ଧ ଶେଷ ହେଲାବେଳକୁ ଇଉରୋପ ଆମେରିକାଠାରୁ ଦଶ ହଜାର ନିୟୁତ ଡଲାର କରଜ କରିଥିଲା ।

ଯୁଦ୍ଧକାଳ ଭିତରେ ଏହା ହିଁ ଆମେରିକାର ଏକମାତ୍ର ଆର୍ଥିକ ଲାଭ ହୋଇ ନ ଥିଲା । ଇଂରେଜ ଓ ଜର୍ମାନ ବେପାର ବ୍ୟୟରେ ଆମେରିକାର ବିଦେଶୀ ବାଣିଜ୍ୟ ବଢ଼ିଥିଲା ଏବଂ ଏବେ ବ୍ରିଟିଶ ବେପାର ସହିତ ସମାନ ହୋଇଗଲା । ସଂଯୁକ୍ତ ରାଷ୍ଟ୍ର ମଧ୍ୟ ପୃଥିବୀର ସୁନାର ଦୁଇ-ତୃତୀୟାଂଶ ଜମା କରି ରଖିଥିଲା ଏବଂ ପ୍ରଚୁର ପରିମାଣରେ ବିଦେଶୀ ସରକାରର ଷ୍ଟକ୍ ଓ ବଣ୍ଡ୍ ବି ଥିଲା ।

ଏହିରୂପେ ସଂଯୁକ୍ତ ରାଷ୍ଟ୍ର ଏକ ଅତି କ୍ଷମତାଶାଳୀ ଆର୍ଥିକ ଅବସ୍ଥାରେ ଥିଲା । ଏହା କେବଳ ତାର ଋଣ ଅସୁଲପାଇଁ ଦାବୀ କରି ଖାତକ ଦେଶମାନଙ୍କୁ ଦେବାଳିଆ କରିଦେଇ ପାରିଥାନ୍ତା । ସୁତରାଂ ସେମାନଙ୍କ ପକ୍ଷରେ ଲଣ୍ଡନ ଅର୍ଥନୈତିକ ଦୁନିଆର ରାଜଧାନୀ ଥିବା

ହେବାରୁ ଈର୍ଷା ହେବା ସ୍ୱାଭାବିକ ଏବଂ ସେମାନେ ଏହା ନିଜେ ନେବାକୁ ଚାହୁଁଥିଲେ । ସେମାନେ ଚାହୁଁଥିଲେ ପୃଥିବୀର ସର୍ବାପେକ୍ଷା ଧନୀ ସହର ନିଉୟର୍କ ଲଣ୍ଡନର ସ୍ଥାନ ଅଧିକାର କରୁ । ତେଣୁ ସରକାରୀ ସାହାଯ୍ୟରେ ନିଉୟର୍କ ଓ ଲଣ୍ଡନର ବ୍ୟାଙ୍କର ଏବଂ ଧନପତିଙ୍କ ମଧ୍ୟରେ ଭୀଷଣ ସଂଗ୍ରାମ ଆରମ୍ଭ ହେଲା ।

ଆମେରିକା ଉପରେ ଇଂଲଣ୍ଡ ପାଉଣ୍ଡ ଦୋହଲି ଗଲା । ଇଂଲଣ୍ଡ ବ୍ୟାଙ୍କ ନିଜର ମୁଦ୍ରାଦ୍ୱାରା ସୁନା ଦେବା ନିମନ୍ତେ ଅସମର୍ଥ ଥିଲା ଏବଂ ପାଉଣ୍ଡ ନୋଟର ସ୍ୱର୍ଣ୍ଣ-ଷ୍ଟାଣ୍ଡାର୍ଡ ସହିତ ସମ୍ବନ୍ଧ ବିଚ୍ଛିନ୍ନ ହୋଇଥିଲା । ତେଣୁ ତାହାର ମୂଲ୍ୟ ବଦଳିବାକୁ ଲାଗିଲା ଓ ପତନ ହେଲା । ଫରାସୀ ଫ୍ରାଙ୍କର ମଧ୍ୟ ମୂଲ୍ୟ କମିଗଲା । ଏକ ଅନିଶ୍ଚିତ ଦୁନିଆରେ କେବଳ ଆମେରିକାନ୍ ଡଲାର ପାହାଡ଼ ସଦୃଶ ଦୃଢ଼ ଥିବା ପରି ମନେହେଲା ।

ଯେ କୌଣସି ଲୋକ ଭାବିପାରେ ଯେ, ଏପରି ଅବସ୍ଥାରେ ଧନ ବ୍ୟବସାୟ ଏବଂ ସୁନା ଲଣ୍ଡନରୁ ନିଉୟର୍କକୁ ଚାଲିଯାଇଥିବ । କିନ୍ତୁ ଅଦ୍ଭୁତ କଥା, ତାହା ହେଲା ନାହିଁ ଏବଂ ବିଦେଶୀ ଏକ୍ସଚେଞ୍ଜ ବିଲ୍ ଓ ଖଣିମାନଙ୍କରୁ ସୁନା ତଥାପି ଲଣ୍ଡନ ଚାଲିଲା । ଲୋକେ ଡଲାର ଅପେକ୍ଷା ପାଉଣ୍ଡକୁ ପସନ୍ଦ କରୁଥିବାରୁ ଯେ ଏହା ହେଲା ସେପରି ନୁହେଁ, ମାତ୍ର ଡଲାର ସହଜରେ ମିଳୁ ନ ଥିଲା ।

ବ୍ରିଟିଶ ବ୍ୟାଙ୍କସବୁ ସମସ୍ତ ପୃଥିବୀରେ ତାଙ୍କର ଶାଖା ଓ ଏଜେନ୍ସି ଜରିଆରେ ଯେଉଁ "ଗ୍ରହଣ" ପ୍ରଥା ପ୍ରଚଳନ କଲେ; ସେ ବିଷୟ ମୁଁ କହିଥିଲି ତୋର ମନେଥିବ । ଆମେରିକା ବ୍ୟାଙ୍କଗୁଡ଼ିକର ସେପରି କିଛି ଶାଖା ବା ବିଦେଶୀ ଏଜେନ୍ସି ନ ଥିଲା ଏବଂ ତେଣୁ ଏହି ବିଦେଶୀ ଏକ୍ସଚେଞ୍ଜ ବିଲମାନଙ୍କୁ "ଗ୍ରହଣ" କରିବାର କୌଣସି ଉପାୟ ତାଙ୍କର ନ ଥିଲା ଏବଂ ସ୍ୱାଭାବିକରୂପେ ବିଲ୍ ସବୁ ବ୍ରିଟିଶ ବ୍ୟାଙ୍କ ଜରିଆରେ ଲଣ୍ଡନକୁ ଆସିଲା । ଏହି ଅସୁବିଧା ଦେଖିପାରି, ଆମେରିକା ବ୍ୟାଙ୍କସବୁ ସାଙ୍ଗେ ସାଙ୍ଗେ ବିଦେଶ ରାଜ୍ୟମାନଙ୍କରେ ଶାଖା ଓ ଏଜେନ୍ସି ଖୋଲିବାରେ ଲାଗିପଡ଼ିଲେ ଏବଂ ଅନେକ ସ୍ଥାନରେ ସୁନ୍ଦର କୋଠାମାନ ନିର୍ମିତ ହୋଇଗଲା । କିନ୍ତୁ ତଥାପି ଆଉ ଏକ ଅସୁବିଧା ଥିଲା । ସ୍ଥାନୀୟ ଅବସ୍ଥା ଓ ସ୍ଥାନୀୟ ବ୍ୟବସାୟ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ଥିବା ବ୍ୟକ୍ତିଙ୍କଦ୍ୱାରା କେବଳ ଏହି "ଗ୍ରହଣ" କାର୍ଯ୍ୟ ହୋଇପାରେ । ଶହେ ବର୍ଷ କାଳ ଲାଗିଲା ପରେ ବ୍ରିଟିଶ ବ୍ୟାଙ୍କସବୁ ଏପରି ଲୋକ ତିଆରି କରିଥିଲେ ଏବଂ ଏ ସମ୍ବନ୍ଧରେ ଶୀଘ୍ର ତାଙ୍କର ସମକକ୍ଷ ହେବା ସହଜ ନ ଥିଲା ।

ତାପରେ ଆମେରିକାନ୍‌ମାନେ ଲଣ୍ଡନ ବିରୁଦ୍ଧରେ କେତେକ ଫରାସୀ, ସୁଇସ୍ ଓ ଡଚ୍ ବ୍ୟାଙ୍କ ସହ ମିଳିତ ହେଲେ, କିନ୍ତୁ ବିଶେଷ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ଫ୍ରାନ୍ସ ଏକ ଅତି ଧନୀ ଦେଶ ହୋଇ ଓ ବିଦେଶକୁ ବହୁ ପରିମାଣରେ ପୁଞ୍ଜି ରପ୍ତାନି କରି ସୁଦ୍ଧା, ବିଦେଶୀ ଏକ୍ସଚେଞ୍ଜ ବିଲ୍ ଉପରେ ବେପାର ସଂଗଠନରେ ଦୃଷ୍ଟିପାତ କରି ନ

ଥିଲା । ତେଣୁ ନିଉୟର୍କ ଓ ଲଣ୍ଡନ ନଗରୀ ଭିତରେ ସଂଘର୍ଷ ଲାଗିଲା ଏବଂ ମୋଟରେ ଲଣ୍ଡନର କିଛି କ୍ଷତି ହେଲା ନାହିଁ । ୧୯୨୪ରେ ନିଉୟର୍କ ସପକ୍ଷରେ ଏକ ନୂତନ ଜିନିଷ ଦେଖାଦେଲା । ବହୁତ ମୁଦ୍ରାସ୍ଫୀତି ଶେଷ ହେବାପରେ ଜର୍ମାନ ମାର୍କ ଦୃଢ଼ ହୋଇଗଲା ଏବଂ ମୁଦ୍ରାସ୍ଫୀତିବେଳେ ଜର୍ମାନୀର ଯେଉଁ ପୁଞ୍ଜିସବୁ ସୁଇଜରଲାଣ୍ଡ ଓ ହଲାଣ୍ଡକୁ ଯାଇଥିଲା (ବିପଦବେଳେ ଜର୍ମାନୀର ପୁଞ୍ଜି ସବୁ ଚାଲିଯାଏ) ପୁଣି ଜର୍ମାନ ବ୍ୟାଙ୍କକୁ ଫେରିଆସିଲା । ଆମେରିକା ଧନପତି ଦଳ ସହିତ ଏବେ ଜର୍ମାନୀ ଯୋଗ ଦେବାରୁ ଲଣ୍ଡନର ବହୁତ ପ୍ରଭେଦ ହେଲା । କାରଣ ଏବେ ଲଣ୍ଡନକୁ ନ ପଠାଇ ବହୁସଂଖ୍ୟକ ଆମେରିକା ଏକ୍ସଚେଞ୍ଜ ବିଲ୍ ଇଉରୋପ ଏକ୍ସଚେଞ୍ଜ ବିଲ୍‌ରେ ବଦଳି ପାରିଲା । ତଥାପି ଲଣ୍ଡନର ଏକ ଅନିର୍ଦ୍ଦିଷ୍ଟ ମୁଦ୍ରା ଥିଲା ଅର୍ଥାତ୍ ପାଉଣ୍ଡର କୌଣସି ନିର୍ଦ୍ଦିଷ୍ଟ ସୁବର୍ଣ୍ଣ ମୂଲ୍ୟ ନ ଥିଲା, ଏହା ସ୍ୱର୍ଣ୍ଣ ଷ୍ଟାଣ୍ଡାଡଠାରୁ ବିଚ୍ଛିନ୍ନ ହୋଇଥିଲା ।

ଲଣ୍ଡନ ନଗରୀର ଧନପତିମାନେ ଏବେ ଆତଙ୍କିତ ହେଲେ । ସେମାନେ ଦେଖିଲେ ଭଲ ବ୍ୟବସାୟରେ ସମସ୍ତ ଆନ୍ତର୍ଜାତିକ ଏକ୍ସଚେଞ୍ଜ ଏବେ ନିଉୟର୍କ ଓ ତାର ଇଉରୋପୀୟ ମିତ୍ରରାଜ୍ୟକୁ ଯାଉଛି ଏବଂ ଲଣ୍ଡନ କେବଳ ସେମାନଙ୍କର ଅଇଁଠା ପାଉଛି । ଏଥିରେ ବାଧା ଦେବାକୁ ହେଲେ ପ୍ରଥମ କାର୍ଯ୍ୟ ହେଉଛି ପାଉଣ୍ଡର ସ୍ୱର୍ଣ୍ଣମୂଲ୍ୟ ପୁନର୍ବାର ନିର୍ଦ୍ଦିଷ୍ଟ କରିବା—ଅର୍ଥାତ୍ ଏହାକୁ ଦୃଢ଼ କରିବା । ଏହା ପୁଣି ଭଲ ଏକ୍ସଚେଞ୍ଜ ବ୍ୟବସାୟକୁ ଆକର୍ଷଣ କରିବ । ତେଣୁ ୧୯୨୫ରେ ପାଉଣ୍ଡ ପୁଣି ତାର ପୁରାତନ ସୀମାକୁ ଆସିଗଲା । ଇଂରେଜ ବ୍ୟାଙ୍କର ଓ ଋଣଦାତାମାନଙ୍କର ବିପୁଳ ବିଜୟ ହେଲା, କାରଣ ଅଧିକ ମୂଲ୍ୟବାନ ପାଉଣ୍ଡ ଅର୍ଥ ସେମାନଙ୍କର ଅଧିକ ଆୟ । ଇଂରେଜ ଶିଳ୍ପ ପକ୍ଷରେ ଏହା ଖରାପ ଥିଲା; କାରଣ ବିଦେଶରେ ଏହା ଇଂରେଜୀ ଜିନିଷର ମୂଲ୍ୟ ବଢ଼ାଇ ଦେଲା ଏବଂ ବିଦେଶୀ ବଜାରରେ ଶିଳ୍ପପତିମାନେ ଆମେରିକା, ଜର୍ମାନୀ ଓ ଅନ୍ୟ ଶିଳ୍ପୋନ୍ନତ ଦେଶ-ଗୁଡ଼ିକ ସହିତ ପ୍ରତିଯୋଗିତା କରିବାରେ ଭୟଙ୍କର ଅସୁବିଧା ଭୋଗିଲେ । କିନ୍ତୁ ଇଂଲଣ୍ଡ ଜାଣିଶୁଣି ତାର ବ୍ୟାଙ୍କ ରକ୍ଷା ନିମନ୍ତେ କେତେକ ପରିମାଣରେ ଶିଳ୍ପକୁ ବଳି ଦେଲା ଅଥବା ପୃଥିବୀ ବଜାରରେ ତାର ଆର୍ଥିକ କର୍ତ୍ତୃତ୍ୱ ରକ୍ଷା କରିବା ନିମନ୍ତେ ଏପରି କଲା । ପାଉଣ୍ଡର ମର୍ଯ୍ୟାଦା ବଢ଼ିଗଲା, କିନ୍ତୁ ତୋର ମନେଥିବ ଆଂଶିକଭାବରେ ଶିଳ୍ପ ଉପରେ ଆଘାତ ଯୋଗୁଁ ଏହା ପରେ ପରେ ଇଂଲଣ୍ଡ ଦେଶରେ ଗୋଳମାଳ ଲାଗିଲା । ସେଠାରେ ଅକର୍ମା ସମସ୍ୟା ବଢ଼ିଲା । ଦୀର୍ଘ ଦିନ ବ୍ୟାପୀ କୋଇଲା ଧର୍ମଘଟ ଓ ସାଧାରଣ ଧର୍ମଘଟ ଲାଗିଲା ।

ପାଉଣ୍ଡ ଦୃଢ଼ ହେଲା, କିନ୍ତୁ ଏହା ଯଥେଷ୍ଟ ନ ଥିଲା । ବ୍ରିଟିଶ ସରକାରର ପ୍ରଚୁର ପରିମାଣରେ ଧନ ଆମେରିକାକୁ ଦେବାର ଥିଲା । ଏହା ଏକ ଭୟମାନ ଋଣ ଏବଂ ପ୍ରାୟ ଯେ କୌଣସି ସମୟରେ ପୁନର୍ବାର ଦାବୀ କରାଯାଇପାରେ । ଏପରି ଏକ ଦାବୀ କରି ସଂଯୁକ୍ତ

ରାଷ୍ଟ୍ର ଇଂଲଣ୍ଡକୁ ଖୁବ୍ ଅସୁବିଧା ଅବସ୍ଥାରେ ପକାଇ ପାରିଥାନ୍ତା ଓ ପାଉଣ୍ଡକୁ ପୁଣି କମାଇବା ପାଇଁ ବାଧ୍ୟ କରିଥାଆନ୍ତା । ତେଣୁ ସୁଦ୍ଧରଣ କନ୍ତିଓ୍ୱାସ୍ତ (ଏହାକୁ 'ଫଣ୍ଡିଂ'ବୋଲି କହନ୍ତି) ଅଧୁଲ ଦେବା ନିମନ୍ତେ, ଆମେରିକା ସହିତ ସର୍ତ୍ତନାମାରେ ପହଞ୍ଚିବା ଲାଗି ମୁଖ୍ୟ ବ୍ରିଟିଶ ରାଜମନ୍ତ୍ରୀଙ୍କସବୁ (ଏମାନଙ୍କ ଭିତରେ ଷ୍ଟାନଲି ବାଲଡୁଇନ ଥିଲେ) ନିଉୟର୍କ ଧାଇଁଲେ । ସବୁ ଇଉରୋପ ରାଜ୍ୟ ଆମେରିକାର ଖାତକ ଥିଲେ ଏବଂ ସେମାନଙ୍କ ପକ୍ଷରେ ଠିକ୍ ପନ୍ଥା ହୋଇଥାନ୍ତା ପ୍ରଥମେ ଏ ସମସ୍ତଙ୍କ ସହିତ ଏକତ୍ର ପରାମର୍ଶ କରିଥାନ୍ତେ ଏବଂ ତାପରେ ସଂଯୁକ୍ତ ରାଷ୍ଟ୍ରରୁ କପରି ଭଲ ସର୍ତ୍ତ ମିଳିପାରିବ ସେଥିପାଇଁ ତାଙ୍କ ସହିତ କଥାବାର୍ତ୍ତା କରିଥାଅନ୍ତେ । ବ୍ରିଟିଶ ସରକାର ପାଉଣ୍ଡକୁ ରକ୍ଷା କରିବା ଓ ଲଣ୍ଡନର ଆର୍ଥିକ ନେତୃତ୍ୱର ରକ୍ଷା ନିମନ୍ତେ ଏପରି ବ୍ୟଗ୍ର ହେଉଥିଲେ ଯେ, ଫ୍ରାନ୍ସ ବା ଇଟାଲି କାହାରି ସହିତ ପରାମର୍ଶ କରିବାକୁ ତାଙ୍କର ସମୟ ନ ଥିଲା ଏବଂ ଅତିଶୀଘ୍ର ଓ ଯେକୌଣସି ମୂଲ୍ୟ ଦେଇ ସେମାନେ ଆମେରିକା ସହିତ କିଛି ବ୍ୟବସ୍ଥା କରିବା ନିମନ୍ତେ ଚାହୁଁଥିଲେ । ସେମାନେ ବନ୍ଦୋବସ୍ତ କଲେ, କିନ୍ତୁ ଏଥିପାଇଁ ବହୁତ ମୂଲ୍ୟ ଦେବାକୁ ପଡ଼ିଲା ଏବଂ ସଂଯୁକ୍ତ ରାଷ୍ଟ୍ର ସରକାର ଯେଉଁ କଡ଼ା ସର୍ତ୍ତସବୁ ଦେଲା ସେଥିରେ ସେମାନଙ୍କୁ ସମ୍ମତ ହେବାକୁ ପଡ଼ିଲା । ତାପରେ ଫ୍ରାନ୍ସ ଓ ଇଟାଲି ତାଙ୍କ ଋଣ ଲାଗି ସଂଯୁକ୍ତରାଷ୍ଟ୍ରଠାରୁ ଖୁବ୍ ବେଶୀ ସୁବିଧା ସର୍ତ୍ତ ପାଇଥିଲେ ।

ଏହି ଅକ୍ଳାନ୍ତ ପ୍ରଚେଷ୍ଟା ଓ ତ୍ୟାଗ ଫଳରେ ପାଉଣ୍ଡ ଓ ଲଣ୍ଡନ ନଗରୀ ରକ୍ଷା ପାଇଗଲା, କିନ୍ତୁ ସମସ୍ତ ପୃଥିବୀ ବଜାରରେ ନିଉୟର୍କ ସହିତ ସଂଗ୍ରାମ ଲାଗିଥିଲା । ପ୍ରଚୁର ଧନ ଥିବାରୁ ଅଳ୍ପ ସୁଧରେ ନିଉୟର୍କ ଦୀର୍ଘକାଳ ପାଇଁ ଋଣ ଦେଇପାରିଲା ଏବଂ ଯେଉଁସବୁ ଦେଶ ଲଣ୍ଡନ ଅର୍ଥ ବଜାରରୁ କରଜ କରୁଥିଲେ (କାନଡ଼ା, ଦକ୍ଷିଣ ଆଫ୍ରିକା ଓ ଅଷ୍ଟ୍ରେଲିଆ ସମେତ) ସେମାନେ ଏହିରୂପେ ନିଉୟର୍କକୁ ଆକୃଷ୍ଟ ହୋଇଗଲେ । ଏହି ଦୀର୍ଘକାଳ-ଋଣରେ ଲଣ୍ଡନ ନିଉୟର୍କ ସହିତ ପ୍ରତିଯୋଗିତା କରିପାରିଲା ନାହିଁ ଏବଂ ତେଣୁ ଏହା କେନ୍ଦ୍ର ଇଉରୋପର ବ୍ୟାଙ୍କମାନଙ୍କୁ ଅଳ୍ପ-କାଳ (Short term) ଧାର ଦେବାକୁ ଚେଷ୍ଟା କଲା । ଅଳ୍ପକାଳ ଧାରରେ ବ୍ୟାଙ୍କର ଅଭିଜ୍ଞତା ଓ ସମ୍ମାନ ବେଶି ଗଣ୍ୟ କରାଯାଏ ଏବଂ ଏହା ଲଣ୍ଡନ ସପକ୍ଷରେ ଥିଲା । ତେଣୁ ଲଣ୍ଡନ ବ୍ୟାଙ୍କସବୁ ଭିଏନା ବ୍ୟାଙ୍କ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ କଲେ ଏବଂ ତାଙ୍କ ଜରିଆରେ କେନ୍ଦ୍ର ଓ ଦକ୍ଷିଣ-ପୂର୍ବ ଇଉରୋପର (ଡାନ୍ୟୁବ ଓ ବଲକାନ ଅଞ୍ଚଳ) ବ୍ୟାଙ୍କସହ ସମ୍ବନ୍ଧ କଲେ । ନିଉୟର୍କ ବି ସେଠାରେ କିଛି ବ୍ୟବସାୟ କରୁଥିଲା ।

ଏହା ଏକ ଉନ୍ନତ ଆର୍ଥିକ ଅବସ୍ଥା କାଳ, ଆଂଶିକ ଭାବରେ ଲଣ୍ଡନ ଓ ନିଉୟର୍କର ପ୍ରତିଯୋଗିତା ହେତୁ ଇଉରୋପକୁ ଧନ ବୋହି ଆସିଲା ଏବଂ ଲକ୍ଷପତି ଓ କୋଟିପତିଙ୍କ ସଂଖ୍ୟା ଅଦ୍ଭୁତ ବେଗରେ ବଢ଼ିଲା । ଯେଉଁ ଭାବରେ ଜିନିଷସବୁ ହେଲା ତାହା ବଡ଼ ସରଳ । କୌଣସି ଉଦ୍ୟମୀ ବ୍ୟକ୍ତି ଏଥିରୁ କୌଣସି ଦେଶରେ ରେଲଓ୍ୱେ ନିର୍ମାଣ ବା ଅନ୍ୟ

ସାଧାରଣ କାର୍ଯ୍ୟ କରିବା ସକାଶେ ସୁବିଧାହାସଲ କଲେ କମ୍ପାନି ଦିଆସିଲି ତିଆରି ଓ ବିକ୍ରୀ କରିବା ପରି ଠିକା ହାସଲ କଲେ । ଏହି ସୁବିଧା ବା ଏକଚ୍ଛତିଆ କାର୍ଯ୍ୟ କରିବା ପାଇଁ ଏକ କମ୍ପାନି ଗଢ଼ାହୁଏ ଏବଂ ଷ୍ଟକ ବା ଅଂଶ ବିକ୍ରୀକରେ । ଏହି ଷ୍ଟକ୍ ବା ଅଂଶ ଉପରେ ଲଣ୍ଡନ ବା ନିଉୟର୍କର ବ୍ୟାଙ୍କସବୁ ଆଗତୁରା ଦିଅନ୍ତି । ଏହିରୂପେ ଧନପତିମାନେ ନିଉୟର୍କରେ ୨% ହିସାବରେ ଡଲାରରେ ଧନ କରଜ କରନ୍ତି ଏବଂ ତାପରେ ବର୍ଲିନରେ ୬% ଓ ଭିଏନାରେ । % ଦିଅନ୍ତି । ଅନ୍ୟଲୋକଙ୍କ ଧନ ଏହିରୂପେ ନେଇ ଏମାନେ ଅତ୍ୟନ୍ତ ଧନୀ ହୋଇଗଲେ । ଏମାନଙ୍କ ଭିତରେ ଇଭାନ କ୍ରୁଗର ଜଣେ ପ୍ରସିଦ୍ଧ ଲୋକ ଥିଲେ—ସେ ଜଣେ ସୁଇଡ଼େନବାସୀ—ଦିଆସିଲିରେ ତାଙ୍କର ଏକଚ୍ଛତିଆ ଅଧିକାର ଯୋଗୁଁ ତାଙ୍କୁ ଦିଆସିଲି ରଜା ବୋଲି କହୁଥିଲେ । ଦିନେ କ୍ରୁଗରଙ୍କର ବହୁତ ସମ୍ମାନ ଥିଲା, କିନ୍ତୁ ପରେ ପ୍ରମାଣ ହେଲା ଯେ ସେ ଏକ ଶଠ ଥିଲେ ଏବଂ ସେ ବହୁ ପରିମାଣରେ ଧନ ଆତ୍ମସାତ୍ କରିଥିଲେ । ସେ ଧରିପଡ଼ିବା ଅବସ୍ଥା ହେଲାବେଳକୁ ଆତ୍ମହତ୍ୟା କଲେ । ସେତେବେଳର ଆଉ କେତେକ ପ୍ରସିଦ୍ଧ ଧନପତି ତାଙ୍କର କୁତ୍ସିତ ଉପାୟ ନିମନ୍ତେ ମଧ୍ୟ ଗୋଳମାଳରେ ପଡ଼ିଲେ ।

କେନ୍ଦ୍ର ଓ ପୂର୍ବ ଇଉରୋପରେ ଏହି ଇଂଲଣ୍ଡ-ଆମେରିକା ପ୍ରତିଯୋଗିତାରେ ଗୋଟିଏ ଭଲ ଫଳ ହେଲା । ୧୯୨୯ରେ- ଦୁର୍ଦ୍ଦିନ ଆରମ୍ଭ ହେବା ପୂର୍ବ ବର୍ଷମାନଙ୍କରେ—ଇଉରୋପକୁ ପୁନରୁଦ୍ଧାର କରିବାରେ ଏହି ଧନ ବହୁ ପରିମାଣରେ ସାହାଯ୍ୟ କଲା ।

ଇତ୍ୟବସରରେ ୧୯୨୬ ଓ ୧୯୨୭ରେ ଫ୍ରାନ୍ସରେ ମୁଦ୍ରାସ୍ଫୀତି ହେଲା ଏବଂ ଫ୍ରାଙ୍କର ମୂଲ୍ୟ ବହୁତ ପଡ଼ିଗଲା । ପଇସାବାଲା ଫରାସୀ ଲୋକେ ଏବଂ ପ୍ରତ୍ୟେକ ଫରାସୀ ବୁର୍ଜୋୟାର ଧନ ସଞ୍ଚୟ ହୋଇଥିଲା—ଫ୍ରାଙ୍କ ପତନ ହେବାରୁ ତାହା ହରାଇବା ଭୟରେ ବିଦେଶକୁ ଧନ ପଠାଇ ଦେଲେ । ସେଥିରେ ବହୁସଂଖ୍ୟକ ବିଦେଶୀ ସିକ୍ୟୁରିଟି ଓ ବିଦେଶୀ ଏକ୍ସଚେଞ୍ଜ ବିଲ ସେମାନେ ଆଣିଲେ । ୧୯୨୭ରେ ଫ୍ରାଙ୍କ ପୁନର୍ବାର ଦୃଢ଼ ହେଲା ଏବଂ ସ୍ୱର୍ଣ୍ଣ ମୂଲ୍ୟ ନିର୍ଦ୍ଦିଷ୍ଟ ହୋଇଗଲା, କିନ୍ତୁ ଏହା ପୂର୍ବ ମୂଲ୍ୟର ପ୍ରାୟ ୧।୫ ଅଂଶ ରହିଲା । ବିଦେଶୀ ସିକ୍ୟୁରିଟି ଥିବା ଫରାସୀ ଲୋକେ ଏବେ ତାକୁ ଫ୍ରାଙ୍କରେ ପରିବର୍ତ୍ତନ କରିବା ନିମନ୍ତେ ଅଧୀର ହୋଇପଡ଼ିଲେ । ସେମାନେ ଖୁବ୍ ଭଲ ବ୍ୟବସାୟ କଲେ, କାରଣ ସେମାନଙ୍କର ଆଗରୁ ଯାହାଥିଲା ଏବେ ତାର ପାଞ୍ଚଗୁଣ ବେଶି ଫ୍ରାଙ୍କ ପାଇଲେ ଏବଂ ସେମାନେ ଯଦି ମୂଳରୁ ଫ୍ରାଙ୍କ ଧରି ବସିଥାନ୍ତେ ତେବେ ଆଦୌ ଲାଭ କରି ନ ଥାନ୍ତେ—ମାତ୍ର ମୁଦ୍ରାସ୍ଫୀତିରେ ତାଙ୍କର ଆଦୌ କ୍ଷତି ହେଲା ନାହିଁ । ଏତେବେଳେ ଫ୍ରାନ୍ସ ସରକାର ଲାଭ କରିବାକୁ ସ୍ଥିର କଲା ଏବଂ ଏହା ଏପରି ସମସ୍ତ ବିଦେଶୀ ଏକ୍ସଚେଞ୍ଜ ଓ ସିକ୍ୟୁରିଟି ବିଲ କିଣିନେଲା, ତା ପରିବର୍ତ୍ତେ ଫ୍ରାଙ୍କରେ ନୂତନ ଛାପା ବିଲ ଦେଲା । ଏହିରୂପେ ଏହିସବୁ ବିଦେଶୀ ବିଲ ଓ ସିକ୍ୟୁରିଟି ପାଇ ଫରାସୀ ସରକାର ଖୁବ୍ ଧନୀ ହୋଇଗଲା—ପ୍ରକୃତରେ

ସେତେବେଳେ ସେଥିରୁ ଅଧିକସଂଖ୍ୟକ ଏହା ପାଖରେ ଥିଲା । ଆର୍ଥିକ ନେତୃତ୍ୱ ଲାଗି ଇଂଲଣ୍ଡ ଓ ଆମେରିକା ସହିତ ପ୍ରତିଯୋଗୀ ହେବା ନିମନ୍ତେ ଏହାର କୌଣସି ଲାଳସା ବା ଯଥେଷ୍ଟ ଯୋଗ୍ୟତା ନ ଥିଲା । କିନ୍ତୁ ଦୁହିଁଙ୍କ ଉପରେ ପ୍ରଭାବ ପକାଇଲା ଭଳି ଅବସ୍ଥାରେ ଏହା ଥିଲା ।

ଫରାସୀମାନେ ବଡ଼ ସାବଧାନରେ ଚାଲିବା ଲୋକ ଏବଂ ତାଙ୍କ ସରକାର ବି ସେହିପରି । ସେମାନଙ୍କର ବଡ଼ ଲାଭ କରିବା ଆଶାରେ ଯାହା ଅଛି ତାହା ହରାଇବାର ବିପଦ ବରଣ କରିବା ଅପେକ୍ଷା ସ୍ୱଳ୍ପ ଲାଭ ବା ନିରାପତ୍ତାକୁ ସେମାନେ ଅଧିକ ପସନ୍ଦ କରନ୍ତି । ତେଣୁ ସାବଧାନ ସହକାରେ ସରକାର ତାର ଉଦ୍‌ବୃତ୍ତ ଧନ ଅତି ଅଳ୍ପ ସୁଧ ହାରରେ ଲଣ୍ଡନର ଭଲ ବ୍ୟବସାୟ କ୍ଷେତ୍ରକୁ ଦେଲା । ଏହିରୂପେ ସେମାନେ ବ୍ରିଟିଶ ବ୍ୟାଙ୍କ ଉପରେ ମୋଟ ୨% ସୁଧ ଧାର୍ଯ୍ୟ କଲେ; ବ୍ରିଟିଶ ସେହି ଧନକୁ ୫୲୬% ହାରରେ ଜର୍ମାନବ୍ୟାଙ୍କକୁ ଧାରଦେଏ, ସେମାନେ ୮।୯%ହାରରେ ଭିଏନାକୁ ଦିଅନ୍ତି ଏବଂ ଶେଷରେ ହଙ୍ଗେରୀ ବା ବଲକାନରେ ଏହା ୧୨%ସୁଧରେ ଯାଇ ପହଞ୍ଚେ । ବିପଦ ଉଠାଇଲେ ସୁଧହାର ବଢ଼େ, କିନ୍ତୁ ଫ୍ରାନ୍‌ସ ବ୍ୟାଙ୍କ କୌଣସି ବିପଦ ବରଣ କରିବା ପସନ୍ଦ କଲା ନାହିଁ ଏବଂ ନିରାପଦ ବ୍ରିଟିଶ ବ୍ୟାଙ୍କଗୁଡ଼ିକ ସହ କାରବାର କଲା । ଏହିରୂପେ ଫ୍ରାନ୍‌ସ ବହୁ ପରିମାଣ ଧନ (ଯେଉଁ ବିଦେଶୀ ଏକ୍‌ସଚେଞ୍ଜ ବିଲ ଏହା ଖର୍ଦ୍ଦି କରିଥିଲେ) ଲଣ୍ଡନରେ ରଖିଲା ଏବଂ ଲଣ୍ଡନର ନିଉୟର୍କ ସହିତ ଲଢ଼ାଇରେ ଏହା ସାହାଯ୍ୟ କଲା ।

ଏଥି ଭିତରେ ବାଣିଜ୍ୟ ସଙ୍କଟ ଓ ଦୁର୍ଗତି ବଢ଼ିବାରେ ଲାଗିଲା ଏବଂ କୃଷିଜାତ ଶସ୍ୟର ଦାମ୍ ପଡ଼ିଗଲା । ୧୯୩୦ ଶରତ କାଳରେ ଗହମ ଦର ଏପରି ପଡ଼ିଗଲା ଯେ ପୂର୍ବ ଇଉରୋପର ବ୍ୟାଙ୍କ ସବୁ ତାଙ୍କ ଖାତକଙ୍କଠାରୁ ଋଣ ଅସୁଲ କରିପାରିଲେ ନାହିଁ ଏବଂ ତେଣୁ ଭିଏନାରେ ଡଲାର ଓ ପାଉଣ୍ଡରେ ସେମାନେ ଯାହା ଧନ ଋଣ କରିଥିଲେ, ତାହା ପରିଶୋଧ କରିପାରିଲେ ନାହିଁ । ଏହା ଫଳରେ ଭିଏନା ବ୍ୟାଙ୍କରେ ସଙ୍କଟ ଉପୁଜିଲା ଏବଂ ଭିଏନାରେ ସର୍ବାପେକ୍ଷା ବଡ଼ ବ୍ୟାଙ୍କ—ତାର ନାମ ହେଉଛି କ୍ରେଡ଼ିଟ ଆନ୍‌ଷ୍ଟାଲଟ୍ (Credit Anstalt) ଦେବାଳିଆ ହେଲା ଓ ତାର ପତନ ହେଲା । ଏହା ପୁନର୍ବାର ଜର୍ମାନ ବ୍ୟାଙ୍କକୁ ଟଳମଟଳ କଲା ଏବଂ ମାର୍କର ପତନ ଆସନ୍ନ ପରି ମନେହେଲା । ଏଥିରେ ଜର୍ମାନୀରେ ଆମେରିକାନ ଓ ବ୍ରିଟିଶ ପୁଞ୍ଜି ବିପଦରେ ପଡ଼ିଥାନ୍ତା, ଏବଂ ଏହାକୁ ଅତିକ୍ରମ କରିବା ନିମନ୍ତେ ସଭାପତି ହୁଭର ଋଣ ଓ କ୍ଷତିପୂରଣ ମୂଲତବୀ ଘୋଷଣା କଲେ । ସେତେବେଳେ କ୍ଷତିପୂରଣ ଦେବାକୁ ଦାବୀ କରିଥିଲେ ଜର୍ମାନୀର ସମ୍ପୂର୍ଣ୍ଣ ଆର୍ଥିକ ପତନ ହୋଇଥାନ୍ତା । କିନ୍ତୁ ଏପରି ହେଲା ଯେ ଏହା ବି ଯଥେଷ୍ଟ ନ ଥିଲା ଏବଂ ଜର୍ମାନୀ ତାର ନିଜ ବ୍ୟକ୍ତିଗତ ଋଣ ବି ଅନ୍ୟ ରାଜ୍ୟକୁ ପରିଶୋଧ କରିପାରିଲା ନାହିଁ ଏବଂ ଏଥିପାଇଁ ବି ତାକୁ ମହଲତ ନେବାକୁ ପଡ଼ିଲା ।

ଏହାର ଅର୍ଥ ପ୍ରଚୁର ପରିମାଣରେ ଇଂରେଜ ଧନ ଯାହା ଅଳ୍ପକାଳ ଋଣ ପାଇଁ ଜର୍ମାନୀକୁ ଦିଆଯାଇଥିଲା; ତାହା ସେଠାରେ ବନ୍ଦ ହୋଇ ରହିଗଲା—ଏହାକୁ 'କଠିନ' ହୋଇଯିବା ବୋଲି କହନ୍ତି । ଲଣ୍ଡନ ବ୍ୟାଙ୍କର ଅବସ୍ଥା ସଙ୍କଟ ହେଲା, କାରଣ ସେମାନଙ୍କୁ ଦେୟ ଦେବାକୁ ପଡ଼ୁଥିଲା ଏବଂ ସେମାନେ ଜର୍ମାନୀରୁ ତାଙ୍କର ଧନ ପାଇବା ଆଶାରେ ଥିଲେ । ଫ୍ରାନସ ଓ ଆମେରିକା ୧୩୦,୦୦୦,୦୦୦ ପାଉଣ୍ଡ ଧାର ଦେଇ ତାଙ୍କୁ ସାହାଯ୍ୟ କଲେ; କିନ୍ତୁ ଏହା ବହୁ ବିଳମ୍ବରେ ଆସିଲା । ଲଣ୍ଡନ ଆର୍ଥିକ ମହଲରେ ଆତଙ୍କ ପଡ଼ିଗଲା ଏବଂ ଏପରି ଆତଙ୍କ ପଡ଼ିଲେ ପ୍ରତ୍ୟେକେ ତାଙ୍କର ଧନ ନେଇଯିବାକୁ ଚାହାନ୍ତି । ୧୩୦,୦୦୦,୦୦୦ ପାଉଣ୍ଡ ଶୀଘ୍ର ଅନ୍ତର୍ହିତ ହୋଇଗଲା । ତୋର ଅବଶ୍ୟ ସ୍ମରଣ କରିବା କଥା ଯେ ପାଉଣ୍ଡ ସ୍ୱର୍ଣ୍ଣ-ଷ୍ଟାଣ୍ଡାର୍ଡ଼ରେ ବନ୍ଧା ହୋଇଥିଲା ଏବଂ ଯାହା ପାଖରେ ପାଉଣ୍ଡର ନୋଟ ଥିଲା, ସେ ସୁନା ପାଇଁ ଦାବୀ କରିପାରେ ।

ସେତେବେଳେ ଇଂଲଣ୍ଡରେ ଶ୍ରମିକ ସରକାର ଥିଲା; ସେମାନେ ଅଧିକ ଧନ ଋଣ ଦେବାକୁ ଚାହୁଁଥିଲେ ଏବଂ ବ୍ୟାକୁଳ ଭାବରେ ନିଉୟର୍କ ଓ ପାରିସକୁ ଏଥିପାଇଁ ନିବେଦନ କଲେ । ଦେଖାଗଲା ସେମାନେ କେତେକ ସର୍ତ୍ତରେ ଦେବାକୁ ସମ୍ମତ ହୋଇଥିଲେ—ସେଥିରୁ ଗୋଟିଏ ହେଉଛି ବ୍ରିଟିଶ ସରକାରର ଶ୍ରମିକ ସମସ୍ୟା, ସାମାଜିକ ବ୍ୟାପାର ଇତ୍ୟାଦିରେ ଅବଶ୍ୟ ହିସାବ କରି ଚଳିବା ଦରକାର ଏବଂ ବୋଧହୁଏ ମଜୁରି କାଟିବା ନିମନ୍ତେ କୁହାହୋଇଥିଲା । ବ୍ରିଟେନର ଘରୋଇ ମାମଲାରେ ଏହା ବିଦେଶୀ ବ୍ୟାଙ୍କ-ମାନଙ୍କର ହସ୍ତକ୍ଷେପ । ଏହି ପରିସ୍ଥିତି ଶ୍ରମିକ ସରକାର ବିରୁଦ୍ଧରେ ଉପଯୋଗ କରାଗଲା ଏବଂ ପ୍ରଧାନମନ୍ତ୍ରୀ ଓ ସରକାରର ପ୍ରଧାନ ଲୋକ ରାମସେ ମ୍ୟାକ୍‌ଡୋନାଲଡ଼ ସରକାର ଓ ନିଜ ଦଳ ପ୍ରତି ବିଶ୍ୱାସଘାତକତା କଲେ ଏବଂ ମୁଖ୍ୟତଃ ଟୋରିମାନଙ୍କ ସହଯୋଗରେ ଆଉ ଏକ ସରକାର ଗଠନ କଲେ । ଏହାକୁ 'ଜାତୀୟ ସରକାର' ଆଖ୍ୟା ଦିଆଗଲା—ସଙ୍କଟର ସମ୍ମୁଖୀନ ହେବା ନିମନ୍ତେ ଏହା ଗଢ଼ାହେଲା । ଇଉରୋପୀୟ ଶ୍ରମିକ ଆନ୍ଦୋଳନ ଇତିହାସରେ ରାମସେ ମ୍ୟାକଡୋନାଲଡ଼ଙ୍କ କାର୍ଯ୍ୟ ବିଶ୍ୱାସଘାତକତାର ଏକ ଅପୂର୍ବ ଦୃଷ୍ଟାନ୍ତ ।

ପାଉଣ୍ଡକୁ ରକ୍ଷା କରିବା ନିମନ୍ତେ ଜାତୀୟ ସରକାର ଗଢ଼ାହେଲା—ଏହା ଆମେରିକା ଓ ଫ୍ରାନ୍‌ସରୁ ପ୍ରତିଶ୍ରୁତି ଧାର ପାଇଲା; କିନ୍ତୁ ଏହା ସାହାଯ୍ୟରେ ସୁଦ୍ଧା ପାଉଣ୍ଡକୁ ରକ୍ଷା କରିପାରିଲା ନାହିଁ । ୧୯୩୧ ସେପ୍‌ଟେମ୍ବର ତା ୨୧ ରିଖରେ ସରକାର ଏହି ସ୍ୱର୍ଣ୍ଣ-ଷ୍ଟାଣ୍ଡାର୍ଡ଼ ଛାଡ଼ିବା ନିମନ୍ତେ ବାଧ୍ୟ ହେଲା ଏବଂ ପାଉଣ୍ଡ ପୁନର୍ବାର ଅନିର୍ଦ୍ଦିଷ୍ଟ ମୁଦ୍ରା ହୋଇ-ଗଲା । ପାଉଣ୍ଡର ଦ୍ରୁତ ପତନ ହେଲା, ଏହାର ମୂଲ୍ୟ ହେଲା ସୁନାରେ ପ୍ରାୟ ୧୪ ଶିଲିଂ—ଅର୍ଥାତ୍ ମୋଟାମୋଟି ଏହା ଆଗ ମୂଲ୍ୟର ଦୁଇତୃତୀୟାଂଶ ହୋଇଗଲା ।

ଏହି ଘଟଣା ଓ ତାରିଖ ପୃଥିବୀରେ ଖୁବ୍ ଏକ ପ୍ରଭାବ ଜାତ କଲା । ବ୍ରିଟିଶ

ସାମ୍ରାଜ୍ୟ ଭାଙ୍ଗିପଡ଼ିବାର ସୂଚନା ବୋଲି ଇଉରୋପ ଏହାକୁ ମନେକଲା, କାରଣ ଏହାର ଅର୍ଥ ବିଦେଶୀ ଧନ ବଜାରରେ ଲଣ୍ଡନର ପ୍ରାଧାନ୍ୟ ଅନ୍ତହେବା । ଏପରି ଆଶା ଏକପ୍ରକାର ଅକାଳପକ୍ୱ ବୋଲି ପ୍ରମାଣିତ ହେଲା—(ଇଉରୋପ ବା ଆମେରିକାରେ ବ୍ରିଟିଶ ସାମ୍ରାଜ୍ୟ ପ୍ରତି କାହାରି ଶ୍ରଦ୍ଧା ନାହିଁ, ଏସିଆ ବିଷୟ ଉଲ୍ଲେଖ ବା କାହିଁକି କରାଯିବ) ପାଉଣ୍ଡ ନୋଟ ସୁନା ବୋଲି ଏବଂ ଏହା ଯେ କୌଣସି ବେଳେ ବଦଳି ପାରିବ ବୋଲି ଯେଉଁମାନେ ରଖିଥିଲେ ପାଉଣ୍ଡର ପତନ ସଙ୍ଗେ ସଙ୍ଗେ ସେପରି ଦେଶର ମୁଦ୍ରାର ଟଳମଟଳ ଅବସ୍ଥା ଧରିଲା । ଏବେ ସେହି ନୋଟ ଆଉ ସୁନାରେ ବଦଳା ଯାଇପାରିଲା ନାହିଁ ଏବଂ ତାର ମୂଲ୍ୟ ଶତକଡ଼ା ୩୦ ପଡ଼ିଯିବାରୁ ଅନ୍ୟ କେତେକ ଦେଶର ମୁଦ୍ରାର ବି ପତନ ହୋଇଗଲା ଏବଂ ଇଂଲଣ୍ଡଦ୍ୱାରା ପୋଷିତ ହୋଇ ସେମାନଙ୍କୁ ବି ସ୍ୱର୍ଣ୍ଣ-ଷ୍ଟାଣ୍ଡାର୍ଡ଼ ଛାଡ଼ିବାକୁ ପଡ଼ିଲା ।

ଫ୍ରାନ୍‌ସ ବର୍ତ୍ତମାନ ଦୃଢ଼ ଅବସ୍ଥାରେ ଥିଲା; ଏହାର ସତର୍କ ନୀତି କାମ ଦେଲା । ଆମେରିକା ଓ ଏପରିକି ଇଂଲଣ୍ଡର ଅନେକ ଧନ ଜର୍ମାନୀରେ ଅଟକି ରହିଗଲା ଏବଂ ସେମାନଙ୍କର ଧନ ଦରକାର ହେଉଥିବାବେଳେ ଫ୍ରାନ୍‌ସର ବିଦେଶୀ ବିଲ୍ ତଥା ସ୍ୱର୍ଣ୍ଣ ଫାଙ୍କରେ ପ୍ରଚୁର ଧନ ଥିଲା । ଉଭୟ ଆମେରିକା ଓ ବ୍ରିଟିଶ ସରକାର ଫ୍ରାନ୍‌ସ ସହ ପ୍ରୀତିଭାବ କଲେ ଏବଂ ସେମାନଙ୍କ ପରସ୍ପର ବିରୁଦ୍ଧରେ ପ୍ରତ୍ୟେକର ସହଯୋଗ ଦେବା ନିମନ୍ତେ ତାକୁ ସେମାନେ ପ୍ରବର୍ତ୍ତାଇଲେ । ଫ୍ରାନ୍‌ସ ଅଧିକ ସତର୍କ ରହି ଏମାନଙ୍କ ଭିତରୁ କାହାରି ପାଲରେ ପଡ଼ିଲା ନାହିଁ ଏବଂ ତେଣୁ ସଉଦା କରିବାର ଏକ ସୁଯୋଗ ଛାଡ଼ିଦେଲା ।

ଇଂଲଣ୍ଡରେ ୧୯୩୧ ଶେଷବେଳକୁ ପାର୍ଲିଆମେଣ୍ଟ ପାଇଁ ସାଧାରଣ ନିର୍ବାଚନ ହେଲା ଏବଂ ଏହା ଫଳରେ 'ଜାତୀୟ ସରକାର' ପ୍ରକୃତରେ ଟୋରିଦଳ ଅତି ଅଧିକ ସଂଖ୍ୟାରେ ଯଶସ୍ୱୀ ହେଲେ । ଶ୍ରମିକ ଦଳ ପ୍ରାୟ ମୂଳପୋଛ ହୋଇଗଲା । ଶ୍ରମିକ ସରକାର ସେମାନଙ୍କର ପୁଞ୍ଜି ଜବତ କରି ନେଇପାରେ ଏହି କାହାଣୀରେ ଭୀତ ହୋଇ ଏବଂ ମଜୁରୀ ହାର ଯେଉଁ ଆଟଲାଣ୍ଟିକ ଜାହାଜର ବ୍ରିଟିଶ ନାବିକମାନଙ୍କର କ୍ଷଣଜୀବୀ ଧର୍ମଘଟ ବିଷୟ ସ୍ମରଣ କରି ବ୍ରିଟିଶ ବୁର୍ଜୋଆ ଶ୍ରେଣୀ ଟୋରି-ଜାତୀୟ ସରକାର ପାଖକୁ ଆଉଜିଲେ ।

ଏହି ସଙ୍କଟ ଓ ବିପଦ ସତ୍ତ୍ୱେ, ପାଉଣ୍ଡର ପତନ ପରେ ଆମେରିକା, ବ୍ରିଟେନ ଓ ଫ୍ରାନ୍‌ସ ଏହି ତିନୋଟି ପ୍ରଧାନ ଦେଶ ଅଥବା ସେମାନଙ୍କର ବ୍ୟାଙ୍କରମାନେ ଏକତ୍ର ସହଯୋଗ କରିପାରିଲେ ନାହିଁ । ପ୍ରତ୍ୟେକ ଏକାକୀ କାର୍ଯ୍ୟ କଲେ—ଅନ୍ୟମାନଙ୍କ ବ୍ୟୟରେ ନିଜର ଅବସ୍ଥା ଉନ୍ନତ କରିବା ନିମନ୍ତେ ପ୍ରତ୍ୟେକେ ଆଶା କରି ରହିଲେ । ଆର୍ଥିକ ନେତୃତ୍ୱ ଲାଗି ଲଢ଼ାଇ କରିବା ପରିବର୍ତ୍ତେ ସେମାନେ ମିଳିତ ହୋଇ ଏବଂ ସମ୍ମିଳିତ ଆନ୍ତର୍ଜାତିକ ଏକ୍‌ସଚେଞ୍ଜ ବଜାର ଗଢ଼ି ପାରିଥାନ୍ତେ । କିନ୍ତୁ ପ୍ରତ୍ୟେକେ ନିଜ ବାଟରେ ଯିବାକୁ ପସନ୍ଦ

କଲେ । ଇଂଲଣ୍ଡ ବ୍ୟାଙ୍କ ଲଣ୍ଡନର ପୂର୍ବ ଅବସ୍ଥା ଫେରାଇ ଆଣିବା ନିମନ୍ତେ ଲାଗିପଡ଼ିଲା ଏବଂ ପୃଥିବୀର ବସ୍ତୁଗୁଡ଼ିକୁ ପାଉଣ୍ଡ ତଥାପି ସୁନାଠାରୁ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା ଏହା କରିବାରେ ଇଂଲଣ୍ଡ ଅଧିକ ପରିମାଣରେ ସଫଳ ହେଲା ।

ଇଂଲଣ୍ଡ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ଼ ଛାଡ଼ିବାକୁ ଅନ୍ୟ ଦେଶମାନଙ୍କର ସରକାରୀ ବ୍ୟାଙ୍କସବୁ (ଏହାକୁ କେନ୍ଦ୍ର ବ୍ୟାଙ୍କ ବୋଲି କହନ୍ତି) ଯାହା ଏକ୍‌ସଚେଞ୍ଜ ଷ୍ଟାର୍ଲିଂଙ୍ଗ ବିଲ ରଖିଥିଲେ ତାହା ବିକ୍ରୀ କରିଦେଇ ତା ବଦଳରେ ସୁନା ଆଣି ରଖିଲେ । ସେମାନେ ଏପର୍ଯ୍ୟନ୍ତ ଷ୍ଟାର୍ଲିଂଙ୍ଗ ବିଲ୍‌ ରଖିଥିବାର କାରଣ ହେଉଛି ଏହା ଯେକୌଣସି ବେଳେ ସୁନାରେ ପରିବର୍ତ୍ତିତ କରାଯାଇପାରେ ଏବଂ ତେଣୁ ଏହାକୁ ସୁନା ବୋଲି ମନେ କରି ରଖିଥିଲେ । ହଠାତ୍‌ ଯେତେବେଳେ ଅଧିକ ସଂଖ୍ୟକ ବିଲ୍‌ ବିକ୍ରୀ ହେଲା, ପାଉଣ୍ଡର ମୂଲ୍ୟ ଶୀଘ୍ର ଶତକଡ଼ା ୩୦ କମ୍‌ ହୋଇଗଲା । ମୂଲ୍ୟର ଏହି ପତନ ହେତୁ ଯେଉଁ ଖାତକମାନେ (କେତେକ ସରକାର ଓ ବଡ଼ବ୍ୟବସାୟୀ ସମେତ) ପାଉଣ୍ଡନୋଟ ଆକାରରେ ଋଣ କରିଥିଲେ ସେମାନେ ସୁନାରେ ପରିଶୋଧ ଦେଲେ । କାରଣ ଏଥିରେ ଏବେ ଶତକଡ଼ା ୩୦ କମ୍‌ ପଡ଼ିଲା । ଏହିରୂପେ ବହୁପରିମାଣରେ ସୁନା ଇଂଲଣ୍ଡକୁ ଆସିଲା ।

କିନ୍ତୁ ଇଂଲଣ୍ଡକୁ ପ୍ରକୃତ ସୁନା ସ୍ରୋତ ଭାରତ ଓ ଇଜିପ୍ଟରୁ ଆସିଲା । ଏହି ଦରିଦ୍ର ଓ ଅଧୀନସ୍ଥ ଦେଶକୁ ଇଂଲଣ୍ଡକୁ ସାହାଯ୍ୟ କରିବା ନିମନ୍ତେ ବ୍ୟବହାର କରାଗଲା ଏବଂ ଇଂଲଣ୍ଡର ଆର୍ଥିକ ଅବସ୍ଥା ଦୃଢ଼ କରିବା ନିମନ୍ତେ ଏହାର ଗୁପ୍ତ ସମ୍ପଦମାନ ଉପଯୋଗ କରାଗଲା । ଏଥିରେ ସେ ଦେଶଗୁଡ଼ିକର କିଛି ମତ ନିଆ ହୋଇ ନ ଥିଲା, ଇଂଲଣ୍ଡର ଆବଶ୍ୟକତା ସମ୍ମୁଖରେ ସେମାନଙ୍କର ଅଭିଳାଷ ବା ସ୍ୱାର୍ଥର କିଛି ମୂଲ୍ୟ ଥିଲା ବୋଲି ଧରାଗଲା ନାହିଁ ।

ଭାରତରେ ପ୍ରଚଳିତ ଟଙ୍କାର କାହାଣୀ ଭାରତ ଦୃଷ୍ଟିକୋଣରୁ ଦୀର୍ଘ ଓ ବିଷାଦଜନକ । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଓ ବ୍ରିଟିଶ ଧନପତିଙ୍କ ସ୍ୱାର୍ଥ ଚରିତାର୍ଥ କରିବା ନିମନ୍ତେ ଏହାର ମୂଲ୍ୟ ବାରମ୍ବାର ପରିବର୍ତ୍ତିତ କରାଗଲା । ମୁଁ ଏସବୁ ମୁଦ୍ରା ବ୍ୟାପାର ଭିତରକୁ ଏଠି ଯାଉନାହିଁ, କେବଳ ଏତେ କହିବାକୁ ଚାହେଁ ଯେ ଭାରତରେ ବ୍ରିଟିଶ ସରକାରର ଯୁଦ୍ଧୋତ୍ତର କାର୍ଯ୍ୟରେ ମୁଦ୍ରା ବ୍ୟାପାର ଏପରି କଲେ ଯେ ଭାରତକୁ ବହୁତ କ୍ଷତି ସହିବାକୁ ପଡ଼ିଲା । ତା'ପରେ ୧୯୨୭ରେ ଭାରତବର୍ଷରେ ପାଉଣ୍ଡର ନୋଟ ଓ ସ୍ୱର୍ଣ୍ଣ ଅନୁପାତରେ ଟଙ୍କାର ମୂଲ୍ୟ ନିରୂପଣ କରିବା ସମ୍ବନ୍ଧରେ ଘୋର ବିବାଦ ଲାଗିଲା (ସେତେବେଳେ ପାଉଣ୍ଡ ସ୍ୱର୍ଣ୍ଣଷ୍ଟାଣ୍ଡାର୍ଡରେ ଥିଲା) ଏହାକୁ 'ଅନୁପାତ ବିବାଦ' (Ratio Controversy) କହନ୍ତି, କାରଣ ସରକାର ଏହାର ମୂଲ୍ୟ ଏକଶିଲିଙ୍ଗ ଛ ପେନ୍‌ସ କରିବାକୁ ଚାହୁଁଥିଲା ଓ ଭାରତର ଲୋକେ ଏକମତ ହୋଇ ଏକ ଶିଲିଙ୍ଗ ଚାରିପେନ୍‌ସ ରଖିବା ପାଇଁ ଚାହୁଁଥିଲେ । ଏହି ପ୍ରଶ୍ନଟି ଏକ ପୁରୁଣା ପ୍ରଶ୍ନ, ଟଙ୍କାର ଅଧିକରେ ମୂଲ୍ୟ ନିରୂପଣ କରିବାର ପ୍ରଚେଷ୍ଟା, ଏବଂ

ତାର ଫଳରେ ବ୍ୟାଙ୍କର, ଋଣଦାତା, ପଇସାବାଲା ଲାଭବାନ ହେବେ, ବିଦେଶୀ ଆମଦାନି ଉତ୍ସାହିତ ହେବ, ଅଥବା ନିମ୍ନତମ ମୂଲ୍ୟ ନିରୂପଣ ଦ୍ୱାରା ରପ୍ତାନିମାନଙ୍କର ଭାର ଲାଘବ ହେବ ଓ ଗୃହଶିଳ୍ପ ଏବଂ ରପ୍ତାନି ଉତ୍ସାହିତ କରାଯିବ । ଅବଶ୍ୟ ଭାରତୀୟମାନଙ୍କ ବିରୋଧସତ୍ତ୍ୱେ ସରକାର ନିଜ କଥା କଲା ଏବଂ ଟଙ୍କାର ସ୍ୱର୍ଣ୍ଣମୂଲ୍ୟ ଏକଶିଲିଙ୍ଗ ଛ' ପେନ୍ସ ସ୍ଥିରୀକୃତ ହେଲା । ସୁତରାଂ ଅନେକଙ୍କ ମତରେ ଏହାର ଏକ ସାମାନ୍ୟ ମୁଦ୍ରାହ୍ରାସ (Deflation) ଟଙ୍କାର ଅଧିକ ମୂଲ୍ୟ ନିରୂପଣ । ଏକମାତ୍ର ଇଂଲଣ୍ଡରେ ହିଁ ଏହି ମୁଦ୍ରାହ୍ରାସ ହୋଇଥିଲା, ୧୯୨୫ରେ ପାଉଣ୍ଡ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡକୁ ଆସିଥିଲା ଏବଂ ଆମେ ଦେଖିଛେ ଇଂଲଣ୍ଡ ପୃଥିବୀରେ ଆର୍ଥିକ ନେତୃତ୍ୱ ବଜାୟ ରଖିବା ପାଇଁ ଏହା କରିଥିଲା ଓ ଏଥିଲାଗି ଅନେକ ତ୍ୟାଗ କରିବାପାଇଁ ପ୍ରସ୍ତୁତ ଥିଲା । ଫ୍ରାନ୍ସ, ଜର୍ମାନୀ ଓ ଅନ୍ୟ ଦେଶମାନେ ନିଜର ଅର୍ଥନୈତିକ ପରିସ୍ଥିତି ସହଜ କରିବା ନିମନ୍ତେ ମୁଦ୍ରାସ୍ଫୀତି ପସନ୍ଦ କରିଥିଲେ ।

ଟଙ୍କାର ଅଧିକ ମୂଲ୍ୟ ନିରୂପଣ ଫଳରେ ଭାରତରେ ଲଗାଯାଇଥିବା ବ୍ରିଟିଶପୁଞ୍ଜିର ମୂଲ୍ୟ ମଧ୍ୟ ବଢ଼ିଗଲା । ଏହାର ଅର୍ଥ ଭାରତୀୟ ଶିଳ୍ପ ଉପରେ ବୋଝ ହେଲା, କାରଣ ଭାରତୀୟ ଜିନିଷର ଦର ଟିକିଏ ବଢ଼ିଗଲା । ସର୍ବୋପରି କୃଷକ ଓ ଭୂସ୍ୱାମୀ ଯେଉଁମାନେ ମହାଜନ-ଠାରେ ଋଣଗ୍ରସ୍ତ ଥିଲେ ସେମାନଙ୍କର ବି ଅଧିକ ବୋଝହେଲା, କାରଣ ଅର୍ଥର ମୂଲ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଏହି ଋଣର ମୂଲ୍ୟ ମଧ୍ୟ ବଢ଼ିଗଲା । ଏହି ଅଠରପେନ୍ସ ଓ ଷୋହଳପେନ୍ସ ଭିତରେ ପାର୍ଥକ୍ୟ ଅର୍ଥାତ୍ ଦୁଇପେନ୍ସ ଫଳରେ ୧୨୩% ବୃଦ୍ଧି ହେଲା । ମନେକର ଭାରତର କୃଷକମାନଙ୍କର ଋଣ ୧୦,୦୦୦,୦୦୦,୦୦୦ ଟଙ୍କା; ସେଥିରେ ୧୨୩% ଅଧିକା ହେବା ଅର୍ଥ ସମୁଦାୟ ୧୨,୫୦,୦୦୦,୦୦୦ ଅଧିକା ।

ଅବଶ୍ୟ ଟଙ୍କା ହିସାବରେ ଦେଖିଲେ ଋଣ ପୂର୍ବରୁ ଯାହାଥିଲା ତାହାହିଁ ରହିଲା । କିନ୍ତୁ କୃଷିଜାତ ଦ୍ରବ୍ୟ ମୂଲ୍ୟ ଅନୁପାତରେ ଋଣ ବେଶୀ ହୋଇଗଲା । ଅର୍ଥର ପ୍ରକୃତ ମୂଲ୍ୟ ହେଉଛି ଏହାର କିଣିପାରିବା ଶକ୍ତି—କେତେ ଗହମ, ଲୁଗା, ଅନ୍ୟ ଜିନିଷ ବା ପଦାର୍ଥସବୁ କିଣିପାରିବ । ଏହି ମୂଲ୍ୟ ସୁବିଧା ପାଇଲେ ଅବସ୍ଥା ଅନୁସାରେ ବଦଳା ଯାଇପାରେ । ଟଙ୍କାର କିଣିବା ଶକ୍ତିର ପତନ ହେଲେ ମୁଦ୍ରାର ମୂଲ୍ୟ ମଧ୍ୟ ହ୍ରାସ ପାଏ । ଏହାର ଅପ୍ରାକୃତିକ ଭାବରେ ଅଧିକତର ମୂଲ୍ୟ ନିରୂପଣ କରିବା ଅର୍ଥ ଏହାକୁ ଏକ ଅପ୍ରାକୃତିକ କିଣିବା ଶକ୍ତି ଦେବା, ପ୍ରକୃତରେ ଏହାର ସେପରି ଶକ୍ତି ନ ଥାଏ । ଏହିରୂପେ କୃଷକ ଦେଖିଲା ଯେ ତାର ଆୟର ଅଧିକଭାଗ ଏବେ ଋଣ ଓ ସୁଧ ପରିଶୋଧ କରିବାରେ ଯାଉଛି ଏବଂ ପାଖରେ ବଳକା ରହୁଛି ଖୁବ୍ କମ୍ । ଏହିରୂପେ ଏକଶିଲିଙ୍ଗ ଛ' ପେନ୍ସ ବେଶି ଓ ଫଳରେ ଭାରତରେ ଦୁର୍ଗତି ପଡ଼ିଲା ।

୧୯୩୧ ସେପ୍ଟେମ୍ବର ମାସରେ ଯେତେବେଳେ ପାଉଣ୍ଡ ନୋଟରୁ ସୁନା ବିଚ୍ଛିନ୍ନ କରାଗଲା ସେତେବେଳେ ଟଙ୍କାର ମୂଲ୍ୟ ମଧ୍ୟ ହ୍ରାସହେଲା, କିନ୍ତୁ ଏହା ପାଉଣ୍ଡ ସହିତ

ଯୋଡ଼ାହୋଇ ରହିଲା । ଏହିରୂପେ ଏକର୍ଶିଲିଙ୍ଗ ଛ'ପେନ୍ସ ରେସିଓ ରହିଥିଲା, ମାତ୍ର ଏବେ ଏହାର ମୂଲ୍ୟରେ ସୁନା କମ୍ ମିଳିଲା । ଟଙ୍କାକୁ ପାଉଣ୍ଡନୋଟ ସହିତ ·ଯୋଡ଼ାହୋଇ ରଖାଗଲା ଯେପରି କି ଭାରତରେ ବ୍ରିଟିଶ ପୁଞ୍ଜିର କ୍ଷତି ନ ଘଟେ, କାରଣ ଟଙ୍କାକୁ ଯଦି ଅଲଗା ଛାଡ଼ି ଦିଆ ହୋଇଥାଆନ୍ତା ତେବେ ତଳକୁ ଖସି ପଡ଼ି ଯାଇଥାଆନ୍ତା ଓ ଏହିରୂପେ ପାଉଣ୍ଡ ନୋଟ ରୂପେ ଥିବା ପୁଞ୍ଜିର ମଧ୍ୟ କ୍ଷତି ଘଟିଥାଆନ୍ତା । ଏହା ଯେପରି ରଖାଗଲା ତା ଫଳରେ କେବଳ ଆମେରିକା ଜାପାନୀ ପ୍ରଭୃତି ଭାରତରେ ଥିବା ଅଣ-ବ୍ରିଟିଶ ବିଦେଶୀ ପୁଞ୍ଜିର କ୍ଷତି ହେଲା । କାରଣ ଟଙ୍କାର ସ୍ୱର୍ଣ୍ଣମୂଲ୍ୟ କମି ଯାଇଥିଲା । ଟଙ୍କାକୁ ପାଉଣ୍ଡ ସହିତ ଯୋଡ଼ି ରଖିବା ଫଳରେ ଇଂଲଣ୍ଡର ଆଉ ଏକ ବଡ଼ ସୁବିଧା ହେଲା । ଏଥିରେ ଭାରତରୁ ଇଂଲଣ୍ଡର ଶିଳ୍ପ ବୃଦ୍ଧି ନିମନ୍ତେ କଞ୍ଚା ମାଲକୁ ବ୍ରିଟିଶ ମୁଦ୍ରାରେ କିଣି ଯାଇପାରୁଥିଲା । ପାଉଣ୍ଡର ନୋଟ ଯେତେ ଅଧିକ ଅଞ୍ଚଳରେ ପ୍ରଚଳନ ହେବ ପାଉଣ୍ଡର ସେତେ ସୁବିଧା ହେବ ।

ପାଉଣ୍ଡର ସହିତ ଟଙ୍କାର ମଲ୍ୟ ପତନ ହେବାରୁ ସ୍ୱାଭାବିକରୂପେ ଦେଶ ଭିତରେ ସୁନାର ଦର ବଢ଼ିଗଲା ଅର୍ଥାତ୍ ସୁନା ଦେଇ ବହୁତ ଟଙ୍କା ଆସିପାରିଲା । ଦେଶରେ ଯେଉଁ କଷ୍ଟ ଭୋଗ ଓ ଯନ୍ତ୍ରଣା ଲୋକେ ଭୋଗୁଥିଲେ ସେଥିରେ ସେମାନେ ନିଜର ଋଣ ପରିଶୋଧ କରିବା ନିମନ୍ତେ ଅଧିକା ଟଙ୍କା ପାଇବା ପାଇଁ ଗହଣା ଇତ୍ୟାଦି ଆକାରରେ ତାଙ୍କ ପାଖରେ ଯାହା କିଛି ବା ସୁନା ଥିଲା ତାହା ବିକି କରିଦେଲେ । ତେଣୁ ସୁନାର ଅସଂଖ୍ୟ ସ୍ରୋତ ଦେଶର ରିଜର୍ଭ ବ୍ୟାଙ୍କକୁ ଚାଲିଲା ଏବଂ ବ୍ୟାଙ୍କସବୁ ଲଣ୍ଡନ ବଜାରରେ ଏହା ବିକି ଲାଭ କଲେ । ଏହିପରି ଭାବରେ ଭାରତୀୟ ସୁନା କ୍ରମାନ୍ୱୟରେ ଇଂଲଣ୍ଡକୁ ଚାଲିଲା ଏବଂ ବହୁ ପରିମାଣରେ ପଠାଗଲା । ଏହି ପ୍ରଥା ଏବେ ବି ଚାଲିଛି । ଏହି ସୁନା ତଥା ଇଜିପ୍ଟରୁ ଯେଉଁ ସୁନା ଆସିଲା ତାହା ହିଁ ଇଂଲଣ୍ଡର ବ୍ୟାଙ୍କ ଓ ବ୍ରିଟିଶ ଆର୍ଥିକ ପରିସ୍ଥିତି ସମ୍ଭାଳି ନେଲା ଏବଂ ଆମେରିକା ଓ ଫ୍ରାନ୍ସରୁ ୧୯୩୧ ସେପ୍ଟେମ୍ବର ମାସରେ ଯେଉଁ ଧନ ଋଣ କରିଥିଲେ, ତାହା ପରିଶୋଧ କରିବାରେ ସମର୍ଥ ହେଲେ ।

ଏବେ ଏହା ଏକ ଅଦ୍ଭୁତ ଘଟଣା ଯେ, ପୃଥିବୀରେ ଧନାଢ଼୍ୟ ଦେଶ ସମେତ ପ୍ରତ୍ୟେକ ରାଜ୍ୟ ଯେତେବେଳେ ନିଜର ସୁନା ରକ୍ଷା କରିବା ପାଇଁ ଓ ତାକୁ ବଢ଼ାଇବା ପାଇଁ ଚେଷ୍ଟା କରୁଛନ୍ତି ସେତେବେଳେ ଭାରତରେ ଠିକ୍ ବିପରୀତ ଘଟନା ଘଟୁଛି । ଆମେରିକା ଓ ଫ୍ରାନ୍ସ ସରକାର ତାଙ୍କର ବ୍ୟାଙ୍କ ସିନ୍ଦୁକମାନଙ୍କରେ ପ୍ରକାଣ୍ଡ ପରିମାଣରେ· ସୁନା ସଞ୍ଚୟ କରି ରଖିଛନ୍ତି । ଏହା ବି ଏକ ଅଦ୍ଭୁତ ଗୀତ; ଖଣିରୁ ସୁନା ଖୋଳି ବାହାର କରି ପୁଣି ତାକୁ ନେଇ ଭୂଇଁତଳେ ବ୍ୟାଙ୍କର ସିନ୍ଦୁକରେ ଲୁଚାଇ ରଖାଯାଉଛି । ବ୍ରିଟିଶ ଡୋମିନିଅନ୍ ସହ ଅନେକ ଦେଶ ସୁନାରେ ନିଷେଧ ଘୋଷଣା କରିଛନ୍ତି ଅର୍ଥାତ୍ ସେ ଦେଶରୁ କାହାରିକୁ ସୁନା ନେବାର ଅନୁମତି ଦିଆଯାଉ ନାହିଁ । ଇଂଲଣ୍ଡ ନିଜର ସୁନା

ରକ୍ଷା କରିବା ନିମନ୍ତେ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ ବି ଛାଡ଼ିଦେଲା ମାତ୍ର ଇଂଲଣ୍ଡର ସ୍ୱାର୍ଥ ଦୃଷ୍ଟିରୁ ଭାରତର ଆର୍ଥିକ ନୀତି ପରିଚାଳିତ ହେଉଥିବାରୁ ଭାରତରେ ସେପରି କିଛି କରାଗଲା ନାହିଁ ।

ଅନେକ ସମୟରେ ଭାରତରେ ସୁନା ରୂପାର ସଞ୍ଚୟ ହୋଇଥିବାର କଥା ଉଠେ ଏବଂ ମୁଷ୍ଟିମେୟ ଧନୀଙ୍କ ଭିତରେ ଏହା କେତେକ ପରିମାଣରେ ସତ୍ୟ । କିନ୍ତୁ ଜନସାଧାରଣ ନିତାନ୍ତ ଦରିଦ୍ର ତାଙ୍କ ପକ୍ଷରେ ମହଜୁଦ ରଖିବା ସମ୍ଭବ ନୁହେଁ । ଉନ୍ନତ ଶ୍ରେଣୀର କୃଷକଙ୍କ ପାଖରେ ଏଣୁତେଣୁ କିଛି ଗହଣା ଥାଏ ଏହା ହିଁ ତାଙ୍କର "ସଞ୍ଚୟ" । ତାଙ୍କର କୌଣସି ବ୍ୟାଙ୍କ ସୁବିଧା ନ ଥାଏ । ଏହି ସାମାନ୍ୟ ଗହଣା ଓ ଭାରତରେ ସୁନା ପାଣ୍ଠି ବି ଦୁର୍ଗତି ହେତୁ ଏବଂ ସୁନାର ମୂଲ୍ୟ ବଢ଼ିବା ହେତୁ ଅନ୍ୟ ଦେଶକୁ ଚାଲିଯାଇଛି । ଗୋଟିଏ ଜାତୀୟ ସରକାର ଥିଲେ ଏହିସବୁ ସୁନାକୁ ପାଣ୍ଠି କରି ଦେଶ ଭିତରେ ରଖିଥାଆନ୍ତା କାରଣ ଆଜି ଆନ୍ତର୍ଜାତିକ କ୍ଷେତ୍ରରେ ନେଣ ଦେଣର ମାଧ୍ୟମରୂପେ କେବଳ ସୁନାକୁ ହିଁ ସ୍ୱୀକାର କରାଯାଉଛି ।

ଡଲାର ସହିତ ପାଉଣ୍ଡର ଝଗଡ଼ା କାହାଣୀ ପୁଣି ଆଲୋଚନା କରିବା । ଏହି ପନ୍ଥା ଓ ଅନ୍ୟାନ୍ୟ ଚତୁର କୌଶଳ ସାହାଯ୍ୟରେ (ତାହା ଲେଖିବା ଦରକାର ନାହିଁ) ଇଂଲଣ୍ଡର ବ୍ୟାଙ୍କ ନିଜର ଅବସ୍ଥା ବହୁ ପରିମାଣରେ ଦୃଢ଼ କରି ପାରିଲା । ୧୯୩୬ ପ୍ରଥମ ଭାଗରେ ଏହାର ଟିକିଏ ଭାଗ୍ୟ ଖୋଲିଗଲା କାରଣ ଆମେରିକାର ଧନ ଜମୀନୀରେ ଅଟକିଯିବାରୁ ସଂଯୁକ୍ତ ରାଷ୍ଟ୍ରରେ ଏକ ବ୍ୟାଙ୍କ ସମ୍ବନ୍ଧୀୟ ସଙ୍କଟ ଉପୁଜିଲା । ଏହି ସଙ୍କଟ କାଳରେ ଅନେକ ଆମେରିକାବାସୀ ତାଙ୍କର ଡଲାର ବିକିଦେଲେ ଓ ପାଉଣ୍ଡ ନୋଟ କିଣିଲେ । ଏହିରୂପେ ବ୍ରିଟିଶ ସରକାର ପ୍ରଚୁର ଡଲାର ଏକ୍ସଚେଞ୍ଜ ବିଲ ପାଇଲା, ତା'ପରେ ଏହା ନିଉୟର୍କରେ ସରକାରୀ ବ୍ୟାଙ୍କକୁ ଦେଇ ତା ବଦଳରେ ସୁନା ଆଣିଲା । ଡଲାର ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ ହୋଇ ଥିବାରୁ ଯେ କୌଣସି ଲୋକ ଏଥିଲାଗି ସୁନା ଦାବୀ କରିପାରୁଥିଲା । ଏହିପରି ଭାବରେ ପାଉଣ୍ଡ ଅନିଶ୍ଚିତ ଓ ସ୍ୱର୍ଣ୍ଣରୁ ବିଚ୍ଛିନ୍ନ ହୋଇ ସୁଦ୍ଧା କୌଣସି କ୍ଷତି ନ ଘଟିବା ଏହାର ଅଧିକ ପତନ ନ ହୋଇ ବ୍ରିଟିଶ ସ୍ୱର୍ଣ୍ଣପାଣ୍ଠି ବଢ଼ିବାରେ ଲାଗିଲା । ପ୍ରଚୁର ପରିମାଣରେ ବିଦେଶୀ ଏକ୍ସଚେଞ୍ଜ ସିକ୍ୟୁରିଟି ବିଲ ହେତୁ ଲଣ୍ଡନ ନଗର ପୁନର୍ବାର ଆନ୍ତର୍ଜାତିକ ଏକ୍ସଚେଞ୍ଜର ଏକ ପ୍ରଧାନ କେନ୍ଦ୍ର ବଜାର ହୋଇଗଲା । କ୍ଷଣକାଳ ଲାଗି ନିଉୟର୍କ ପରାସ୍ତ ହେଲା, ଏହା ମୁଖ୍ୟତଃ ବ୍ୟାଙ୍କ ସଙ୍କଟ ହେତୁ ଘଟିଲା । ମୁଁ ତ ଆଗ ଚିଠିରେ ତତେ କହିଛି ଏଥିରେ ହଜାର ହଜାର ଗ୍ରେଟ ବ୍ୟାଙ୍କ ଧ୍ୱଂସ ପାଇଗଲା ।

# ୧୮୮ : ପୁଞ୍ଜିବାଦୀ ଜଗତ ଏକଜୁ ହୋଇପାରିଲା ନାହିଁ

ଜୁଲାଇ ୨୮, ୧୯୩୩

ଆର୍ଥିକ ପ୍ରତିଦ୍ୱନ୍ଦ୍ୱିତା ଓ କୌଶଳ ସମ୍ବନ୍ଧରେ ମୁଁ ଏକ ଦୀର୍ଘ କାହାଣୀ ବର୍ଣ୍ଣନା କଲି ଏବଂ ମୋର ଆଶଙ୍କା ହୁଏ ଏଥିଲାଗି ତୁ ମୋତେ ଧନ୍ୟବାଦ ଦେବୁ ନାହିଁ । ଆନ୍ତର୍ଜାତିକ ଚକ୍ରାନ୍ତର ଜାଲ ଏପରି ଜଟିଳ ଯେ, ଏହାକୁ ସଜାଡ଼ିବା କିମ୍ବା ଥରେ ସେଥିରେ ପ୍ରବେଶ କଲେ ସେଥିରୁ ବାହାରି ଆସିବା କିଛି ସହଜ କଥା ନୁହେଁ । ଅଳ୍ପ ଅଧିକେ ଯାହା ଉପର ସ୍ତରରେ ଦେଖାଯାଏ ତାର ଝଲକ ଦୃଷ୍ଟି କେବଳ ତୋ ଆଗରେ ଦେବା ନିମନ୍ତେ ମୁଁ ଚେଷ୍ଟା କରିଛି ଏବଂ ଘଟନା ଭିତରୁ ଅନେକ କେବେହେଲେ ଉପରକୁ ଆସେ ନାହିଁ କିମ୍ବା ଦିନର ଆଲୁଅ ଦେଖେ ନାହିଁ ।

ଆଧୁନିକ ଜଗତରେ ବ୍ୟାଙ୍କର ଓ ଧନପତିମାନଙ୍କର ମହତ୍ତ୍ୱ ଖୁବ୍ ବେଶି । ଏପରିକି ଶିଳ୍ପାଧିକାରୀମାନଙ୍କର କାଳ ଅତୀତ ହୋଇଗଲାଣି; ବଡ଼ ବ୍ୟାଙ୍କର ହିଁ ଶିଳ୍ପ, କୃଷି, ରେଲୱେ ଏବଂ ଯାନବାହନ ବ୍ୟବସ୍ଥା, ବାସ୍ତବିକ ସରକାର ଓ କେତେକ ପରିମାଣରେ ଅନ୍ୟସବୁ ଜିନିଷ ଆୟତ୍ତ କରିପାରିଛନ୍ତି । କାରଣ ଶିଳ୍ପ ଓ ବାଣିଜ୍ୟର ଅଗ୍ରଗତି ହେବା ସଙ୍ଗେ ସଙ୍ଗେ ଅଧିକ ଧନର ଆବଶ୍ୟକ ହୋଇଛି ଏବଂ ବ୍ୟାଙ୍କ ସବୁ ତାହା ଯୋଗାଇଛି । ଆଜିକାଲି ପୃଥିବୀର ଅଧିକାଂଶ କାର୍ଯ୍ୟ ଧାରରେ ଚାଲିଛି ଏବଂ ବଡ଼ ବ୍ୟାଙ୍କ ହିଁ ଧାରକୁ ବଢ଼ାଏ, ସଂକୁଚିତ କରେ ଓ ନିୟନ୍ତ୍ରଣ କରେ । ଶିଳ୍ପପତି ଓ କୃଷିପତି ନିଜର କାର୍ଯ୍ୟ ଚଳାଇବା ପାଇଁ ବ୍ୟାଙ୍କରୁ ଧନ ଧାର ଆଣନ୍ତି । ଏହା ବ୍ୟାଙ୍କରମାନଙ୍କ ପକ୍ଷରେ ଯେ କେବଳ ଲାଭଜନକ ତାହା ନୁହେଁ, କିନ୍ତୁ ଏଥିରେ କ୍ରମେ ଶିଳ୍ପ ଓ କୃଷି ଉପରେ ସେମାନଙ୍କର ଅଧିକାର ବୃଦ୍ଧିପାଏ । ଋଣ ଦେବାକୁ ଅସ୍ୱୀକାର କରି କିମ୍ବା ସଙ୍କଟକାଳରେ ଅର୍ଥ ଦାବୀ କରି ସେମାନେ ଋଣ ଗ୍ରହୀତାର ବେପାର ଓଲଟ ପାଲଟ କରି ଦେଇପାରନ୍ତି କିମ୍ବା ଯେ କୌଣସି ସର୍ତ୍ତରେ ରାଜିହେବାକୁ ତାକୁ ବାଧ୍ୟ କରିପାରନ୍ତି । ଏହି କଥା ଗୋଟିଏ ଦେଶ ଭିତରେ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସମାନ ପ୍ରଯୁଜ୍ୟ; କାରଣ ବଡ଼ କେନ୍ଦ୍ର ବ୍ୟାଙ୍କ ସବୁ ବିଭିନ୍ନ ଦେଶର ସରକାରମାନଙ୍କୁ ଧନ କରଜ ଦିଅନ୍ତି ଏବଂ ଏହିରୂପେ ସେଗୁଡ଼ିକ ଉପରେ ଚାପ ଆଣନ୍ତି । ଏହିପରି ଭାବରେ ନିଉୟର୍କର ବ୍ୟାଙ୍କରମାନେ କେନ୍ଦ୍ର ଓ ଦକ୍ଷିଣ ଆମେରିକାର ଅନେକ ସରକାରକୁ ଆୟତ୍ତରେ ରଖିପାରିଛନ୍ତି ।

ଏହିସବୁ ବଡ଼ ବ୍ୟାଙ୍କର ଆଉ ଏକ ଅପୂର୍ବ ଲକ୍ଷଣ ହେଉଛି ଯେ ଏହା ଭଲ ଓ ଖରାପ ଉଭୟ ବେଳେ ସମୃଦ୍ଧି ଲାଭ କରେ । ଭଲବେଳେ ସାଧାରଣ ବ୍ୟବସାୟର ସମୃଦ୍ଧି ହୁଏ ଏବଂ ଏମାନେ ତାଙ୍କ ଭାଗ ପାଆନ୍ତି, ଧନ ବୋହି ହୋଇ ଆସେ ଏବଂ ଲାଭଜନକ ହାରରେ ଏମାନେ ତାହା ଋଣ ଦିଅନ୍ତି । ଦୁର୍ଗତି ଓ ସଙ୍କଟ ପରି ଖରାପ ବେଳେ ଏମାନେ ଧନ ଜାକି ରଖନ୍ତି ଏବଂ ଏହାକୁ ବିପଦ ମୁଖରେ ପକାନ୍ତି ନାହିଁ (ଏବଂ ଏହିରୂପେ ଦୁର୍ଗତି ବଢ଼ାନ୍ତି କାରଣ ଧାର ବ୍ୟତିରେକେ ଅନେକ ବ୍ୟବସାୟ ଚଳିବା ମୁସ୍କିଲ ହୋଇପଡ଼େ) । କିନ୍ତୁ ସେମାନେ ଅନ୍ୟ ଭାବରେ ଲାଭ କରନ୍ତି । ଭୂମି କାରଖାନା ଇତ୍ୟାଦି ବହୁତ ଜିନିଷର ପତନ ହୁଏ ଏବଂ ଅନେକ ଶିଳ୍ପ ଦେବାଳିଆ ହୋଇଯାଏ । ତେଣୁ ବ୍ୟାଙ୍କ ପହଞ୍ଚି ଆସି ଶସ୍ତାରେ ସବୁ କିଣିନିଏ । ଏହି ଭାବରେ ସମୃଦ୍ଧି ଓ ଦୁର୍ଗତି ପରେ ପରେ ହେବାଦ୍ୱାରା ବ୍ୟାଙ୍କରମାନଙ୍କର ସ୍ୱାର୍ଥରକ୍ଷା ଘଟେ ।

ପ୍ରଚଳିତ ଘୋର ଦୁର୍ଗତିରେ ବଡ଼ ବଡ଼ ବ୍ୟାଙ୍କସବୁ ଭଲ ଭାବରେ ଚାଲୁଛନ୍ତି ଏବଂ ବହୁତ ଲାଭାଂଶ ଦେଉଛନ୍ତି । ଏହା ସତ୍ୟ ଯେ, ସଂଯୁକ୍ତ ରାଷ୍ଟ୍ରରେ ହଜାର ହଜାର ବ୍ୟାଙ୍କ ଏବଂ ଅଷ୍ଟ୍ରିଆ ଓ ଜର୍ମାନୀରେ କେତେକ ବଡ଼ ବ୍ୟାଙ୍କ ଫେଲ ମାରିଛି । ଆମେରିକାରେ ଯେଉଁସବୁ ବ୍ୟାଙ୍କ ଫେଲ ମାରିଛି ତାହା ସବୁ ଛୋଟ, ଆମେରିକାର ବ୍ୟାଙ୍କ ବ୍ୟବସ୍ଥା ଭୁଲ ଢଙ୍ଗରେ ଗଲାପରି ମନେହୁଏ । କିନ୍ତୁ ତା ହୋଇ ସୁଦ୍ଧା ନିଉୟର୍କର ବଡ଼ ବଡ଼ ବ୍ୟାଙ୍କ ଖୁବ୍ ଭଲ କାମ କରିଛି । ଇଂଲଣ୍ଡରେ କୌଣସି ବ୍ୟାଙ୍କ ଦେବାଳିଆ ହୋଇ ନାହିଁ ।

ଅତଏବ ଆଜକାଲିକା ପୁଞ୍ଜିବାଦୀ ଦୁନିଆରେ ବ୍ୟାଙ୍କରମାନେ ହିଁ ପ୍ରକୃତ ପ୍ରଭୁ ଏବଂ ଲୋକେ ଆମ ଅମଳକୁ ଏକ "ଆର୍ଥିକ ଯୁଗ" ବୋଲି କହନ୍ତି, ଏହା ଠିକ୍ ଶିଳ୍ପଯୁଗ ପରେ ଆସିଲା । ପାଶ୍ଚାତ୍ୟ ଦେଶ ମାନଙ୍କରେ ବିଶେଷତଃ ଆମେରିକାରେ ଲକ୍ଷପତି ଓ କୋଟିପତିସବୁ ଜାତ ହେଲେ; ଏଣୁ ଆମେରିକାକୁ କୋଟିପତି ରାଜ୍ୟ ବୋଲି କହନ୍ତି ଓ ଖୁବ୍ ପ୍ରଶଂସା କରନ୍ତି । କିନ୍ତୁ ପ୍ରତ୍ୟେକ ଦିନ ଏହା ସ୍ପଷ୍ଟଭାବରେ ପ୍ରମାଣିତ ହେଉଛି ଯେ ବଡ଼ ବଡ଼ ପୁଞ୍ଜିପତିମାନଙ୍କର ପନ୍ଥା ଅଧିକାଂଶ କୁତ୍ସିତ ଧରଣର ଏବଂ ସାଧାରଣତଃ ଡକାଏତି ଓ ଶଠତା ଭିତରେ ଏମାନଙ୍କର ପ୍ରଭେଦ ଏତିକି ଯେ ଏହା ବିସ୍ତୃତ ଆକାରରେ କରାଯାଉଛି । ପ୍ରକାଣ୍ଡ ଏକାଧିପତ୍ୟ ଅଧିକାର ଯୋଗୁଁ (ଠିକା) ସମସ୍ତ ଛୋଟ ଉଦ୍ୟମ ନଷ୍ଟ ହୋଇଯାଇଛି ଏବଂ ବଡ଼ ବଡ଼ ଆର୍ଥିକ ପ୍ରଚେଷ୍ଟାଦ୍ୱାରା ଦରିଦ୍ର ବିଶ୍ୱାସୀ ଲୋକଙ୍କୁ ଶୋଷଣ କରାଯାଇଛି, ଅଳ୍ପ ଲୋକେ ଏହା ବୁଝିପାରନ୍ତି । ଇଉରୋପ ଓ ଆମେରିକାର କେତେକ ବିଶାଳ ଧନପତି ଏବେ ପଦାରେ ପଡ଼ିଯାଇଛନ୍ତି ଏବଂ ଏହି ଦୃଶ୍ୟ କିଛି ଆମୋଦଜନକ ନୁହେଁ ।

ଆମେ ଦେଖିଲେ ଆମେରିକା ଓ ଇଂଲଣ୍ଡ ଭିତରେ ଆର୍ଥିକ ନେତୃତ୍ୱ ପାଇଁ ହୋଇଥିବା ସଂଗ୍ରାମରେ ଶେଷରେ କ୍ଷଣକ ଲାଗି ଲଣ୍ଡନ ନଗରୀର ବିଜୟ ହେଲା । କିନ୍ତୁ ଏ

ବିଜୟରେ କି ପୁରସ୍କାର ମିଳିଲା ? ପ୍ରାୟ ୧୨ବର୍ଷ ଧରି ଏହି ସଂଗ୍ରାମ ଚାଲିବାରୁ ଲାଭ କ୍ରମେ ଲୋପ ପାଇଗଲା । ଆନ୍ତର୍ଜାତିକ ବେପାରର ପତନ ହେବା ସଙ୍ଗେ ସଙ୍ଗେ ଆର୍ଥିକ ନେତୃତ୍ୱ ମିଳୁଥିବା ଲାଭ ବି କମିଗଲା । ଏକ୍‌ସଚେଞ୍ଜ ବିଲ୍ ସ୍ୱଳ୍ପ ବ୍ୟବହୃତ ହେଲା ଏବଂ ତାହା ସଙ୍ଗେ ସଙ୍ଗେ ସିକ୍ୟୁରିଟିର ମୂଲ୍ୟ କମିଗଲା ଏବଂ ନୂତନ ଅଂଶ ଓ ସିକ୍ୟୁରିଟି ପ୍ରାୟ ବାହାର କରାଗଲା ନାହିଁ । ତଥାପି ବିଶାଳ ସାଧାରଣ ଓ ବ୍ୟକ୍ତିଗତ ଋଣର ସୁଧ ପରିଶୋଧ ଅବିରତ ଲାଗିଥିଲା ଏବଂ ଖାତକ ରାଜ୍ୟମାନେ ଏହା ପରିଶୋଧ କରିବାରେ ଅତ୍ୟନ୍ତ ଅସୁବିଧା ଭୋଗ କଲେ । ଆନ୍ତର୍ଜାତିକ ନେଣଦେଣ ସକାଶେ ଅନ୍ୟ କିଛି ନ ଥିବାରୁ ସୁନାର ଚାହିଦା ବଢ଼ିଗଲା । କିନ୍ତୁ ଦରିଦ୍ର ଦେଶମାନଙ୍କରୁ ନିର୍ଦ୍ଦିଷ୍ଟ ମୁଦ୍ରା ପ୍ରଚଳିତ ହେଉଥିବା ଧନୀ ଦେଶ ଗୁଡ଼ିକୁ ସୁନାର ସୁଅ ଚାଲିଲା ।

କିନ୍ତୁ ସମସ୍ତ ସ୍ୱର୍ଣ୍ଣ ଓ ସମ୍ପଦର ସମଷ୍ଟି ଓ ଶ୍ରେଷ୍ଠ ଶିଳ୍ପ କୌଶଳ ମଧ୍ୟ ଦୁର୍ଗତି-ବେଳେ ଆମେରିକାକୁ କିଛି ବିଶେଷ ସାହାଯ୍ୟ କରିପାରିଲା ନାହିଁ । ଏକ ବିଶାଳ ସୌଭାଗ୍ୟ-ଶାଳୀ ଦେଶ ହିସାବରେ ଦୂରଦୂରାନ୍ତରୁ ଯେଉଁଠିକି ନରନାରୀ ଆକୃଷ୍ଟ ହୋଇ ଧାଉଁଥିଲେ ତାହା ଏକ ହତାଶ ଭୂମି ହୋଇଗଲା । ଯେଉଁ ବଡ଼ ବ୍ୟବସାୟସବୁ ଦେଶକୁ ଶାସନ କରୁଥିଲା ତାହା ସମ୍ପୂର୍ଣ୍ଣରୂପେ ଦୂଷିତ ବୋଲି ଦେଖାଗଲା ଏବଂ ଅର୍ଥ ଓ ଶିଳ୍ପର ନେତୃ-ମଣ୍ଡଳୀରେ ଲୋକଙ୍କର ବିଶ୍ୱାସ ତୁଟିଗଲା । ବଡ଼ ବ୍ୟବସାୟର ବନ୍ଧୁ ସଭାପତି ହୁଭର ଅତ୍ୟନ୍ତ ଅପ୍ରିୟ ହୋଇଉଠିଲେ ଏବଂ ୧୯୩୨ ନଭେମ୍ବରରେ ହୋଇଥିବା ସଭାପତି ନିର୍ବାଚନରେ ଫ୍ରାଙ୍କଲିନ ରୁଜଭେଲ୍‌ଟଙ୍କ ଦ୍ୱାରା ସେ ପରାସ୍ତ ହୋଇଗଲେ ।

ମାର୍ଚ୍ଚ ୧୯୩୩ ପ୍ରଥମ ଭାଗରେ ଆମେରିକାରେ ଆଉ ଏକ ବ୍ୟାଙ୍କ ସଙ୍କଟ ପଡ଼ିଲା । ଆମେରିକାର ଅନ୍ୟ ଦେଶ ଅପେକ୍ଷା ଅଧିକ ସୁନା ଥିଲେ ସୁଦ୍ଧା ଏହା ଫଳରେ ସଂଯୁକ୍ତ ରାଷ୍ଟ୍ରକୁ ସ୍ୱର୍ଣ୍ଣ ଷ୍ଟାଣ୍ଡାର୍ଡ଼ ଛାଡ଼ିବାକୁ ପଡ଼ିଲା ଏବଂ ଡଲାରର ମୂଲ୍ୟ ପତନ ହେଲା । ଏହାର ଉଦ୍ଦେଶ୍ୟ ହେଲା ଶିଳ୍ପ ଓ କୃଷିଠାରୁ ବୋଝ କମାଇ ଦେବା ଏବଂ ବ୍ୟାଙ୍କ ଓ ଧାରଦାତାଙ୍କର ମୂଲ୍ୟରେ ଖାତକଙ୍କୁ ସାହାଯ୍ୟ ଦେବା । ଭାରତୀୟ ଲୋକଙ୍କର ସମ୍ମିଳିତ ବିରୋଧ ସତ୍ତ୍ୱେ ବ୍ରିଟିଶ ସରକାର ଭାରତରେ ଠିକ୍ ଏହାର ବିପରୀତ କାମ କରିଛନ୍ତି ।

୧୯୩୩ ଜୁନରେ ପୁଞ୍ଜିବାଦୀ ଦୁନିଆଁକୁ ଯେଉଁସବୁ ସମସ୍ୟା ଗ୍ରାସ କରିଥିଲା ତାହା ସମାଧାନ କରିବା ନିମନ୍ତେ ଏକକ ସହଯୋଗ ପାଇଁ ଆଉ ଏକ ଉଦ୍ୟମ ହେଲା । ଏକ ବିଶ୍ୱ ଅର୍ଥନୈତିକ ସମ୍ମିଳନୀ ଲଣ୍ଡନରେ ଡକାଗଲା ଏବଂ ପ୍ରତିନିଧିମାନେ "ଆତଙ୍କଗ୍ରସ୍ତ ଦୁନିଆ" କଥା ଉଠାଇଲେ ଏବଂ ସତର୍କବାଣୀ ଶୁଣାଇଲେ ଯେ, "ଯଦି ସମ୍ମିଳନୀ ବିଫଳ ହୁଏ ତାହା ହେଲେ ସମଗ୍ର ପୁଞ୍ଜିବାଦୀ ଗଠନ ଧ୍ୱଂସ ପାଇଯିବ" କିନ୍ତୁ ଏସବୁ ସତର୍କବାଣୀ ସତ୍ତ୍ୱେ ପ୍ରଧାନ ଶକ୍ତିମାନେ ସହଯୋଗ କରିପାରିଲେ ନାହିଁ ଏବଂ ପ୍ରତ୍ୟେକେ ନିଜ ସୁବିଧା ବାଟକୁ ଧରି ବସିଲେ । ସମ୍ମିଳନୀ ବ୍ୟର୍ଥ ହେଲା ଏବଂ ପ୍ରତ୍ୟେକ ଦେଶ ନିଜର ଅର୍ଥନୀତିକ ଜାତୀୟତା-ବାଦ ନୀତି ଅନୁସରଣ କରିବାକୁ ଲାଗିଲେ ।

ଇଂଲଣ୍ଡ ପକ୍ଷରେ ଆତ୍ମନିର୍ଭରଶୀଳ ହେବା ଅସମ୍ଭବ; କାରଣ ସେଠାରେ ଯଥେଷ୍ଟ ଖାଦ୍ୟ ଉତ୍ପନ୍ନ ହୁଏ ନାହିଁ ଏବଂ ତାହାର ଶିଳ୍ପ ପକାଶେ କଞ୍ଚାମାଲ ବିଦେଶରୁ ଆସୁଥିଲା । ତେଣୁ ବ୍ରିଟିଶ ସରକାର ସାମ୍ରାଜ୍ୟ ଭିତରେ ତା'ର ଅର୍ଥନୈତିକ ଜାତୀୟବାଦକୁ ବୃଦ୍ଧି କରିବାକୁ ଲାଗିଲା, ପାଉଣ୍ଡ ନୋଟର ମୂଲ୍ୟ ନିରୂପଣ କରି ବ୍ରିଟିଶ ସାମ୍ରାଜ୍ୟକୁ ଏକ ଅର୍ଥନୈତିକ ଅଙ୍ଗ କରିବା ନିମନ୍ତେ ଚେଷ୍ଟା କଲା । ଏହି ଉଦ୍ଦେଶ୍ୟରେ ୧୯୩୨ରେ ଅଟୋଆଠାରେ ଏକ ବ୍ରିଟିଶ ସାମ୍ରାଜ୍ୟ ସମ୍ମିଳନୀ ହେଲା । କିନ୍ତୁ ସେଠାରେ ମଧ୍ୟ ନାନା ଅସୁବିଧା ଉଠିଲା । କାରଣ କାନାଡ଼ା, ଅଷ୍ଟ୍ରେଲିଆ ଓ ଦକ୍ଷିଣ ଆଫ୍ରିକା ଇଂଲଣ୍ଡର ମଙ୍ଗଳ ନିମନ୍ତେ ସବୁ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହେଲେ ନାହିଁ । ଇଂଲଣ୍ଡକୁ ହିଁ ସେମାନଙ୍କର ଦାବୀ ସ୍ୱୀକାର କରିବାକୁ ପଡ଼ିଲା । ଭାରତରେ ଏହା ବିରୁଦ୍ଧରେ ପ୍ରବଳ ଲୋକମତ ଥିଲେ ସୁଦ୍ଧା ବିଲାତିମାନଙ୍କୁ ଅଧିକ ସୁବିଧାଜନକ ବ୍ୟବହାର ଦେବା ନିମନ୍ତେ ସରକାରୀ ଭାବରେ ଭାରତକୁ ରାଜିହେବାକୁ ପଡ଼ିଲା । ପରବର୍ତ୍ତୀ ଘଟଣାମାନଙ୍କରେ ଦେଖାଯାଇଛି ଯେ, ଅଟୋଆ ଚୁକ୍ତି ସଫଳୀକୃତ ହୋଇ ନାହିଁ ଏବଂ ଏହି ବିଷୟ ଯେପରି ଡୋମିନିଅନ ଓ ଇଂଲଣ୍ଡ, ଭାରତ ଓ ଇଂଲଣ୍ଡ ମଧ୍ୟରେ ବହୁ ବିବାଦ ଲାଗିଛି ।

ଇତ୍ୟବସରେ ସାମ୍ରାଜ୍ୟ ଶିଳ୍ପ ଓ ବଜାରରେ ଆଉ ଏକ ନୂତନ ଆତଙ୍କ ଜାତ ହେଲା । ପ୍ରତ୍ୟେକ ସ୍ଥାନରେ ଶସ୍ତା ଜାପାନୀ ଜିନିଷର ବନ୍ୟା ମାଡ଼ିଆସିଲା ଏବଂ ସେଗୁଡ଼ିକ ଏତେ ପରିମାଣରେ ଶସ୍ତା ଥିଲା ଯେ, ଶୁଳ୍କଦ୍ୱାରା ବି ତାହାର ପ୍ରବେଶ ବନ୍ଦ କରାଯାଇପାରୁ ନ ଥିଲା । ୟେନ୍ (Yen)ର ପତନ ଯୋଗୁଁ ଏବଂ ଜାପାନର କାରଖାନାର ବାଳିକା ଶ୍ରମିକମାନଙ୍କୁ ଅଳ୍ପ ମଜୁରି ଦେଉଥିବା ହେତୁ ଏହିସବୁ ଜିନିଷ ଶସ୍ତା ହୋଇପାରୁଥିଲା । ସରକାରୀ ଅର୍ଥ ସାହାଯ୍ୟଦ୍ୱାରା ମଧ୍ୟ ଜାପାନୀ ଶିଳ୍ପକୁ ସାହାଯ୍ୟ କରାଯାଉଥିଲା ଓ ଜାପାନୀ ଜାହାଜ କମ୍ପାନୀସବୁ ଅତି ନିମ୍ନ ଭଡ଼ା ଦାବୀ କରୁଥିଲେ । ଏହା ମଧ୍ୟ ସତ୍ୟ ଯେ, ଜାପାନୀ ଶିଳ୍ପ ଖୁବ୍ ନିପୁଣ, ପୁରାତନ ବ୍ରିଟିଶ ଶିଳ୍ପ ବି ସେପରି ନ ଥିଲା ।

ଶୁଳ୍କଦ୍ୱାରା ଜାପାନୀ ମାଲ ବନ୍ଦ କରିବାରେ ସମର୍ଥ ନ ହେବାରୁ ବଜାରସବୁ ତାହା ଲାଗି ନିର୍ଦ୍ଦିଷ୍ଟ ଭାବରେ ବନ୍ଦ କରି ଦିଆଗଲା ଅଥବା ଏକ ନିର୍ଦ୍ଦିଷ୍ଟ ଅଂଶ ପ୍ରଥା (Qaota system) ପ୍ରଚଳନ କରାଗଲା, ଏଥିରେ ନିର୍ଦ୍ଦିଷ୍ଟ ପରିମାଣରେ ମାଲ ଆସିବା ଲାଗି ଅନୁମତି ଦିଆଯାଉଥିଲା । ଜାପାନୀ ମାଲ ସବୁ ଯଦି ଏପରି ଭାବରେ ଅନ୍ୟ ଦେଶରୁ ବନ୍ଦ କରି ଦିଆଯାଏ, ତାହାହେଲେ ଜାପାନର ଶିଳ୍ପ ଦଶା କ'ଣ ହେବ ? ତାର ସମସ୍ତ ଅର୍ଥନୈତିକ ବ୍ୟବସ୍ଥା ଭୁସୁଡ଼ି ପଡ଼ିବ ଏବଂ ଏହାର ଉପାୟ ବାହାର କରିବା ପ୍ରଚେଷ୍ଟା ଫଳରେ ଅର୍ଥନୈତିକ ପ୍ରତିଦ୍ୱନ୍ଦ୍ୱିତା ଏବଂ ଏପରି କି ଯୁଦ୍ଧ ବି ହୋଇପାରେ । ପୁଞ୍ଜିବାଦର ଅଯଥା ପ୍ରତିଯୋଗିତା ଫଳରେ ଘଟଣାର ଏପରି ଅନିବାର୍ଯ୍ୟ ଗତି ହୁଏ ।

ସେହିପରି ଭାବରେ ଯଦି ଇଉରୋପର ଅନ୍ୟ ଦେଶ ପାଇଁ ବ୍ରିଟିଶ ବଜାର ବନ୍ଦ

କରି ଦିଆଯାଏ ତେବେ ସେ ଦେଶଗୁଡ଼ିକ ଧ୍ୱଂସ ହୋଇଯିବ । ଆମେ ଦେଖିଲେ ଯେ ପ୍ରତ୍ୟେକ ଦେଶ ନିଜର ଆଶୁ ମଙ୍ଗଳ ନିମନ୍ତେ ଯେଉଁ ପନ୍ଥା ଅନୁସରଣ କଲେ, ତଦ୍ୱାରା ଅନ୍ୟ ଦେଶ ଓ ଆନ୍ତର୍ଜାତିକ ବାଣିଜ୍ୟ ଆଘାତ ପାଇଲା ଓ ଫଳସ୍ୱରୂପ ବିବାଦ ଏବଂ ଗୋଳମାଳ ଲାଗିଲା ।

## ୧୮୯ : ସ୍ପେନ୍‌ରେ ବିପ୍ଳବ

ଜୁଲାଇ ୨୯, ୧୯୩୩

ମୁଁ ଏବେ ବାଣିଜ୍ୟ ଦୁର୍ଗତି ଓ ସଙ୍କଟର ଦୀର୍ଘ ଏବଂ ଅବସାଦମୟ ବିବରଣୀରୁ ଅନ୍ୟଆଡ଼କୁ ଯିବି ଓ ଏବକାଳର ଦୁଇଟି ଉଲ୍ଲେଖଯୋଗ୍ୟ ଘଟନା କଥା ତତେ କହିବି । ଏହି ଦୁଇଟି ଘଟନା ହେଉଛି ସ୍ପେନରେ ବିପ୍ଳବ ଏବଂ ଜର୍ମାନୀରେ ନାଜୀର ବିଜୟ ।

ସ୍ପେନ ଓ ପର୍ତ୍ତୁଗାଲ ଇଉରୋପର ଦକ୍ଷିଣ ପଶ୍ଚିମ କୋଣରେ ଏବଂ ଆମେ ଦେଖିବେ ଇଉରୋପ ଓ ପୃଥିବୀର ଇତିହାସରେ ଏଗୁଡ଼ିକ ପ୍ରଧାନ ଭାଗ ନେଇ ଅଛନ୍ତି । ସାମ୍ରାଜ୍ୟ ଗଢ଼ିବା ମାନସରେ ଏଗୁଡ଼ିକ ନିଜର ଶ୍ରେଷ୍ଠତ୍ୱ କରୁଥିଲେ ଏବଂ ଊନବିଂଶ ଶତାବ୍ଦୀରେ ଯେତେବେଳେ ଶିଳ୍ପ ଓ ଅନ୍ୟ କ୍ଷେତ୍ରରେ ପଶ୍ଚିମ ଇଉରୋପର ପ୍ରଚଣ୍ଡ ହେଉଥିଲା ସେତେବେଳେ ଏଗୁଡ଼ିକ ଅନୁନ୍ନତ ଓ ପୁରୋହିତ ପ୍ରଧାନ ହୋଇ ରହିଲା । ଜାତୀୟବାଦୀ ସ୍ପେନ ନେପୋଲିଅନ ସହିତ ଯୁଦ୍ଧ କରି ବିଜୟୀ ହୋଇଥିଲା କିନ୍ତୁ ଫରାସୀ ବିପ୍ଳବଦ୍ୱାରା ଯେଉଁ ଭାବଧାରା ଖେଳିଯାଇଥିଲା ସେଥିରୁ ଏହା କିଛି ଶିକ୍ଷା କରି ନ ଥିଲା । ଫ୍ରାନସ ତାହାର ସାମନ୍ତବାଦ ତ୍ୟାଗ କଲା ଏବଂ ଭୂମି ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ପରିବର୍ତ୍ତନ କରିଥିଲା ବେଳେ ସ୍ପେନ ଅର୍ଦ୍ଧସାମନ୍ତ ରାଜ୍ୟ ହୋଇ ରହିଲା, ଏହାର ସାମନ୍ତମାନେ ବିଶାଳ ଇଲାକା ଓ ସମସ୍ତ ପ୍ରକାର ବିଶେଷାଧିକାର ଭୋଗ କରୁଥିଲେ । ସେମାନେ କ୍ୟାଥଲିକ ଗୀର୍ଜା ଖାଲି ଧର୍ମକ୍ଷେତ୍ରରେ ନୁହେଁ, ଭୂମି ବାଣିଜ୍ୟ ଏବଂ ଶିକ୍ଷାରେ ବି ପ୍ରାଧାନ୍ୟ ଲାଭ କରିଥିଲା । ଗୀର୍ଜା ହିଁ ବୃହତ୍ତ ଭୂସ୍ୱାମୀ ଥିଲା ଏବଂ ବିସ୍ତୃତ ଆକାରରେ ବାଣିଜ୍ୟ କରୁଥିଲା । ଶିକ୍ଷା ସମ୍ପୂର୍ଣ୍ଣ ଭାବରେ ଏହାର ଆୟତ୍ତାଧୀନରେ ରହିଥିଲା ।

ସେନା କର୍ମଚାରୀମାନେ ତ ଏକ ବିଶେଷ ସୁବିଧାଭୋଗୀ ଜାତିରୂପେ ରହିଥିଲେ । ଅନ୍ୟ ବିଭାଗ ଅପେକ୍ଷା କର୍ମଚାରୀଙ୍କ ସଂଖ୍ୟା ବେଶୀ ଥିଲା; ସାତ ଜଣରେ ଜଣେ, ଶିକ୍ଷିତ ସମ୍ପ୍ରଦାୟଙ୍କ ମଧ୍ୟରେ ପ୍ରଗତିପନ୍ଥୀ ଓ ଉଦାରମନା ଲୋକ ବି ଥିଲେ; ଏବଂ ଶ୍ରମିକଆନ୍ଦୋଳନ

ବୃଦ୍ଧି ପାଉଥିଲା; ଏଥିରେ ସିଣ୍ଡିକାଲିଷ୍ଟ, ସୋସାଲିଷ୍ଟ ଓ ଆନାର୍କିଷ୍ଟ ଥିଲେ । କିନ୍ତୁ ପ୍ରକୃତ କ୍ଷମତା ଗିର୍ଜା, ସୈନ୍ୟ ସାମନ୍ତମାନଙ୍କ ହାତରେ ରହିଥିଲା । ଉତ୍ତରରେ କାଟାଲୋନିଆସ୍ଥିତ ଓ ବାସ୍କ ରାଜ୍ୟରେ ସ୍ୱାୟତ୍ତ ଶାସନ ଲାଗି ଶକ୍ତିଶାଳୀ ଆନ୍ଦୋଳନ ହୋଇଥିଲା ।

ଉଭୟ ସ୍ପେନ ଓ ପର୍ତ୍ତୁଗାଲ ସରକାରରେ ଅନେକ ଅଧିକେ ଏକଚ୍ଛତ୍ର ରାଜସତ୍ତା ଥିଲା ଏବଂ ଏଠାରେ ଶକ୍ତିହୀନ ବ୍ୟବସ୍ଥା ପରିଷଦ ରହିଥିଲା । ସ୍ପେନରେ ଏହି ଆସେମ୍ବ୍ଲିକୁ "କୋର୍ଟେସ" (Coites) କୁହାଯାଏ । ଊନବିଂଶ ଶତାବ୍ଦୀର ୧୮୭୦ ଆରମ୍ଭ ବେଳକୁ କ୍ଷଣକାଳ ନିମନ୍ତେ ସ୍ପେନରେ ଏକ ପ୍ରଜାତନ୍ତ୍ର ଥିଲା କିନ୍ତୁ ଏହା ସଫଳ ହୋଇ ନ ଥିଲା ଏବଂ ପୁନର୍ବାର ପୂର୍ବର ଏକଚ୍ଛତ୍ର କ୍ଷମତା ଧାରଣ କରି ରାଜା ଫେରି ଆସିଲେ । ୧୮୯୮ରେ ସଂଯୁକ୍ତ ରାଷ୍ଟ୍ର ଆମେରିକା ସହିତ ହୋଇଥିବା ସ୍ପେନ ଯୁଦ୍ଧରେ ସ୍ପେନ ପ୍ରାୟ ତାର ସମସ୍ତ ଉପନିବେଶ ହରାଇଲା । ତାର ସମସ୍ତ ଔପନିବେଶିକ ରାଜ୍ୟ ତତ୍‌ସଂଲଗ୍ନ ମରୋକକୋର ଏକ ଅଂଶ ମାତ୍ର ଥିଲା ।

ପର୍ତ୍ତୁଗାଲର ଭାରତରେ ଗୋଆ ପରି କ୍ଷୁଦ୍ର ଅଞ୍ଚଳ ବ୍ୟତୀତ ଆଫ୍ରିକାରେ ଏବେ ସୁଦ୍ଧା ବିଶାଳ ଉପନିବେଶ ରହିଛି । ୧୯୧୦ରେ ରାଜା ରାଜ୍ୟଚ୍ୟୁତ ହେଲା ଏବଂ ପର୍ତ୍ତୁଗାଲରେ ଏକ ପ୍ରଜାତନ୍ତ୍ର ସ୍ଥାପିତ ହେଲା । ସେହିଦିନଠାରୁ ସେଠାରେ ଅନେକ ବିଦ୍ରୋହ ହୋଇଛି; ରାଜସତ୍ତାବାଦୀମାନେ (Royalist) ରାଜାକୁ ଫେରାଇ ଆଣିବା ପାଇଁ ଉଦ୍ୟମ କରୁଛନ୍ତି ଏବଂ ବାମପନ୍ଥୀମାନେ ଡିକଟେଟର ଓ ପ୍ରତିକ୍ରିୟାଶୀଳ ସରକାର ଲୋପ କରିବା ନିମନ୍ତେ ଚେଷ୍ଟା କରୁଛନ୍ତି । ଯାହାହେଉ କୌଣସି ନା କୌଣସି ରୂପରେ ପ୍ରଜା-ତନ୍ତ୍ର ସେଠାରେ ଚାଲିଛି ଏବଂ ସାଧାରଣତଃ ଏକ ସାମରିକ ଦଳ ଏଥିରେ ପ୍ରାଧାନ୍ୟ କରୁଛନ୍ତି । ମହାସମରରେ ଏହା ମିତ୍ରପକ୍ଷରେ ଯୋଗଦାନ କରିଥିଲା ଏବଂ ଏଥିଯୋଗୁଁ ଦାରୁଣ ଋଣଭାର ବଢ଼ିଲା, ଫଳସ୍ୱରୂପ ଦେବାଳିଆ ଅବସ୍ଥା ପହଞ୍ଚିଲା । ବର୍ତ୍ତମାନ ଶାସନ ଅତ୍ୟନ୍ତ ପ୍ରତିକ୍ରିୟାପନ୍ଥୀ ଓ ଫାସିଷ୍ଟ ଭାବାପନ୍ନ । ଗୋଆରେ ପ୍ରତ୍ୟେକ ପ୍ରକାର ସାଧାରଣ କାର୍ଯ୍ୟ ଦମନ କରାଯାଏ ଏବଂ ସେଠାରେ ନାଗରିକ ସ୍ୱାଧୀନତା ଆଦୌ ନାହିଁ ।

ମହାସମରରେ ସ୍ପେନ ନିରପେକ୍ଷ ରହିଲା ଏବଂ ସେଥିରେ ଫାଇଦା ଉଠାଇଲା । ଯୁଦ୍ଧରତ ଦେଶଗୁଡ଼ିକୁ ତାହା ମାଲ ଯୋଗାଇଲା ଏବଂ ଶିଳ୍ପୋଦ୍ୟୋଗ ବିସ୍ତାର ଲଭିଲା । ଯୁଦ୍ଧୋତ୍ତର ବର୍ଷରେ ମାନ୍ଦା ଅବସ୍ଥା ପଡ଼ିଲା ଏବଂ ବେକାର ଓ ସାମାଜିକ ଅଶାନ୍ତି ଦେଖାଦେଲା । ସେହି ସମୟକୁ ୧୯୨୧ରେ ମରୋକକୋରେ ରିଫ ଯୁଦ୍ଧ ହେଲା—ସେଥିରେ ଅବଦେଲ କ୍ରିମ ପୂର୍ଣ୍ଣଭାବରେ ସ୍ପେନ ସୈନ୍ୟଙ୍କୁ ପରାସ୍ତ କଲା । କିନ୍ତୁ ଫରାସୀ ପରେ ଆସିଲେ, ଅବଦେଲ କ୍ରିମକୁ ଅଭିଭୂତ କରି ପକାଇଲେ ଏବଂ ସ୍ପାନିସମରୋକ୍‌କୋ ସ୍ପେନ୍‌ର ହୋଇ ରହିଲା । ମରୋକ୍‌କୋ ଯୁଦ୍ଧ ବେଳେ ପ୍ରିମୋ ଡି ରିଭେରା ବାହାରିଲେ ଏବଂ ଶାସନ ଖସଡ଼ା ସ୍ଥଗିତ କରି ଦେଇ ୧୯୨୩ରେ ଡିକ୍‌ଟେଟର ହେଲେ । ସେ ଛଅବର୍ଷ

ପର୍ଯ୍ୟନ୍ତ ରାଜୁତି କଲେ କିନ୍ତୁ କ୍ରମେ ସେ ସେନାର ବିଶ୍ୱାସ ହରାଇଲେ ଏବଂ ଏକ ଆର୍ଥିକ ସଙ୍କଟ ପରେ ୧୯୬୯ରେ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଲା । ଏଥିଭିତରେ ସବୁ ସମୟରେ ରାଜା ଆଲ୍‌ଫାନ୍‌ସୋ ସେଠି ଥିଲେ, ପ୍ରତିକ୍ରିୟା ଦଳଗୁଡ଼ିକୁ ସମର୍ଥନ କରୁଥାଆନ୍ତି ଏବଂ ନିଜର ସ୍ଥାନ ଦୃଢ଼ କରିବା ନିମନ୍ତେ ଚେଷ୍ଟା କରୁଥାନ୍ତି ।

ସ୍ପେନ ଲୋକେ ତୀବ୍ର ବ୍ୟକ୍ତିବାଦୀ ଏବଂ ଅଗ୍ରଗାମୀ ଦଳସବୁ ବି ପ୍ରାୟ ପରସ୍ପର ସହିତ କଳହ ଲଗାଇଛନ୍ତି । ବାକୁନିନଙ୍କ କାଳରୁ ନୂତନ ଶ୍ରମିକ ଶ୍ରେଣୀ ନୈରାଜ୍ୟବାଦ ଦର୍ଶନରେ ପ୍ରଭାବିତ ହୋଇଛି ଏବଂ ବ୍ରିଟିଶ ବା ଜର୍ମାନୀ ଢ଼ଙ୍ଗର ଟ୍ରେଡ୍ ଇଉନିୟନ ଲୋକପ୍ରିୟ ହୋଇ ନାହିଁ । ନୈରାଜ୍ୟବାଦୀ-ସିଣ୍ଡିକାଲିଷ୍ଟ ବିଶେଷ ଭାବରେ କାଟା-ଲୋନିଆରେ ଗୋଟିଏ ବଳିଷ୍ଠ ଦଳ ହୋଇଥିଲା । ଆଉ ସବୁ ଅଗ୍ରଗାମୀ ଦଳ ହେଉଛନ୍ତି ଉଦାରନୀତିକ-ଗଣତନ୍ତ୍ରବାଦୀ, ସୋସିଆଲିଷ୍ଟ ଏବଂ ଏକ ଛୋଟ ଅଥଚ ବୃଦ୍ଧି ପାଉଥିବା କମ୍ୟୁନିଷ୍ଟ ପାର୍ଟି । ଏହିସବୁ ଦଳ ପ୍ରଜାତନ୍ତ୍ର ଦାବୀ କରୁଥିଲେ । ପ୍ରିମୋ ଡ଼ି ରିଭେରାଙ୍କ ଡ଼ିକ୍‌ଟେଟରୀ ଶାସନର ଅଭିଜ୍ଞତାରୁ ଏହି ପ୍ରଜାତନ୍ତ୍ରବାଦୀ ଦଳସବୁ ମିଳିତ ହେଲେ ଏବଂ ସେମାନେ ପରସ୍ପର ଭିତରେ ସହଯୋଗ କରିବାକୁ ଲାଗିଲେ ।

୧୯୩୧ ମ୍ୟୁନିସିପାଲ ନିର୍ବାଚନରେ ସେମାନେ ସଫଳତା ଲାଭ କଲେ, ଏଥିରେ ପ୍ରଜାତନ୍ତ୍ର ଦଳର ଅପୂର୍ବ ବିଜୟ ହେଲା । ରାଜାକୁ ଭୀତ କରିବା ଲାଗି ଏହା ଯଥେଷ୍ଟ ଥିଲା (ରାଜା ବୋର୍ବୋଁ ଓ ହାପସ୍ ବର୍ଗ ଉଭୟ ଥିଲା) ଏବଂ ସେ ତରତର ହୋଇ ଦେଶ ଛାଡ଼ି ଚାଲି ଆସିଲା । ଗୋଟିଏ ପ୍ରଜାତନ୍ତ୍ର ଘୋଷିତ ହେଲା ଏବଂ ୧୯୩୧ ଏପ୍ରିଲ ତା୧୪ରିଖରେ ଏକ ଅସ୍ଥାୟୀ ସରକାର ସ୍ଥାପିତ ହେଲା । ଏହି ବିପ୍ଳବ ଶାନ୍ତିପୂର୍ଣ୍ଣ ହୋଇଥିଲା ।

୧୯୧୭ ମାର୍ଚ୍ଚ ମାସର ପ୍ରଥମ ରୁଷ ବିପ୍ଳବ ସହିତ ସ୍ପେନ ବିପ୍ଳବର ଅପୂର୍ବ ସାମଞ୍ଜସ୍ୟ ରହିଛି । ରୁଷର ଜାର ଶାସନ ପରି ପୁରାତନ ରାଜସଭା ଗଠନ ପୂର୍ଣ୍ଣ ଭାବରେ ଦୂଷିତ ହୋଇ ଯାଇଥିଲା ଏବଂ ବିରୋଧୀମାନଙ୍କର ସମ୍ମୁଖୀନ ହେବାକୁ ଚେଷ୍ଟା ସୁଦ୍ଧା ନ କରି ଏହା ଭାଙ୍ଗି ପଡ଼ିଲା । ଉଭୟ କ୍ଷେତ୍ରରେ ସାମନ୍ତବାଦ ଲୋପ କରିବା ପାଇଁ ଏବଂ ଭୂପ୍ରଥା ପରିବର୍ତ୍ତନ ନିମିତ୍ତ ବିପ୍ଳବ ପାଇଁ ଏକ ବିଳମ୍ବକୃତ ପ୍ରଚେଷ୍ଟା ହୋଇଥିଲା, ଦାରିଦ୍ର୍ୟ-କ୍ଲିଷ୍ଟ କୃଷକ-ମାନଙ୍କଠାରୁହିଁ ପ୍ରଧାନ ଚାପ ଆସିଥିଲା । ସ୍ପେନରେ ରୁଷ ଅପେକ୍ଷା ଅଧିକ ଭାବରେ ଗିର୍ଜାର କ୍ଷମତା ଏକ ଦାରୁଣ ବୋଝ ବୋଲି ଅନୁଭବ କରାଗଲା । ଦୁଇଟିଯାକ ବିପ୍ଳବ ଅନିଶ୍ଚିତ ଅବସ୍ଥା ଜାତକଲା-ବିଭିନ୍ନ ଶ୍ରେଣୀ ବିଭିନ୍ନ ଦିଗକୁ ଟାଣୁ ଥାଆନ୍ତି । ଉଭୟ ଦକ୍ଷିଣ ଓ ଚରମ-ବାମପନ୍ଥୀଙ୍କ ତରଫରୁ ବରାବର ବିଦ୍ରୋହ ହେଉଥିଲା । ରୁଷରେ ଏହି ଅନିଶ୍ଚୟତା ଫଳରେ ନଭେମ୍ବର ବିପ୍ଳବ ହେଲା; ସ୍ପେନରେ ଏହା ଏବେ ସୁଦ୍ଧା ରହିଛି ।

ନୂତନ ସ୍ପେନ ଶାସନ ଖସଡ଼ାରେ କେତେକ ସୁନ୍ଦର ଲକ୍ଷଣ ରହିଛି । ସେଠାରେ କେବଳ ଗୋଟିଏ ବ୍ୟବସ୍ଥା-ସଭା, କୋର୍ଟ ରହିଛି ଏବଂ ସାବାଳକ ଭୋଟାଧିକାର

ରହିଛି । ଆଉ ଏକ ବିଚିତ୍ର କଥା ହେଉଛି ଲିଗ୍ ଅଫ ନେସନ୍‌ସର ମଞ୍ଜୁରି ବିନା ସର୍ବସାଧାରଣଙ୍କୁ ଯୁଦ୍ଧ ଘୋଷଣା କରିବା ନିମନ୍ତେ ନିଷେଧ କରାଯାଇଛି । ଲିଗ୍ ଅଫ୍ ନେସନସ୍‌ରେ ହୋଇଥିବା ସମସ୍ତ ଆନ୍ତର୍ଜାତିକ ଚୁକ୍ତି ଆଦି ସ୍ପେନ ଗ୍ରହଣ କରି ତାହା ସାଙ୍ଗେ ସାଙ୍ଗେ ଆଇନରେ ପରିଣତ କରି ଦିଆଯାଇଛି ଏବଂ ଏପରିକି ଯେଉଁ ସବୁ ଆଇନର ଏଥି ସହିତ ସଂଘର୍ଷ ହୁଏ, ତାହା ବନ୍ଦ କରି ଦିଆଯାଏ ।

ନୂତନ ପ୍ରଜାତନ୍ତ୍ର ସରକାର ସାମ୍ୟବାଦ ଭାବାପନ୍ନ ଏକ ବାମ-ଉଦାରନୈତିକ-ଗଣତନ୍ତ୍ର ବୋଲି ବୁଝାଯାଏ । ସରକାରର ପ୍ରଧାନ ମନ୍ତ୍ରୀ ଓ ବଳବାନ ଲୋକ ଥିଲେ ମାନୁଏଲ ଆଜନା । ଏହି ସରକାରକୁ ତତ୍‌କ୍ଷଣାତ୍ ଭୂମି, ଗିର୍ଜା ଓ ସେନା ଏହିପରି କଷ୍ଟକର ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଲା । ଏହିସବୁ ସମ୍ବନ୍ଧରେ କୋର୍ଟରେ ସୁଦୂରଗାମୀ ଆଇନ ସବୁ ପାସ ହେଲା, କିନ୍ତୁ କାର୍ଯ୍ୟତଃ ବିଶେଷ କିଛି କରାଗଲା ନାହିଁ । ଏହିରୂପେ ଆଇନରେ ବ୍ୟବସ୍ଥା ହେଲା ଯେକୌଣସି ବ୍ୟକ୍ତି ବା ପରିବାର ୨୫ ଏକରରୁ ଅଧିକ ଜଳସେଚିତ ହେଉଥିବା ଭୂମି ରଖିପାରିବ ନାହିଁ ଏବଂ ଏହା ମଧ୍ୟ ଯେ ପର୍ଯ୍ୟନ୍ତ କୃଷି ଅବସ୍ଥାରେ ଥିବ, ସେପର୍ଯ୍ୟନ୍ତ ରଖି ପାରିବେ । ଯାହା ହେଉ କାର୍ଯ୍ୟତଃ ବଡ଼ ବଡ଼ ଇଲାକାମାନ ରହିଲା କେବଳ ରାଜା ଓ କେତେକ ବିଦ୍ରୋହୀଙ୍କ ସମ୍ପତ୍ତି ବ୍ୟାଜ୍ୟାପ୍ତ ହେଲା ।

କୋର୍ଟ ଗିର୍ଜା ସମ୍ପତ୍ତିକୁ ଜାତୀୟକରଣ କଲେ, କିନ୍ତୁ ଏହା ବି କାର୍ଯ୍ୟକାରୀ କରାଗଲା ନାହିଁ । ଶିକ୍ଷା ବିଷୟରେ ଗିର୍ଜାରେ କେତେକ କଟକଣା ଛଡ଼ା, ଏହାର ସ୍ୱାଧୀନତାରେ ହସ୍ତକ୍ଷେପ କରାଗଲା ନାହିଁ । ସେନା କର୍ମଚାରୀଙ୍କର କେତେକ ବିଶେଷାଧିକାର କାଢ଼ି ନିଆଗଲା ଏବଂ ସେମାନଙ୍କ ଭିତରୁ ଅଧିକାଂଶ ଅବସର ଗ୍ରହଣ କଲେ—ଉଦାର ଭାବରେ ପେନସନ୍ ଦିଆଗଲା ।

୧୯୩୨ ଜାନୁଆରୀରେ ନୈରାଜ୍ୟବାଦୀ-ସିଣ୍ଡିକାଲିଷ୍ଟ ବିଦ୍ରୋହ କାଟାଲୋନିଆରେ ହେଲା—ସରକାର ଏହାକୁ ଦମନ କଲା । ସେହି ବର୍ଷ ପରେ ଦକ୍ଷିଣପନ୍ଥୀଙ୍କ ତରଫରୁ ବି ଏକ ନିଷ୍ଫଳ ଜାଗରଣ ହେଲା ।

ଏହି ଆରମ୍ଭକାଳ ଭିତରେ ନୂତନ ପ୍ରଜାତନ୍ତ୍ରର କାର୍ଯ୍ୟ ବିଶେଷତଃ ଶିକ୍ଷା ସମ୍ବନ୍ଧରେ ଅତ୍ୟନ୍ତ ପ୍ରଶଂସାଯୋଗ୍ୟ । ଭୂମି ସମସ୍ୟା ସମାଧାନ କରିବା ନିମନ୍ତେ ଏବଂ ଶ୍ରମିକମାନଙ୍କର ଅବସ୍ଥା ଉନ୍ନତ କରିବା ନିମନ୍ତେ କିଛି କରାଯାଇଥିଲା । କିନ୍ତୁ ଭୂସଂସ୍କାରରେ ପ୍ରଗତି ବଡ଼ ମନ୍ଥର ହୋଇଛି ଏବଂ କୃଷକମାନେ ଏଥିଯୋଗୁଁ ଅସନ୍ତୁଷ୍ଟ । ଇତ୍ୟବସରରେ ସ୍ଥାପିତ ସ୍ୱାର୍ଥ ଓ ପ୍ରତିକ୍ରିୟାପନ୍ଥୀମାନେ ଏବେ ସୁଦ୍ଧା ଆସନ ଜମାଇ ରହିଛନ୍ତି ଏବଂ ପ୍ରଜାତନ୍ତ୍ର ଭାଙ୍ଗିବାର ଧମକ ଦେଉଛନ୍ତି । ଉଦାରନୈତିକ ସରକାର ଉଦାର ଭାବରେ ସେମାନଙ୍କ ସହି ନାରବାର କରିଛି ।

ନୋଟ (ନଭେମ୍ବର)—୧୯୩୮

୧୯୩୩ ସ୍ପେନରେ ପ୍ରତିକ୍ରିୟାପନ୍ଥୀମାନେ ବଳବାନ ହେଲେ ଏବଂ ଏହି ମିଳିତ ଦକ୍ଷିଣପନ୍ଥୀମାନେ ସେ ବର୍ଷ ନିର୍ବାଚନରେ ଅଧିକ ସଂଖ୍ୟକ ଭୋଟ ପାଇଲେ । ଏକ ପ୍ରତିକ୍ରିୟାଶୀଳ ସରକାର କ୍ଷମତା ପାଇଲା ଏବଂ ଏହା ଭୂସଂକ୍ରାନ୍ତ ସଂସ୍କାର ରହିତ କଲା, ଗିର୍ଜାକୁ ବଳଶାଳୀ କଲା ଏବଂ ପୂର୍ବ ସରକାର ଯାହା କରିଥିଲା ତାହାର ବହୁତ ପଛକୁ ଗଲା । ଏହା ଫଳରେ ପ୍ରତିକ୍ରିୟାର ବିରୋଧ କରିବା ନିମନ୍ତେ ବାମପନ୍ଥୀଙ୍କ ଭିତରେ ଐକ୍ୟ ବୃଦ୍ଧି ହେଲା । ୧୯୩୪ ଅକ୍ଟୋବରରେ ସ୍ପେନ ସାରା ଦଙ୍ଗା ହାଙ୍ଗାମା ହେଲା, କିନ୍ତୁ ସରକାର ତାହା ଦମନ କରିବାରେ ସଫଳ ହେଲା ଏବଂ ବାମପନ୍ଥୀଙ୍କୁ ଦବାଇ ଦେଲା । କିନ୍ତୁ ବାମପନ୍ଥୀସବୁ ନିଜର ସ୍ଥାନ ଜମାଇବାକୁ ଚେଷ୍ଟା କଲେ ଏବଂ ଏକ ପପୁଲର ଫ୍ରଣ୍ଟ (Popular Front) ଗଢ଼ିଲେ—ଏଥିରେ ଉଦାରନୀତିକ, ସୋସାଲିଷ୍ଟ, ନୈରାଜ୍ୟବାଦୀ ଓ କମ୍ୟୁନିଷ୍ଟ ସବୁ ମିଳିତ ହେଲେ । ୧୯୩୬ ଫେବ୍ରୁୟାରୀରେ କୋର୍ଟ ନିର୍ବାଚନରେ ପପୁଲର ଫ୍ରଣ୍ଟ ଯଶସ୍ୱୀ ହେଲା ଏବଂ ଏକ ନୂତନ ସରକାର ଗଠନ କରାଗଲା । ବୋଧ କରାଗଲା ଯେ ଏହି ସରକାର ଭୂସମସ୍ୟା ସମାଧାନ କରିବା ନିମନ୍ତେ ଓ ଗିର୍ଜାର କ୍ଷମତା ଖଣ୍ଡନ କରିବା ନିମନ୍ତେ ଶକ୍ତିଶାଳୀ ପ୍ରତିକାର କରିବ ଏବଂ ପୂର୍ବ ଉଦାରନୀତିକ ଶାସନ ପରି ସ୍ଥାପିତ ସ୍ୱାର୍ଥମାନଙ୍କ ପ୍ରତି ସଦୟଭାବ ଦେଖାଇବ ନାହିଁ । ତେଣୁ ସଂଘର୍ଷ ବଢ଼ିଲା ଏବଂ ପ୍ରତିକ୍ରିୟା ଶକ୍ତିସବୁ ଆଘାତ କରିବା ନିମନ୍ତେ ସ୍ଥିର କଲେ । ସେମାନେ ମୁସୋଲିନୀ ଓ ନାଜି ଜର୍ମାନୀଠାରୁ ସମର୍ଥନ ପାଇଲେ ।

୧୯୩୬ ଜୁଲାଇ ମାସରେ ଜେନେରାଲ ଫ୍ରାଙ୍କୋ ସ୍ପେନ ମରୋକ୍କୋ ଲୋକଙ୍କୁ ସ୍ୱାଧୀନ କରିବାରେ ପ୍ରତିଶ୍ରୁତି ଦେଇ ମୁରିସ୍ ସେନାଙ୍କ ସାହାଯ୍ୟରେ ସ୍ପେନ-ମରୋକ୍କୋରେ ଏକ ବିଦ୍ରୋହ ଆରମ୍ଭ କରିଦେଲେ । ସେନା କର୍ମଚାରୀ ଓ ଅଧିକାଂଶ ସେନା ଫ୍ରାଙ୍କୋଙ୍କ ସହିତ ରହିଲେ ଏବଂ ସରକାର ଅରକ୍ଷ ହୋଇଗଲା । ତେଣୁ ସରକାର ଯୁଦ୍ଧ କରିବା ନିମନ୍ତେ ଜନସାଧାରଣଙ୍କୁ ଆହ୍ୱାନ କଲା- କିଛି ନ ହେଲେ ଅନ୍ତତଃ ଖାଲି ହାତମୁଠା କରି ଲଢ଼ାଇ କରିବାକୁ ଡାକରା ଦେଲା, ବିଶେଷତଃ ବାର୍ସିଲୋନା ଓ ମାଡ୍ରିଡ଼ରେ ଏହି ଡାକରାର ଅପୂର୍ବ ଜବାବ ମିଳିଲା । ସରକାର ଓ ପ୍ରଜାତନ୍ତ୍ର ରକ୍ଷା ପାଇଗଲା, କିନ୍ତୁ ଫ୍ରାଙ୍କୋ ସ୍ପେନର ଅଧିକ ଅଞ୍ଚଳ ଦଖଲ କରିଗଲା ।

ସେହିଦିନଠାରୁ ଯୁଦ୍ଧ ଚାଲିଛି ଏବଂ ଫ୍ରାନ୍ସ ଅତ୍ୟଧିକ ପରିମାଣରେ ଇଟାଲୀ ଓ ଜର୍ମାନୀଠାରୁ ସାହାଯ୍ୟ ପାଉଛି—ସେମାନେ ବହୁ ସେନାବାହିନୀ, ଉଡ଼ାଜାହାଜ, ଉଡ଼ାଜାହାଜ ଚାଳକ ଓ ଗୋଳା ବାରୁଦ ପଠାଉଛନ୍ତି । ପ୍ରଜାତନ୍ତ୍ରକୁ ବି ସାହାଯ୍ୟ କରିବା ନିମନ୍ତେ ବିଦେଶରୁ ସ୍ୱେଚ୍ଛାସେବକ ଯାଉଛନ୍ତି, କିନ୍ତୁ ଏହା ସଙ୍ଗେ ସଙ୍ଗେ ଏହା ଏକ ସୁନ୍ଦର ସ୍ପେନ ସେନା ବି ଗଢ଼ିପାରିଛି । ବ୍ରିଟିଶ ଓ ଫରାସି ସରକାର କହିଛନ୍ତି ସେମାନେ ଏକ ବିନା-ହସ୍ତକ୍ଷେପ

ନୀତି ଅନୁସରଣ କରୁଛନ୍ତି, କିନ୍ତୁ କାର୍ଯ୍ୟତଃ ଏହା ଫ୍ରାଙ୍କୋକୁ ସାହାଯ୍ୟ କରୁଛି ।

ସ୍ପେନ ଯୁଦ୍ଧ ଭୟଙ୍କର ହୋଇଛି ଏବଂ ଖୋଲା ସହର ଉପରେ ଆକାଶରୁ ବୋମା-ବର୍ଷଣ କରିବା ଦ୍ୱାରା ବହୁ ସଂଖ୍ୟକ ଲୋକ ହତ ହୋଇଛନ୍ତି ଏବଂ ଫ୍ରାଙ୍କୋକୁ ସାହାଯ୍ୟ କରିବାକୁ ଆସିଥିବା ଇଟାଲୀ ଓ ଜର୍ମାନୀ ଉଡ଼ାଜାହାଜ ଦ୍ୱାରା ବହୁ ସଂଖ୍ୟକ ବେସାମରିକ ଅଧିବାସୀଙ୍କୁ ହତ୍ୟା କରାଯାଇଛି । ମାଡ୍ରିଡ଼ର ରକ୍ଷା ବ୍ୟବସ୍ଥା ପ୍ରସିଦ୍ଧ ହୋଇ ଯାଇଛି । ବର୍ତ୍ତମାନ ଫ୍ରାଙ୍କୋ ସ୍ପେନର ୩।୪ ଅଂଶ ଦଖଲ କରିଛି, କିନ୍ତୁ ପ୍ରଜାତନ୍ତ୍ର ତାକୁ ଫଳପ୍ରଦ ଭାବରେ ବାଧା ଦେଇପାରୁଛି—ଏକ ସାମରିକ ଦୃଷ୍ଟିରେ ଏହା ଶକ୍ତିଶାଳୀ ବାଧା । ଏହାର ପ୍ରଧାନ ଅସୁବିଧା ହେଉଛି ଖାଦ୍ୟାଭାବ ।

ସ୍ପେନ ଯୁଦ୍ଧ ଜାତୀୟ ସଂଘର୍ଷ ଅପେକ୍ଷା ଅଧିକ କିଛି ବୋଲି ସ୍ୱୀକୃତ କରାଯାଏ । ଏହା ଗଣତନ୍ତ୍ର ଓ ଫାସିଜିମ୍ ମଧ୍ୟରେ ସଂଗ୍ରାମର ପ୍ରତୀକ ହୋଇଛି ଏବଂ ସେଥିନିମନ୍ତେ ବ୍ୟାପକ ଦୃଷ୍ଟି ଓ ସହାନୁଭୂତି ଆକର୍ଷଣ କରିଛି ।

## ୧୯୦ : ଜର୍ମାନୀରେ ନାଜୀ ବିଜୟ

ଜୁଲାଇ ୩୧, ୧୯୩୩

ସ୍ପେନ ବିପ୍ଳବ କେତେ ଲୋକଙ୍କୁ ବିସ୍ମିତ କରି ପକାଇଛି, କିନ୍ତୁ ଏଥିରେ ବିସ୍ମିତ ହେବାର କିଛି ନାହିଁ । ଏହା ସ୍ୱାଭାବିକ ଭିତ୍ତିରେ ଘଟିଛି ଏବଂ ତୀକ୍ଷ୍ଣ ନିରୀକ୍ଷକମାନେ ଏହା ଅନିବାର୍ଯ୍ୟ ବୋଲି ଜାଣିଥିଲେ । ରାଜା ସାମନ୍ତ-ଗିର୍ଜାର ପୁରାତନ ଗଠନ ପୋକ ଖାଇ ଯାଇଥିଲା ଏବଂ ଏଥିରେ ଆଉ କୌଣସି ବଳ ନ ଥିଲା । ଆଧୁନିକ ଅବସ୍ଥା ସହ ଏହା ମୂଳରୁ ଖାପ ଖାଉ ନ ଥିଲା ଏବଂ ତେଣୁ ପାଚିଲା ଫଳପରି ଏହା ହାତ ବାଜିଲା ମାତ୍ରକେ ପଡ଼ିଗଲା । ବିଲୁପ୍ତ ଯୁଗର ଏହିପରି ଅନେକ ସାମନ୍ତବାଦର ଚିହ୍ନ ଭାରତରେ ଏବେ ସୁଦ୍ଧା ରହିଛି; ବିଦେଶୀ ଶକ୍ତି ଯଦି ସାହାଯ୍ୟ ଦେଇ ରଖି ନ ଥାଆନ୍ତା ତେବେ ସେଗୁଡ଼ିକ ବୋଧହୁଏ ବଡ଼ ଜଲ୍‌ଦି ଅନ୍ତର୍ହିତ ହୋଇ ଯାଇଥାନ୍ତା ।

ଯାହା ହେଉ ଜର୍ମାନୀରେ ଏଥର ପରିବର୍ତ୍ତନ ସମ୍ପୂର୍ଣ୍ଣ ଭିନ୍ନ ଧରଣର ଏବଂ ଏଥିରେ ସନ୍ଦେହ ନାହିଁ ଯେ ଏହା ଇଉରୋପକୁ ଦୋହଲାଇ ଦେଇଛି ଏବଂ ବହୁ ଲୋକଙ୍କୁ ସ୍ତମ୍ଭିତ କରି ପକାଇଛି । ଜର୍ମାନମାନଙ୍କ ପରି ସଂସ୍କୃତ ଓ ଅତ୍ୟନ୍ତ ଉନ୍ନତ ଲୋକେ ଯେ ଏକ ପାଶବିକ ଆଚରଣରେ ବ୍ରତୀ ହୋଇଛନ୍ତି ଏହା ଏକ ବିସ୍ମୟକର ବିଷୟ ।

ଜର୍ମାନୀରେ ହିଟଲର ଓ ତାର ନାତ୍ସୀମାନେ ଜୟୀ ହୋଇଛନ୍ତି । ସେମାନଙ୍କ ଫାସିଷ୍ଟ କୁହାଯାଏ ଏବଂ ତାଙ୍କର ବିଜୟ ହେଉଛି ଏକ ପ୍ରତି-ବିପ୍ଳବର ବିଜୟ; ୧୯୧୮ର ଜର୍ମାନର ବିପ୍ଳବ ଓ ତାପରେ ଯାହା ଘଟିଲା ସେଥିରୁ ପଛକୁ ଫେରିଯିବା । ଏସବୁ ସମ୍ପୂର୍ଣ୍ଣ ତଥ୍ୟ ଏବଂ ତୁ ହିଟଲରବାଦରେ ଫାସିଜ୍‌ମର ସକଳ ପ୍ରକୃତ ଦେଖିପାରିବୁ—ଏକ ଭୀଷଣ ପ୍ରତକ୍ରିୟା ଓ ସକଳ ପ୍ରକାର ଉଦାରନୀତକ ଭାବବିଶେଷତଃ ଶ୍ରମିକମାନଙ୍କ ଉପରେ ବର୍ବର ଆକ୍ରମଣ ଏହା ଦ୍ୱାରା ହୋଇଛି । କିନ୍ତୁ ଏହା କେବଳ ପ୍ରତକ୍ରିୟା ଅପେକ୍ଷା ଆଉ କିଛି ଅଧିକ; ଆଉ ଟିକିଏ ବ୍ୟାପକ ଏବଂ ଇଟାଲୀ ଫାସିଜ୍‌ମ୍ ଅପେକ୍ଷା ଜନତାର ଭାବ-ପ୍ରବଣତାରେ ଅଧିକରୂପେ ପ୍ରତିଷ୍ଠିତ । ଏହି ଜନତାର ସଚେତନ ଭାବ ଶ୍ରମିକଙ୍କର ନୁହେଁ, ମାତ୍ର ଅର୍ଦ୍ଧାହାରୀ ଓ ଅଧିକାରଚ୍ୟୁତ ମଧ୍ୟବିତ୍ତ ଶ୍ରେଣୀ ବିପ୍ଳବୀ ପାଲଟିଥିବାରୁ ହେଲା ।

ଇଟାଲୀ ସମ୍ବନ୍ଧରେ ଏକ ପୂର୍ବ ଚିଠିରେ ମୁଁ ଫାସିଜ୍‌ମ ଆଲୋଚନା କରିଥିଲି ଏବଂ ମୁଁ ଦର୍ଶାଇ ଦେଇଛି ଯେ ଯେତେବେଳେ ଏକ ପୁଞ୍ଜିବାଦୀ ରାଷ୍ଟ୍ର ସାମାଜିକ ବିପ୍ଳବ ଦ୍ୱାରା ଅର୍ଥନୀତକ ସଙ୍କଟ ବେଳେ ଟଳମଳ ହୁଏ, ସେତେବେଳେ ଏହା ଜାତ ହୁଏ । ମାଲିକ ପୁଞ୍ଜିପତି ଶ୍ରେଣୀ ଏକ ଗଣଆନ୍ଦୋଳନ ସୃଷ୍ଟି କରି ନିଜକୁ ରକ୍ଷା କରିବାକୁ ଚେଷ୍ଟା କରନ୍ତି —ନିମ୍ନ ମଧ୍ୟବିତ୍ତ ଶ୍ରେଣୀକୁ ଏମାନେ ସାଧନରୂପେ ଧରନ୍ତି ଏବଂ ସାଦାସିଧା କୃଷକ ଓ ଶ୍ରମିକମାନଙ୍କୁ ଆକର୍ଷଣ କରିବା ନିମନ୍ତେ, ଭ୍ରମରେ ପକାଇବା ପାଇଁ ପୁଞ୍ଜିବାଦ ବିରୋଧୀ ଧ୍ୱନିସବୁ କରନ୍ତି । କ୍ଷମତା ହାସଲ କରି ଓ ଷ୍ଟେଟ ବା ରାଷ୍ଟ୍ର ଉପରେ କର୍ତ୍ତୃତ୍ୱ କରି ସେମାନେ ସମସ୍ତ ଗଣତାନ୍ତ୍ରିକ ଅନୁଷ୍ଠାନକୁ ଭାଙ୍ଗିଦିଅନ୍ତି, ସେମାନଙ୍କର ଶତ୍ରୁଙ୍କୁ ଦମନ କରନ୍ତି ଏବଂ ବିଶେଷ ଭାବରେ ଶ୍ରମିକ ସଙ୍ଗଠନକୁ ଭାଙ୍ଗିପକାନ୍ତି । ତେଣୁ ସେମାନଙ୍କର ଶାସନ ପ୍ରଧାନତଃ ହିଂସା ଉପରେ ପ୍ରତିଷ୍ଠିତ । ନୂତନ ରାଷ୍ଟ୍ରରେ ମଧ୍ୟବିତ୍ତ ଶ୍ରେଣୀ ସମର୍ଥକମାନଙ୍କୁ ଚାକିରୀ ଦିଆଯାଏ ଏବଂ ସାଧାରଣତଃ ଶିଳ୍ପ କେତେକ ପରିମାଣରେ ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ ହୁଏ ।

ଆମେ ଜର୍ମାନୀରେ ଏସବୁ ହେବାର ଦେଖିଲେ ଏବଂ ଏହା ଆଶା ବି କରାଯାଉଥିଲା । କିନ୍ତୁ ଆଶ୍ଚର୍ଯ୍ୟ ହେଉଛି ଏହା ପଶ୍ଚାତରେ ଯେଉଁ ପ୍ରକାଣ୍ଡ ପ୍ରେରଣା ରହିଛି ଏବଂ କେତେ ସଂଖ୍ୟକ ଲୋକ ହିଟଲର ସହି ଯୋଗ ଦେଇଛନ୍ତି ।

୧୯୩୩ ମାର୍ଚ୍ଚ ମାସରେ ନାତ୍ସୀ ପ୍ରତି-ବିପ୍ଳବ ହେଲା । କିନ୍ତୁ ଏହି ଆନ୍ଦୋଳନର ଆରମ୍ଭବେଳ ଲକ୍ଷ୍ୟ କରିବା ନିମନ୍ତେ ମୁଁ ତତେ ଆଉ ଟିକିଏ ପଛକୁ ନେଇଯିବି ।

୧୯୧୮ର ଜର୍ମାନ ବିପ୍ଳବ ଏକ ଅବାସ୍ତବ ବ୍ୟାପାର ଥିଲା, ଏହା ଅର୍ଥନୈତିକ ବିପ୍ଳବ ନୁହେଁ । କାଇଜର ଗଲା ଏବଂ ଏକ ପ୍ରଜାତନ୍ତ୍ର ଘୋଷିତ ହେଲା, କିନ୍ତୁ ପୁରୁଣା ରାଜନୀତକ, ସାମାଜିକ ଓ ଅର୍ଥନୀତକ ବ୍ୟବସ୍ଥା ରହିଥିଲା, କେତେ ବର୍ଷ ପର୍ଯ୍ୟନ୍ତ ସୋସାଲ-ଡ଼େମୋ-କ୍ରାଟମାନେ ସରକାର ନିୟନ୍ତ୍ରଣ କଲେ । ସେମାନେ ପୁରାତନ ପ୍ରତକ୍ରିୟା ପନ୍ଥୀ ଓ ସ୍ଥାପିତ

ସ୍ୱାର୍ଥକୁ ବିଶେଷ ଭାବରେ ଭସ୍ତ କରୁଥିଲେ ଏବଂ ସର୍ବଦା ସେମାନଙ୍କ ସନ୍ତୋଷ ମୀମାଂସା କରିବା ନିମନ୍ତେ ଚେଷ୍ଟା କରୁଥିଲେ । ତାଙ୍କ ପଶ୍ଚାତରେ ଥିବା ଦଳର ଏକ ପ୍ରକାଣ୍ଡ ଶକ୍ତି-ଶାଳୀ ଯନ୍ତ୍ର ଥିଲା—ଲକ୍ଷ ଲକ୍ଷ ସଭ୍ୟ ଓ ଟ୍ରେଡ଼ଇଉନିୟନ ରହିଥିଲା ଏବଂ ଆହୁରି ଅନେକଙ୍କର ସହାନୁଭୂତି ସେମାନେ ପାଉଥିଲେ । କିନ୍ତୁ ସେମାନେ ପ୍ରତିକ୍ରିୟାପନ୍ଥୀଙ୍କ ହାତରୁ ରକ୍ଷା ପାଇବା ନୀତି ସର୍ବଦା ଅନୁସରଣ କରୁଥିଲେ, ସେମାନେ ତାଙ୍କ ଦଳଭିତରେ ଥିବା ଚରମପନ୍ଥୀ ଓ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକ୍ରମଣଶୀଳ ଭାବ ଦେଖାଉଥିଲେ । ସେମାନେ ନିଜ କାର୍ଯ୍ୟରେ ଏପରି ତ୍ରୁଟି ଦେଖାଇଲେ ଯେ ତାଙ୍କର ସମର୍ଥକମାନେ ତାଙ୍କୁ ଛାଡ଼ି ଚାଲି-ଗଲେ । ଯେଉଁ ଶ୍ରମିକମାନେ ତାଙ୍କୁ ଛାଡ଼ିଗଲେ, ସେମାନେ କମ୍ୟୁନିଷ୍ଟ ପାର୍ଟିକୁ ଗଲେ, ଏହା ଖୁବ୍ ଶକ୍ତିଶାଳୀ ହୋଇପଡ଼ିଲା, କେତେ ଲକ୍ଷ ସଭ୍ୟ ଏହାର ହେଲେ ଏବଂ ମଧ୍ୟବିତ୍ତ ଶ୍ରେଣୀ-ସମର୍ଥକମାନେ ପ୍ରତିକ୍ରିୟାଶୀଳ ଦଳଗୁଡ଼ିକ ସହଯୋଗ ଦେବାକୁ ଗଲେ । ସୋସାଲ-ଡେ଼ମୋକ୍ରାଟ ଓ କମ୍ୟୁନିଷ୍ଟଙ୍କ ଭିତରେ କ୍ରମାନ୍ୱୟ ଲଢ଼ାଇ ଲାଗିଲା—ଏଥିରେ ଉଭୟେ ଦୁର୍ବଳ ହୋଇଗଲେ ।

ଯୁଦ୍ଧୋତ୍ତର ବର୍ଷମାନଙ୍କରେ ଯେତେବେଳେ ଭୀଷଣ ଜର୍ମାନ ମୁଦ୍ରାସ୍ଫୀତି ହେଲା ସେତେବେଳେ ଜର୍ମାନ ଶିଳ୍ପପତି ଓ ବଡ଼ ଭୂମିପତିମାନେ ଏହା ସପକ୍ଷରେ ମତ ଦେଲେ । ଗୁରୁତର ଭାବରେ ଋଣଗ୍ରସ୍ତ ଜମିଦାରମାନଙ୍କର ଇଲାକାସବୁ ବନ୍ଧକ ପଡ଼ିଥିଲା—ସେମାନେ ସ୍ଫୀତ ମୁଦ୍ରାରେ ତାଙ୍କ ଋଣ ପରିଶୋଧ କଲେ—ଏହା ଏକପ୍ରକାର ମୂଲ୍ୟହୀନ ଥିଲା ଏବଂ ନିଜର ଇଲାକାସବୁ ଫେରି ପାଇଲେ । ବଡ଼ କାରଖାନା ମାଲିକମାନେ ତାଙ୍କର କାରଖାନା ଉନ୍ନତି କଲେ ଏବଂ ପ୍ରକାଣ୍ଡ ଟ୍ରଷ୍ଟସବୁ ଗଢ଼ାହେଲା । ଜର୍ମାନୀ ମାଲ ଏତେ ଶସ୍ତା ଥିଲା ଯେ ପ୍ରତ୍ୟେକ ସ୍ଥାନରେ ଏହା ତାଜା ବଜାର ପାଇଲା ଏବଂ ଅକର୍ମା ସମସ୍ୟା ଲୋପ ହେଲା । ଟ୍ରେଡ଼ଇଉନିୟନଗୁଡ଼ିକରେ ଶ୍ରମିକ ଶ୍ରେଣୀ ଦୃଢ଼ ଭାବରେ ସଂଗଠିତ ହେଲେ ଏବଂ ମାର୍କର ପତନ ହୋଇ ସୁଦ୍ଧା ଏହା ମଜୁରୀ ହାର ବଢ଼ାଇ ରଖିବାରେ କୃତକାର୍ଯ୍ୟ ହେଲା । ମୁଦ୍ରା-ସ୍ଫୀତି ମଧ୍ୟବିତ୍ତ ଶ୍ରେଣୀକୁ ଆଘାତ କଲା ଏବଂ ନିତାନ୍ତ ଦାରିଦ୍ର୍ୟ ଅବସ୍ଥାରେ ପରିଣତ କଲା । ୧୯୨୩-୨୪ର ଏହି ଉଚ୍ଛେଦିତ ମଧ୍ୟବିତ୍ତ ଶ୍ରେଣୀ ହିଁ ପ୍ରଥମେ ହିଟଲରକୁ ସହଯୋଗ ଦେଲେ । ବ୍ୟାଙ୍କ ସବୁର ବ୍ୟର୍ଥତା, ଓ ଅକର୍ମା ସମସ୍ୟା ବୃଦ୍ଧି ହେତୁ ଦୁର୍ଗତି ବଢ଼ିବାରୁ ଆହୁରି ଅନେକେ ହିଟଲର ସହିତ ଯୋଗ ଦେଲେ । ସେ ଅସନ୍ତୁଷ୍ଟ ଲୋକଙ୍କର ଆଶ୍ରୟସ୍ଥଳ ହେଲା । ସେ ପୁରାତନ ସେନାର କର୍ମଚାରୀଙ୍କ ଭିତରୁ ବହୁସଂଖ୍ୟକ ନିଜ ଦଳକୁ ଆଣିଲା । ଭର୍ସେଇ ସନ୍ଧି ଅନୁସାରେ ଯୁଦ୍ଧପରେ ଏହି ସେନା ଭାଙ୍ଗି ଦିଆଯାଇଥିଲା ଏବଂ ହଜାର ହଜାର କର୍ମଚାରୀ ବେକାର ହୋଇଥିଲେ ଏବଂ କିଛି କରିବାର ନ ଥିଲା । ଯେଉଁସବୁ ବିଭିନ୍ନ ବ୍ୟକ୍ତିଗତ ସେନା ଗଢ଼ା ହେଉଥିଲା ସେଥିରେ ସେମାନେ ଯୋଗ ଦେଲେ – ଏହାକୁ ନାତ୍ସି "ଝଞ୍ଜା ବାହିନୀ" (Storm troops) ବୋଲି କହୁଥିଲେ ଏବଂ ଜାତୀୟବାଦୀମାନଙ୍କର "ଇସ୍ପାତ ଶିରସ୍ତ୍ରାଣ" (Steel Helmet) କୁହାହେଉଥିଲା—ଏମାନେ ରକ୍ଷଣଶୀଳ ଥିଲେ ଓ କାଇଜର ଫେରି ଆସିବା ସପକ୍ଷରେ ଥିଲେ ।

ଆଡ଼ଲ୍ଫ ହିଟଲର କିଏ ? ଆଶ୍ଚର୍ଯ୍ୟର କଥା, ସେ କ୍ଷମତା ପାଇବା ପୂର୍ବରୁ ଏକ ବା ଦୁଇ ବର୍ଷ ପର୍ଯ୍ୟନ୍ତ ଜର୍ମାନ ନାଗରିକ ବି ନ ଥିଲେ । ସେ ଗୋଟିଏ ଜର୍ମାନ-ଅଷ୍ଟ୍ରିଆନ୍ ଯୁଦ୍ଧରେ ଏକ ସାମାନ୍ୟ ସୈନିକ ଭାବରେ କାର୍ଯ୍ୟ କରୁଥିଲେ । ଜର୍ମାନୀ ପ୍ରଜାତନ୍ତ୍ର ବିରୁଦ୍ଧରେ ଏକ ବୃଥା ବିଦ୍ରୋହରେ ସେ ଭାଗ ନେଇଥିଲେ—ଏହାକୁ "ପୁସ୍ଚ" (Putsch) କହନ୍ତି ଏବଂ ଜେଲଶାସ୍ତି ପାଇଲେ ଯୁଦ୍ଧା କର୍ତ୍ତୃପକ୍ଷ ତାଙ୍କ ପ୍ରତି ଟିକିଏ କୋମଳ ବ୍ୟବହାର କଲେ । ତାପରେ ସୋସାଲ-ଡେମୋକ୍ରାଟମାନଙ୍କୁ ବିରୋଧ କରିବା ନିମନ୍ତେ ସେ ତାଙ୍କର "ନେସନାଲ ସୋସିଆଲିଷ୍ଟ" ଜାତୀୟ ସାମ୍ୟବାଦୀ ଦଳ ସଂଗଠନ କଲେ । ଏହି ନାମରୁ ନାଜୀ ଶବ୍ଦ ଆସିଛି; ନା ହେଉଛି ନେସନାଲରୁ ଏବଂ ସୋସିଆଲିଷ୍ଟରୁ 'ଜୀ' ଆସିଲା (ଜର୍ମାନ ଭାଷାରେ ସୋସାଲିଷ୍ଟକୁ ସୋଜିଆଲିଷ୍ଟ କହନ୍ତି । ଯଦିଓ ଦଳ ସୋସାଲିଷ୍ଟ ବୋଲି କୁହା-ହେଉଥିଲା, ଏହାର ସାମ୍ୟବାଦ ସହିତ କୌଣସି ସମ୍ପର୍କ ନ ଥିଲା । ସାମ୍ୟବାଦର ସାଧାରଣ-ତନ୍ତ୍ର ଶବ୍ଦ ବୋଇଲେ ଯାହା ବୁଝାଏ ହିଟଲର ତାହା ଥିଲା ଏବଂ ଏବେ ବି ରହିଛି । ଦଳ ତାହାର ପ୍ରତୀକରୂପେ ସ୍ୱସ୍ତିକ ଗ୍ରହଣ କଲା—ଏହା ଏକ ସଂସ୍କୃତ ଶବ୍ଦ, କିନ୍ତୁ ଅତୀତକାଳରୁ ଏହି ସଙ୍କେତ ସମଗ୍ର ଦୁନିଆରେ ଭଲରୂପେ ଜଣାଅଛି । ତୁ ଜାଣ ଏହି ଚିହ୍ନ ଭାରତରେ ଭାରି ଲୋକପ୍ରିୟ ଏବଂ ଏହା ଏକ ଶୁଭଚିହ୍ନ ବୋଲି ଧରାଯାଏ । ନାଜୀମାନେ ଏକ ଲଢ଼ୁଆ ଦଳ ସଂଗଠନ କଲେ—ଏହା "ଝଡ଼ା ବାହିନୀ", ବାଦାମୀ କାମିଜ ହେଲା ଏହାର ପୋଷାକ । ସେଥିପାଇଁ ନାଜୀମାନଙ୍କୁ ଅନେକ ସମୟରେ "ବାଦାମୀ-କାମିଜ ଦଳ" ବୋଲି କୁହାଯାଏ, ଯେପରି ଇଟାଲୀର ଫାସିଷ୍ଟମାନେ "କୃଷ୍ଣବର୍ଣ୍ଣ କାମିଜ ଦଳ" ବୋଲି ପରିଚିତ ।

ନାଜୀମାନଙ୍କର କାର୍ଯ୍ୟପନ୍ଥା ପରିଷ୍କାର ବା ନିର୍ଦ୍ଦିଷ୍ଟ ନୁହେଁ । ଏହା ତୀବ୍ର ଭାବରେ ଜାତୀୟଭାବାପନ୍ନ ଏବଂ ଜର୍ମାନୀ ଓ ଜର୍ମାନମାନଙ୍କର ଶ୍ରେଷ୍ଠତ୍ୱ ବିଷୟରେ ଜୋର ଦିଏ ଏବଂ ଅନ୍ୟସବୁକୁ ଅତ୍ୟନ୍ତ ଘୃଣା ଦୃଷ୍ଟିରେ ଦେଖେ । ଏହା ଭର୍ସେଇ ସନ୍ଧି ବିରୁଦ୍ଧରେ ଥିଲା—ଏହା ଜର୍ମାନୀ ପକ୍ଷରେ ଅପମାନଜନକ ବୋଲି ବିଚାର କରାଯାଉଥିଲା ଏବଂ ଏଥିଲାଗି ଅନେକ ଲୋକ ନାଜୀମାନଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଏହା ମାର୍କସିଷ୍ଟ-କମ୍ୟୁନିଷ୍ଟ-ସୋସାଲିଷ୍ଟ ବିରୋଧୀ ଏବଂ ଶ୍ରମିକଙ୍କ ଟ୍ରେଡ଼ଇଉନିୟନ ଓ ସେହିପରି ଅନୁଷ୍ଠାନର ବିରୋଧୀ । ଏହା ଇହୁଦୀ ବିରୋଧୀ, କାରଣ ଇହୁଦୀମାନଙ୍କୁ ଏକ ବିଦେଶୀ ଜାତି ଏବଂ "ଆର୍ଯ୍ୟ" ଜର୍ମାନ ଜାତି ମାପରେ ନୀଚ ଧରଣର ବୋଲି ବିଚାର କରାଯାଉଥିଲା । ଏହା ଅସ୍ପଷ୍ଟରୂପେ ପୁଞ୍ଜିବାଦ ବିରୋଧୀ ଥିଲା, କିନ୍ତୁ ଏଥିରେ କେବଳ ମୁନାଫାଖୋର ଓ ଧନୀଙ୍କୁ ଗାଳି ଦିଆ ହେଉଥିଲା । ଏକପ୍ରକାର ଯାହା ଟିକିଏ ସାମ୍ୟବାଦ କଥା ଏହା କହୁଥିଲା ସେଥିରେ କେତେକ ପରିମାଣରେ ରାଷ୍ଟ୍ରନିୟନ୍ତ୍ରଣ ମତ ପୋଷଣ କରୁଥିଲା ।

ଏହିସବୁ ପଶ୍ଚାତରେ ଅସାଧାରଣ ଭାବରେ ହିଂସାର ଦର୍ଶନ ରହିଥିଲା । ହିଂସାକୁ

କେବଳ ଯେ ପ୍ରଶଂସା ଓ ଉତ୍ସାହିତ କରାଯାଉଥିଲା ତାହା ନୁହେଁ, ଏହା ମଣିଷର ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ବିଚାର କରାଯାଉଥିଲା । ଜଣେ ବିଖ୍ୟାତ ଜର୍ମାନ ଦାର୍ଶନିକ ଅସ୍‌ୱାଲ୍‌ଡ୍‌ ସ୍ପେଙ୍ଗ୍ଲରର ଏହି ଦର୍ଶନର ବ୍ୟାଖ୍ୟାକାରକ । ସେ କହନ୍ତି ମଣିଷ ଗୋଟିଏ "ଶିକାରୀ ଜୀବ, ସାହସୀ, ଧୂର୍ତ୍ତ ଓ ନିଷ୍ଠୁର ।"..... "ଆଦର୍ଶବାଦ ସବୁ ଭୀରୁତାର ପରିଚାୟକ ।" ସେ "ସହାନୁଭୂତି, ମିଳାମିଶା ଓ ନିଶ୍ଚଳ ଭାବର ଦୁର୍ବଳତା" ଏବଂ "ଘୃଣା ଶିକାରୀ ଜୀବ ଭିତରେ ସର୍ବାପେକ୍ଷା ବିଶୁଦ୍ଧ ଜାତିଗତ ଭାବ"କୁ ଉଲ୍ଲେଖ କରିଛନ୍ତି । ମଣିଷ ସିଂହପରି ହେବା ଉଚିତ, ତାର ଗୁହାରେ ଆପଣା ସମକକ୍ଷ କୌଣସି ଲୋକକୁ ରଖିଦେବ ନାହିଁ ଏବଂ ଗୋରୁପରି ଗୁହାଳରେ ବାସ କରିବ ନାହିଁ ଏବଂ ଯେଣିକି ପାରେ ତେଣିକି ଘୋସାରି ହୋଇଯିବ ନାହିଁ । ଏପରି ଲୋକ ପକ୍ଷରେ ଯୁଦ୍ଧ ଅବଶ୍ୟ ଏକ ଶ୍ରେଷ୍ଠତମ ବୃତ୍ତି ଓ ଆନନ୍ଦ ।

ବର୍ତ୍ତମାନ ଯୁଗରେ ଅସ୍‌ୱାଲ୍‌ଡ୍‌ ସ୍ପେଙ୍ଗ୍ଲର ଜଣେ ଅତି ବିଦ୍ୱାନ ପୁରୁଷ; ତାଙ୍କ ଲିଖିତ ପୁସ୍ତକମାନଙ୍କରେ ଥିବା ପାଣ୍ଡିତ୍ୟ ଦେଖିଲେ ଜଣେ ଚକିତ ହୋଇଯାଏ । ଏହିସବୁ ବିରାଟ ପାଣ୍ଡିତ୍ୟ ଫଳରେ ସେ ଅଦ୍ଭୁତ ଓ ଘୃଣାଜନକ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ମୁଁ ତାଙ୍କ ଲେଖା ଉଦ୍ଧାର କଲି, କାରଣ ହିଟଲରବାଦ ପଶ୍ଚାତରେ ଥିବା ମନୋଭାବ ଏବଂ ନାଜୀ ରାଜୁତିର ନିଷ୍ଠୁରତା ଓ ପଶୁତ୍ୱ ଏଥିରୁ ବୁଝାଯାଏ । ଅବଶ୍ୟ ଅନୁମାନ କରିବା ଉଚିତ ନୁହେଁ ଯେ, ପ୍ରତ୍ୟେକ ନାଜୀ ଏହିରୂପେ ଚିନ୍ତା କରେ । କିନ୍ତୁ ନେତାମାନେ ଓ ଉଗ୍ରଭାବାପନ୍ନ ଲୋକେ ପ୍ରକୃତରେ ସେହିପରି ଚିନ୍ତା କରନ୍ତି ଏବଂ ଲୋକେ ଏହାକୁ ନକଲ କରନ୍ତି । ସାଧାରଣ ନାଜୀ ଆଦୌ ଚିନ୍ତା କରେ ନାହିଁ ବୋଲି କହିବା ବୋଧହୁଏ ଠିକ୍ ହେବ । ସେ ତାର ନିଜର ଦୁର୍ଦ୍ଦଶା ଏବଂ ଜାତୀୟ ଅପମାନରେ (ରୁର ଅଞ୍ଚଳକୁ ଫ୍ରାନ୍ସ ଦଖଲ କରିବା-ଦ୍ୱାରା ନାଜୀମାନେ ତୀବ୍ର ଅସନ୍ତୋଷ ପ୍ରକାଶ କରୁଥିଲେ) ଜାଗ୍ରତ ହେଉଥିଲେ ଏବଂ ଅବସ୍ଥା ଯେପରି ଥିଲା ସେଥିରେ କ୍ରୋଧାନ୍ୱିତ ହେଉଥିଲେ । ହିଟଲର ଜଣେ ପ୍ରଭାବଶାଳୀ ବକ୍ତା ଏବଂ ସେ ବିରାଟ ଶ୍ରୋତାମାନଙ୍କର ଭାବପ୍ରବଣତା ନେଇ ଖେଳ କରନ୍ତି ଏବଂ ଯାହା କିଛି ଘଟୁଛି ସେଥିଲାଗି ସମସ୍ତ ଦୋଷ ମାର୍କସବାଦୀ ଓ ଇହୁଦୀମାନଙ୍କ ଉପରେ ଲଦି ଦିଅନ୍ତି । ଫ୍ରାନ୍ସ ଓ ଅନ୍ୟ ବିଦେଶୀ ସରକାରସବୁ ଜର୍ମାନୀ ପ୍ରତି ଏପରି ଖରାପ ବ୍ୟବହାର କରିଥିବା ହେତୁ ଅଧିକ ଲୋକ ନାଜୀଙ୍କ ସହିତ ଯୋଗଦାନ କଲେ କାରଣ ନାଜୀମାନେ ଜର୍ମାନୀର ସମ୍ମାନ ରକ୍ଷା କରିବେ । ଆର୍ଥିକ ସଙ୍କଟ ଖରାପ ହେବାରୁ ଲୋକ ସଂଖ୍ୟା ବଢ଼ିଲା ।

ଶୀଘ୍ର ସୋସାଲ-ଡେମୋକ୍ରାଟିକ୍ ପାର୍ଟି ସରକାର ଉପରୁ କର୍ତ୍ତୃତ୍ୱ ହରାଇଲା ଏବଂ ଅନ୍ୟମାନଙ୍କ ପ୍ରତିଦ୍ୱନ୍ଦ୍ୱିତା ହେତୁ କାଥଲିକ୍ କେନ୍ଦ୍ର ଦଳ ନାମକ ଆଉ ଏକ ଦଳ କ୍ଷମତାକୁ ଆସିଲା । ରିଚ୍‌ଷ୍ଟାଗ୍ (ପାର୍ଲିଅମେଣ୍ଟ)ରେ ଅନ୍ୟମାନଙ୍କୁ ଅବହେଳା ଦେଖାଇ କାର୍ଯ୍ୟ କରି-ପାରିଲା ପରି କୌଣସି ଗୋଟିଏ ଦଳ ନ ଥିଲା; ତେଣୁ ବାରମ୍ବାର ନିର୍ବାଚନ ଷଡ଼ଯନ୍ତ୍ର ଓ ଦଳ ଭିତରେ ଚକ୍ରାନ୍ତ ଚାଲିଥିଲା । ନାଜୀମାନଙ୍କ ବୃଦ୍ଧିରେ ସୋସାଲ-ଡେମୋକ୍ରାଟମାନେ ଏପରି

ଉପସ୍ଥାପିତ ହେଲେ ଯେ, ସେମାନେ ପୁଞ୍ଜିବାଦୀ କେନ୍ଦ୍ର ଦଳକୁ ସମର୍ଥନ କଲେ ଏବଂ ସଭାପତି ପଦ ପାଇଁ ପୁରାତନ ସେନାପତି ଭନ୍ ହିଣ୍ଡେନବର୍ଗଙ୍କ ନିର୍ବାଚନକୁ ସମର୍ଥନ କଲେ । ନାଜୀମାନଙ୍କ ବୃଦ୍ଧି ସତ୍ତ୍ୱେ ଦୁଇଟି ଶ୍ରମିକ ଦଳ, ସୋସାଲ-ଡେମୋକ୍ରାଟ ଓ କମ୍ୟୁନିଷ୍ଟ ଶକ୍ତିଶାଳୀ ଥିଲେ ଏବଂ ଶେଷ ପର୍ଯ୍ୟନ୍ତ ପ୍ରତ୍ୟେକର ଲକ୍ଷ ଲକ୍ଷ ସମର୍ଥକ ଥିଲେ, କିନ୍ତୁ ସାଧାରଣ ବିପଦବେଳେ ସୁଦ୍ଧା ସେମାନେ ପରସ୍ପର ସହ ସହଯୋଗ କରିପାରିଲେ ନାହିଁ । ୧୯୧୮ ପରଠାରୁ ସୋସାଲ-ଡେମୋକ୍ରାଟମାନଙ୍କ ହାତରେ କ୍ଷମତା ଥିବାବେଳେ ସେମାନେ କମ୍ୟୁନିଷ୍ଟଙ୍କୁ କଠର ଶାସ୍ତି ଦେଇଥିଲେ ଏବଂ କଠର ଥରକୁ ଥର ସଙ୍କଟ କାଳରେ ସୋସାଲ-ଡେମୋକ୍ରାଟମାନେ ପ୍ରତିକ୍ରିୟାଶୀଳ ଦଳସହ ସହଯୋଗ ଦେଉଥିଲେ ତାର ବିକଟ ସ୍ମୃତି କମ୍ୟୁନିଷ୍ଟଙ୍କ ମନରେ ଥିଲା । ସୋସାଲ-ଡେମୋକ୍ରାଟିକ୍ ପାର୍ଟି ଅନ୍ୟ ପକ୍ଷରେ ବ୍ରିଟିଶ ଲେବର ପାର୍ଟି ପରି ସମ୍ପଦଶାଳୀ ଓ ବ୍ୟାପକ ସଂଗଠନ ଥିଲା ଏବଂ ଏହା ଲେବର ପାର୍ଟି ସହ ଦ୍ୱିତୀୟ ଅନ୍ତର୍ଜାତୀୟରେ ଯୋଗ ଦେଇଥିଲା—ଏହା ପଛରେ ପ୍ରଚୁର ପୃଷ୍ଠପୋଷକତା ରହିଥିଲା ଏବଂ ନିଜର ସିକ୍ୟୁରିଟି ଓ ସ୍ଥାନକୁ ବିପଦ ସଙ୍କୁଳ କରିବା ନିମନ୍ତେ ଏହା କୌଣସି କାର୍ଯ୍ୟ କରିବାକୁ ଇଚ୍ଛୁକ ନ ଥିଲା । ଆଇନ ବିରୁଦ୍ଧରେ କିଛି କରିବା ନିମନ୍ତେ କିମ୍ବା ଯାହା କିଛିନ୍ତ ପ୍ରତ୍ୟକ୍ଷ ସଂଗ୍ରାମରେ ଯୋଗଦାନ କରିବାକୁ ଏହା ଖୁବ୍ ଭୟ କରୁଥିଲା । ଏହା କମ୍ୟୁନିଷ୍ଟଙ୍କ ସହିତ ଲଢ଼ାଇ କରିବାରେ ଅଧିକାଂଶ ଶକ୍ତି କ୍ଷୟ କଲା । ଅଥଚ ଦୁଇଟିଯାକ ଦଳ ଏକପ୍ରକାର ମାର୍କସବାଦୀ ଥିଲେ ।

ଏହିରୂପେ ସମସ୍ତ ସମ୍ପନ୍ନ ଶକ୍ତିମାନଙ୍କର ଏକ ସଶସ୍ତ୍ର ଶିବିର ହେଲା ଜର୍ମାନୀ ଏବଂ ସେଠାରେ ଘନଘନ ଦଙ୍ଗା ଓ ହତ୍ୟା ହେଲା; ବିଶେଷତଃ ନାଜୀମାନଙ୍କଦ୍ୱାରା କମ୍ୟୁନିଷ୍ଟ ଶ୍ରମିକ ନିହତ ହେଲେ । ବେଳେ ବେଳେ ଶ୍ରମିକମାନେ ଓଲଟା ମାଡ଼ ଦେଉଥିଲେ । ହିଟଲର ନାନାବର୍ଣ୍ଣର ଲୋକଙ୍କୁ ଏକତ୍ର କରିବାରେ ଅଲୌକିକ ସାଫଲ୍ୟ ଲାଭ କଲା; ଏହି ବିଭିନ୍ନ ଲୋକଙ୍କର ପରସ୍ପର ଭିତରେ କିଛି ସମଭାବ ନ ଥିଲା । ଏହା ଏକ ପକ୍ଷରେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ସହିତ ଶିଳ୍ପପତି ଓ ଅନ୍ୟ ପକ୍ଷରେ ଧନୀ କୃଷକଙ୍କର ଏକ ବିଚିତ୍ର ମିଳନଥିଲା । ଶିଳ୍ପପତିମାନେ ହିଟଲରକୁ ସମର୍ଥନ କଲେ ଓ ତାକୁ ଧନ ସାହାଯ୍ୟ ଦେଲେ । କାରଣ ସେ ସାମ୍ୟବାଦୀକୁ ଗାଳିଦେଲା ଏବଂ ଅଗ୍ରଗାମୀ ମାର୍କସ୍‌ଇଜିମ ବା କମ୍ୟୁନିଜିମ ବିରୁଦ୍ଧରେ ଏକମାତ୍ର ଦୁର୍ଗପରି ମନେହେଲା । ଏହାର ପୁଞ୍ଜିବାଦ-ବିରୋଧୀ ଧ୍ୱନି ଯୋଗୁଁ ଦରିଦ୍ର ମଧ୍ୟବିତ୍ତ ଶ୍ରେଣୀ କୃଷକ ଏବଂ ଏପରି କି କେତେକ ଶ୍ରମିକ ମଧ୍ୟ ଏଥିପ୍ରତି ଆକୃଷ୍ଟ ହେଲେ ।

୧୯୩୩ ଜାନୁୟାରୀ ୩୦ ତାରିଖରେ ବୃଦ୍ଧ ସଭାପତି ହିଣ୍ଡେନ୍‌ବର୍ଗ (ସେତେବେଳକୁ ତାଙ୍କ ବୟସ ୮୬ ବର୍ଷ ହୋଇଥିଲା ) ହିଟଲରଙ୍କୁ ଚାନ୍‌ସେଲର କଲେ—ଜର୍ମାନୀରେ ଏହା ଶ୍ରେଷ୍ଠତମ ପଦବୀ; ପ୍ରଧାନମନ୍ତ୍ରୀ ପଦ ସହ ସମାନ । ନାଜୀ ଓ ଜାତୀୟବାଦୀଙ୍କ ଭିତରେ ଗୋଟାଏ ମିତ୍ରତା ହେଲା, କିନ୍ତୁ ଅତିଶୀଘ୍ର ସ୍ପଷ୍ଟରୂପେ ଜଣାପଡ଼ିଲା ଯେ ନାଜୀମାନଙ୍କ ହାତରେ ପୂରା କର୍ତ୍ତୃତ୍ୱ ଆସିଗଲା; ଅନ୍ୟମାନଙ୍କର ଆଉ ପଚାରି ରହିଲା ନାହିଁ । ନାଜୀମାନେ

ତାଙ୍କ ମିତ୍ର ଜାତୀୟବାଦୀଙ୍କ ସହିତ ସାଧାରଣ ନିର୍ବାଚନରେ ରିଚ୍‌ଷ୍ଟାଗ୍‌ରେ ଠିକ୍ ବହୁମତ ପାଇଗଲେ । ଏହି ବହୁମତ ନ ହୋଇଥିଲେ ସୁଦ୍ଧା ବିଶେଷ କିଛି ପାର୍ଥକ୍ୟ ହୋଇ ନ ଥାନ୍ତା, କାରଣ ନାଜୀମାନେ ପାର୍ଲିଆମେଣ୍ଟରେ ତାଙ୍କ ବିରୋଧୀ ମାନଙ୍କୁ ଗିରଫ କଲେ ଓ ସେମାନଙ୍କୁ ଜେଲରେ ପୂରାଇ ଦେଲେ । ଏହିରୂପେ ସମସ୍ତ କମ୍ୟୁନିଷ୍ଟ ଶ୍ରମିକ ଓ କେତେକ ସୋସାଲ୍-ଡେମୋକ୍ରାଟଙ୍କୁ ଅନ୍ତର କରି ଦିଆଗଲା । ଠିକ୍ ସେତିକିବେଳେ ରିଚ୍‌ଷ୍ଟାର କୋଠାରେ ନିଆଁ ଲାଗିଲା ଓ ତାହା ପୋଡ଼ି ଦିଆଗଲା । ନାଜୀମାନେ କହିଲେ ଯେ, ଏହା କମ୍ୟୁନିଷ୍ଟଙ୍କ କାଣ୍ଡ ଏବଂ ରାଷ୍ଟ୍ରମୂଳ କାଟିବାର ଏକ ଷଡ଼ଯନ୍ତ୍ର । କମ୍ୟୁନିଷ୍ଟମାନେ ଶକ୍ତିସହକାରେ ଏହା ଅସ୍ୱୀକାର କଲେ ଏବଂ ପ୍ରକୃତରେ ନାଜୀ ନେତାମାନେ ସେମାନଙ୍କୁ ଆକ୍ରମଣ କରିବାର ଏକ ପେଖନା ଖୋଜି ନିଆଁ ଲଗାଇ ଦେଇଛନ୍ତି ବୋଲି ସେମାନେ ଅଭିଯୋଗ କଲେ ।

ତାପରେ ସମଗ୍ର ଜର୍ମାନୀରେ ନାଜୀ ବା ବାଦାମୀ ଆତଙ୍କ ଆରମ୍ଭ ହେଲା । ପ୍ରଥମେ ପ୍ରଥମେ ପାର୍ଲିଆମେଣ୍ଟକୁ ଭାଙ୍ଗି ଦିଆଗଲା (ଯଦିଓ ନାଜୀମାନଙ୍କର ବହୁମତ ଥିଲା) ଓ ସମସ୍ତ କ୍ଷମତା ହିଟଲର ଓ ତାଙ୍କ ମନ୍ତ୍ରିମଣ୍ଡଳ ହାତରେ ସମର୍ପି ଦିଆଗଲା । ସେମାନେ ଆଇନ କରିପାରିଲେ ଅଥବା ଯାହା ଇଚ୍ଛା କରୁଥିଲେ କରିପାରିଲେ । ପ୍ରଜାତନ୍ତ୍ର 'ଓ୍ୱେମାର' ଶାସନ-ବିଧାନ ଏହିରୂପେ ନଷ୍ଟ କରାଗଲା ଏବଂ ସମସ୍ତ ପ୍ରକାର ଗଣତନ୍ତ୍ର ପ୍ରକାଶ୍ୟରୂପେ ନଷ୍ଟ କରାଗଲା । ଜର୍ମାନୀ ଏକପ୍ରକାର ରାଷ୍ଟ୍ରସଂଘ ଥିଲା; ଏହାଂ ମଧ୍ୟ ଶେଷ ହେଲା ଓ ସମସ୍ତ କ୍ଷମତା ବର୍ଲିନରେ କେନ୍ଦ୍ରୀଭୂତ ହେଲା । ପ୍ରତ୍ୟେକ ସ୍ଥାନରେ ଡିକ୍‌ଟେଟର ନିଯୁକ୍ତ ହେଲେ—ସେମାନେ ତାଙ୍କର ଉପରେ ଥିବା ଡିକ୍‌ଟେଟର ନିକଟରେ ଦାୟୀ ହେଉଥିଲେ । ହିଟଲର ଅବଶ୍ୟ ପ୍ରଧାନ ଡିକ୍‌ଟେଟର ହେଲେ ।

ଏହିସବୁ ପରିବର୍ତ୍ତନ ହେଉଥିଲାବେଳେ ନାଜୀ ଝଟିକାବାହିନୀ ସମଗ୍ର ଜର୍ମାନୀରେ ଖେପିଗଲେ ଏବଂ ସେମାନେ ହିଂସା, ଆତଙ୍କ ଓ ଅଦ୍ଭୁତ ପ୍ରକାରେ ବର୍ବର ଓ ପାଶବିକ ରାଜୁତି ଆରମ୍ଭ କଲେ । ଏହା ପ୍ରକୃତରେ ଅଦ୍ଭୁତ ପ୍ରକାର । ପୂର୍ବରୁ ଲାଲ୍ ଆତଙ୍କ, ଶ୍ୱେତ ଆତଙ୍କ—ଏହିପରି ଆତଙ୍କ ସବୁ ହୋଇଛି, କିନ୍ତୁ ସାଧାରଣତଃ ଯେତେବେଳେ ଗୋଟିଏ ଦେଶ ବା ପ୍ରଧାନ ଗୋଷ୍ଠୀ ଗୃହଯୁଦ୍ଧରେ ନିଜର ଜୀବନ ଲାଗି ସଂଗ୍ରାମ କରୁଥାଏ, ଏହା ସେତିକିବେଳେ ଏହିପରି ଘଟେ । ଏହି ଆତଙ୍କ ଏକ ଭୟାବହ ବିପଦର ପ୍ରତିକ୍ରିୟା । ନାଜୀମାନଙ୍କର ସେପରି କିଛି ବିପଦର ସମ୍ମୁଖୀନ ହେବାର ନ ଥିଲା କିମ୍ବା ଭୟ କରିବାର ସେମାନଙ୍କର କୌଣସି କାରଣ ନ ଥିଲା । ସେମାନେ ସରକାରକୁ ଆୟତ୍ତରେ ରଖିଲେ ଏବଂ ସେମାନଙ୍କ ପ୍ରତି କିଛି ସକ୍ରିୟ ବିରୋଧ ବା ପ୍ରତିରୋଧ ନ ଥିଲା । ବାଦାମୀ ଆତଙ୍କ ତେଣୁ କୌଣସି ଭାବ ଓ ଭୟରୁ ଜାତ ହୋଇ ନ ଥିଲା, ମାତ୍ର ନାଜୀମାନଙ୍କ ସହିତ ଯେଉଁମାନେ ସମ୍ମତ ନ ହେଲେ ସେ ସମସ୍ତଙ୍କୁ ଜ୍ଞାତସାରରେ, ନା ଉତ୍ତେଜନାରେ ଓ ଅବିଶ୍ୱାସଯୋଗ୍ୟ ପାଶବିକ ଶକ୍ତି ପ୍ରୟୋଗ କରି ଦମନ କରାଗଲା ।

ନାତ୍ସିମାନେ କ୍ଷମତା ପାଇଲା ଦିନୁଁ ଜର୍ମାନୀରେ ଯେଉଁ ନିର୍ମମ କାଣ୍ଡସବୁ ହୋଇଛି, ତାହାର ତାଲିକା ଏଠି ଦେଇ କିଛି ଉଦ୍ଦେଶ୍ୟ ସାଧିତ ହେବ ନାହିଁ ଏବଂ ଅନେକସ୍ଥଳରେ ଏହା ଏବେ ଲୁଚା ରହିଛି । ସେଠାରେ ବହୁଳ ପରିମାଣରେ ପ୍ରହାର, ଯନ୍ତ୍ରଣା, ଗୁଳିମାଡ଼ ଓ ହତ୍ୟାକାଣ୍ଡ ହୋଇଛି; ନରନାରୀ ସମସ୍ତେ ଏଥିର ଶିକାର ହୋଇଛନ୍ତି । ବହୁସଂଖ୍ୟକ ଲୋକଙ୍କୁ ଜେଲ୍ ଓ ଅବରୋଧ ଶିବିରରେ ନଜରବନ୍ଦୀ ଭାବରେ ରଖାଯାଇଛି ଏବଂ ସେଠାରେ ବଡ଼ ଖରାପ ବ୍ୟବହାର କରାଯାଉଛି ବୋଲି ଶୁଣାଯାଏ । କମ୍ୟୁନିଷ୍ଟଙ୍କ ଉପରେ ଆକ୍ରମଣ ଅତି ଭୀଷଣ ହୋଇଛି, କିନ୍ତୁ ଅଧିକ ନରମା ସୋସାଲ୍‌-ଡେମୋକ୍ରାଟମାନେ କିଛିଏ ସାମାନ୍ୟ ଭଲ ବ୍ୟବହାର ପାଇଛନ୍ତି । ଇହୁଦୀମାନଙ୍କ ପାଇଁ ତ କବର ଖୋଲାହୋଇ ରହିଛି ଏବଂ ଶାନ୍ତିବାଦୀ, ଉଦାର ମତାବଲମ୍ବୀ, ଟ୍ରେଡ଼ ଇଉନିୟନବାଦୀ ଓ ଆନ୍ତର୍ଜାତୀୟ-ବାଦୀଙ୍କ ଉପରେ ବି ଚଢ଼ାଉ ହୋଇଛି । ନାତ୍ସିମାନେ ଘୋଷଣା କରନ୍ତି ଯେ, ଏହା ମାର୍କସ-ବାଦୀ ଏବଂ ବାସ୍ତବିକ ସମ୍ପୂର୍ଣ୍ଣ "ବାମପନ୍ଥୀ"ଙ୍କ ବିଲୋପ ସାଧନ ଲାଗି ଯୁଦ୍ଧ । ସମସ୍ତ ପଦବୀ ଓ ବ୍ୟବସାୟରୁ ଇହୁଦୀମାନଙ୍କୁ ଅବଶ୍ୟ ଦୂର କରିବାକୁ ହେବ । ହଜାର ହଜାର ଇହୁଦୀ ଡାକ୍ତର, ଧାତ୍ରୀ, ଅଧ୍ୟାପକ, ଶିକ୍ଷକ, ସଙ୍ଗୀତଜ୍ଞ, ଓକିଲ ଓ ବିଚାରକଙ୍କୁ ତଡ଼ି ଦିଆଯାଇଛି । ଇହୁଦୀ ଦୋକାନୀମାନଙ୍କୁ ବର୍ଜନ ବା ବୟକଟ୍ କରାଯାଇଛି ଏବଂ କାରଖାନାମାନଙ୍କରୁ ଇହୁଦୀ ଶ୍ରମିକଙ୍କୁ ବରଖାସ୍ତ କରାହୋଇଛି । ନାତ୍ସିମାନେ ପସନ୍ଦ ନ କରୁଥିବା ପୁସ୍ତକସବୁ ପୋଡ଼ିଦିଆଯାଇଛି—ସାଧାରଣରେ ଏହି ପୋଡ଼ିବା କାର୍ଯ୍ୟ ହୋଇଛି । ସାମାନ୍ୟ ମତଭେଦ ବା ସମାଲୋଚନା ନିମନ୍ତେ ସମ୍ବାଦପତ୍ରଗୁଡ଼ିକୁ କ୍ରୂର ଭାବରେ ଦମନ କରାଯାଇଛି । ଆତଙ୍କ ସମ୍ବନ୍ଧରେ କୌଣସି ସମ୍ବାଦ ପ୍ରକାଶ କରିବାକୁ ଦିଆଯାଉ ନାହିଁ ଏବଂ ଏପରି କି ଏ ବିଷୟରେ ଗୁପ୍ତରେ କଥାବାର୍ତ୍ତା ହେଲେ ଗୁରୁତର ଶାସ୍ତି ଦିଆଯାଉଛି ।

ନାତ୍ସିଦଳ ଛଡ଼ା ଅନ୍ୟ ସମସ୍ତ ସଂଗଠନ ଓ ଦଳ ଦବାଇ ଦିଆଯାଇଛି । ପ୍ରଥମେ ଗଲା କମ୍ୟୁନିଷ୍ଟ ପାର୍ଟି, ତାପରେ ସୋସାଲ୍‌-ଡେମୋକ୍ରାଟ, ତାପରେ କାଥଲିକ କେନ୍ଦ୍ରଦଳ ଏବଂ ଶେଷକୁ ନାତ୍ସିଙ୍କ ମିତ୍ର ଜାତୀୟବାଦୀମାନେ । ବିରାଟ ଜର୍ମାନ ଟ୍ରେଡ଼ ୟୁନିୟନ ଥିଲା ଶ୍ରମିକଙ୍କ ପ୍ରତିନିଧି ଏବଂ ଶ୍ରମିକମାନେ ପୁରୁଷ ପୁରୁଷ ଧରି ତ୍ୟାଗ ଓ ଅର୍ଥ ସଞ୍ଚୟ କରି ଏହା ଗଢ଼ିଥିଲେ—ସେଗୁଡ଼ିକୁ ଭାଙ୍ଗିଦିଆଗଲା ଓ ତାର ସମସ୍ତ ପାଣ୍ଠି ଓ ସମ୍ପତ୍ତି ବାଜ୍ୟାପ୍ତ ହୋଇଗଲା । କେବଳ ଗୋଟିଏ ଦଳ, ଗୋଟିଏ ସଂଗଠନ ରହିବ—ତାହା ହେଉଛି ନାତ୍ସି ଦଳ ।

ଅଦ୍ଭୁତ ନାତ୍ସି ଦର୍ଶନ ପ୍ରତ୍ୟେକ ଗଳାରେ ବଳପୂର୍ବକ ଭର୍ତ୍ତି କରାଗଲା, ଆତଙ୍କର ଭୟ ଏପରି ଯେ କେହି ମୁଣ୍ଡଟେକି ପାରିବ ନାହିଁ । ଶିକ୍ଷା, ଥିଏଟର, କଳା, ବିଜ୍ଞାନ—ପ୍ରତ୍ୟେକ ଜିନିଷରେ ନାତ୍ସି ମୋହର ଦିଆଯାଇଛି । ହିଟଲରଙ୍କ ଜଣେ ପ୍ରଧାନ ବ୍ୟକ୍ତି ହର୍ମାନ ଗୋରିଙ୍ଗ୍ କହିଛନ୍ତି—"ସଚ୍ଚା ଜର୍ମାନ ତାର ରକ୍ତ ଦେଇ ଚିନ୍ତା କରେ ।" "ବିଶୁଦ୍ଧ

ଯୁକ୍ତି ଓ ଅବବୋଧ ଭାବାପନ୍ନ ବିଜ୍ଞାନର କାଳ ପୂରିଲାଣି," ଏହା ଆଉ ଜଣେ ନାଜି ନେତା କହିଥିଲେ । ପିଲମାନଙ୍କୁ ଶିକ୍ଷା ଦିଆଯାଏ ଯେ ହିଟଲର ଜଣେ ଦ୍ୱିତୀୟ ଯୀଶୁ, ପ୍ରଥମ ଅପେକ୍ଷା ବୃହତ । ନାଜି ସରକାର ଲୋକଙ୍କ ଭିତରେ ବିଶେଷ ଭାବରେ ନାରୀମାନଙ୍କ ଭିତରେ ଅଧିକ ଶିକ୍ଷା ବିସ୍ତାର ପସନ୍ଦ କରେ ନା । ହିଟଲରପନ୍ଥୀଙ୍କ ମତାନୁସାରେ ନାରୀର ସ୍ଥାନ ହେଉଛି ଗୃହ ଓ ରୋଷେଇଶାଳାରେ ଓ ତାର ମୁଖ୍ୟ କାର୍ଯ୍ୟ ହେଉଛି ଯୁଦ୍ଧ କରିବା ନିମନ୍ତେ ଓ ରାଷ୍ଟ୍ର ପାଇଁ ମରିବା ନିମନ୍ତେ ସନ୍ତାନ ଯୋଗାଇବା । ଆଉ ଜଣେ ନାଜି ନେତା ଓ ସାଧାରଣ ଆଲୋକଦାନ ଓ ପ୍ରଚାର ବିଭାଗ ମନ୍ତ୍ରୀ ଡାକ୍ତର ଜୋସେଫ ଗୋବେଲସ କହିଛନ୍ତି—"ନାରୀର ସ୍ଥାନ ହେଉଛି ପରିବାର ଭିତରେ; ତାର ଉପଯୁକ୍ତ କର୍ତ୍ତବ୍ୟ ହେଉଛି ତାର ଦେଶ ଓ ତାର ଲୋକଙ୍କୁ ସନ୍ତାନ ଯୋଗାଇବା···ନାରୀ ସ୍ୱାଧୀନତା ରାଷ୍ଟ୍ର ପକ୍ଷରେ ବିପଦ । ପୁରୁଷର ଯେଉଁ କାମ ନାରୀ ସେସବୁ ପୁରୁଷ ହାତରେ ଛାଡ଼ି ଦେବା ଦରକାର ।" ସାଧାରଣଙ୍କୁ ଜ୍ଞାନାଲୋକ ଦେବାର ପନ୍ଥା କଣ ହେବା ଉଚିତ ସେ ସମ୍ବନ୍ଧରେ ମଧ୍ୟ ସେହି ଡାକ୍ତର ଗୋବେଲସ କହିଛନ୍ତି "ପିଆନୋପରି ସମ୍ବାଦପତ୍ରରେ ଖେଳିବା ହେଉଛି ମୋର ଉଦ୍ଦେଶ୍ୟ ।"

ଏହିସବୁ ବର୍ବରତା, ପଶୁତ୍ୱ, ଅଗ୍ନି ଓ ବଜ୍ର ପଶ୍ଚାତରେ ଦଖଲଚ୍ୟୁତ ମଧ୍ୟବିତ୍ତ ଶ୍ରେଣୀର ଯନ୍ତ୍ରଣା ଓ କ୍ଷୁଧା ରହିଥିଲା । ଏହା ପ୍ରକୃତରେ ଚାକିରୀ ଓ ରୁଟି ନିମନ୍ତେ ଲଢ଼ାଇ । "ଆର୍ଯ୍ୟ" ଜର୍ମାନମାନେ ଇହୁଦୀମାନଙ୍କ ସହ ପ୍ରତିଯୋଗିତା କରିବାକୁ ସମର୍ଥ ହେଉନାହାନ୍ତି; ସେମାନଙ୍କ ସଫଳତା ପ୍ରତି ଲାଳାୟିତ ଦୃଷ୍ଟିରେ ଅନାଇ ରହୁଛନ୍ତି ଏବଂ ସେମାନଙ୍କ କାର୍ଯ୍ୟ ପାଇବା ଲଗି ଚାହିଁ ବସିଛନ୍ତି; ଏହି କାରଣରୁ ଇହୁଦୀ ଡାକ୍ତର, ଧାତ୍ରୀ, ଓକିଲ ଓ ଶିକ୍ଷକ ଇତ୍ୟାଦିଙ୍କୁ ତଡ଼ି ଦିଆଗଲା । ଅନେକ ଅଣଇହୁଦୀ, ଦୋକାନସବୁ ବି ବନ୍ଦ କରି ଦିଆଗଲା ଏବଂ ମାଲିକମାନେ ମୁନାଫା ନେଉଥିବାର ଓ ଅଯଥାର୍ଥ ରୂପେ ଉଚ୍ଚ ଦର ନେଉଥିବାର ସନ୍ଦେହ କରାଯାଇ ସେମାନଙ୍କୁ ଗିରଫ କରାଗଲା । ନାଜିମାନଙ୍କର କୃଷକ ସମର୍ଥକମାନେ ପୂର୍ବ ପ୍ରୁସିଆର ବଡ଼ ବଡ଼ ଇଲାକା ଉପରେ ଲୋଲୁପ ଦୃଷ୍ଟି ନିକ୍ଷେପ କରିଛନ୍ତି; ସେମାନେ ତାକୁ ନିଜ ଭିତରେ ବାଣ୍ଟି ନେବାକୁ ଚାହାନ୍ତି ।

ପ୍ରଥମେ ନାଜି କାର୍ଯ୍ୟପନ୍ଥାରେ ବେତନର ପରିମାଣ ୧୨ ହଜାର ମାର୍କରୁ କେବେ ହେଁ ବେଶି ହେବ ନାହିଁ ବୋଲି ଏକ ପ୍ରସ୍ତାବ ଥିଲା; ଏହା ୮ ହଜାର ଟଙ୍କା ଅଥବା ମାସିକ ୬୬୭ ଟଙ୍କା ସଙ୍ଗେ ସମାନ । ଏହା କେତେଦୂର କାର୍ଯ୍ୟକାରୀ କରାଯାଇଛି, ମୁଁ ଜାଣେ ନାହିଁ । ଚାନ୍‌ସେଲରର ବର୍ତ୍ତମାନ ବେତନ ବାର୍ଷିକ ୨୬୦୦୦ ମାର୍କ (ଅର୍ଥାତ୍ ୧୪୪୦ ଟଙ୍କା) । ଆହୁରି ପ୍ରସ୍ତାବ କରାଯାଇଛି ଯେ, ସରକାରୀ ସାହାଯ୍ୟପ୍ରାପ୍ତ କୌଣସି ବ୍ୟକ୍ତିଗତ କମ୍ପାନୀର ଡିରେକ୍‌ଟର ବା ମାଲିକ ବାର୍ଷିକ ୧୮୦୦୦ ମାର୍କଠାରୁ ଅଧିକ ପାଇପାରିବ ନାହିଁ ଏବଂ ଏମାନେ ଆଗେ ବହୁତ ପରିମାଣରେ ବେତନ ପାଉଥିଲେ । ଏହି ହିସାବ ସହିତ

ଦରିଦ୍ର ଭାରତର ସରକାରୀ କର୍ମଚାରୀମାନଙ୍କୁ ଦିଆଯାଉଥିବା ଉଚ୍ଚ ବେତନର ତୁଳନା କର । କଂଗ୍ରେସ ମାସିକ ବେତନ ୫୦୦ ଟଙ୍କା ନିର୍ଦ୍ଦିଷ୍ଟ କରି କରାଚିରେ ଏକ ପ୍ରସ୍ତାବ କରିଛି ।

ନାଜି ଆନ୍ଦୋଳନରେ ବର୍ବରତା ଓ ଆତଙ୍କ ପ୍ରସିଦ୍ଧି ଲାଭକରିଛି ବୋଲି ଏହା ପଛରେ ଯେ ଆଉ କିଛି ନାହିଁ ଅନୁମାନ କରିବା ଠିକ୍ ହେବ ନାହିଁ । ନିଃସନ୍ଦେହରୂପେ ହିଟଲରଙ୍କ କାର୍ଯ୍ୟରେ ବହୁ ଅଧିକ ସଂଖ୍ୟକ ଶ୍ରମିକ ବ୍ୟତୀତ ବହୁସଂଖ୍ୟକ ଜର୍ମାନମାନଙ୍କର ଖୁବ୍ ଉତ୍ସାହ ରହିଛି । ଗତ ନିର୍ବାଚନର ହିସାବ ଦେଖିଲେ ଦେଖାଯିବ ଯେ, ସମଗ୍ର ଲୋକସଂଖ୍ୟାର ଶତକଡ଼ା ୫୨ ତାଙ୍କ ପଛରେ ରହିଛି ଏବଂ ଏହି ୫୨ ଜଣ ଅବଶିଷ୍ଟ ୪୮ ଜଣ ଅଥବା ତାର ଏକାଂଶକୁ ଆତଙ୍କିତ କରୁଛନ୍ତି । ଏହି ୫୨ଙ୍କ ସହିତ ଏବେ ବହୁଏତ ଆଉ ମିଶିଥିବେ; ଏହି ଲୋକଙ୍କ ଭିତରେ ହିଟଲର ଅତ୍ୟନ୍ତ ଲୋକପ୍ରିୟ । ଜର୍ମାନୀକୁ ଯାଇଥିବା ଲୋକେ କହନ୍ତି ଯେ, ଏକ ଧାର୍ମିକ ପୁନର୍ଜାଗରଣ ପରି ଏକ ଅଦ୍ଭୁତ ମାନସିକ ବାୟୁମଣ୍ଡଳ ସେଠାରେ ଦେଖାଯାଉଛି । ଜର୍ମାନମାନେ ବୋଧ କରୁଛନ୍ତି ଯେ, ଭର୍ସେଲିସ୍ ସନ୍ଧିହେତୁ ଦୀର୍ଘକାଳ ଯେଉଁ ଅପମାନ ଓ ଦମନ ସେମାନେ ସହିଥିଲେ ତାହା ଅତୀତ ହୋଇଗଲାଣି ଏବଂ ସେମାନେ ସ୍ୱାଧୀନ ଭାବରେ ନିଃଶ୍ୱାସ ମାରିବେ ।

କିନ୍ତୁ ଜର୍ମାନୀର ଅନ୍ୟ ଅର୍ଦ୍ଧେକ ଲୋକ ଅଥବା ସେହିପରି ଲୋକେ ସମ୍ପୂର୍ଣ୍ଣ ପୃଥକ ଭାବରେ ଅନୁଭବ କରୁଛନ୍ତି । ଜର୍ମାନୀର ଶ୍ରମିକ ଶ୍ରେଣୀ ଅତ୍ୟନ୍ତ ଘୃଣା ଓ କ୍ରୋଧଦ୍ୱାରା ଶାସିତ ହେଉଛନ୍ତି ଏବଂ ନାଜିମାନଙ୍କର ନିର୍ମମ ପ୍ରତିହିଂସା ଉପରେ ଚାଳିତ ହେଉଛନ୍ତି । ସେମାନେ ମୋଟାମୋଟି ଶକ୍ତି ଓ ଆତଙ୍କ ବାଦ ଆଗରେ ବଶ୍ୟତା ସ୍ୱୀକାର କରିଅଛନ୍ତି ଏବଂ ନିଜର ଅଗାଧ ଶ୍ରମ ଓ ତ୍ୟାଗ ବଳରେ ଗଢ଼ିଥିବା ଜିନିଷର ଧ୍ୱଂସ ବିଷାଦ ଓ ହତାଶ ପ୍ରାଣରେ ଲକ୍ଷ୍ୟ କରୁଛନ୍ତି । ଗତ କେତେ ମାସ ଭିତରେ ଜର୍ମାନୀରେ ଯାହାସବୁ ଘଟିଯାଇଛି, ସେଥିରେ ସାମାନ୍ୟ ମାତ୍ର ପ୍ରତିରୋଧର ଚେଷ୍ଟା ନ କରି ବିରାଟ ସୋସାଲଡେମୋକ୍ରାଟିକ୍ ପାର୍ଟିର ସମ୍ପୂର୍ଣ୍ଣ ପତନ ଏକ ଅତି ଆଶ୍ଚର୍ଯ୍ୟଜନକ କଥା । ଏହା ଇଉରୋପରେ ଶ୍ରମିକ ଶ୍ରେଣୀର ସର୍ବାପେକ୍ଷା ପୁରାତନ, ବୃହତ୍ତ ଓ ଅତ୍ୟନ୍ତ ସୁସଙ୍ଗଠିତ ଦଳ ଥିଲା । ଏହା 'ଦ୍ୱିତୀୟ ଅନ୍ତର୍ଜାତୀୟ'ର ମେରୁଦଣ୍ଡ ଥିଲା ଅଥଚ ଏହା ପ୍ରତ୍ୟେକ ଅପମାନ ଓ ମର୍ଯ୍ୟାଦାହାନିକର କାର୍ଯ୍ୟକୁ ଶାନ୍ତଭାବରେ ପ୍ରାୟ ଆଦୌ ପ୍ରତିବାଦ ନ କରି ସ୍ୱୀକାର କରିଗଲା ଏବଂ ଶେଷରେ ଲୋପପାଇଲା । ଅବଶ୍ୟ ଖାଲି ପ୍ରତିବାଦ କରିବାଟା ବୃଥା । କ୍ରମେ କ୍ରମେ ସୋସାଲ୍-ଡେମୋକ୍ରାଟିକ ନେତାମାନେ ନାଜିମାନଙ୍କ ପାଖରେ ବଶ୍ୟତା ସ୍ୱୀକାର କଲେ, ପ୍ରତିଥର ଆଶା କରୁଥାନ୍ତି ଯେ ତାଙ୍କର ବଶ୍ୟତା ସ୍ୱୀକାର ଓ ଅପମାନ ଫଳରେ ଶେଷକୁ କିଛି ହେଲେ ରକ୍ଷା ହୋଇଯିବ; କିନ୍ତୁ ତାଙ୍କର ଏହି ବଶ୍ୟତା ହିଁ ତାଙ୍କ ପ୍ରତି ଅସ୍ତ୍ରରୂପେ ପ୍ରୟୋଗ ହେଲା ଏବଂ ନାଜିମାନେ ଶ୍ରମିକମାନଙ୍କର ନେତା ଅସଲ ବିପଦବେଳେ ସେମାନଙ୍କୁ କିପରି ନିର୍ଦ୍ଦୟ ଭାବରେ ଛାଡ଼ି ଚାଲିଗଲେ ତାହା ଦର୍ଶାଇଲେ । ଇଉରୋପର ଶ୍ରମିକ ଶ୍ରେଣୀର

ଦୀର୍ଘକାଳବ୍ୟାପୀ ସଂଗ୍ରାମ ଇତିହାସରେ କେତେ ବିଜୟ ଓ ଅନେକ ପରାଜୟ ଘଟିଛି କିନ୍ତୁ ସାମାନ୍ୟ ହେଲେ ପ୍ରତିରୋଧ କରିବାକୁ ଉଦ୍ୟମ ନକରି ଏପରି ଅପମାନଜନକ ଆତ୍ମସମର୍ପଣ ଓ ଶ୍ରମିକମାନଙ୍କ ପ୍ରତି ବିଶ୍ୱାସଘାତକତା କେବେ ହୋଇ ନ ଥିଲା । କମ୍ୟୁନିଷ୍ଟ ପାର୍ଟି ପ୍ରତିରୋଧ କରିବାକୁ ଚେଷ୍ଟା କଲା ଏବଂ ଏକ ସାଧାରଣ ଧର୍ମଘଟର ଡାକରା ଦେଲା । ସୋସାଲ ଡେମୋକ୍ରାଟିକ ନେତାମାନେ ସେମାନଙ୍କୁ ସମର୍ଥନ କଲେ ନାହିଁ ଓ ଧର୍ମଘଟ ବିଫଳ ହୋଇଗଲା । ଭାଙ୍ଗିଯାଇଥିଲେ ସୁଦ୍ଧା ଶ୍ରମିକ ଆନ୍ଦୋଳନ ଗୋପନରେ ଏବେ ସଂଗଠନ କାର୍ଯ୍ୟ ଚଳାଉଛି ଓ ଏହା ଏବେ ବିସ୍ମିତ ପରି ଜଣାପଡ଼ୁଛି । ନାଜୀର ଗୋଇନ୍ଦା ବ୍ୟବସ୍ଥା ସତ୍ତ୍ୱେ ଗୁପ୍ତଭାବରେ ପ୍ରକାଶିତ ସମ୍ବାଦପତ୍ର କେତେ ଲକ୍ଷ ସଂଖ୍ୟାରେ ପ୍ରଚାରିତ ହେଉଥିବାର ଧରାଯାଏ । ଜର୍ମାନୀରୁ ପଳାଇ ଆସିଥିବା କେତେକ ସୋସାଲ-ଡେମୋକ୍ରାଟିକ ନେତା ବିଦେଶରୁ ଗୁପ୍ତଭାବରେ କିଛି ପ୍ରଚାର କରିବାର ଚେଷ୍ଟା କରୁଛନ୍ତି ।

ଏହି ବାଦାମୀ ଆତଙ୍କ (Brown terror)ରେ ଶ୍ରମିକ ଶ୍ରେଣୀହିଁ ସର୍ବାପେକ୍ଷା ଅଧିକ କଷ୍ଟ ଭୋଗୁଛନ୍ତି । ଅବଶ୍ୟ ଇହୁଦୀମାନଙ୍କ ପ୍ରତି ବ୍ୟବହାରରେ ପୃଥିବୀର ଜନମତ ଅଧିକ ଉତ୍ତେଜିତ ହୋଇଛି । ଇଉରୋପ ଆଂଶିକ ଭାବରେ ଶ୍ରେଣୀ ସଂଗ୍ରାମରେ ଅଭ୍ୟସ୍ତ ଏବଂ ସାଧାରଣତଃ ଶ୍ରେଣୀଦୃଷ୍ଟିରୁ ସହାନୁଭୂତି ନଆସେ । କିନ୍ତୁ ଇହୁଦୀମାନଙ୍କ ଉପରେ ଆକ୍ରମଣ ଏକ ଜାତିଗତ ଆକ୍ରମଣ । ଏହା ମଧ୍ୟଯୁଗରେ ବ୍ୟବହୃତ ହେଉଥିବା ଅଥବା ଏବକାଳରେ ବେସରକାରୀ ଭାବରେ ଜାର ଶାସିତ ରୁଷପରି ଅନୁନ୍ନତ ଦେଶରେ ପ୍ରଚଳିତ ରୀତିପରି । ଏକ ଜାତିକୁ ସରକାରୀ ଭାବରେ ଏପରି ଶାସ୍ତିଦେବା ହେତୁ ଇଉରୋପ ଆମେରିକା ଚକିତ ହୋଇଗଲା । ଏହା ଛଡ଼ା ପୁଣି ଜର୍ମାନ ଇହୁଦୀମାନଙ୍କ ଭିତରେ ଅନେକ ପୃଥିବୀ ବିଖ୍ୟାତ ଲୋକ, ବିଚକ୍ଷଣ ବୈଜ୍ଞାନିକ, ଡାକ୍ତର, ଓକିଲ, ସଙ୍ଗୀତଜ୍ଞ ଓ ଲେଖକ ଥିଲେ । ଆଲବର୍ଟ ଆଇନଷ୍ଟାଇନ ଏମାନଙ୍କ ଭିତରୁ ଜଣେ । ସେମାନେ ଜର୍ମାନୀକୁ ନିଜର ଘର ବୋଲି ବିଚାରୁଥିଲେ ଏବଂ ପ୍ରତ୍ୟେକ ସ୍ଥାନରେ ଜର୍ମାନ ଭାବରେ ପରିଚିତ ଥିଲେ । ଯେକୌଣସି ଦେଶ ଏପରି ଲୋକ ପାଇ ସମ୍ମାନିତ ବୋଧ କରିଥାନ୍ତା । କିନ୍ତୁ ନାଜୀମାନେ ଜାତି ବିଦ୍ୱେଷରେ ଏପରି ପାଗଳ ହୋଇଥିଲେ ଯେ ଏମାନଙ୍କୁ ମାରି ଘଉଡ଼ାଇଲେ ଏବଂ ଏହା ବିରୁଦ୍ଧରେ ସମଗ୍ର ଜଗତରେ ଖୁବ୍ ଚିତ୍କାର ଉଠିଲା । ତା'ପରେ ନାଜୀମାନେ ଇହୁଦୀ ଦୋକାନ ଓ ବ୍ୟବସାୟୀ ଲୋକଙ୍କୁ ବର୍ଜନ କଲେ, ଅଥଚ ଆଶ୍ଚର୍ଯ୍ୟ କଥା ସେମାନେ ଆଦୌ ଇହୁଦୀମାନଙ୍କୁ ଜର୍ମାନ ଛାଡ଼ିବା ନିମନ୍ତେ ଅନୁମତି ଦେଲେ ନାହିଁ । ଏପରି ନୀତିର ଏକମାତ୍ର ଫଳ ହୋଇପାରେ, ସେମାନେ ଅର୍ଦ୍ଧାହାରରେ ମରିବାକୁ ବାଧ୍ୟ । ପୃଥିବୀର ପ୍ରତିବାଦ ଫଳରେ ଇହୁଦୀମାନଙ୍କ ବିରୁଦ୍ଧରେ ନାଜୀମାନେ ଯେଉଁ ପ୍ରକାଶ୍ୟପନ୍ଥା ଅନୁସରଣ କରିଥିଲେ ତାହା ଟିକିଏ କମି ଯାଇଛି, ମାତ୍ର ସେ ନୀତି ଚାଲିଛି ।

କିନ୍ତୁ ଇହୁଦୀମାନେ ସମଗ୍ର ଭୂଖଣ୍ଡରେ ବିକ୍ଷିପ୍ତ ହୋଇଥିଲେ ସୁଦ୍ଧା ଏବଂ ତାଙ୍କର

ନିଜର ହୋଇ କୌଣସି ଦେଶ ନ ଥିଲେ ସୁଦ୍ଧା ଏପରି ଅସହାୟ ନୁହନ୍ତି ଯେ ପ୍ରତିଶୋଧ ନେବାକୁ ସମର୍ଥ ହୋଇ ନ ଥାନ୍ତେ । ଏମାନେ ବହୁପରିମାଣରେ ବ୍ୟବସାୟ ଓ ଅର୍ଥ ନିୟନ୍ତ୍ରଣ କରୁଛନ୍ତି ଏବଂ ନୀରବରେ କୌଣସି ଆଡ଼ମ୍ବର ନ କରି ଏମାନେ ଜର୍ମାନୀ ମାଲର ବହିଷ୍କାର ଘୋଷଣା କଲେ । କେବଳ ସେତିକି ନୁହେଁ, ୧୯୩୩ ମେ ମାସରେ ନିଉୟର୍କ ସମ୍ମିଳନୀରେ ଯେଉଁ ପ୍ରସ୍ତାବ ପାସ ହୋଇଥିଲା ସେଥିରେ ଆହୁରି କିଛି ଅଧିକ କିଣିଷ ଘୋଷଣା କରାଯାଇଥିଲା । ସେଥିରେ ପ୍ରସ୍ତାବ ହୋଇଥିଲା "ସମସ୍ତ ମାଲ ଦ୍ରବ୍ୟ ଅଥବା ଜର୍ମାନୀ କିମ୍ବା ଜର୍ମାନୀର କୌଣସି ଅଞ୍ଚଳରେ ତିଆରି ହୋଇଥିବା, ଉନ୍ନତ କରାଯାଉଥିବା ତା ବୃଦ୍ଧି ପାଇଥିବା ସମସ୍ତ ପ୍ରକାର ଉତ୍ପନ୍ନଦ୍ରବ୍ୟର ବହିଷ୍କାର, ସମସ୍ତ ଜର୍ମାନ ଜାହାଜ ଶୁଳ୍କ, ଗମନାଗମନ ବିଭାଗ ତଥା ସମସ୍ତ ପ୍ରକାର ଜର୍ମାନ ସ୍ୱାସ୍ଥ୍ୟ, ଆମୋଦ ଓ ଅନ୍ୟ ନିବାସମାନଙ୍କର ବହିଷ୍କାର; ଏବଂ ସାଧାରଣ ଭାବରେ ଜର୍ମାନୀର ପ୍ରଚଳିତ ଶାସନକୁ ବୈଷୟିକ ସମର୍ଥନ କଲାପରି କୌଣସି କାର୍ଯ୍ୟ ନ କରିବା ।"

ବିଦେଶରେ ହିଟଲରବାଦ ବିରୋଧରେ ଏହା ଏକ ପ୍ରତିକ୍ରିୟା; ଆହୁରି ଅନେକ ପ୍ରତିକ୍ରିୟା ଖୁବ୍ ସୁଦୂରଗାମୀ ଥିଲା । ନାଜୀମାନେ ବରାବର ଭର୍ସେଇ ସନ୍ଧି ନିନ୍ଦାକରି ଆସିଛନ୍ତି ଏବଂ ବିଦ୍ୱେଷ ଭାବରେ ପୂର୍ବସୀମାନ୍ତ ବିଷୟରେ ଏହାର ପରିବର୍ତ୍ତନ ଦାବୀ କରିଛନ୍ତି; ସେଠାରେ ଜର୍ମାନୀର ଅବଶିଷ୍ଟ ଅଞ୍ଚଳରୁ ବିଚ୍ଛିନ୍ନ କରାଯାଇ ଡାନଜିଗ ପର୍ଯ୍ୟନ୍ତ ଏକ ପୋଲିସ କରିଡ଼ର ବ୍ୟବସ୍ଥା କରାଯାଇଥିଲା । ସେମାନେ ମଧ୍ୟ ଅସ୍ତ୍ର ବିଷୟରେ ସମ୍ପୂର୍ଣ୍ଣ ସମାନତା ଦାବୀକରି ଆସିଛନ୍ତି । (ଶାନ୍ତି ସର୍ତ୍ତ ଅନୁସାରେ ସେମାନଙ୍କୁ ଅଧିକ ଭାବରେ ନିରସ୍ତ୍ର କରିବା କଥା ତୋର ମନେଥିବ) ହିଟଲରଙ୍କ ଉତ୍ତେଜନାମୟୀ ଭାଷଣ ଓ ଜର୍ମାନୀକୁ ପୁନର୍ବାର ଅସ୍ତ୍ର ସଜ୍ଜିତ କରିବାର ଧମକରେ ସମ୍ପୂର୍ଣ୍ଣ ଭାବରେ ଇଉରୋପ ଚମକି ପଡ଼ିଲା । ବିଶେଷତଃ ଫ୍ରାନ୍ସ ଏକ ଶକ୍ତିଶାଳୀ ଜର୍ମାନୀକୁ ସର୍ବଦା ଭୟ କରୁଥିଲା ଏବଂ ତାହା ଅଧିକ ଅଧୀର ହୋଇ ପଡ଼ିଲା ଏବଂ କେତେ ଦିନ ପର୍ଯ୍ୟନ୍ତ ମନେ ହେଲା, ସତେକି ଇଉରୋପରେ ଯୁଦ୍ଧ ଲାଗିଯିବ । ହଠାତ୍ ଏହି ନାଜୀ ଭୟ ହେତୁ ଇଉରୋପର ଶକ୍ତିଗୁଡ଼ିକ ନୂତନ ଧରଣରେ ଦଳବଦ୍ଧ ହେଲେ । ଫ୍ରାନସ ସୋଭିଏଟ ରୁଷ ସହିତ ଅଧିକ ବନ୍ଧୁଭାବାପନ୍ନ ହେଲା । ଭର୍ସେଇ ସନ୍ଧିର ପୁନର୍ବିଚାର ହେବା ଭୟରେ ପୋଲଣ୍ଡ, ଚେକୋସ୍ଲୋଭାକିଆ, ଯୁଗୋସ୍ଲାଭିଆ ଓ ରୁମାନିଆ ପରି ଯେଉଁ ସବୁ ଦେଶ ଏହି ସନ୍ଧି ଦ୍ୱାରା ସୃଷ୍ଟି ହୋଇଥିଲା ବା ଏଥିରୁ ଲାଭବାନ ହୋଇଥିଲା ସେଗୁଡ଼ିକ ଏକାଠି ହୋଇଗଲେ ଏବଂ ଏହା ସଙ୍ଗେ ସଙ୍ଗେ ରୁଷର ନିକଟ ସମ୍ପର୍କରେ ଆସିଲେ । ଅଷ୍ଟ୍ରିୟାରେ ଏକ ଅପୂର୍ବ ପରିସ୍ଥିତି ଉପୁଜିଲା । ସେଠାରେ ଫାସିଷ୍ଟ ଚାନସେଲର ଡଲଫସ ଆଗରୁ କର୍ତ୍ତୃତ୍ୱ କରୁଥିଲେ, କିନ୍ତୁ ତାଙ୍କର ଫାସିଜମ ହିଟଲରଙ୍କଠାରୁ ପୃଥକ ଥିଲା । ଅଷ୍ଟ୍ରିଆରେ ନାଜୀମାନେ ଶକ୍ତିଶାଳୀ କିନ୍ତୁ ଡଲଫସ୍ ସେମାନଙ୍କର ବିରୋଧ କରିଛନ୍ତି । ହିଟଲରଙ୍କ ଚଳପ୍ରକୁ ଇଟାଲି ସ୍ୱାଗତ କଲା,

ମାତ୍ର ହିଟଲରଙ୍କ ସମସ୍ତ ଅଭିଳାଷ ପୂର୍ଣ୍ଣ ହେବାରେ ଉତ୍ସାହିତ କଲନାହିଁ । ଅନେକ ବର୍ଷ ହେଲା ଜର୍ମାନ ସପକ୍ଷବାଦୀ ଇଂଲଣ୍ଡର ନେତୃବର୍ଗ ଜର୍ମାନ ବିରୋଧୀ ହୋଇଗଲେ ଏବଂ ଏପରି କି ପୃଥିବୀରେ 'ହୂନ' କହିବାକୁ ଆରମ୍ଭ କଲେ । ହିଟଲରଙ୍କ ଜର୍ମାନୀ ଇଉରୋପରେ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ରହିଲା । ଏହା ସ୍ପଷ୍ଟ ଯେ ଯୁଦ୍ଧ ଲାଗିଥିଲେ ନିରସ୍ତ୍ର ଜର୍ମାନୀକୁ ଫ୍ରାନ୍ସର ଶକ୍ତିଶାଳୀ ସେନା ଚଲିତଳାନ୍ତ କରିଦେଇ ଥାଆନ୍ତା । ହିଟଲର ତାଙ୍କର କୌଶଳ ବଦଳାଇଲେ ଏବଂ ଶାନ୍ତିର ବାଣୀ ଶୁଣାଇବାକୁ ଲାଗିଲେ । ମୁସୋଲିନୀ ଏତେବେଳେ ଫ୍ରାନ୍ସ, ଇଂଲଣ୍ଡ, ଜର୍ମାନୀ ଓ ଇଟାଲୀ ଭିତରେ ଏକ ଚତୁର୍ଶକ୍ତିମୂଳକ ଚୁକ୍ତିପ୍ରସ୍ତାବ କରି ହିଟଲରର ସାହାଯ୍ୟକୁ ଆସିଲେ ।

ଶେଷରେ ୧୯୩୩ ଜୁନ ମାସରେ ଗ୍ରେଟ୍‌ବ୍ରିଟେନ୍ ଆଦି ଦେଶ ଏହି ଚୁକ୍ତି ସ୍ୱାକ୍ଷରକଲେ । ଅବଶ୍ୟ ଫ୍ରାନ୍ସ ତାହା କରିବା ପୂର୍ବରୁ ଦ୍ୱିଧା କରୁଥିଲା । ଏହି ଚୁକ୍ତିର ଭାଷା ନିତାନ୍ତ ନିରୀହ ଥିଲା ଏବଂ ଏଥିରେ ଥିଲା, କେତେକ ଆନ୍ତର୍ଜାତିକ ବ୍ୟାପାରରେ ବିଶେଷତଃ ଭର୍ସେଇ ସନ୍ଧି ପରିବର୍ତ୍ତନ କରିବା ପ୍ରସ୍ତାବରେ ଚାରିଗୋଟି ଯାକ ଶକ୍ତି ପରସ୍ପର ସହିତ ପରାମର୍ଶ କରିବେ । ଯାହାହେଉ ଏହି ଚୁକ୍ତି ଏକ ସୋଭିଏଟ ବିରୋଧୀ ଦଳ ଗଢ଼ିବାର ପ୍ରଚେଷ୍ଟା ପରି ମନେ ହେଲା । ଆପାତତଃ ଫ୍ରାନ୍ସ ଅତ୍ୟନ୍ତ ଅନିଚ୍ଛାସତ୍ତ୍ୱେ ଏଥିରେ ଦସ୍ତଖତ କଲା । ସମ୍ଭବତଃ ଏହାର ଫଳସ୍ୱରୂପ ଏବଂ ଏହି ଚୁକ୍ତିର ଜବାବସ୍ୱରୂପ ୧୯୩୩ ଜୁଲାଇ ପହିଲା ତାରିଖରେ ଲଣ୍ଡନରେ ସୋଭିଏଟ ଓ ତାର ପଡ଼ୋଶୀ ରାଜ୍ୟମାନଙ୍କ ଭିତରେ ଏକ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷରିତ ହେଲା । ମଜାର କଥା ଯେ, ଫ୍ରାନ୍ସ ଏହି ସୋଭିଏଟ ଚୁକ୍ତି ସହିତ ତାହାର ସହାନୁଭୂତି ଓ ସମ୍ମତି ପ୍ରକାଶ କଲା ।

ହିଟଲରଙ୍କ ମୌଳିକ କାର୍ଯ୍ୟପନ୍ଥା ହେଉଛି ସୋଭିଏଟ ରୁଷ ବିରୁଦ୍ଧରେ ଇଉରୋପର ରକ୍ଷକ ଭାବରେ ନିଜକୁ ପରିଚିତ କରାଇବା ଏବଂ ଜର୍ମାନ ପୁଞ୍ଜିବାଦର ମଧ୍ୟ ଏହି କାର୍ଯ୍ୟପନ୍ଥା । ଜର୍ମାନକୁ ଅଧିକ ରାଜ୍ୟ ପାଇବାକୁ ହେଲେ ଏହା କେବଳ ପୂର୍ବ ଇଉରୋପରେ ଅଥବା ସୋଭିଏଟ ଇଉନିୟନର ବ୍ୟୟରେ ମିଳିପାରିବ । ଏହା କରିବା ପୂର୍ବରୁ ଜର୍ମାନୀକୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବାକୁ ପଡ଼ିବ ଏବଂ ସେହିହେତୁ ଏଥି ମଧ୍ୟାନ୍ତରରେ ଭର୍ସେଇ ସନ୍ଧିର ପରିବର୍ତ୍ତନ ଆବଶ୍ୟକ ଅଥବା ଅନ୍ତତଃ ଅନ୍ୟ କେହି ହସ୍ତକ୍ଷେପ କରିବେ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଲୋଡ଼ା । ହିଟଲର ଇଟାଲୀର ସମର୍ଥନ ଆଶା କଲେ । ସେ ଯଦି ଇଂଲଣ୍ଡର ସମର୍ଥନ ପାଇପାରିବ, ତାହାହେଲେ ସେ ସମ୍ଭବତଃ ଆଶା ବାନ୍ଧିଛି ଯେ, ଚାରି ଦେଶର ଚୁକ୍ତି ଅନୁସାରେ ଆଲୋଚନାବେଳେ ଫ୍ରାନ୍ସର ବିରୋଧକୁ ନିଷ୍ଫଳ କରିଦେବା ସହଜ ହୋଇଯିବ ।

ତେଣୁ ହିଟଲର ବ୍ରିଟିଶ ସମର୍ଥନ ପାଇବା ଲାଗି ଚେଷ୍ଟା କରୁଛି । ସେଥିପାଇଁ ସେ ମଧ୍ୟ ପ୍ରକାଶ୍ୟ ଭାବରେ ଘୋଷଣା କରୁଛି ଯେ, ଯଦି ଭାରତ ଉପରେ ବ୍ରିଟିଶ କର୍ତ୍ତୃତ୍ୱ

ଦୁର୍ବଳ ହୋଇଯାଏ, ତେବେ ମହାବିପଦର କଥା ହେବ । ତାଙ୍କର ସୋଭିଏଟ ବିରୋଧି ବ୍ରିଟିଶ ସରକାରକୁ ଆକୃଷ୍ଟ କରୁଛି; କାରଣ ମୁଁ ଚତେ କହୁଛି, ବ୍ରିଟିଶ ସାମ୍ରାଜ୍ୟବାଦ ସୋଭିଏଟ ରୁଷକୁ ଯେପରି ଘୃଣା କରେ ଅନ୍ୟ କାହାରିକୁ ସେପରି ଘୃଣା କରେ ନା । କିନ୍ତୁ ନାଜୀ କାର୍ଯ୍ୟକଳାପରେ ବ୍ରିଟିଶ ଲୋକେ ଏତେ ବିରକ୍ତ ହୋଇଛନ୍ତି ଯେ, ହିଟଲର-ବାଦକୁ ପସନ୍ଦ କଲାଭଳି କୌଣସି ଏକ ପ୍ରସ୍ତାବରେ ସେମାନଙ୍କୁ ରାଜି କରାଇବାରେ ଅନେକ ଦିନ ଲାଗିଯିବ ।

ଏହିରୂପେ ନାଜୀ ଜର୍ମାନୀ ଇଉରୋପରେ ଏକ ଝଞ୍ଜାର କେନ୍ଦ୍ର ହୋଇଛି । 'ଏହି ଆତଙ୍କଗ୍ରସ୍ତ ଦୁନିଆ'ର ଅପରିମିତ ଭୟକୁ ଆହୁରି ବଢ଼ାଇଛି । ଜର୍ମାନୀରେ କ'ଣ ଘଟିବ ? ଏହି ନାଜୀ ଯନ୍ତ୍ରର ଉଦ୍ଦେଶ୍ୟ କି ? ଜର୍ମାନୀରେ ନାଜୀମାନଙ୍କ ପ୍ରତି ପ୍ରଖର ଘୃଣା ଓ ବିରୋଧ ରହିଛି । କିନ୍ତୁ ଏହା ସ୍ପଷ୍ଟ ଯେ ସମସ୍ତ ସଂଗଠିତ ବିରୋଧ ଦମନ କରି ଦିଆଯାଇଛି । ଜର୍ମାନୀରେ ଅନ୍ୟ କୌଣସି ଦଳ ବା ସଂଗଠନ ନାହିଁ ଏବଂ ନାଜୀମାନେ ହେଉଛନ୍ତି ସର୍ବାଧିକାରୀ । ନାଜୀମାନଙ୍କ ଭିତରେ ଦୁଇଟି ଦଳ ଥିଲାପରି ମନେହୁଏ, ପୁଞ୍ଜିବାଦୀ ଓ ବ୍ୟବସାୟୀ ସମ୍ପ୍ରଦାୟ ଏହାର ଦକ୍ଷିଣପନ୍ଥୀ ଏବଂ ଦଳର ଅଧିକାଂଶ ସାଧାରଣ ଲୋକ ଯାହାଙ୍କ ସଂଖ୍ୟା ନିକଟରେ ଅନେକ ଶ୍ରମିକ ଯୋଗଦେବାରୁ ଏବେ ବଢ଼ିଯାଇଛି । ସେମାନେ ଏହାର ବାମପନ୍ଥୀ ହୋଇ ରହିଛନ୍ତି । ଯେଉଁ ଲୋକଙ୍କଠାରୁ ହିଟଲରୀ ଆନ୍ଦୋଳନ ବୈପ୍ଳବିକ ପ୍ରେରଣା ଲାଭ କରିଥିଲା ସେମାନଙ୍କ ଭିତରେ ପୁଞ୍ଜିବାଦ ବିରୋଧୀ ଉଗ୍ରତା ଭରି ରହିଥିଲା ଏବଂ ପରେ ସେମାନେ ଅନେକ ସୋସାଲିଷ୍ଟ ଓ ମାର୍କସବାଦ ଗ୍ରହଣ କରିଛନ୍ତି । ନାଜୀ ଆନ୍ଦୋଳନର ଦକ୍ଷିଣପନ୍ଥୀ ଓ ବାମପନ୍ଥୀଙ୍କ ଭିତରେ କିଛି ସାମଞ୍ଜସ୍ୟ ନାହିଁ । ଏମାନଙ୍କୁ ଏକତ୍ର ରଖିବା ଏବଂ ଏକକୁ ଅପର ବିରୁଦ୍ଧରେ ବ୍ୟବହାର କରିବାହାରି ହିଁ ହିଟଲରଙ୍କ ସଫଳତା ନିର୍ଭର କରେ । ଯେ ପର୍ଯ୍ୟନ୍ତ ଏକ ସାଧାରଣ ଶତ୍ରୁ ଦୃଷ୍ଟିପଥରେ ରହିଥିବ, ସେ ପର୍ଯ୍ୟନ୍ତ ଏହା ହୋଇ ପାରିଥିବ, ଶତ୍ରୁ ଲୋପ ପାଇଗଲେ ବା ଚଲିଚଲାନ୍ତ ହୋଇଗଲେ ଦକ୍ଷିଣ ଓ ବାମପନ୍ଥୀଙ୍କ ମଧ୍ୟରେ ସଂଘର୍ଷ ଉପୁଜିବାକୁ ବାଧ୍ୟ ।

ଆଲୋଡ଼ନ ଆରମ୍ଭ ହୋଇଗଲାଣି, ବାମପନ୍ଥୀ ନାଜୀମାନେ ଦାବୀ କରୁଛନ୍ତି ଯେ, ପ୍ରଥମ ବିପ୍ଳବ ତ ପୂରାପୂରି ସଫଳ ହୋଇଛି, ଏବେ "ଦ୍ୱିତୀୟ ବିପ୍ଳବ" ଆରମ୍ଭ ହେବା ଉଚିତ । ଏହି ଦ୍ୱିତୀୟ ବିପ୍ଳବ ହେଉଛି ପୁଞ୍ଜିବାଦ ଓ ଜମିଦାରୀ ପ୍ରଥା ଇତ୍ୟାଦି ବିରୁଦ୍ଧରେ । ଯାହାହେଉ ହିଟଲର ଏହି "ଦ୍ୱିତୀୟ ବିପ୍ଳବ"କୁ ନିର୍ମମ ଭାବରେ ଦବାଇ ଦେବାର ଧମକ ଦେଇଛି । ସେ ନିଜକୁ ନିର୍ଦ୍ଦିଷ୍ଟ ଭାବରେ ପୁଞ୍ଜିବାଦୀ ଦକ୍ଷିଣପନ୍ଥୀଙ୍କ ସହିତ ମିଶାଇ ଦେଇଛନ୍ତି । ତାଙ୍କର ପ୍ରଧାନ ଅନୁଚରମାନଙ୍କ ଭିତରୁ ଅଧିକାଂଶ ଉଚ୍ଚପଦବୀରେ ନିଯୁକ୍ତ ହୋଇ ଯାଇଛନ୍ତି ଏବଂ ସ୍ୱଚ୍ଛନ୍ଦ ଭାବରେ ରହିଗଲା ପରେ କୌଣସି ପରିବର୍ତ୍ତନ ପାଇଁ ସେମାନେ ବ୍ୟଗ୍ର ନୁହନ୍ତି ।

ହିଟଲରବାଦର ବିବରଣୀ ପାଠ କଲୁ ତୁ ଏକମତ ହେବୁ ଯେ, ଏହି ନାଜୀ ବିଜୟ ଓ ତାର ପରିଣତି ଇଉରୋପ ଓ ପୃଥିବୀ ପକ୍ଷରେ ଅତ୍ୟନ୍ତ ଗୁରୁତର ଏବଂ ଏହାର ସୁଦୂରଗାମୀ ଫଳ ଫଳିବ । ନିଃସନ୍ଦେହ ଭାବରେ ଏହା ହେଉଛି ଫାସିଜମ ଏବଂ ହିଟଲର ନିଜେ ଜଣେ ଆଦର୍ଶ ଫାସିଷ୍ଟ । କିନ୍ତୁ ନାଜୀ ଆନ୍ଦୋଳନ ଇଟାଲୀର ଫାସିଜମଠାରୁ କିଛି ଅଧିକ ବ୍ୟାପକ ଓ ଅଗ୍ରଗାମୀ । ଏହି ଅଗ୍ରଗାମୀତ୍ୱ ବିଦ୍ୱାରା କିଛି ପାର୍ଥକ୍ୟ ହେବ କିମ୍ବା ଏହା ସମ୍ପୂର୍ଣ୍ଣଭାବେ ଲୋପ ପାଇଯିବ, ଏହା ଏବେ ପୁଣି ଦେଖିବା ପାଇଁ ବାକି ରହିଛି ।

ନାଜୀ ଆନ୍ଦୋଳନର ଉଦ୍ଭବ ଫଳରେ ରକ୍ଷଣଶୀଳ ମାର୍କସବାଦୀ ସିଦ୍ଧାନ୍ତ କେତେକ ପରିମାଣରେ ଗୋଳମାଳିଆ ଧରିଯାଇଛି । ରକ୍ଷଣଶୀଳ ମାର୍କସବାଦୀମାନେ ବିଶ୍ୱାସ କରନ୍ତି ଯେ, ଶ୍ରମିକ ଶ୍ରେଣୀ ହିଁ ଏକମାତ୍ର ଖାଣ୍ଟି ବିପ୍ଳବୀ ଶ୍ରେଣୀ ଏବଂ ଅର୍ଥନୈତିକ ଅବସ୍ଥାର ଖରାପ ହେବା ସଙ୍ଗେ ସଙ୍ଗେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ସମସ୍ତ ଅସନ୍ତୁଷ୍ଟ ଓ ଦଖଲଚ୍ୟୁତ ଲୋକସବୁ ଏହି ଶ୍ରେଣୀକି ଟାଣି ହୋଇ ଆସିବେ ଏବଂ ଶେଷରେ ଏକ ଶ୍ରମିକ ବିପ୍ଳବ ହେବ । ପ୍ରକୃତରେ ଦେଖିବାକୁ ଗଲେ ଜର୍ମାନୀରେ ସମ୍ପୂର୍ଣ୍ଣ ଭିନ୍ନ ଧରଣର ଘଟଣା ଘଟିଲା । ସଙ୍କଟବେଳକୁ ଶ୍ରମିକମାନେ ବିପ୍ଳବୀ ହେବାର ବହୁଦୂରରେ ଥିଲେ ଏବଂ ମୁଖ୍ୟତଃ ଦଖଲଚ୍ୟୁତ ନିମ୍ନମଧ୍ୟବିତ୍ତ ଶ୍ରେଣୀ ଓ ଅନ୍ୟ ଅସନ୍ତୁଷ୍ଟ ଲୋକମାନଙ୍କୁ ନେଇ ଏକ ନୂତନ ବିପ୍ଳବୀ ଶ୍ରେଣୀ ଗଠିତ ହୋଇଥିଲା । ଏହା ରକ୍ଷଣଶୀଳ ମାର୍କସବାଦ ସହିତ ଖାପ ଖାଉ ନାହିଁ । କିନ୍ତୁ ଅନ୍ୟ ମାର୍କସବାଦୀମାନେ କହନ୍ତି ଯେ ମାର୍କସବାଦକୁ ଏକ କଡ଼ା ନିୟମ ( Dogma ) ଧର୍ମ ବିଶ୍ୱାସ ବୋଲି ବିଚାରିବା ଉଚିତ ନୁହେଁ, ଧର୍ମ ପରି ଏହା ପ୍ରଭୁତ୍ୱ ବ୍ୟକ୍ତିକରୂପେ ନିଷ୍ପତ୍ତିମୂଳକ ସତ୍ୟ ଧାର୍ଯ୍ୟ କରେନା । ଏହା ଏକ ଇତିହାସର ଦର୍ଶନ, ଇତିହାସ ପ୍ରତି ଦୃଷ୍ଟି ନିକ୍ଷେପ କରିବାର ଏକ ପନ୍ଥା । ଏଥିରେ ଅନେକ କଥା ପ୍ରଶ୍ନାତ୍ମକ ହୁଏ ଏବଂ ଏହା ଏକତ୍ର ଲାଗିଥିବା ଜଣାପଡ଼େ; ସାମ୍ୟବାଦ ବା ସାମାଜିକ ସମାନତା ହାସଲ କରିବାର ଏହା ଏକ କାର୍ଯ୍ୟପନ୍ଥା । ବିଭିନ୍ନ କାଳ ଓ ବିଭିନ୍ନ ଦେଶର ପରିବର୍ତ୍ତିତ ଅବସ୍ଥା ସହିତ ମେଳ ଖାଇବା ନିମନ୍ତେ ଏହାର ମୌଳିକ ନୀତିକୁ ବିଭିନ୍ନ ଧରଣରେ ପ୍ରୟୋଗ କରିବାକୁ ପଡ଼ିବ ।

ନୋଟ, (ନଭେମ୍ବର ୧୯୩୮)

*୨ ବର୍ଷ ପୂର୍ବେ ଏହି ଚିଠି ଲେଖା ହେବା ପରେ ହିଟଲରଙ୍କ ଅଧୀନରେ ନାଜୀ ଜର୍ମାନୀର ଶକ୍ତି ଓ ମର୍ଯ୍ୟାଦା ବୃଦ୍ଧି ଅପେକ୍ଷା ବିଶ୍ୱରାଜନୀତିରେ ଅଲୌକିକ ଘଟଣା ଆଉ କିଛି ନାହିଁ । ହିଟଲର ଆଜି ଇଉରୋପରେ ପ୍ରାଧାନ୍ୟ କରୁଛନ୍ତି ଏବଂ ପ୍ରଧାନ ଶକ୍ତିସବୁ ଅଥବା ଯେଉଁମାନେ ପ୍ରଧାନ ଥିଲେ ସେମାନେ ତାଙ୍କ ନିକଟରେ ମସ୍ତକ ଅବନତ କରିଥିଛନ୍ତି ଏବଂ ତାଙ୍କ ଧମକରେ କମ୍ପିତ ହେଉଛନ୍ତି । ୨୦ ବର୍ଷ ପୂର୍ବେ ଜର୍ମାନୀ ପରାଜିତ ନମ୍ର ଓ ଢଳଢଳାନ୍ତ

ହୋଇଥିଲା । ଆଜି ବିନା ସାମରିକ ବିଜୟ ବା ଯୁଦ୍ଧରେ ହିଟଲର ଜର୍ମାନୀକୁ ଏକ ବିଜୟୀ ଜାତିରେ ପରିଣତ କରିଛନ୍ତି ଏବଂ ଭର୍ସେଇ ସନ୍ଧି ମୃତ ଓ କବର ପାଇଯାଇଛି ।

କ୍ଷମତା ପାଇଲା ପରେ ହିଟଲରଙ୍କ ପ୍ରଧାନ କାର୍ଯ୍ୟ ହେଲା ଜର୍ମାନୀରେ ବିରୋଧୀକୁ ଧ୍ୱଂସ କରିବା ଏବଂ ନାଜି ଦଳକୁ ଦୃଢ଼ କରିବା । ଜର୍ମାନଙ୍କୁ 'ନାଜୀକରଣ' (Nazified) କରିସାରି ନାଜି ଦଳ ଭିତରେ ଯେଉଁ ବାମପନ୍ଥୀମାନେ ଏକ ଦ୍ୱିତୀୟ ଓ ପୁଞ୍ଜିବାଦ ବିରୋଧୀ ବିପ୍ଳବର ଆଶା ବାନ୍ଧିଥିଲେ ସେମାନଙ୍କୁ ଲୋପ କରିବା ନିମନ୍ତେ ସେ ସ୍ଥିର କଲେ । ବାଦାମୀ କୁର୍ତ୍ତାବାଲାଙ୍କୁ ଭାଙ୍ଗି ଦିଆଗଲା ଏବଂ ୧୯୩୪ ଜୁନ ୩୦ ତାରିଖରେ ତାଙ୍କର ନେତାଙ୍କୁ ଗୁଳି କରାଗଲା । ଆହୁରି ଅନେକଙ୍କୁ ମଧ୍ୟ ବଧକରାଗଲା; ଏମାନଙ୍କ ଭିତରେ ଜେନେରାଲ ଭନସ୍ଲେଚର ଥିଲେ; ସେ ଥରେ ଜର୍ମାନୀର ଚାନ୍‌ସେଲର ଥିଲେ ।

୧୯୩୪ ଅଗଷ୍ଟ ମାସରେ ପ୍ରେସିଡେଣ୍ଟ ଭନ୍ ହିଣ୍ଡେନ୍‌ବର୍ଗ ମରିଗଲେ ଏବଂ ହିଟଲର ତାଙ୍କର ସ୍ଥାନ ଗ୍ରହଣ କରି ଚାନ୍‌ସେଲର ପ୍ରେସିଡେଣ୍ଟ ହେଲେ । ତା' ପରେ ସେ ଜର୍ମାନୀରେ ସର୍ବଶକ୍ତିମାନ ହେଲେ, ଜର୍ମାନ ଲୋକଙ୍କର ସେ ହେଲେ 'ଫୁଂରର୍‌ଏର' ବା ନେତା । ଲୋକଙ୍କ ଭିତରେ ଖୁବ୍‌ ଦୁର୍ଦ୍ଦଶା ପଡ଼ିଥିଲା ଏବଂ ବିପତ୍ତି ଦୂର କରିବା ନିମନ୍ତେ ପ୍ରାୟ ବାଧ୍ୟତାମୂଳକ ଭାବରେ ବିଶାଳ ଆକାରରେ ବ୍ୟକ୍ତିଗତ ସାହାଯ୍ୟ ସଂଗଠନ କରାଗଲା । ବାଧ୍ୟତାମୂଳକ ଶ୍ରମିକ ଶିବିର ସ୍ଥାପନ କରାଗଲା—ଅକର୍ମୀସବୁ ଏଠିକି କାର୍ଯ୍ୟ କରିବା ନିମନ୍ତେ ପଠାହେଲେ । ବଳପୂର୍ବକ, ଦୂର କରାଯାଇଥିବା ବହୁସଂଖ୍ୟକ ଇହୁଦୀଙ୍କ ସ୍ଥାନ ଜର୍ମାନମାନେ ଅଧିକାର କଲେ । ଜର୍ମାନୀର ଅର୍ଥନୈତିକ ଅବସ୍ଥା ଉନ୍ନତ ହେଲା ନାହିଁ; ବାସ୍ତବିକ ଏହା ଖରାପଆଡ଼କୁ ଗଲା, କିନ୍ତୁ ବେକାରି ଦୂର ହୋଇଗଲା । ଏଥିଭିତରେ ଗୁପ୍ତଭାବରେ ଅସ୍ତ୍ର ତିଆରି ଚାଲିଲା ଏବଂ ଜର୍ମାନ ଭୟ ବଢ଼ିଲା ।

୧୯୩୫ରେ ସାର୍ ଅଞ୍ଚଳରେ ଏକ ଲୋକମତ ଜ୍ଞାପନରେ ଜର୍ମାନୀ ସହିତ ମିଶିବା ସପକ୍ଷରେ ଅତ୍ୟଧିକ ମତ ପ୍ରକାଶିତ ହେଲା ଏବଂ ଏହି ଅଞ୍ଚଳ ଜର୍ମାନୀ ସହିତ ଯୋଗ କରାଗଲା । ସେହି ବର୍ଷ ମେ ମାସରେ ହିଟଲର ପ୍ରକାଶ୍ୟଭାବରେ ଭର୍ସେଇ ସନ୍ଧିର ନିରସ୍ତ୍ରୀକରଣ ସର୍ତ୍ତମାନଙ୍କୁ ଅବଜ୍ଞା କଲା ଏବଂ ବାଧ୍ୟତାମୂଳକ ସାମରିକ ଶିକ୍ଷା ପ୍ରଚଳନ କଲା । ପ୍ରକାଣ୍ଡ ଅସ୍ତ୍ର ନିର୍ମାଣ କାର୍ଯ୍ୟପନ୍ଥା ଆରମ୍ଭ ହେଲା । କୌଣସି ଲିଗ୍ ଶକ୍ତି କିଛି କରିପାରିଲେ ନାହିଁ, ସେମାନେ ଭୟରେ ଥରୁଥିଲେ– ବିଶେଷ ଭାବରେ ଫ୍ରାନ୍‌ସ ବେଶି ଡରୁଥିଲା । ଫ୍ରାନ୍‌ସ ସୋଭିଏଟ୍ ରୁଷ ସହିତ ମିତ୍ରତା ବାନ୍ଧିବାଲାଗି କଥାବାର୍ତ୍ତା ଚଳାଇଲା । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ନାଜି ଜର୍ମାନୀ ସହିତ ରହିବାକୁ ପସନ୍ଦ କଲା ଏବଂ ୧୯୩୫ ଜୁନ ମାସରେ ତାହା ସହିତ ଏକ ନୌଚୁକ୍ତି ଦସ୍ତଖତ କଲା ।

ଏହାର ବିଚିତ୍ର ପରିଣତି ହେଲା । ଇଂଲଣ୍ଡ ତାକୁ ଛାଡ଼ି ଯାଉଛି ବୋଲି ଫ୍ରାନ୍‌ସ

ଇଟାଲୀକୁ ସନ୍ଧି ଆଶା ଦେଖାଇଲି ଏବଂ ମାହେନ୍ଦ୍ର ବେଳା ପହଞ୍ଚିଛି ବୋଲି ବିଶ୍ୱର ମୁସୋଲିନୀ ଆବିସିନିଆ ଉପରେ ଅଭିଯାନ ଆରମ୍ଭ କରିଦେଲି । ୧୯୩୮ ମାର୍ଚ୍ଚରେ ହିଟ୍‌ଲର ଅଷ୍ଟ୍ରିଆ ଭିତରେ ପଶିଲି ଏବଂ ଜର୍ମାନୀ ସହିତ ତାହାର ମିଳନ ଘୋଷଣା କଲି, ପୁନର୍ବାର ଲିଗ୍ ଶକ୍ତିମାନେ ମୁଣ୍ଡପାତି ସବୁ ସହିଲେ । ଅଷ୍ଟ୍ରିଆରେ ଏକ ଆକ୍ରମଣଶୀଳ ଓ ପାଶବିକ ଇହୁଦୀବିରୋଧୀ ଅଭିଯାନ ନାଜୀମାନେ ଆରମ୍ଭ କରିଦେଲେ ।

ଏବେ ଚେକୋସ୍ଲୋଭାକିଆ ନାଜୀ ଆକ୍ରମଣର କେନ୍ଦ୍ର ହେଲା ଏବଂ କେତେକ ମାସ ପର୍ଯ୍ୟନ୍ତ ସୁଡେଟାନ ଜର୍ମାନମାନଙ୍କର ସମସ୍ୟା ଇଉରୋପରେ ଆନ୍ଦୋଳନ ଜାତ କଲା । ବ୍ରିଟିଶ ନୀତି ଅଧିକ ଭାବରେ ନାଜୀମାନଙ୍କୁ ସାହାଯ୍ୟ କଲା ଏବଂ ଫ୍ରାନ୍ସ ଏହି ନୀତି ବିରୁଦ୍ଧରେ ଯିବାକୁ ସାହସ କଲା ନାହିଁ । ଶେଷରେ ଜର୍ମାନୀର ଆସନ୍ନ ଯୁଦ୍ଧ ଧମକରେ ଫ୍ରାନସ ତାର ମିତ୍ର ଚେକୋସ୍ଲୋଭାକିଆକୁ ଛାଡ଼ିଲା ଏବଂ ଇଂଲଣ୍ଡ ଏ ବିଶ୍ୱାସଘାତକତା ପାଇଁ ଆଂଶିକଭାବରେ ଦାୟୀ । ଜର୍ମାନୀ ଇଂଲଣ୍ଡ, ଫ୍ରାନ୍ସ ଏବଂ ଇଟାଲୀ ଭିତରେ ମିଉନିକଠାରେ ହୋଇଥିବା ଚୁକ୍ତିଦ୍ୱାରା ୧୯୩୮ ସେପ୍ଟେମ୍ବର ୨୯ ତାରିଖରେ ଚେକୋସ୍ଲୋଭାକିଆର ଭାଗ୍ୟଡୋରି ବନ୍ଧା ହୋଇଗଲା । ସୁଡେଟାନ ଅଞ୍ଚଳ ଓ ଆହୁରି ଅନେକ ସ୍ଥାନ ଜର୍ମାନୀ ଦଖଲ କରିଗଲା ଏବଂ ଏହି ଅବସ୍ଥାର ସୁବିଧା ନେଇ ପୋଲଣ୍ଡ ଓ ହଙ୍ଗେରୀ ଦେଶ କେତେ ଅଞ୍ଚଳ ନେଲେ ।

ଏହିରୂପେ ଇଉରୋପର ନୂତନ ବିଭାଗ ଆରମ୍ଭ ହେଲା, ଏହି ଇଉରୋପରେ ଫ୍ରାନ୍ସ ଓ ଇଂଲଣ୍ଡ ଦ୍ୱିତୀୟ ଶ୍ରେଣୀ ଏବଂ ହିଟ୍‌ଲର୍ର ଅଧୀନସ୍ଥ ନାଜୀ ଜର୍ମାନୀ ବିଜୟୀ ପ୍ରଧାନ ଶକ୍ତିରୂପେ ବାହାରିଲା ।

## ୧୯୧ : ନିରସ୍ତ୍ରୀକରଣ

ଅଗଷ୍ଟ ୨, ୧୯୩୩

ଲଣ୍ଡନରେ ହୋଇଥିବା ବିଶ୍ୱ ଅର୍ଥନୈତିକ ସମ୍ମିଳନୀର ବ୍ୟର୍ଥତା ସମ୍ବନ୍ଧରେ ମୁଁ ତତେ କହିଛି । ଏହି ସମ୍ମିଳନୀ ଭାଙ୍ଗିଲା, ସଭ୍ୟମାନେ ଘରକୁ ଫେରିଲେ ଏବଂ ପବିତ୍ର ଆଶା ପ୍ରକାଶ କଲେ ଯେ ଅଧିକ ଅନୁକୂଳ ପରିସ୍ଥିତିରେ ହୁଏତ ପୁନର୍ବାର ମିଳିତ ହେବ ।

ବିଶ୍ୱ ସହଯୋଗ ପ୍ରଚେଷ୍ଟାର ଆଉ ଏକ ମହାନ୍ ବ୍ୟର୍ଥତା ନିରସ୍ତ୍ରୀକରଣ ସମ୍ମିଳନୀରେ ଦେଖାଗଲା । ଲିଗ୍ ଅଫ୍ ନେସନସ୍‌ର ଚୁକ୍ତି ଅନୁସାରେ ଏହି ସମ୍ମିଳନୀ

ହୋଇଥିଲା । ଭର୍ସେଇ ସନ୍ଧିରେ ସ୍ଥିର ହୋଇଥିଲା ଯେ ଜର୍ମାନୀ (ତଥା ଅଷ୍ଟ୍ରିଆ ଓ ହଙ୍ଗେରୀ ପରି ଅନ୍ୟ ପରାଜିତ ଶକ୍ତି) ନିରସ୍ତ୍ର ହେବେ । ସେମାନଙ୍କର ନୌଶକ୍ତି, ଉଡ଼ାଜାହାଜ ବାହିନୀ ଅଥବା ବିରାଟ ସେନାବାହିନୀ ରହିବ ନାହିଁ । ଆହୁରି ମଧ୍ୟ ପ୍ରସ୍ତାବ ହୋଇଥିଲା ଯେ ଅନ୍ୟ ଦେଶ ଆସ୍ତେ ଆସ୍ତେ ନିରସ୍ତ୍ର ହେବେ, ତାହାହେଲେ ଜାତୀୟ ନିରାପତ୍ତା ସହିତ ସାମଞ୍ଜସ୍ୟ ରଖି ପ୍ରତ୍ୟେକ ସ୍ଥାନରେ ଅସ୍ତ୍ରଶସ୍ତ୍ର ନିମ୍ନତମ ସ୍ତରକୁ କମାଇ ଦିଆଯିବ । ଏହି କାର୍ଯ୍ୟପନ୍ଥାର ପ୍ରଥମ ଅଂଶ ଅର୍ଥାତ୍ ଜର୍ମାନୀକୁ ନିରସ୍ତ୍ରୀକରଣ କରିବା ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରାଗଲା, ଦ୍ୱିତୀୟ ଅଂଶ ଅର୍ଥାତ୍ ସାଧାରଣ ନିରସ୍ତ୍ରୀକରଣ କେବଳ ପବିତ୍ର ଆଶା ହୋଇ ରହିଥିଲା ଓ ଏବେ ବି ରହିଛି । ଭର୍ସେଇ ସନ୍ଧିର ପ୍ରାୟ ତେର ବର୍ଷ ପରେ ଶେଷରେ କାର୍ଯ୍ୟପନ୍ଥାର ଏହି ଦ୍ୱିତୀୟ ଅଂଶ ପୂରଣ କରିବା ନିମନ୍ତେ ନିରସ୍ତ୍ରୀକରଣ ସମ୍ମିଳନୀ ଡକା ହେଲା । ପୂର୍ଣ୍ଣ ସମ୍ମିଳନୀ ବୈଠକ ହେବା ପୂର୍ବରୁ ଅନେକ ବର୍ଷ ପର୍ଯ୍ୟନ୍ତ ଯାଞ୍ଚ କମିଶନ ସମସ୍ତ ବିଷୟଟି ଅନୁସନ୍ଧାନ କରିବାରେ ଲାଗି ରହିଲା ।

ଶେଷରେ ୧୯୩୨ ପ୍ରଥମ ଭାଗରେ ବିଶ୍ୱ ନିରସ୍ତ୍ରୀକରଣ ସମ୍ମିଳନୀ ବୈଠକ ହେଲା । ମାସ ମାସ ଓ ବର୍ଷ ବର୍ଷ ଧରି ଏହା ଚାଲିଲା, ଅନେକ ପ୍ରସ୍ତାବ ବିଚାର କରାଗଲା ଓ ଅଗ୍ରାହ୍ୟ କରାଗଲା, ଅସଂଖ୍ୟ ରିପୋର୍ଟ ପଢ଼ା ହେଲା, ଏବଂ ଅସରନ୍ତି ଯୁକ୍ତିତର୍କ ଶୁଣିବାରେ ସମ୍ମିଳନୀ ସମୟ କଟାଇଲା । ନିରସ୍ତ୍ରୀକରଣ ସମ୍ମିଳନୀଠାରୁ ଏହା ପ୍ରାୟ ଏକ ଅସ୍ତ୍ରୀକରଣ ସମ୍ମିଳନୀ ହୋଇଗଲା । କୌଣସି ଚୁକ୍ତିନାମା ହୋଇପାରିଲା ନାହିଁ କାରଣ ବ୍ୟାପକ ଆନ୍ତର୍ଜାତିକ ଦୃଷ୍ଟିକୋଣରୁ ପ୍ରଶ୍ନର ବିଚାର କରିବା ନିମନ୍ତେ କୌଣସି ଦେଶ ପ୍ରସ୍ତୁତ ନ ଥିଲା; ପ୍ରତ୍ୟେକ ଦେଶ ଭାବିଲେ ନିରସ୍ତ୍ରୀକରଣ ଅର୍ଥ ନିଜର ଶକ୍ତି ଅକ୍ଷୁଣ୍ଣ ହେବ, ଅଥଚ ଅନ୍ୟ ଦେଶସବୁ ନିରସ୍ତ୍ରହେବେ କିମ୍ବା ତାହାର ଅସ୍ତ୍ରଶସ୍ତ୍ର କମ କରିବ । ପ୍ରାୟ ପ୍ରତ୍ୟେକ ଦେଶ ଏପରି ସ୍ୱାର୍ଥପର ମନୋଭାବ ଗ୍ରହଣ କଲେ କିନ୍ତୁ ଏଥିରେ ଜାପାନ ଓ ଗ୍ରେଟବ୍ରିଟେନ ମୁଖିଆ ଥିଲେ ଓ ଯେ କୌଣସି ଚୁକ୍ତି ପଥରେ ପ୍ରଧାନ ଅନ୍ତରାୟ ହେଲେ । ଏହି ସମ୍ମିଳନୀ ଚାଲିଥିଲାବେଳେ ଜାପାନ ଲିଗ୍‌କୁ ଅବଜ୍ଞା କଲା ଏବଂ ମାଞ୍ଚୁରିଆରେ ଏକ ରକ୍ତାକ୍ତ ଓ ଆକ୍ରମଣମୂଳକ ଯୁଦ୍ଧ ଚଳାଇଥିଲା । ଦୁଇଟି ଦକ୍ଷିଣ ଆମେରିକା ପ୍ରଜାତନ୍ତ୍ର ପରସ୍ପର ସହିତ ଯୁଦ୍ଧ କରୁଥିଲେ ଏବଂ ବ୍ରିଟେନ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପାହାଡ଼ିଆ ଜାତିଙ୍କ ଉପରେ ବୋମା ବର୍ଷଣ କରୁଥିଲା । ବ୍ରିଟିଶ ଜାପାନ ପ୍ରତି ବରାବର ବନ୍ଧୁତ୍ୱପୂର୍ଣ୍ଣ ମନୋଭାବ ଦେଖାଇ ଆସିଛି, ସେଥିଲାଗି ଚୀନରେ ଜାପାନ ଆକ୍ରମଣ ପ୍ରତି ଆମେରିକାର ବିରୋଧଭାବ ଅନେକ ପରିମାଣରେ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଯେତେ ପ୍ରସ୍ତାବ ହୋଇଥିଲା ସେ ମଧ୍ୟରୁ ଯଥାକ୍ରମେ ସୋଭିଏଟ ରୁଷ, ସଂଯୁକ୍ତ ରାଷ୍ଟ୍ର ଆମେରିକା ଓ ଫ୍ରାନ୍ସର ତିନୋଟି ଗୁରୁତର ପ୍ରସ୍ତାବ କରିଥିଲା । ରୁଷ ପ୍ରସ୍ତାବ କରିଥିଲା ଯେ ସବୁ ଦିଗରେ ଅସ୍ତ୍ରଶସ୍ତ୍ର ଅର୍ଦ୍ଧେ କମାଇ ଦିଆହେଉ । ଆମେରିକା ସାଧାରଣ

ସ୍ତରରେ ୧-୩ କମାଇବାର ପ୍ରସ୍ତାବ କଲା । କିନ୍ତୁ ବ୍ରିଟେନ ଏହି ଉଭୟ ପ୍ରସ୍ତାବର ବିରୋଧ କଲା—କହିଲା ଯେ ସେ ତାର ସୈନ୍ୟ ଶକ୍ତି କମାଇ ପାରିବ ନାହିଁ ଏବଂ ନୌବାହିନୀ ବିଶେଷ ସ୍ତରରେ କମ୍ ହୋଇ ପାରିବ ନାହିଁ କାରଣ ଏ ସବୁ କେବଳ ଜଗିବା ପାଇଁ ସେ ରଖିଛି ।

ଜର୍ମାନ ଆକ୍ରମଣରେ ପୁରାତନ ସ୍ମୃତି ମନରେ ଧାରଣ କରି ଫ୍ରାନ୍ସ ସର୍ବଦା 'ନିରାପତ୍ତା' ବ୍ୟବସ୍ଥା ଉପରେ ଜୋର୍ ଦେଇଛି—ଅର୍ଥାତ୍ ଏପରି କିଛି ବ୍ୟବସ୍ଥା ହେବ ଯେଉଁଥିରେ ଆକ୍ରମଣ ଅସମ୍ଭବ ନ ହେଲେ ଅନ୍ତତଃ କଷ୍ଟକର ହୋଇ ପଡ଼ିବ । ସେ ଲିଗ୍ ଅଫ୍ ନେସନ୍ସ ଅଧୀନରେ ଏକ ଅନ୍ତର୍ଜାତୀୟ ବାହିନୀ ସୃଷ୍ଟି କରିବାର ପ୍ରସ୍ତାବ କଲା—ଏହା ଆକ୍ରମଣକାରୀ ବିରୁଦ୍ଧରେ ବ୍ୟବହୃତ ହେବ, ପ୍ରତ୍ୟେକ ଦେଶ କେବଳ ଗ୍ରେଟ ଓ ହାଲୁକା-ଅସ୍ତ୍ରସଜ୍ଜିତ ସେନା ରଖିପାରିବେ, ସମସ୍ତ ଆକାଶବାହିନୀ ଲିଗ୍ ଅଧୀନରେ ରହିବ । କିନ୍ତୁ ଯେଉଁ ସବୁ ପ୍ରଧାନ ଶକ୍ତି ଲିଗରେ ପ୍ରାଧାନ୍ୟ କରୁଛନ୍ତି ତାଙ୍କର ହାତରେ ସମସ୍ତ ଶକ୍ତି ଦେବ ବୋଲି ଆପତ୍ତି ଉଠିଲା—ଏଥିରେ କାର୍ଯ୍ୟତଃ ଫ୍ରାନ୍ସ ୟୁରୋପରେ ପ୍ରାଧାନ୍ୟ କରିଥାଆନ୍ତା ।

ଆକ୍ରମଣକାରୀ କିଏ ? ଏହା ଏକ କଷ୍ଟକର ପ୍ରଶ୍ନ, କାରଣ ପ୍ରତ୍ୟେକ ଆକ୍ରମଣକାରୀ ଦେଶର ପ୍ରକୃତି ହେଉଛି ତାହା ଦାବୀ କରେ ଯେ କେବଳ ନିଜ ଦେଶରକ୍ଷା ନିମନ୍ତେ ତାହା ଲଢ଼ାଇ କରୁଛି । ମାଞ୍ଚୁରିଆରେ ଜାପାନ ଓ ଆବିସିନିଆରେ ଇଟାଲୀ ଆକ୍ରମଣକାରୀ ବୋଲି ସ୍ୱୀକାର କଲେ ନାହିଁ । ମହାସମରରେ ପ୍ରତ୍ୟେକ ଦେଶ ଶତ୍ରୁକୁ ଆକ୍ରମଣକାରୀ ବୋଲି ଲକ୍ଷ୍ୟ କରୁଥିଲେ । ତେଣୁ ଯଦି ଆକ୍ରମଣକାରୀ ବିରୁଦ୍ଧରେ କିଛି କାର୍ଯ୍ୟବିଧାନ କରିବାର ଆବଶ୍ୟକ ପଡ଼େ, ତେବେ ତାହାର ସ୍ପଷ୍ଟ ଓ ଠିକ୍ ସଂଜ୍ଞା ହେବା ଦରକାର । ସୋଭିଏଟ ରୁଷ ଏକ ସଂଜ୍ଞା ପାଇଲା—ସେଥିରେ ଥିଲା ଯେ ଯଦି ଅନ୍ୟ ରାଜ୍ୟର ସୀମାନ୍ତ ପାର କରି କୌଣସି ଦେଶ ସଶସ୍ତ୍ରବାହିନୀ ପଠାଏ କିମ୍ବା ଆଉ ଏକ ରାଜ୍ୟର ଉପକୂଳ ଅବରୋଧ କରେ, ତେବେ ଏହା ଏକ ଆକ୍ରମଣକାରୀ ଦେଶ ବୋଲି ଧରାଯିବ । ପ୍ରେସିଡେଣ୍ଟ ରୁଜଭେଲ୍ଟ ଓ ଲିଗ୍ ଅଫ୍ ନେସନ୍ସର ଏକ କମିଟି ମଧ୍ୟ ସେହିପରି ଭାଷାରେ "ଆକ୍ରମଣକାରୀ" ସଂଜ୍ଞା କରିଥିଲେ । ରୁଷ ଓ ତାର ପଡ଼ୋଶୀଙ୍କ ଭିତରେ ହୋଇଥିବା ଅନାକ୍ରମଣ ଚୁକ୍ତିରେ ସୋଭିଏଟ ସଂଜ୍ଞା ଗୃହୀତ ହୋଇଥିଲା । ଫ୍ରାନ୍ସ ସମେତ ଗ୍ରେଟବଡ଼ ଅଧିକାଂଶ ଶକ୍ତି ଏହି ସଂଜ୍ଞାରେ ସମ୍ମତ ହେଲେ । ଅବଶ୍ୟ ଜାପାନ ଏଥିରେ ବଡ଼ ହଇରାଣ ହୋଇଗଲା ଏବଂ ଇଂଲଣ୍ଡ ଏଥିରେ ସମ୍ମତ ହେବାକୁ ଅସ୍ୱୀକାର କଲା ଓ ଏହି ବିଷୟକୁ ଅସ୍ପଷ୍ଟ ରଖିଦେବାକୁ ଚାହୁଁଥିଲା । ଇଟାଲୀ ତାକୁ ସମର୍ଥନ କଲା ।

ବ୍ରିଟେନର ଅସ୍ତ୍ରଶସ୍ତ୍ର କମାଇବା ଦରକାର ନାହିଁ—ଏଇଥିଲାଗି ବ୍ରିଟିଶ

ନିରସ୍ତ୍ରୀକରଣ ପ୍ରସ୍ତାବ କରିବାକୁ ଲାଗିଲା, ଅନ୍ୟ ଦେଶମାନଙ୍କର ନିରସ୍ତ୍ର ହେବା ଦରକାର । ଆକାଶରୁ ବୋମା ନିକ୍ଷେପ କରିବା ସମ୍ପୂର୍ଣ୍ଣ ବନ୍ଦ କରିବା ସପକ୍ଷରେ ପ୍ରତ୍ୟେକ ଦେଶ ମତ ଦେଲେ; ମାତ୍ର ବ୍ରିଟେନ ଗୋଟିଏ ଦଫା ନିଯୁକ୍ତ କଲା ଯେ "ଏକ କଲ ଫଲଗ୍ନ ଅଞ୍ଚଳରେ ଯେଉଁଠି ଜଗୁଆଳ ଉଦ୍ଦେଶ୍ୟରେ ହେଉଥିବ ତାହା ଛଡ଼ା"—ଏହାର ଅର୍ଥ ତା ସାମ୍ରାଜ୍ୟରେ ସେ ମୁକ୍ତଭାବରେ ବୋମା ବର୍ଷଣ କରିପାରିବ । ଅନ୍ୟମାନେ ଏହା ଗ୍ରହଣ କଲେ ନାହିଁ ଏବଂ ତେଣୁ ଏହା ଉଠାଇ ଦେବା ପ୍ରସ୍ତାବଟି ଆଉ ହୋଇପାରିଲା ନାହିଁ ।

ଜର୍ମାନୀ ଅନ୍ୟ ଶକ୍ତିମାନଙ୍କ ସହ ସମାନତା ଦାବୀ କରିବା ଅତି ସ୍ୱାଭାବିକ, ଯଦିଏତ ଅନ୍ୟମାନଙ୍କୁ ଯେତେ ସୀମା ପର୍ଯ୍ୟନ୍ତ ଅସ୍ତ୍ରସଜ୍ଜିତ ହେବାକୁ ଦିଆଯାଉଛି, ସେତିକିପାଇଁ ସେ ଅନୁମତି ପାଇବ ନଚେତ୍ ତାର ସୀମା ପର୍ଯ୍ୟନ୍ତ ଅନ୍ୟ ସମସ୍ତେ ନିରସ୍ତ୍ର ହେବା ଦରକାର । ଏହା ଏକ ଅଖଣ୍ଡ ଯୁକ୍ତି । ଜର୍ମାନୀର ନିରସ୍ତ୍ରୀକରଣ ହେଉଛି ଅନ୍ୟ ଜାତିମାନଙ୍କର ସେହିପରି କରିବାର ପୂର୍ବ ସୂଚନା ମାତ୍ର—ଏହା ଲିଗ୍ ଅଫ୍ ନେସନ୍ସ ଚୁକ୍ତିରେ କୁହା ହୋଇ ନ ଥିଲା କି ? ଏହିସବୁ ଆଲୋଚନା ଚାଲିଥିଲାବେଳେ ଜର୍ମାନୀରେ ନାଜୀମାନେ କ୍ଷମତାକୁ ଆସିଲେ ଏବଂ ସେମାନଙ୍କର ଆକ୍ରମଣଶୀଳ ଓ ଭୟ ପ୍ରଦର୍ଶନକାରୀ ମନୋଭାବ ଦେଖି ଫ୍ରାନ୍ସ ଡରିଗଲା ଏବଂ ଫ୍ରାନ୍ସ ତଥା ଅନ୍ୟ ଶକ୍ତିମାନେ ଆହୁରି କଠୋର ହୋଇଗଲେ । ଜର୍ମାନୀ ତରଫରୁ ହୋଇଥିବା କୌଣସି ପ୍ରସ୍ତାବରେ ସମ୍ମତି ପ୍ରକାଶ କଲେ ନାହିଁ ।

ନିରସ୍ତ୍ରୀକରଣ ଅସୁବିଧା ସାଙ୍ଗକୁ ପୁଣି ଦୃଶ୍ୟ ଅନ୍ତରାଳରେ ଅଗଣିତ ଚକ୍ରାନ୍ତ ଚାଲିଥିଲା—ବିଶେଷ ଭାବରେ ଅସ୍ତ୍ରଶସ୍ତ୍ର କାରଖାନାର ଉଚ୍ଚ ବେତନପ୍ରାପ୍ତ ଏଜେଣ୍ଟମାନେ ଏହାସବୁ ଚଳାଇଥିଲେ । ଆଜିକାଲିକା ପୁଞ୍ଜିବାଦୀ ଦୁନିଆରେ ଅସ୍ତ୍ର ଓ ଧ୍ୱଂସ ଯନ୍ତ୍ର ତିଆରି ସର୍ବାପେକ୍ଷା ଅଧିକ ସମୃଦ୍ଧିଶାଳୀ ଶିଳ୍ପ ହୋଇଛି । ଏହି ଅସ୍ତ୍ରସବୁ ବିଭିନ୍ନ ଦେଶର ସରକାରମାନଙ୍କ ପାଇଁ କରାଯାଏ, କାରଣ ସାଧାରଣତଃ ସରକାର ହିଁ ଯୁଦ୍ଧ କରନ୍ତି ଏବଂ ବିଚିତ୍ର କଥା ଯେ ବ୍ୟକ୍ତିଗତ କାରଖାନାସବୁ ଏହି ଅସ୍ତ୍ର ତିଆରି କରନ୍ତି । ଏହିସବୁ କାରଖାନାର ପ୍ରଧାନ ମାଲିକମାନେ ଅତ୍ୟନ୍ତ ଧନୀ ହୁଅନ୍ତି ଏବଂ ସେମାନେ ସାଧାରଣତଃ ସରକାର ସହ ଘନିଷ୍ଠ ସମ୍ପର୍କ ରଖିଥାନ୍ତି । ମୋର ଆଗ ଏକ ଚିଠିରେ ମୁଁ ଏମାନଙ୍କ ଭିତରୁ ସାର ବାସିଲ ଜାହାରୋଫ ସମ୍ବନ୍ଧରେ ତୋତେ କହିଥିଲି । ଅତି ଉଚ୍ଚ ଲାଭାଂଶ ଦେବାଭଳି ଅସ୍ତ୍ରଶସ୍ତ୍ର କାରଖାନାର ଅଂଶ ସବୁ ଅନେକ ସମୟରେ ଖୋଜାଯାଏ । ଏହିସବୁ କାରଖାନାରେ ସାଧାରଣ ଜୀବନରେ ଥିବା ଅନେକ ବିଖ୍ୟାତ ଲୋକ ଭାଗୀଦାର ହୋଇଥାଆନ୍ତି ।

ଯୁଦ୍ଧ ଓ ଯୁଦ୍ଧଲାଗି ପ୍ରସ୍ତୁତ ହେବା ଅର୍ଥ ଏହି ଅସ୍ତ୍ରଶସ୍ତ୍ର କାରଖାନାର ଲାଭ । ସେମାନେ ସାମ୍ରିକ ମୃତ୍ୟୁ ବେପାର କରନ୍ତି ଏବଂ ପକ୍ଷପାତ ନ ଦେଖାଇ ଯେ ଧନ ଦିଏ, ତାକୁ ନାଶକାରୀ ଯନ୍ତ୍ର ବିକ୍ରୀ କରନ୍ତି । ଚୀନରେ ଆକ୍ରମଣ ନିମନ୍ତେ ଜାପାନକୁ ଯେତେବେଳେ ଲିଗ୍ ଅଫ୍ ନେସନ୍‌ସ ନିନ୍ଦା କରୁଥିଲା, ସେତେବେଳେ ଇଂରେଜ, ଫରାସୀ ଓ ଅନ୍ୟ ଦେଶର ଅସ୍ତ୍ରଶସ୍ତ୍ର କାରଖାନାସବୁ ଚୀନ ଓ ଜାପାନ ଉଭୟଙ୍କୁ ମୁକ୍ତ ହସ୍ତରେ ଅସ୍ତ୍ର ଯୋଗାଉଥିଲେ । ଏହା ସୁସ୍ପଷ୍ଟ ଯେ ପ୍ରକୃତ ନିରସ୍ତ୍ରୀକରଣ ବୋଇଲେ ଏହିସବୁ କାରଖାନା ଧ୍ୱଂସ ହୋଇଯିବ । ତାଙ୍କ ବେପାର ବୁଡ଼ିବ । ତେଣୁ ତାଙ୍କ ଦୃଷ୍ଟିରେ ସେମାନେ ଏକ ବିପଦ ଘଟିବାରେ ବାଧା ଦେବା ନିମନ୍ତେ ଯଥାସମ୍ଭବ ଚେଷ୍ଟା କରନ୍ତି । ବାସ୍ତବିକ ସେମାନେ ଆହୁରି ଆଗକୁ ଯାଆନ୍ତି । ବ୍ୟକ୍ତିଗତ ଭାବରେ ଅସ୍ତ୍ର ତିଆରି ତଦନ୍ତ କରିବା ନିମନ୍ତେ ଲିଗ୍ ଅଫ୍ ନେସନ୍‌ସ ତରଫରୁ ହୋଇଥିବା ଏକ ବିଶେଷ କମିସନ ଏହି ସିଦ୍ଧାନ୍ତରେ ପହଞ୍ଚିଲା ଯେ ଏହି କାରଖାନାସବୁ ଯୁଦ୍ଧ ଆତଙ୍କ ଉସୁକାଇବାରେ ବ୍ୟସ୍ତ ଅଛନ୍ତି ଏବଂ ଯୁଦ୍ଧ କରିବା ନୀତି ଗ୍ରହଣ କରିବା ନିମନ୍ତେ ନିଜ ରାଜ୍ୟମାନଙ୍କୁ ପ୍ରବର୍ତ୍ତାଉଛନ୍ତି । ଏହା ମଧ୍ୟ ଦେଖାଗଲା ଯେ, ବିଭିନ୍ନ ଦେଶର ସାମରିକ ଓ ନୌସେନାର ବ୍ୟୟ ସମ୍ପର୍କରେ ଏହିସବୁ କାରଖାନା ମିଥ୍ୟା ରିପୋର୍ଟ ପ୍ରଚାର କଲେ— ତାହାହେଲେ ଅନ୍ୟ ଦେଶ ସବୁର ଅସ୍ତ୍ରଶସ୍ତ୍ରରେ ବ୍ୟୟ ବୃଦ୍ଧି ହେବ । ସେମାନେ ଗୋଟିଏ ଦେଶକୁ ଅପର ଦେଶ ବିରୁଦ୍ଧରେ ଖେଳାଇବାକୁ ଲାଗିଲେ ଏବଂ ସେମାନଙ୍କ ଭିତରେ ଏକ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତା ବଢ଼ାଇବାରେ ସାହାଯ୍ୟ କଲେ । ସେମାନେ ସରକାରୀ କର୍ମଚାରୀ-ମାନଙ୍କୁ ଲାଞ୍ଚ ଦେଲେ ଓ ସାଧାରଣ ଜନମତକୁ ପ୍ରଭାବିତ କରିବା ନିମନ୍ତେ ସମ୍ବାଦପତ୍ର ସବୁ କିଣିଲେ । ତାପରେ ଅସ୍ତ୍ରର ଦର ବୃଦ୍ଧି କରିବା ନିମନ୍ତେ ସେମାନେ ଅନ୍ତର୍ଜାତୀୟ ଫନ୍ଦ ଓ ଇଜାରାଦାରୀ (Monopoly) ଗଢ଼ିଲେ । ଲିଗ୍ କମିସନ ପ୍ରସ୍ତାବ କଲା ଯେ, ଅସ୍ତ୍ରଶସ୍ତ୍ର ବ୍ୟକ୍ତିଗତ ଭାବରେ ତିଆରି ବନ୍ଦ ହେବା ଉଚିତ । ନିରସ୍ତ୍ରୀକରଣ ସମ୍ମିଳନୀରେ ମଧ୍ୟ ଏହା ପ୍ରସ୍ତାବ ହେଲା, କିନ୍ତୁ ସେଠାରେ ପୁଣି ବ୍ରିଟିଶ ସରକାର ପକ୍ଷରୁ ଅବିରତ ବିରୋଧ ହେଲା ।

ବିଭିନ୍ନ ଦେଶର ଏହି ଅସ୍ତ୍ରଶସ୍ତ୍ର କାରଖାନାମାନଙ୍କର ପରସ୍ପର ସହିତ ଘନିଷ୍ଠ ସମ୍ପର୍କ ରହିଛି । ସେମାନେ ଦେଶଭକ୍ତିର ଲୁଣ୍ଠନ କରନ୍ତି ଓ ମୃତ୍ୟୁ ସହିତ ଖେଳ କରନ୍ତି ଏବଂ ସେମାନଙ୍କର କାର୍ଯ୍ୟକଳାପ ଅନ୍ତର୍ଜାତୀୟ କ୍ଷେତ୍ରରେ ବ୍ୟାପି ରହିଥାଏ—ଏହାକୁ "ଗୋପନୀୟ ଅନ୍ତର୍ଜାତୀୟ" ବୋଲି କୁହାଯାଇଛି । ଏହିସବୁ ଲୋକେ ଦୃଢ଼ଭାବରେ ନିରସ୍ତ୍ରୀକରଣର ଆପତ୍ତି କରିବା ସ୍ୱାଭାବିକ ଏବଂ କୌଣସି ଚୁକ୍ତି ହେବାରେ ବାଧା ଦେବାରେ ସେମାନେ ଉତ୍ତମରୂପେ ଚେଷ୍ଟା କରିଛନ୍ତି । ତାଙ୍କ ଏଜେଣ୍ଟସବୁ ଉଚ୍ଚ କୂଟନୈତିକ ଓ ରାଜନୈତିକ କ୍ଷେତ୍ରରେ ଯାଆଆସ କରନ୍ତି ଏବଂ ଏହି ଶସ୍ତ୍ରଚାଳନସବୁ ଜେନେଭାରେ ବହୁ ସଂଖ୍ୟାରେ ଥିଲେ—ଦୃଷ୍ଟିର ଅନ୍ତରାଳରୁ ଦଉଡ଼ି ଟାଣିବାକୁ ଚେଷ୍ଟା କରୁଥିଲେ ।

ପ୍ରାୟ ଏହି "ଗୋପନୀୟ ଅନ୍ତର୍ଜାତୀୟ" ସହିତ ବିଭିନ୍ନ ଦେଶର ଗୁଇନ୍ଦା ବିଭାଗ

ରହିଥାଏ । ପ୍ରତ୍ୟେକ ସରକାର ଅନ୍ୟ ଦେଶରୁ ଗୁପ୍ତ ସମ୍ବାଦ ପାଇବା ନିମନ୍ତେ ଗୁପ୍ତଚର ନିଯୁକ୍ତ କରିଥାଏ । ବେଳେବେଳେ ଗୁପ୍ତଚର ସବୁ ଧରା ପଡ଼ିଯାଆନ୍ତି ଏବଂ ତା ପରେ ନିଜ ସରକାରସବୁ ତାଙ୍କୁ ତତ୍ପରତା ସହକାରେ ସେମାନଙ୍କ ଲୋକ ନୁହନ୍ତି ବୋଲି ଘୋଷଣା କରିଦିଅନ୍ତି । ଏହିସବୁ ଗୁପ୍ତ ବିଭାଗକୁ ଲକ୍ଷ୍ୟ କରି ୧୯୬୭ ମେ ମାସରେ କମନସ ସଭାରେ ଅର୍ଥର ପନ୍‌ସନ୍‌ବାଇ (ଯେ କେତେକ ବର୍ଷ ପର୍ଯ୍ୟନ୍ତ ବ୍ରିଟିଶ ସରକାରର ବୈଦେଶିକ ବିଭାଗର ଅଣ୍ଡର-ସେକ୍ରେଟାରୀ ଥିଲେ ଏବଂ ଏବେ ଲର୍ଡ ପନ୍‌ସନ୍‌ବାଇ ହୋଇଛନ୍ତି) କହିଥିଲେ "ଆମେ ଯେତେବେଳେ ଉଚ୍ଚ ନୈତିକ କଥା ଆଲୋଚନା କରୁଥାଉଁ ସେତେବେଳେ ଆମର ପ୍ରକୃତ ଘଟଣାର ସମ୍ମୁଖୀନ ହେବା ଉଚିତ—ଏହା ସତ୍ୟ ଯେ, ପୃଥିବୀର ପ୍ରତ୍ୟେକ ବୈଦେଶିକ ଅଫିସ ଓ ପ୍ରତ୍ୟେକ ଚାନ୍‌ସେଲର ଅଫିସରେ ଜାଲ, ଠକେଇ, ମିଥ୍ୟା ଉତ୍କୋଚ ଓ ବ୍ୟଭିଚାର ରହିଛି...ମୁଁ କହୁଛି ଯେ, ସ୍ୱୀକୃତ ଧାର୍ମିକ ନିୟମାନୁସାରେ ବିଦେଶରେ ଆମର ପ୍ରତିନିଧିମାନେ ଯଦି ଅନ୍ୟ ଦେଶର ଗହ୍ୱର ଭିତରୁ ଗୁପ୍ତ ସମ୍ବାଦ ବାହାର କରି ନ ଆଣନ୍ତି, ତେବେ ସେମାନେ ତାଙ୍କ କର୍ତ୍ତବ୍ୟପ୍ରତି ଅବହେଳା କରୁଛନ୍ତି ବୋଲି ବୁଝାହେବ ।

ଏହି ଗୁପ୍ତ ବିଭାଗ ଗୋପନରେ କାମ କରୁଥିବାରୁ ଏଗୁଡ଼ିକୁ ନିୟନ୍ତ୍ରଣ କରିବା କଷ୍ଟକର । ସେମାନେ ଅଧିକ ଭାବରେ ନିଜ ଦେଶମାନଙ୍କର ବୈଦେଶିକ ନୀତିରେ ପ୍ରଭାବ ପକାନ୍ତି । ସେଗୁଡ଼ିକ ବ୍ୟାପକ ଓ ପ୍ରଭାବଶାଳୀ ସଂଗଠନ । ଆଜି ବ୍ରିଟିଶ ଗୁଇନ୍ଦା ବିଭାଗ ସମ୍ଭବତଃ ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ଏବଂ ଏହାର ବିସ୍ତୃତ ଶାଖାସବୁ ରହିଛି । ଜଣେ ବ୍ରିଟିଶ ଗୁପ୍ତଚର ରୁଷରେ ଏକ ଉଚ୍ଚ ସୋଭିଏଟ୍ କର୍ମଚାରୀ ହେବାର ଦୃଷ୍ଟାନ୍ତ ରହିଛି । ଯୁଦ୍ଧ କାଳରେ ବ୍ରିଟିଶ ମନ୍ତ୍ରୀ ସାର୍ ସାମୁଏଲ ହୋର ରୁଷରେ ବ୍ରିଟିଶ ଗୁଇନ୍ଦା ଓ ଗୁପ୍ତଚର ବିଭାଗର ମୁଖିଆ ଥିଲେ ଏବଂ ସେ ଏବେ ଗର୍ବର ସହିତ ସାଧାରଣରେ କହିଛନ୍ତି ଯେ, ତାଙ୍କର ସମ୍ବାଦ ଆଣିବା ପ୍ରଥା ଏତେ ଭଲ ଥିଲା ଯେ, ରାସପୁଟିନର ହତ୍ୟା ସମ୍ବାଦ ଅନ୍ୟ କେହି ଜାଣିବାର ପୂର୍ବରୁ ସେ ଜାଣିଥିଲେ ।

ନିରସ୍ତ୍ରୀକରଣ ସମ୍ମିଳନୀ ଆଗରେ ପ୍ରକୃତ ଅସୁବିଧା ହେଲା ଯେ ଦୁଇ ଶ୍ରେଣୀର ଦେଶ ରହିଛନ୍ତି—ସନ୍ତୁଷ୍ଟ ଓ ଅସନ୍ତୁଷ୍ଟ ଶକ୍ତିସବୁ, ପ୍ରାଧାନ୍ୟ କରୁଥିବା ଶକ୍ତି ଓ ଯେଉଁମାନେ ଦଳିତ ହୋଇ ରହିଛନ୍ତି; କେତେକ ଶକ୍ତି ପ୍ରଚଳିତ ଅବସ୍ଥା ରଖିବାକୁ ଚାହାନ୍ତି ଓ କେତେକ ଏହାର ପରିବର୍ତ୍ତନ ଚାହାନ୍ତି । ଯେପରି ଏକ ପ୍ରାଧାନ୍ୟ କରୁଥିବା ଶ୍ରେଣୀ ଓ ଦଳିତ ଶ୍ରେଣୀ ଭିତରେ କୌଣସି ବାସ୍ତବ ଦାୟିତ୍ୱ ହୋଇପାରେ ନା, ସେହିପରି ଏ ଦୁହିଁଙ୍କ ଭିତରେ କୌଣସି ସ୍ଥାୟୀ ମମତା ଆସିପାରେ ନା । ମୋଟ ଉପରେ ଲିଗ୍ ଅଫ୍ ନେସନ୍‌ସ ପ୍ରାଧାନ୍ୟ କରୁଥିବା ଶକ୍ତିମାନଙ୍କର ପ୍ରତିନିଧି ଥିଲା ଏବଂ ତେଣୁ ଏହା ପ୍ରଚଳିତ ବ୍ୟବସ୍ଥା ଜାରି ଚାହୁଁଥିଲା । ନିର୍‌ପତ୍ତା ଚୁକ୍ତି ଓ "ଆକ୍ରମଣକାରୀ" ଦେଶ ସଂଜ୍ଞା କରିବାର ଉଦ୍ୟମସବୁ

ପ୍ରଚଳିତ ଅବସ୍ଥା ରକ୍ଷା କରିବା ନିମନ୍ତେ ହୋଇଥିଲି । ସମ୍ଭବତଃ ଯାହାହେଉ ପଛକେ ଯେଉଁ ଦେଶ ଏହାକୁ ନିୟନ୍ତ୍ରଣ କରୁଛି, ତାକୁ ଲିଗ କେବେହେଁ "ଆକ୍ରମଣକାରୀ" ବୋଲି ନିନ୍ଦା କରିବ ନାହିଁ । ଏହା ସର୍ବଦା ଏପରି ଚକ୍ରାନ୍ତ କରିବ ଯେ, ଅନ୍ୟ ଦଳ "ଆକ୍ରମଣକାରୀ" ବୋଲି ଘୋଷଣା ହେବ ।

ଶାନ୍ତିବାଦୀ ଓ ଅନ୍ୟ ଯେଉଁମାନେ ଯୁଦ୍ଧ ରହିତ କରିବାକୁ ଚାହାନ୍ତି ସେମାନେ ନିରାପଦ ଚୁକ୍ତିସବୁ ସ୍ୱାଗତ କରନ୍ତି ଏବଂ ତେଣୁ ଗୋଟାଏ ଅର୍ଥରେ ଏକ ଅଯଥାର୍ଥ ପ୍ରଚଳିତ ବ୍ୟବସ୍ଥା ରକ୍ଷା କରିବାରେ ସେମାନେ ସାହାଯ୍ୟ କରନ୍ତି । ଇଉରୋପରେ ଯେତେବେଳେ ଏପରି ଅବସ୍ଥା, ସେତେବେଳେ ଯେଉଁ ଏସିଆ ଓ ଆଫ୍ରିକାରେ ସାମ୍ରାଜ୍ୟବାଦୀ ଶକ୍ତିସବୁ ବହୁ ରାଜ୍ୟ ସଂଯୋଗ କରିଛନ୍ତି, ସେଠାରେ ଏହା ବହୁ ଅଧିକ ହୋଇଥିବ । ସେହିହେତୁ ଏସିଆ ଓ ଆଫ୍ରିକାରେ ପ୍ରଚଳିତ ବ୍ୟବସ୍ଥା ଅର୍ଥ ସାମ୍ରାଜ୍ୟବାଦୀ ଶୋଷଣର ପ୍ରଚଳନ ।

ଏ ପର୍ଯ୍ୟନ୍ତ ଏହି ପ୍ରଚଳିତ ବ୍ୟବସ୍ଥା ରକ୍ଷା ସଂକ୍ରାନ୍ତରେ ଇଉରୋପରେ କୌଣସି ମିତ୍ରତା ବା ବ୍ୟବସ୍ଥାରୁ ସଂଯୁକ୍ତ ରାଷ୍ଟ୍ର ଆମେରିକା ମୁକ୍ତ ହୋଇଛି ।

ନିରସ୍ତ୍ରୀକରଣ ନିମନ୍ତେ ହୋଇଥିବା ସକଳ ପ୍ରଚେଷ୍ଟାର ବ୍ୟର୍ଥତା ଅପେକ୍ଷା ଆଜି ଆନ୍ତର୍ଜାତିକ ରାଜନୀତିରେ ଅଉ ଅବାସ୍ତବତା ଓ ଉପହାସ ବେଶି କିଛି ନାହିଁ । ପ୍ରତ୍ୟେକ ଲୋକ ଶାନ୍ତି କଥା କହେ, ତଥାପି ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଏ । କେଲଗ-ବ୍ରିଆଣ୍ଡ ଚୁକ୍ତିରେ ଯୁଦ୍ଧକୁ ବେଆଇନ କରି ହୋଇଥିଲା । ମାତ୍ର ଆଜି ତାହା କିଏ ମନେ ରଖିଛି ?

ନୋଟ—ନିରସ୍ତ୍ରୀକରଣ ସମ୍ମିଳନୀରେ ଜର୍ମାନୀର ପ୍ରସ୍ତାବ ସବୁ ଅଗ୍ରାହ୍ୟ କରାଗଲା ଏବଂ ୧୯୩୩ ଅକ୍ଟୋବର ମାସରେ ଜର୍ମାନୀ ସମ୍ମିଳନୀରୁ ବାହାରି ଆସିଲା ଓ ଲିଗ ଅଫ୍ ନେସନ୍‌ସରୁ ମଧ୍ୟ ଇସ୍ତଫା ଦେଲା । ସେହିଦିନଠାରୁ ଏହା ଲିଗ୍‌ରୁ ଅଲଗା ହୋଇ ରହିଛି । ମାଞ୍ଚୁରିଆ ସମସ୍ୟା ବିଷୟରେ ଜାପାନ ଲିଗ୍ ତ୍ୟାଗ କରିଛି ଏବଂ ଆବିସିନିଆ ଆକ୍ରମଣ ପ୍ରତି ଲିଗ୍‌ର ମନୋଭାବ ହେତୁ ଇଟାଲୀ ଲିଗ୍ ଛାଡ଼ିଛି । ତେଣୁ ତିନୋଟି ପ୍ରଧାନ ଶକ୍ତି ଲିଗ୍‌ରୁ ଅଲଗା ହୋଇ ଯାଇଛନ୍ତି ଏବଂ ଏପରି ଅବସ୍ଥାରେ ଲିଗ୍ ଆନୁକୂଲ୍ୟରେ ନିରସ୍ତ୍ରୀକରଣ ସମ୍ବନ୍ଧରେ କୌଣସି ଆନ୍ତର୍ଜାତିକ ନିଷ୍ପତ୍ତି ପ୍ରାୟ ଅସମ୍ଭବ ହୋଇପଡ଼େ । ନିରସ୍ତ୍ରୀକରଣ-ସମ୍ମିଳନୀ ବାସ୍ତବିକ ହେବାର ଅଳ୍ପଦିନ ପରେ ସବୁ ଦେଶରେ ପ୍ରଖର ଗତିରେ ଅସ୍ତ୍ର ସଜ୍ଜିତ ହେବା ଆରମ୍ଭ ହେଲା । ଜର୍ମାନୀ ଏକ ବିରାଟ ସେନା ଓ ଆକାଶ ବାହିନୀ ତିଆରି କରିବାକୁ ଲାଗିଲା ଏବଂ ଇଂଲଣ୍ଡ, ଫ୍ରାନ୍‌ସ, ସଂଯୁକ୍ତ ରାଷ୍ଟ୍ର ଆମେରିକା ଓ ଅନ୍ୟ ଦେଶସବୁ ଅଧିକା ଅସ୍ତ୍ରଶସ୍ତ୍ର ଲାଗି ପ୍ରବଳ ଧନ ବ୍ୟବସ୍ଥା କରିବାରେ ଲାଗିଛନ୍ତି ।

## ୧୯୬ : ତ୍ରାଣ କର୍ତ୍ତାରୂପେ ସବ୍ରପତ ରୁଜଭେଲଟ

ଅଗଷ୍ଟ ୪, ୧୯୩୩

ଏହି କାହାଣୀ ଶେଷ କରିବା ପୂର୍ବରୁ ସଂଯୁକ୍ତ ରାଷ୍ଟ୍ର ଆମେରିକା ପ୍ରତି ପୁଣି ଦୃଷ୍ଟିପାତ କରିବା ନିମନ୍ତେ ମୁଁ ଚାହେଁ ( ଏହା ଶେଷ କରିବା ଆଉ ବେଶୀଦିନ ଡେରି କରି ହେବ ନାହିଁ ) । ସେଠି ଏବେ ଏକ ବିରାଟ ଓ ମନମୁଗ୍ଧକର ପ୍ରୟୋଗ ଚାଲିଛି ଏବଂ ଜଗତ ଏହାକୁ ଟାକି ବସିଛି, କାରଣ ଏହାର ଫଳାଫଳ ଉପରେ ପୁଞ୍ଜିବାଦ କି ଗତି ଧାରଣ କରିବ ତାହା ନିର୍ଭର କରେ । ମୁଁ ପୁନର୍ବାର କହୁଅଛି, ଆମେରିକା ହେଉଛି ସର୍ବାପେକ୍ଷା ଅଧିକ ଉନ୍ନତ ପୁଞ୍ଜିବାଦୀ ଦେଶ, ଏହା ସର୍ବାପେକ୍ଷା ଅଧିକ ଧନୀ ଏବଂ ଏହାର ଶିଳ୍ପକୌଶଳ ଅନ୍ୟମାନଙ୍କଠାରୁ ଅଗ୍ରଗାମୀ । ସେ ଅନ୍ୟ କୌଣସି ରାଜ୍ୟରୁ ଟଙ୍କା କରଜ କରି ନାହିଁ ଏବଂ ତାର ଏକମାତ୍ର ଋଣ ହେଉଛି ନିଜର ନାଗରିକଙ୍କୁ ଦାନ କରିବା । ଏହାର ପ୍ରଚୁର ରପ୍ତାନି ବାଣିଜ୍ୟ ରହିଛି ଓ ଏହା ବୃଦ୍ଧି ପାଉଛି ଏବଂ ତଥାପି ଏହା ତାର ବିଶାଳ ଆଭ୍ୟନ୍ତରୀଣ ବାଣିଜ୍ୟର ଏକ କ୍ଷୁଦ୍ର ଅଂଶ ମାତ୍ର (ପ୍ରାୟ ଶତକରା ୧୫) । ଏହି ଦେଶଟି ୟୁରୋପ ମହାଦେଶ ପରି ବୃହତ୍ କିନ୍ତୁ ସେଥିରେ ଏତିକି ବୃହତ୍ ପାର୍ଥକ୍ୟ ରହିଛି—ୟୁରୋପ ବହୁସଂଖ୍ୟକ କ୍ଷୁଦ୍ର ଜାତିରେ ବିଭକ୍ତ, ପ୍ରତ୍ୟେକ ରାଜ୍ୟରେ ଉଚ୍ଚ ପ୍ରୋମି ଆମଦାନୀ ଶୁଳ୍କ ରହିଛି, ମାତ୍ର ସଂଯୁକ୍ତ ରାଷ୍ଟ୍ରର ନିଜ ରାଜ୍ୟମାନଙ୍କ ଭିତରେ ସେପରି କୌଣସି ବାଣିଜ୍ୟ ବାଧା ନାହିଁ । ତେଣୁ ୟୁରୋପ ଅପେକ୍ଷା ଆମେରିକାରେ ଆଭ୍ୟନ୍ତରୀଣ ବାଣିଜ୍ୟ ବୃଦ୍ଧି ପାଇବା ଅଧିକ ସହଜ ଥିଲା । ୟୁରୋପର ଦରିଦ୍ର ଓ ଋଣଗ୍ରସ୍ତ ରାଜ୍ୟମାନଙ୍କଠାରୁ ଆମେରିକାର ଏହି ସବୁ ସୁବିଧା ଥିଲା । ତାର ପ୍ରଚୁର ସୁନା, ପ୍ରଚୁର ଧନ ଓ ପ୍ରଚୁର ମାଲ ଥିଲା ।

ତଥାପି ଏ ସବୁ ସତ୍ତ୍ୱେ ପୁଞ୍ଜିବାଦୀ ସଙ୍କଟ ତାକୁ ବି ଘାରିଲା ଏବଂ ତାର ସମସ୍ତ ଗର୍ବ ନଷ୍ଟ ହୋଇଗଲା । ଯେଉଁ ଲୋକଙ୍କର ଜୀବନୀ ଶକ୍ତି ଓ ତେଜ ଅସୀମ ଥିଲା ସେମାନେ ଅଦୃଷ୍ଟବାଦ ଉପରେ ନିର୍ଭର କଲେ । ମୋଟ ଉପରେ ଦେଶ ଧନୀ ହୋଇ ରହିଲା, ଧନ ଉଭେଇ ଗଲା ନାହିଁ, କିନ୍ତୁ ଏହା କେତେକ ସ୍ଥାନରେ ଠୁଳ ହୋଇ ରହିଲା । ନ୍ୟୁୟର୍କରେ ଲକ୍ଷ ଲକ୍ଷ ମୁଦ୍ରା ଏବେ ବି ପରିଲକ୍ଷିତ ହେଲା; ପ୍ରଧାନ ବ୍ୟାଙ୍କର ଜେ. ପିଅରପଣ୍ଟ ମର୍ଗାନ ଏବେ ବି ତାଙ୍କର ବ୍ୟକ୍ତିଗତ ବିଳାସ ପୋତ ଖେଳ କରୁଥିଲେ—ଏହାର ମୂଲ୍ୟ ୬,୦୦୦,୦୦୦ ଡଲାର ବୋଲି କୁହାଯାଏ । ଅଥଚ ଏବେ ନ୍ୟୁୟର୍କ ଏକ "କ୍ଷୁଧିତ ସହର" ବୋଲି କୁହାଯାଉଛି । ଚିକାଗୋ ପରି ପ୍ରଧାନ ନଗରର ମ୍ୟୁନିସିପାଲିଟି ସବୁ ପ୍ରାୟ ଦେବାଳିଆ ହୋଇ ଯାଇଛନ୍ତି—ଏହା ହଜାର ହଜାର କର୍ମଚାରୀମାନଙ୍କର ବେତନ ଦେବାକୁ ଅସମର୍ଥ ହୋଇ ପଡ଼ିଛି ଏବଂ ଏହି ଚିକାଗୋ ଏବେ ଏକ ଅଦ୍ଭୁତ ପ୍ରଦର୍ଶନୀ ବା "ପ୍ରଗତି ଶତାବ୍ଦୀ" ବୋଲି ଏକ "ପୃଥିବୀ ବଜାର" ଚଳାଉଛି ।

ଏହି ବୈଷମ୍ୟ କେବଳ ଆମେରିକାରେ ସୀମାବଦ୍ଧ ନୁହେଁ । ଲଣ୍ଡନକୁ ଯାଅ—ସେଠାରେ ବ୍ରିଟିଶ ଉଚ୍ଚଶ୍ରେଣୀର ଅତ୍ୟଧିକ ସମ୍ପଦ ଓ ବିଳାସର ପ୍ରମାଣ ସବୁଦିନ ମିଳିବ; କେବଳ ଦରିଦ୍ର ଗରିବ ବସ୍ତିମାନଙ୍କରେ ଏ ସବୁ ଦେଖିବ ନାହିଁ । ଲାଙ୍କାଶାୟାର, ଉତ୍ତର ବା ମଧ୍ୟ ଇଂଲଣ୍ଡ, ଅଥବା ୱେଲ୍ସ ଓ ସ୍କଟଲଣ୍ଡର କୌଣସି ଅଞ୍ଚଳକୁ ଯାଅ—ତମେ ଧାଡ଼ି ଧାଡ଼ି ବେକାର, ନିଷ୍ପେଷିତ ଓ କୋଟରଗତ ଚକ୍ଷୁ ବିଶିଷ୍ଟ ମୁଖ ଓ ଜୀବନର ଅତି ଦୁଃଖଦାୟକ ଦୃଶ୍ୟ ଦେଖିବ ।

ଆଜିକାଲି ଆମେରିକାରେ ଏକ ବିଶେଷ ଲକ୍ଷଣ ଦେଖାଦେଇଛି । ଅପରାଧ ବିଶେଷତଃ "ଦସ୍ୟୁ" ବୃତ୍ତିର ବୃଦ୍ଧି—ଅର୍ଥାତ୍ ଦସ୍ୟୁମାନେ ଏକତ୍ର କାର୍ଯ୍ୟ କରୁଛନ୍ତି ଏବଂ ସେମାନଙ୍କ ପଥରେ ବାଧା ଦେବା ଲୋକଙ୍କୁ ବରାବର ଗୁଳି କରୁଛନ୍ତି । ଉତ୍ତେଜନାକାରୀ ମଦ୍ୟ ଆଦି ବିକ୍ରୀ ନିଷେଧ କରାଯାଇ ଆଇନ ପାସ୍ ହେଲା ଦିନୁଁ ଅପରାଧ ଅଧିକ ବଢ଼ିଯାଇଛି ବୋଲି କୁହାଯାଏ । ଏହି "ନିଶାନିବାରଣ" ଆଇନ ପୃଥିବୀ ଯୁଦ୍ଧ ହେବାର ଅଳ୍ପ ଦିନ ପରେ ହେଲା—ଏହାର ଆଂଶିକ ଭାବରେ ଗୋଟିଏ କାରଣ ହେଉଛି ବଡ଼ ବଡ଼ ମାଲିକମାନେ ତାଙ୍କ ଶ୍ରମିକଙ୍କୁ ଏପରି ନିଶା ସେବନରୁ ଦୂରରେ ରଖିବାକୁ ଚାହୁଁଥିଲେ, ତାହା ହେଲେ ସେମାନେ ଭଲ କାମ କରିପାରିବେ । କିନ୍ତୁ ଧନୀ ଲୋକେ ନିଜେ ଆଇନର ଅବହେଳା କଲେ ଓ ବିଦେଶରୁ ବେଆଇନ ଭାବରେ ମଦ ଆଣିବାକୁ ଲାଗିଲେ । କ୍ରମେ ମଦ ନିଶାର ଏକ ବିରାଟ ବେଆଇନ ବେପାର ଚାଲିଲା । ଏହାକୁ "ବୁଟଲେଗିଙ୍ଗ (Bootlegging) ବୋଲି କହୁଥିଲେ । ଏଥିରେ ବିଦେଶରୁ ବେଆଇନ ଭାବରେ ଅଣା ହେଉଥିବା ମଦ ଓ ସ୍ପିରିଟ ଓ ଗୁପ୍ତରେ ତିଆରି ମଦ ସବୁ ଚାଲୁଥିଲା । ସାଧାରଣତଃ ଏହି ଗୋପନରେ ତିଆରି ପଦାର୍ଥ ପ୍ରକୃତ ଜିନିଷ ଅପେକ୍ଷା ଅଧିକ ଖରାପ ଓ କ୍ଷତିକାରକ । ଏପରି ମଦ ଉଚ୍ଚଦରରେ ମିଳୁଥିଲା ଏବଂ ସମସ୍ତ ବଡ଼ ବଡ଼ ସହରରେ ଏପରି ହଜାର ହଜାର ମଦଖଟି ହୋଇଗଲା । ଏ ସବୁ ଅବଶ୍ୟ ବେଆଇନ ଥିଲା ଏବଂ ଏହା ରହିବା ନିମନ୍ତେ ପୁଲିସ ଲୋକ, ରାଜନୀତିଜ୍ଞମାନଙ୍କୁ ଲାଞ୍ଚ ଦିଆଗଲା ଏବଂ ସମୟେ ସମୟେ ତାଙ୍କୁ ଆତଙ୍କିତ କରାଯାଉଥିଲା । ବ୍ୟାପକ ଭାବରେ ଏହି ଆଇନର ଅବମାନନା ଫଳରେ ଦସ୍ୟୁଦଳ ବୃଦ୍ଧି ପାଇଲେ । ଏହି ରୂପେ "ନିଶା ନିବାରଣ" ଫଳରେ ଏକ ପକ୍ଷରେ ଶ୍ରମିକ ଓ ଗ୍ରାମ୍ୟ ଲୋକଙ୍କର ହିତ ହେଲା; ଅନ୍ୟ ପକ୍ଷରେ ଏହା ବହୁ କ୍ଷତି କଲା ଏବଂ ଚୋରା ମଦ ତିଆରି କଲାବାଲାଙ୍କର ଏକ ଶକ୍ତିଶାଳୀ ସ୍ୱାର୍ଥ ଗଢ଼ି ଉଠିଲା । ସମଗ୍ର ଦେଶ ଦୁଇ ଭାଗରେ ବିଭକ୍ତ ହୋଇଗଲା; ଯେଉଁମାନେ ନିଶା ନିବାରଣ ସପକ୍ଷରେ ଥିଲେ ସେମାନଙ୍କୁ "ଶୁଷ୍କ" ବୋଲି କୁହା ହେଉଥିଲା ଏବଂ ଯେଉଁମାନେ ତାହା ବିରୁଦ୍ଧରେ ଥିଲେ ସେମାନଙ୍କୁ "ଆର୍ଦ୍ର" ବୋଲି କୁହାହେଲା ।

ଦସ୍ୟୁ ଅପରାଧ ଭିତରେ ଧନୀ ଲୋକଙ୍କର ଛୋଟ ଛୋଟ ପିଲାମାନଙ୍କୁ ହରଣଚାଳ କରି ନେଇ କ୍ଷତିପୂରଣ ସକାଶେ ତାଙ୍କୁ ଲୁଚାଇ ରଖିବାହିଁ ସର୍ବାପେକ୍ଷା ଦୁର୍ଦ୍ଦାନ୍ତ ଓ ଭୀଷଣ

ହୋଇଥିଲା । କେତେ ଧନ ତଳେ ଲଣ୍ଡବର୍ଗଙ୍କର ଶ୍ରେଷ୍ଠ ପୁଅଟିକୁ ଏହି ରୂପେ ହରଣଚୁରି କରାଗଲା ଏବଂ ତାକୁ ପାଶବିକ ଭାବରେ ହତ୍ୟା କରିବା ଦେଖି ଦୁନିଆ ଚକିତ ହୋଇଗଲା ।

ଏହି ସବୁ ସାଙ୍ଗକୁ ପୁଣି ବାଣିଜ୍ୟ ଦୁର୍ଗତି ଓ ଅନେକ ଉଚ୍ଚ କର୍ମଚାରୀ ଓ ବଡ଼ ବଡ଼ ବ୍ୟବସାୟର ଲୋକେ ଦୂଷିତ ଓ ଅପାରଗ ବୋଲି ଜାଣିବାରୁ ଆମେରିକା ଲୋକଙ୍କର ମତି ସ୍ଥିର ରହିଲା ନାହିଁ । ୧୯୩୨ ନଭେମ୍ବର ମାସ ନିର୍ବାଚନରେ ସେମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ରୁଜଭେଲଟଙ୍କ ପ୍ରତି ନଜର ପକାଇଲେ ଏବଂ ସେ ହେଲେ କଷ୍ଟ ଲାଘବ କରି ପାରିବେ ବୋଲି ଆଶା ବାନ୍ଧିଲେ । ରୁଜଭେଲଟ ଜଣେ "ଆଦ୍ର" ଓ ଡେମୋକ୍ରେଟିକ ପାର୍ଟିର ଲୋକ ଥିଲେ; ଏହି ପାର୍ଟିରୁ ପ୍ରାୟ କମ୍ ଲୋକ ସଭାପତି ହୋଇଛନ୍ତି ।

ସର୍ବଦା ବିଭିନ୍ନ ଦେଶର ସ୍ୱତନ୍ତ୍ର ଲକ୍ଷଣସବୁ ମନରେ ରଖି ବିଭିନ୍ନ ଦେଶକୁ ତୁଳନା କଲେ ସାହାଯ୍ୟଦାୟକ ଓ ମଜାଦାର ବୋଧ ହୁଏ । ଲେଖି ସଂଯୁକ୍ତ ରାଷ୍ଟ୍ରର ଅଧୁନିକ ଘଟଣା ସହି ଜର୍ମାନି ଓ ଇଂଲଣ୍ଡର ଅବସ୍ଥା ତୁଳନା କରିବା ନିମନ୍ତେ ଆଗ୍ରହ ଜାତ ହେଉଛି । ଜର୍ମାନି—ଆମେରିକା ଭିତରେ ବହୁତ ସମାନତା ଅଛି । କାରଣ ଦୁଇଟିଯାକ ଅତ୍ୟନ୍ତ ଶିଳ୍ପୋନ୍ନତ ହୋଇଥିବା ସତ୍ତ୍ୱେ ଏକ ବିରାଟ କୃଷକ ଶ୍ରେଣୀ ରହିଛନ୍ତି । ଜର୍ମାନି ଲୋକସଂଖ୍ୟାର ଶତକଡ଼ା ୨୫ ହେଉଛନ୍ତି କୃଷକ, ସଂଯୁକ୍ତ ରାଷ୍ଟ୍ରରେ ସେମାନଙ୍କ ସଂଖ୍ୟା ଶତକଡ଼ା ୪୦ । ଜାତୀୟନୀତି ତିଆରି କଲାବେଳେ ଏହି କୃଷକମାନଙ୍କୁ ବିବେଚନା କରିବାକୁ ପଡ଼େ । ଇଂଲଣ୍ଡରେ ସେପରି ନୁହେଁ, ସେଠାରେ ଅଳ୍ପ ସଂଖ୍ୟକ କୃଷକଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରାଯାଏ, ହଁ, ଏବେ ସେମାନଙ୍କ ଅବସ୍ଥା ଉନ୍ନତ କରିବା ନିମନ୍ତେ କିଛି ପ୍ରଚେଷ୍ଟା ହେଉଛି ।

ଜର୍ମାନିରେ ନାଜି ଆନ୍ଦୋଳନର ଏକ ଉଲ୍ଲେଖଯୋଗ୍ୟ କାରଣ ହେଉଛି ଦଖଲଚ୍ୟୁତ ନିମ୍ନମଧ୍ୟବିତ୍ତ ଶ୍ରେଣୀର ସଂଖ୍ୟା ବୃଦ୍ଧି ଏବଂ ଜର୍ମାନ ମୁଦ୍ରାସ୍ଫୀତି ପରେ ଏପରି ବୃଦ୍ଧି ଦ୍ରୁତ ବେଗରେ ବ୍ୟାପିଲା । ଜର୍ମାନିରେ ଏହି ଶ୍ରେଣୀହିଁ ବିପ୍ଳବୀ ହେଲେ । ଠିକ୍ ଏହି ଶ୍ରେଣୀହିଁ ଏବେ ଆମେରିକାରେ ବୃଦ୍ଧି ପାଉଛନ୍ତି, ସର୍ବହରା ଶ୍ରମିକ ଶ୍ରେଣୀଠାରୁ ପୃଥକ୍ କରିବା ନିମନ୍ତେ ଏହାକୁ "ଶ୍ୱେତ କଲର ସର୍ବହରା ( White Collar Proletariat ) ବୋଲି କୁହା ହେଉଥିଲା—ଶ୍ରମିକଶ୍ରେଣୀ ପ୍ରାୟ ଶ୍ୱେତ କଲର ବ୍ୟବହାର କରନ୍ତି ନାହିଁ ।

ଅନ୍ୟ ତୁଳନା ସବୁ ହେଉଛି ମୁଦ୍ରା ସଙ୍କଟ, ମାର୍କର ପତନ, ପାଉଣ୍ଡ ଓ ଡଲାର ସୁନାରୁ ବିଚ୍ଛିନ୍ନ ହେବା ଓ ମୁଦ୍ରାସ୍ଫୀତି ଓ ବ୍ୟାଙ୍କ ସବୁର ବ୍ୟର୍ଥତା । ଇଂଲଣ୍ଡରେ ଅଧିକ ବ୍ୟାଙ୍କ ଫେଲ ମାରି ନାହିଁ, କାରଣ ସେଠାରେ ବେଶୀ ଛୋଟ ବ୍ୟାଙ୍କ ନାହିଁ ଏବଂ କେତେକ ବଡ଼ ବ୍ୟାଙ୍କ ବ୍ୟବସାୟ ଚଳାନ୍ତି । ଅନ୍ୟ ଦିଗରେ ତିନିଦେଶରେ ଘଟଣାର ଗତିର ପରସ୍ପର ସହି ସାମଞ୍ଜସ୍ୟ ରହିଛି, ଜର୍ମାନିରେ ପ୍ରଥମେ ସଙ୍କଟ ଆସିଲା, ତା' ପରେ ଇଂଲଣ୍ଡ ଓ ତା ପରେ ସଂଯୁକ୍ତ ରାଷ୍ଟ୍ର । ଅଳ୍ପେ ଅଧିକେ ଏକା ଶ୍ରେଣୀର ଲୋକେ ଯଥାକ୍ରମେ ତିନିଦେଶରେ

କ୍ଷମତା ପାଇଲେ; ଯଥା—ନାଜି ୧୯୩୧ ନିର୍ବାଚନରେ ବ୍ରିଟିଶ ଜାତୀୟ ସରକାର ଏବଂ ୧୯୩୨ ଆମେରିକା ନିର୍ବାଚନରେ ସଭାପତି ରୁଜଭେଲ୍‌ଟ । ଏମାନେ ହେଉଛନ୍ତି ନିମ୍ନମଧ୍ୟବିତ୍ତ ଶ୍ରେଣୀ—ଏମାନେ ପୂର୍ବରୁ ଅନ୍ୟ ଦଳସବୁ ଭିତରେ ଥିଲେ । ଏହି ତୁଳନାକୁ ବହୁଦୂର ନେବା ଉଚିତ ନୁହେଁ, କେବଳ ଜାତୀୟ ପାର୍ଥକ୍ୟ ଯୋଗୁଁ ନୁହେଁ, ମାତ୍ର ଇଂଲଣ୍ଡ ଓ ଆମେରିକାରେ ପରିସ୍ଥିତି ଜର୍ମାନୀ ପରି ଏ ପର୍ଯ୍ୟନ୍ତ ବୃଦ୍ଧି ପାଇ ନାହିଁ । କିନ୍ତୁ ଲକ୍ଷ୍ୟ କରିବାର କଥା ଯେ ଏହି ତିନୋଟି ଅତ୍ୟନ୍ତ ଶିଳ୍ପୋନ୍ନତ ରାଜ୍ୟରେ ଏକାଭଳିଆ ଅର୍ଥନୈତିକ ପ୍ରଭାବ କାର୍ଯ୍ୟ କରୁଛି ଏବଂ ତେଣୁ ସେଥିରୁ ଯାହା ଫଳ ଉପୁଜୁଛି ତାହା ବି ଏକାପରି ହେବାର ସମ୍ଭାବନା । ସମାନ ପରିମାଣରେ ଏହା ଫ୍ରାନସରେ (ଅନ୍ୟ ଦେଶରେ ମଧ୍ୟ) ଏ ପ୍ରକାର ଅବସ୍ଥା ନୁହେଁ, କାରଣ ଫ୍ରାନସ ଏବେ ସୁଦ୍ଧା ଅଧିକ କୃଷିପ୍ରଧାନ ଓ ଶିଳ୍ପ ଦିଗରେ ଅଳ୍ପ ଉନ୍ନତ ଦେଶ ହୋଇ ରହିଛି ।

୧୯୩୩ ମାର୍ଚ୍ଚ ପ୍ରଥମ ଭାଗରେ ରୁଜଭେଲ୍‌ଟ, ସଭାପତି ପଦ ଗ୍ରହଣ କଲେ ଏବଂ ଯେଉଁ ଭୀଷଣ ଦୁର୍ଗତି ଲାଗିଥିଲା ତାହା ସାଙ୍ଗକୁ ଏକ ପ୍ରକାଣ୍ଡ ବ୍ୟାଙ୍କ ସଙ୍କଟର ସମ୍ମୁଖୀନ ତାଙ୍କୁ ହେବାକୁ ପଡ଼ିଲା । କେତେକ ସପ୍ତାହ ପରେ ସେ ପଦ ଗ୍ରହଣ କଲାବେଳେ ଦେଶର ଯେପରି ଅବସ୍ଥା ଥିଲା ତାହା ବର୍ଣ୍ଣନା କଲେ ଏବଂ ସେ କହିଲେ ଯେ ସେତେବେଳେ ଦେଶ "ଇଞ୍ଚ ଇଞ୍ଚ କରି ମରୁଛି ।"

ରୁଜଭେଲ୍‌ଟ ଶୀଘ୍ର ଓ ନିଷ୍ପତ୍ତିମୂଳକ କାର୍ଯ୍ୟକଲେ । ସେ ବ୍ୟାଙ୍କ, ଶିଳ୍ପ ଓ କୃଷି ନିମନ୍ତେ ଆମେରିକାନ୍ କଂଗ୍ରେସରୁ କ୍ଷମତା ଚାହିଁଲେ ଏବଂ କଂଗ୍ରେସ ସଙ୍କଟ ହେତୁ ବିଚଳିତ ହୋଇ ପଡ଼ିଥିବାରୁ ଏବଂ ରୁଜଭେଲ୍‌ଟଙ୍କ ସପକ୍ଷରେ ଜନମତ ଥିବା ଦେଖି ତାଙ୍କୁ କ୍ଷମତା ଦେଲା । ସେ ବ୍ୟାବହାରିକ ଦୃଷ୍ଟିରେ ଜଣେ ଡିକ୍‌ଟେଟର ହେଲେ (ଅବଶ୍ୟ ଗଣତାନ୍ତ୍ରିକ ଡିକ୍‌ଟେଟର) ଏବଂ ସେମାନଙ୍କୁ ବିପତ୍ତିରୁ ରକ୍ଷା କରିବାପାଇଁ ଜରୁରୀ ଓ ଫଳପ୍ରଦ କାର୍ଯ୍ୟବିଧାନ ନିମନ୍ତେ ସମସ୍ତେ ତାଙ୍କୁ ଅନାଇ ରହିଲେ । ସେ ପ୍ରକୃତରେ ବୈଦ୍ୟୁତିକ ବେଗରେ କାର୍ଯ୍ୟ କଲେ ଏବଂ କେତେକ ସପ୍ତାହ ଭିତରେ ନିଜର ବିଭିନ୍ନ କାର୍ଯ୍ୟକଳାପ ଦ୍ୱାରା ସେ ସମଗ୍ର ସଯୁକ୍ତ ରାଷ୍ଟ୍ରକୁ ଦୋହଲାଇ ଦେଇଛନ୍ତି ଏବଂ ଲୋକଙ୍କ ଭିତରେ ଅଧିକ ବିଶ୍ୱାସ ଜାତ କରାଇ ପାରିଛନ୍ତି ।

ସଭାପତି ରୁଜଭେଲ୍‌ଟଙ୍କ ନିଷ୍ପତ୍ତିମାନଙ୍କ ଭିତରୁ—

୧ । ସେ ସୁନା ଛାଡ଼ିଲେ ଏବଂ ଡଲାର ପତନ ହେବାକୁ ଅନୁମତି ଦେଲେ—ଏହିରୂପେ ଖାତକମାନଙ୍କର ଭାଗ କମ୍ ହୋଇଗଲା ।

୨ । ଅର୍ଥ ସାହାଯ୍ୟ ଦେଇ କେତେକ ଚାଷୀଙ୍କ କଷ୍ଟ ଲାଘବ କଲେ ଏବଂ କୃଷି ବୋଝ କମାଇବା ନିମନ୍ତେ ୨,୦୦୦,୦୦୦,୦୦୦ ଡଲାର ପ୍ରକାଣ୍ଡ ଋଣ ଉଠାଇଲେ ।

୩ । ଜଙ୍ଗଲ ବିଭାଗ କାର୍ଯ୍ୟ ଓ ବନ୍ୟା ନିୟନ୍ତ୍ରଣ ନିମନ୍ତେ ସେ ୨୫୦୦୦୦ ଶ୍ରମିକ ନିଯୁକ୍ତ କଲେ । ଏହା ଅକର୍ମୀ ଦୂର କରିବା ପାଇଁ କରାଗଲା ।

୪ । ସେ ବେକାରମାନଙ୍କୁ ସାହାଯ୍ୟ ଦେବା ନିମନ୍ତେ କଂଗ୍ରେସଠାରୁ ୮୦୦,୦୦୦,୦୦୦ ଡଲାର ଦାବୀ କଲେ ଏବଂ କଂଗ୍ରେସ ଏହା ମଞ୍ଜୁର ଦେଲା ।

୫ । ସେ ନିଯୁକ୍ତି ଦେବା ପାଇଁ ସାଧାରଣ କାର୍ଯ୍ୟ କରିବା ନିମନ୍ତେ ୩,୦୦୦,୦୦୦,୦୦୦, ଡଲାର ଅଲଗା ରଖିଲେ—ଏହା ଧାର କରି ଉଠାହେବ ।

୬ । ସେ ନିଶାନିବାରଣ ଆଇନ ଜଲଦି ରଦ୍ଦ କରିଦେଲେ ।

ଧନୀ ଲୋକଙ୍କଠାରୁ ଧାର କଲେ ଏହି ସବୁ ବିରାଟ ପରିମାଣ ଅର୍ଥ ମିଳି ପାରିବ । ରୁଜଭେଲ୍‌ଟଙ୍କ ସମଗ୍ର ନୀତି ହେଉଛି ଲୋକଙ୍କର କିଣିବା ଶକ୍ତି ବଢ଼ାଇବା ଏବଂ ଏଥିରେ ସେ ଖୁବ୍ ସଫଳ ହୋଇଛନ୍ତି । ଟଙ୍କା ଯେତେବେଳେ ହାତରେ ହେବ ସେମାନେ କିଣିବେ ଏବଂ ବାଣିଜ୍ୟ ଦୁର୍ଗତି ଆପଣା ଛାଏଁ କମ୍ ହୋଇଯିବ । ଏହି ଉଦ୍ଦେଶ୍ୟ ରଖି ସେ ସାଧାରଣ କାର୍ଯ୍ୟରେ ବିଶାଳ ପରିମାଣରେ ଯୋଜନାମାନଙ୍କରେ ଧନ ଖରଚ କରୁଛନ୍ତି— ତାହାହେଲେ ଶ୍ରମିକମାନେ ନିଯୁକ୍ତ ହୋଇଯିବେ ଓ ପଇସା ରୋଜଗାର କରିବେ । ଏହି ଉଦ୍ଦେଶ୍ୟରେ ମଧ୍ୟ ସେ ଶ୍ରମିକମାନଙ୍କର ମଜୁରୀ ବଢ଼ାଇବାକୁ ଓ ସେମାନଙ୍କର ଶ୍ରମ ଘଣ୍ଟା କମ୍ କରିବାକୁ ଚେଷ୍ଟା କରୁଛନ୍ତି । ଦୈନନ୍ଦିନ କାର୍ଯ୍ୟଘଣ୍ଟା ଅଳ୍ପ ହେଲେ ବହୁତ ଲୋକ ନିଯୁକ୍ତି ପାଇ ପାରିବେ ।

ସଙ୍କଟ ଓ ଦୁର୍ଗତି ବେଳେ ସାଧାରଣତଃ ମାଲିକମାନେ ଯେଉଁ ମନୋଭାବ ନେଇଥାନ୍ତି, ଏହା ତାର ପ୍ରତ୍ୟକ୍ଷ ବିପରୀତ । ସେମାନେ ପ୍ରାପ୍ୟ ସବୁଠୁ ମଜୁରୀ କାଟି ଦେଇ ଶ୍ରମଘଣ୍ଟା ବଢ଼ାଇବାକୁ ଚାହାନ୍ତି, ତାହାହେଲେ ତାଙ୍କର ଉତ୍ପାଦନ ମୂଲ୍ୟ ଶସ୍ତା ହୋଇଯିବ । କିନ୍ତୁ ରୁଜଭେଲ୍‌ଟ କହନ୍ତି, ଆମେ ଯଦି ବିରାଟ ଆକାରରେ ଜିନିଷ ଉତ୍ପାଦନ କରିବାକୁ ଚାହୁଁ, ତେବେ ଅଧିକ ମଜୁରୀ ଜନସାଧାରଣଙ୍କୁ ଦେଲେ ଯାଇ ତାହା କିଣିବା ନିମନ୍ତେ ସେମାନଙ୍କର ଶକ୍ତି ବଢ଼ିବ ।

ଆମେରିକାନ ତୁଳା କିଣିବା ଉଦ୍ଦେଶ୍ୟରେ ରୁଜଭେଲ୍‌ଟ ସରକାର ସୋଭିଏଟ ରୁଷକୁ ବି ଋଣ ଦେଇଛି । ଦୁଇ ଦେଶ ଭିତରେ ଅଧିକ ପରିମାଣରେ କିପରି ଦ୍ରବ୍ୟ ବିନିମୟ ହୋଇ ପାରିବ ଏହା ଦୁହିଁଙ୍କ ମଧ୍ୟରେ ଆଲୋଚନା ଚାଲିଛି ।

ଆମେରିକା ଏପର୍ଯ୍ୟନ୍ତ ଏକ ବିଶୁଦ୍ଧ ପୁଞ୍ଜିବାଦୀ ରାଷ୍ଟ୍ର ହୋଇ ରହିଛି - ଏଥିରେ ପୂର୍ଣ୍ଣ ଓ ଅନିର୍ଦ୍ଦିଷ୍ଟ ପ୍ରତିଯୋଗିତା ଚାଲିଛି; ଏହାକୁ ଏକ "ବ୍ୟକ୍ତିବାଦୀ" ରାଷ୍ଟ୍ର ବୋଲି କହନ୍ତି । ରୁଜଭେଲ୍‌ଟଙ୍କର ନୂତନ ନୀତି ଏହା ସହିତ ଖାପ ଖାଉନାହିଁ, କାରଣ ସେ ନାନା ଭାବରେ ବ୍ୟବସାୟରେ ହସ୍ତକ୍ଷେପ କରୁଛନ୍ତି । ନ୍ୟୁ.ଆର୍.ଏ. ନାମ ଦେଲେ ଶୁଦ୍ଧା

ବ୍ୟବହାରିକ ଦୃଷ୍ଟିରେ ଏହାଦ୍ୱାରା ରାଷ୍ଟ୍ର ବହୁ ପରିମାଣରେ ଶିଳ୍ପ ନିୟନ୍ତ୍ରଣ କରୁଛି । ଏହା ପ୍ରକୃତରେ ଏକ ପ୍ରକାର "ରାଷ୍ଟ୍ର ସାମ୍ୟବାଦ" ( State Socialism ) ଶ୍ରମ ଘଣ୍ଟା ଓ ଅବସ୍ଥା ନିୟମିତ କରୁଛି, ଶିଳ୍ପ ନିୟନ୍ତ୍ରଣ କରୁଛି ଏବଂ "ଗଳାକଟା ପ୍ରତିଯୋଗିତା"ରେ ବାଧା ଦେଉଛି । ସେ ଏହାକୁ "ଏକ ଯୋଜନାରେ ଭାଗୀଦାର ଏବଂ ଯୋଜନା କାର୍ଯ୍ୟକାରୀ ହେବା ଦେଖିବା ମାତ୍ରେ" ବୋଲି କହନ୍ତି ।

ଏହି କାର୍ଯ୍ୟ ଏବେ ପ୍ରଚଳିତ ଆମେରିକାନ୍ ବେଗ ଓ ତେଜ ସହିତ କାର୍ଯ୍ୟକାରୀ କରାଯାଉଛି । ଶିଶୁ ଶ୍ରମିକ ପ୍ରଥା ଉଠାଇ ଦିଆହୋଇଛି । (ଶିଶୁ ବୟସ ଏହି ସନ୍ଧାନରେ ୧୬ ବର୍ଷ ଧାର୍ଯ୍ୟ କରାଯାଇଛି । ) ଏବେ ଧ୍ୱନି ହେଉଛି ଅଧିକ ମଜୁରି, ଅଧିକ ବେତନ ଓ ଅଳ୍ପ ଘଣ୍ଟା ଶ୍ରମ । ଏହି ଅଭିଯାନକୁ "ସମୃଦ୍ଧି ଦୌଡ଼" ବୋଲି କହୁଛନ୍ତି ଏବଂ କୁହାଯାଏ ସମଗ୍ର ଦେଶ ଏହି ଅଭିଯାନ ଲାଗି ଏକ ରାକ୍ଷସୀ ଲୋକ-ସଂଗ୍ରହ କ୍ଷେତ୍ର ହୋଇଛି । ମାଲିକ ଓ ଅନ୍ୟମାନଙ୍କୁ ନିବେଦନ କରି ଉଡ଼ାଜାହାଜ ସବୁ ଧାଉଁଛନ୍ତି । ପ୍ରତ୍ୟେକ ପୃଥକ୍ ବଡ଼ ଶିଳ୍ପସବୁ ଉଚ୍ଚ ମଜୁରୀ ହାର ନିର୍ଦ୍ଦିଷ୍ଟ କରି "ନିୟମ" ପ୍ରସ୍ତୁତ କରିବା ନିମନ୍ତେ ସେମାନଙ୍କୁ ପ୍ରବର୍ତ୍ତାଯାଉଛି ଏବଂ ଏହା କାର୍ଯ୍ୟକାରୀ କରିବା ପାଇଁ ଶପଥ ନେଉଛନ୍ତି; ତାହା ଯଦି ଉପଯୋଗୀ ନିୟମ ନ ବାନ୍ଧେ, ତେବେ ସରକାର ଏପରି କରିବ ବୋଲି ଭଦ୍ର ଧମକ ଦିଆଯାଉଛି । ବ୍ୟକ୍ତିଗତ ମାଲିକମାନେ ମଜୁରୀ ବୃଦ୍ଧି କରିବା ନିମନ୍ତେ ଏବଂ ସେମାନଙ୍କ କର୍ମଚାରୀଙ୍କ କାର୍ଯ୍ୟ ଘଣ୍ଟା କମ୍ କରିବା ନିମନ୍ତେ ପଣ କରି ଶପଥ ଦସ୍ତଖତ କରିବା ଲାଗି ସେମାନଙ୍କୁ କୁହାଯାଉଛି । ଯେଉଁ ମାଲିକମାନେ ଏଥିରେ ଆଗୁଆ ହେବେ ସରକାର ସେମାନଙ୍କୁ ଏକ ସମ୍ମାନ ପଦବୀ ଦେବ ଏବଂ ଅବହେଳା କଲାବାଲାଙ୍କୁ ଲଜ୍ଜା ଦେବ— ପ୍ରତ୍ୟେକ ସହରର ଡାକଘରେ ସମ୍ମାନ ତାଲିକା ଟଙ୍ଗା ହୋଇ ରହିବ ।

ଏହିସବୁ ଫଳରେ ଦର ଓ ବେପାରରେ କିଛି ଉନ୍ନତି ହୋଇଛି । କିନ୍ତୁ ପ୍ରକୃତ ଉନ୍ନତି ଯାହା ସ୍ପଷ୍ଟ ଦେଖାଯାଉଛି ତାହା ହେଉଛି ବ୍ୟବସାୟ ଭାବ ଓ ସାହସ ବୃଦ୍ଧି । ପରାଜିତ ହେବାର ଭାବ ଗଲାଣି ଏବଂ ସାଧାରଣ ଜନତା ଭିତରେ ଏବଂ ବିଶେଷତଃ ମଧ୍ୟବିତ୍ତ ଶ୍ରେଣୀ ସଭାପତି ରୁଜଭେଲ୍ଟଙ୍କଠାରେ ଅଟଳ ବିଶ୍ୱାସ ପୋଷଣ କରିଛନ୍ତି । ତାଙ୍କୁ ଆମେରିକାର ମହାନ ଯୋଦ୍ଧା ସଭାପତି ଲିନ୍‌କନ୍ ସହ ତୁଳନା କରାଯାଉଛି— ସେ ମଧ୍ୟ ଏକ ଭୀଷଣ ସଙ୍କଟ ଅର୍ଥାତ୍ ଗୃହ ଯୁଦ୍ଧବେଳେ ସଭାପତି ପଦ ଗ୍ରହଣ କରି ଦେଶକୁ ସମ୍ଭାଳିଥିଲେ ।

ଏପରିକି ୟୁରୋପରେ ବି ଅନେକ ଲୋକ ରୁଜଭେଲ୍ଟଙ୍କ ଆଡ଼କୁ ନଜର ପକାଇଲେ ଏବଂ ଦୁର୍ଗତି ବିରୁଦ୍ଧରେ ସେ ଦୁନିଆକୁ ନେତୃତ୍ୱ ଦେବେ ବୋଲି ଆଶାକଲେ । କିନ୍ତୁ ବିଶ୍ୱ ଅର୍ଥନୈତିକ ସମ୍ମିଳନୀରେ ସେ ଅନ୍ୟ ଦେଶର ପ୍ରତିନିଧିମାନଙ୍କ ପାଖରେ ଏକପ୍ରକାର ଅପ୍ରିୟ ହୋଇଗଲେ, କାରଣ ସୁନା ହିସାବରେ ଡଲାରର ମୂଲ୍ୟ ଧାର୍ଯ୍ୟ

କରିବାକୁ କିମ୍ବା ଅନ୍ୟ ଯେ କୌଣସି ରାଜିନାମା ଯେଉଁଥିରେ ସଂଯୁକ୍ତ ରାଷ୍ଟ୍ରରେ ତାଙ୍କର ବିରାଟ ଯୋଜନାମାନ କାର୍ଯ୍ୟକାରୀ କରାଇବାରେ ବାଧା ପହଞ୍ଚିବ, ସେଥିରେ ରାଜି ନ ହେବା ପାଇଁ ସେ ତାଙ୍କ ପ୍ରତିନିଧିଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ରୁଜଭେଲ୍‌ଟଙ୍କ ନୀତି ନିର୍ଦ୍ଦିଷ୍ଟ ଭାବରେ ଅର୍ଥନୈତିକ ଜାତୀୟବାଦ ଏବଂ ସେ ଆମେରିକାର ଅବସ୍ଥା ଉନ୍ନତ କରିବା ନିମନ୍ତେ ବଦ୍ଧପରିକର । କେତେକ ୟୁରୋପୀୟ ସରକାର ଏହା ପସନ୍ଦ କରୁନାହାନ୍ତି ଏବଂ ବିଶେଷ ଭାବରେ ବ୍ୟାଙ୍କରମାନେ ବିରକ୍ତ ହୋଇଛନ୍ତି । ବ୍ରିଟିଶ ସରକାର ରୁଜଭେଲ୍‌ଟଙ୍କର ପ୍ରଗତିଶୀଳ ପ୍ରବୃତ୍ତିକୁ ପସନ୍ଦ କରୁନାହାନ୍ତି । ସେମାନେ ବଡ଼ ବ୍ୟବସାୟକୁ ପସନ୍ଦ କରନ୍ତି ।

ତଥାପି ତାଙ୍କ ପୂର୍ବତନ ସଭାପତିଙ୍କ ଅପେକ୍ଷା ରୁଜଭେଲ୍‌ଟ ବିଶ୍ୱ ସମସ୍ୟାରେ ଅଧିକ ଭାଗ ନେଉଛନ୍ତି । ନିରସ୍ତ୍ରୀକରଣ ଓ ଅନ୍ୟ ଆନ୍ତର୍ଜାତିକ ପ୍ରଶ୍ନରେ ଇଂଲଣ୍ଡ ଅପେକ୍ଷା ସେ ନିର୍ଦ୍ଦିଷ୍ଟ ରୂପେ ଓ ଅଗ୍ରଗାମୀ ମନୋଭାବ ଗ୍ରହଣ କରିଛନ୍ତି । ହିଟଲରଙ୍କୁ ତାଙ୍କର ଭଦ୍ର ଧମକ ଫଳରେ ହିଟଲର ଟିକିଏ ନରମ ହୋଇ ଯାଇଛନ୍ତି । ସେ ସୋଭିଏଟ ରୁଷ ସହିତ ବି ସମ୍ପର୍କ ବଢ଼ାଇଛନ୍ତି ।

ଆଜି ଆମେରିକାରେ ଏକ ଅନ୍ୟତମ ପ୍ରଶ୍ନ ହେଉଛି ରୁଜଭେଲ୍‌ଟ କୃତକାର୍ଯ୍ୟ ହେବେ କି ? ସେ ପୁଞ୍ଜିବାଦକୁ ରକ୍ଷା କରିବା ନିମନ୍ତେ ଏକ ସାହସିକ ପ୍ରଚେଷ୍ଟା କରୁଛନ୍ତି । କିନ୍ତୁ ତାଙ୍କର ସଫଳତା ଅର୍ଥ ବଡ଼ ବ୍ୟବସାୟ ଗାଦିଚ୍ୟୁତ ହେବା ଏବଂ ବଡ଼ ବ୍ୟବସାୟ ଏହା ନୀରବରେ ସହ୍ୟ କରିବାର ସମ୍ଭାବନା କମ୍ । ଆମେରିକାର ବଡ଼ ବ୍ୟବସାୟ ଆଧୁନିକ ଜଗତର ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ସ୍ଥାପିତ ସ୍ୱାର୍ଥ ବୋଲି ଧରାଯାଏ ଏବଂ କେବଳ ସଭାପତି ରୁଜଭେଲ୍‌ଟଙ୍କ ଆଦେଶ ଅନୁସାରେ ଏମାନେ ନିଜର କ୍ଷମତା ଓ ବିଶେଷାଧିକାର କିଛି ଛାଡ଼ିଦେବେ ନାହିଁ । ବର୍ତ୍ତମାନ ପାଇଁ ଏମାନେ ନୀରବ ରହିଛନ୍ତି, କାରଣ ସାଧାରଣ ଜନମତ ଓ ରୁଜଭେଲ୍‌ଟଙ୍କ ଲୋକପ୍ରିୟତା ତାଙ୍କୁ ଅଭିଭୂତ କରି ପକାଇଛି । କିନ୍ତୁ ସେମାନେ ସୁଯୋଗକୁ ଟାକି ବସିଛନ୍ତି । କେତେକ ମାସ ଭିତରେ ଯଦି ବିଶେଷ ଉନ୍ନତି ନ ହୁଏ, ତେବେ ଆଶା କରାଯାଉଛି ଯେ ସାଧାରଣ ଜନମତ ରୁଜଭେଲ୍‌ଟଙ୍କ ବିରୁଦ୍ଧରେ ଯିବ ଏବଂ ତା' ପରେ ବଡ଼ ବ୍ୟବସାୟ ପ୍ରକାଶ୍ୟରେ ଏହା ବିରୁଦ୍ଧରେ ଲାଗିବ ।

ଅନେକ ଦକ୍ଷ ନିରୀକ୍ଷକ ଭାବୁଛନ୍ତି ଯେ ସଭାପତି ରୁଜଭେଲ୍‌ଟ ଏକ ଅସମ୍ଭବ କାର୍ଯ୍ୟରେ ହାତ ଦେଇଛନ୍ତି ଏବଂ ସେ କୃତକାର୍ଯ୍ୟ ହୋଇପାରିବ ନାହିଁ । ତାଙ୍କର ବ୍ୟର୍ଥତା ଫଳରେ ବଡ଼ ବ୍ୟବସାୟ ପୁଣି ସର୍ବେସର୍ବା ହୋଇଯିବ ଏବଂ ବୋଧହୁଏ ପୂର୍ବାପେକ୍ଷା ଅଧିକ କ୍ଷମତା ପାଇବ । କାରଣ ରୁଜଭେଲ୍‌ଟଙ୍କର ରାଷ୍ଟ୍ର ସାମ୍ୟବାଦ ଯନ୍ତ୍ର ସେତେବେଳେ ବଡ଼ ବ୍ୟବସାୟର ବ୍ୟକ୍ତିଗତ ଲାଭ ଦିଗରେ ପ୍ରୟୋଗ କରାହେବ । ଆମେରିକାରେ ଶ୍ରମିକ ଆନ୍ଦୋଳନ ବଳିଷ୍ଠ ନୁହେଁ, ଏବଂ ସହଜରେ ଦମନ କରାଯାଇପାରେ ।

ନୋଟ—ସଙ୍କଟ ପାର ହେବା ପାଇଁ ଏବଂ ନୂତନ ଅବସ୍ଥା ସହ ପୁଞ୍ଜିବାଦର ଖାପ ଖୁଆଇବା ପାଇଁ ରୁଜଭେଲ୍ଟଙ୍କର ମହାନ୍ ପ୍ରଚେଷ୍ଟା ଆଂଶିକରୂପେ ସଫଳ ହେଲା— ଯଦିଓ କିଛି ମୌଳିକ ପରିବର୍ତ୍ତନ ହୋଇ ନ ଥିଲା । ପରିସ୍ଥିତିରେ କିଛି ଉନ୍ନତ ହେଲା । କାର୍ଯ୍ୟତଃ ଏହି ପ୍ରଚେଷ୍ଟା ଫଳରେ ପ୍ରକାଣ୍ଡ ସାହାଯ୍ୟ ଦେବା ଯୋଜନାସବୁ କାର୍ଯ୍ୟ ଦେଲା ଏବଂ ମାଲିକମାନଙ୍କୁ ଅଧିକ ମଜୁରି ଓ ଶ୍ରମ ଘଣ୍ଟା କାମ କରିବାକୁ ପ୍ରବର୍ତ୍ତାଇବା ଦ୍ୱାରା ଶିଳ୍ପ ଜାତ ଲାଭ କେତେକ ପରିମାଣରେ ଶ୍ରମିକଙ୍କ ହାତରେ ପଡ଼ିଲା । ମାଲିକମାନେ ବିଶେଷତଃ ଫୋର୍ଡ୍ ଏହା ସେମାନଙ୍କ ସ୍ୱାଧୀନତା ଉପରେ ଆକ୍ରମଣ ବୋଲି ପ୍ରତିବାଦ କଲେ । ଶିଳ୍ପ ଓ କୃଷିରେ 'ନିୟମ' ବାନ୍ଧିବା ବିଫଳ ହେଲା ଏବଂ ଅନେକ ଧର୍ମଘଟ ହେଲା । କିନ୍ତୁ ଆମେରିକାର ଶ୍ରମିକ ଅଧିକ ବଳବାନ ଓ ଅଧିକ ସଚେତନ ହେଲେ ଏବଂ ଏକ ନୂତନ ଭାବ ବିରାଜିଲା । ଟ୍ରେଡ୍ ୟୁନିୟନମାନଙ୍କରେ ସଭ୍ୟ ସଂଖ୍ୟା ବହୁତ ବଢ଼ିଗଲା ।

ଆର୍ଥିକ ଉପଶମ ହେବା ପରେ ବଡ଼ ବ୍ୟବସାୟ ଅଧିକ ଉଗ୍ର ହେଲା ଏବଂ ରୁଜଭେଲ୍ଟଙ୍କର ପ୍ରତିରୋଧ କଲା । ରୁଜଭେଲ୍ଟଙ୍କର ଦୁଇଟି ପ୍ରଧାନ ଆଇନ, ନେସନାଲ ରିକଭରିଆକ୍ଟ (National recovery act) ଓ ଆଗ୍ରିକଲଚରାଲ ଆଡ଼ଜେଷ୍ଟ୍‌ମେଣ୍ଟ ଆକ୍ଟ (Agricultural adjustment act)ର କେତେକ ଫଳଦାୟକ ଦଫାକୁ ସୁପ୍ରିମ କୋର୍ଟ ବିଧାନ ବିରୋଧୀ ଘୋଷଣା କଲା ଏବଂ ତେଣୁ ଏହା ଅକାମୀ ହେଲା । ଏହି ରୂପେ ରୁଜଭେଲ୍ଟଙ୍କର ନୂତନ ଉଦ୍ୟମ ନଷ୍ଟ କରି ଦେଇଛି ।

୧୯୩୬ରେ ଆହୁରି ଅଧିକ ବହୁମତ ପାଇ ରୁଜଭେଲ୍ଟ ପୁନର୍ବାର ସଭାପତି ହେଲେ । ବଡ଼ ବ୍ୟବସାୟ ସହ ତାଙ୍କର ସଂଗ୍ରାମ ଚାଲିଛି । କଂଗ୍ରେସରେ ଆଉ ତାଙ୍କର ପ୍ରାଧାନ୍ୟ ନାହିଁ ଓ ଅନେକ ବିଷୟରେ ଏହା ତାଙ୍କର ବିରୋଧ କରୁଛି ।

## ୧୯୩ : ପାର୍ଲିମେଣ୍ଟଗୁଡ଼ିକର ବ୍ୟର୍ଥତା

ଅଗଷ୍ଟ ୭, ୧୯୩୩

ଆମେ ଏବର ଘଟଣାସବୁ ଟିକିଏ ବିସ୍ତୃତ ଭାବରେ ପରୀକ୍ଷା କଲେ ଏବଂ ଯେଉଁସବୁ ଶକ୍ତି ଓ ପ୍ରବୃତ୍ତି ଆମର ଆଜିକାଲିକାର ପରିବର୍ତ୍ତିତ ଦୁନିଆକୁ ତିଆରି କରୁଛି ତା' ବିଚାର କଲେ । ଉଲ୍ଲେଖଯୋଗ୍ୟ ଘଟଣାମାନଙ୍କ ଭିତରୁ ଦୁଇଟି ଆମେ ଉଲ୍ଲେଖ କରିଛେ, ତା ଆହୁରି ବିଚାର କରିବା ଦରକାର । ସେ ଦୁଇଟି ହେଉଛି; ଯୁଦ୍ଧୋତ୍ତର କାଳରେ ଶ୍ରମିକ ଓ ପୁରୁଣା-ଢରଣର ସାମ୍ୟବାଦର ବ୍ୟର୍ଥତା ଏବଂ ପାର୍ଲିମେଣ୍ଟଗୁଡ଼ିକର ବ୍ୟର୍ଥତା ବା ପତନ ।

୧୯୧୪ରେ ପୃଥିବୀ ଯୁଦ୍ଧ ଆରମ୍ଭ ହେଲାବେଳେ ସଙ୍ଗଠିତ ଶ୍ରମିକ ଆନ୍ଦୋଳନ କିପରି ବିଫଳ ହେଲା ଏବଂ ଦ୍ୱିତୀୟ ଆନ୍ତର୍ଜାତୀୟ ଭାଙ୍ଗି ପଡ଼ିଲା ତାହା ମୁଁ କହିଛି । କୁହାଯାଏ ଯେ ଯୁଦ୍ଧର ହଠାତ୍ ଆଘାତ ଫଳରେ ଶୋଷଣ ଜାତୀୟ ଉନ୍ମାଦନା ଜାଗ୍ରତ ହେଲା ଏବଂ ଅସ୍ଥାୟୀ ଉନ୍ମାଦଭାବ ଲୋକଙ୍କ ମନ ଅଧିକାର କଲା । ଗଲା ୪ ବର୍ଷ ଭିତରେ ଆହୁରି ଅଲଗା ଓ ଅଧିକ ଉଲ୍ଲେଖ ଯୋଗ୍ୟ ଘଟଣା ଘଟିଛି । ପୁଞ୍ଜିବାଦୀ ଦୁନିଆରେ କେବେ ଘଟି ନ ଥିବା ଶୋଷଣ ଦୁର୍ଗତି ଏହି ୪ ବର୍ଷ ଭିତରେ ଘଟିଛି ଏବଂ ଏହାର ଫଳସ୍ୱରୂପ ଶ୍ରମିକମାନଙ୍କର ଦୁର୍ଦ୍ଦଶା ବଢ଼ି ଚାଲିଛି । ତଥାପି ପ୍ରତ୍ୟେକ ସ୍ଥାନରେ ସାଧାରଣ ଶ୍ରମିକମାନଙ୍କ ଭିତରେ ବିଶେଷତଃ ଇଂଲଣ୍ଡ ଓ ଯୁକ୍ତ ରାଷ୍ଟ୍ରରେ ଏହା ଫଳରେ ପ୍ରକୃତ ବୈପ୍ଳବିକ ଭାବ ଜାତ ହୋଇ ନାହିଁ ।

ପୁରୁଣା ଧରଣର ପୁଞ୍ଜିବାଦ ସ୍ପଷ୍ଟ ରୂପେ ଭାଙ୍ଗି ପଡ଼ୁଛି । ବାହ୍ୟ ଦୃଷ୍ଟିରୁ ଅର୍ଥାତ୍ ବାହାରର ଘଟଣାବଳୀ ଦେଖିଲେ ସାମ୍ୟବାଦ ଅର୍ଥନୀତି ଢଙ୍ଗରେ ପରିବର୍ତ୍ତନ କ୍ରମରେ ଅବସ୍ଥା ସମ୍ପୂର୍ଣ୍ଣ ଅନୁକୂଳ ବୋଲି ମନେ ହୁଏ, କିନ୍ତୁ ଯେଉଁ ଶ୍ରମିକମାନଙ୍କ ମଧ୍ୟରୁ ଅଧିକାଂଶ ଏହାଠାରୁ ଅଧିକ ବାଞ୍ଛା କରନ୍ତି ସେମାନଙ୍କ ଭିତରେ ବିପ୍ଳବର କୌଣସି ଅଭିଳାଷ ଦେଖାଯାଉ ନାହିଁ । ଏ ପର୍ଯ୍ୟନ୍ତ ଆମେରିକାର ରକ୍ଷଣଶୀଳ କୃଷକମାନଙ୍କ ଭିତରେ ବୈପ୍ଳବିକ ଭାବ ଅଧିକ ଭାବରେ ପରିଲକ୍ଷିତ ହୋଇଛି ଏବଂ ମୁଁ ତତେ ବାରମ୍ବାର କହିଛି ଯେ ଅଧିକାଂଶ ଦେଶରେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଶ୍ରମିକମାନଙ୍କ ଅପେକ୍ଷା ଖୁବ୍ ବେଶୀ ଉଗ୍ରଭାବ ଦେଖାଇଛନ୍ତି । ଜର୍ମାନୀରେ ଏହା ଅଧିକ ପରିଲକ୍ଷିତ ହୋଇଛି, କିନ୍ତୁ ଟିକିଏ କମ୍ ପରିମାଣରେ ଇଂଲଣ୍ଡ ଯୁକ୍ତ ରାଷ୍ଟ୍ର ଓ ଅନ୍ୟତ୍ର ବି ଏହା ଦେଖାଯାଉଛି । ଜାତୀୟ ବିଶେଷତ୍ୱ ତଥା ସଙ୍କଟ ବୃଦ୍ଧିର ବିଭିନ୍ନ ଅବସ୍ଥା ଯୋଗୁଁ ଏପରି କମ୍ ବେଶି ହୋଇଛି ।

ଯୁଦ୍ଧୋତ୍ତର ବର୍ଷର ପ୍ରଥମ ଅବସ୍ଥାରେ ଯେଉଁ ଶ୍ରମିକ ଆନ୍ଦୋଳନ ଏତେ ଉଗ୍ର ଓ ବୈପ୍ଳବିକ ଥିଲା ତାହା କାହିଁକି ଏପରି ନରମ ଓ ଭାଗ୍ୟବାଦୀ ହୋଇଗଲା ? ଜର୍ମାନ ସୋସାଲ-ଡେମୋକ୍ରାଟିକ ପାର୍ଟି ବିନାଯୁଦ୍ଧରେ କାହିଁକି ବା ଭାଙ୍ଗି ପଡ଼ିଲା ଏବଂ ନାଜୀମାନଙ୍କ ଦ୍ୱାରା ନିଜକୁ ଛିନ୍ନ ଭିନ୍ନ କରିବାକୁ ଦେଲା ? ଇଂଲଣ୍ଡର ଶ୍ରମିକ ଏତେ ନରମ। ଓ ପ୍ରତିକ୍ରିୟାଶୀଳ କାହିଁକି ? ଆମେରିକାର ଶ୍ରମିକ ତା' ଠାରୁ ଅଧିକ ନରମ। ବା କାହିଁକି ? ସର୍ବଦା ଶ୍ରମିକ ନେତାମାନଙ୍କର ଅପାରଗପଣିଆ ସକାଶେ ଓ ଶ୍ରମିକ ଶ୍ରେଣୀର ସ୍ୱାର୍ଥ ପ୍ରତି ବିଶ୍ୱାସଘାତକତା କରିଥିବାର ଦୋଷ ଦିଆଯାଏ । ଏଥିରେ ସନ୍ଦେହ ନାହିଁ କେତେକ ଏହି ଦୋଷରେ ପ୍ରକୃତ ଦୋଷୀ ଏବଂ ପଲାତକ ସାଜିବା ଓ ନିଜର ବ୍ୟକ୍ତିଗତ ଅଭିଳାଷ ସିଦ୍ଧି ସକାଶେ ଶ୍ରମିକ ଆନ୍ଦୋଳନକୁ ଏକ ଉଠିବା ସିଡ଼ିରୂପେ ବ୍ୟବହାର କରିବାର ଦେଖିଲେ ଦୁଃଖ ଆସେ । ଦୁର୍ଭାଗ୍ୟର କଥା ମଣିଷର ପ୍ରତ୍ୟେକ କାର୍ଯ୍ୟ ବିଭାଗରେ ସୁବିଧାବାଦ ଦେଖାଯାଏ; କିନ୍ତୁ ଯେଉଁ ସୁବିଧାବାଦ ପଦଦଳିତ ଓ ନିଷ୍ପେଷିତ ଜନତାର ସମସ୍ତ ଆଶା, ଆଦର୍ଶ ଓ ତ୍ୟାଗର ସୁବିଧା ଉଠାଇ ନିଜର ବ୍ୟକ୍ତିଗତ ଲାଭ ପାଇଁ ପ୍ରୟୋଗ କରାଯାଏ ତାହା ମନୁଷ୍ୟର ସବୁଠାରୁ ବଡ଼ ଅଧୋଗତିର ପରିଚାୟକ ।

ନେତାମାନଙ୍କୁ ଦୋଷ ଦିଆଯାଇପାରେ କିନ୍ତୁ ନେତାମାନେ ତ ପୁଣି ପ୍ରଚଳିତ ଅବସ୍ଥାରୁ ଉଦ୍ଭବ । ସାଧାରଣତଃ ଯେଉଁଦେଶ ଯେପରି ଯୋଗ୍ୟ ସେହିପରି ଶାସକ ପାଏ ଏବଂ ଅନୁଗାମୀମାନଙ୍କର ସନ୍ତ୍ର ଇଚ୍ଛା ଅନୁସାରେ ନେତା ହୁଅନ୍ତି । ବାସ୍ତବରେ ଏହି ସବୁ ସାମ୍ରାଜ୍ୟ-ବାଦୀ ଦେଶର ଶ୍ରମିକ ନେତା ବା ତାଙ୍କର ଅନୁଚରଙ୍କ ଭିତରୁ କେହି ସାମ୍ୟବାଦକୁ ଏକ ଜୀବନ୍ତ ଧର୍ମ ବା ଆଶୁ ପ୍ରତିକାର ଦୃଷ୍ଟିରେ ଦେଖୁ ନ ଥିଲେ । ସେମାନଙ୍କର ସାମ୍ୟବାଦ ପୁଞ୍ଜିବାଦୀ ବ୍ୟବସ୍ଥାରେ ଅଧିକ ପରିମାଣରେ ଲିପ୍ତ ଓ ସଶ୍ଳିଷ୍ଟ ହୋଇଗଲା । ଉପନିବେଶ ରାଜ୍ୟଗୁଡ଼ିକର ଶୋଷଣ ଫଳରେ ଲାଭର ସାମାନ୍ୟ ଅଂଶ ବି ସେମାନେ ପାଇଲେ ଏବଂ ଉଚ୍ଚତର ଜୀବନ ଧାରଣ ନିମନ୍ତେ ପୁଞ୍ଜିବାଦର ପ୍ରଚଳନ କାମନା କଲେ । ସାମ୍ୟବାଦ ଏକ ସୁଦୂର ଆଦର୍ଶ, ଏକ ପ୍ରକାର ସ୍ୱର୍ଗର କଳ୍ପନା ଯାହା କି ବର୍ତ୍ତମାନ ହୋଇ ପାରିବ ନାହିଁ— ଏହା ସେମାନଙ୍କର ମତ ଏବଂ ସ୍ୱର୍ଗର ପୁରାତନ ଧାରଣା ପରି ଏହା ବି ଯୁକ୍ତିର ଏକ ଖେଳନା ହୋଇ ରହିଲା ।

ତେଣୁ ଶ୍ରମିକ ଦଳ ଟ୍ରେଡ଼ ଇଉନିୟନ, ସୋସାଲ-ଡେମୋକ୍ରାଟ ଦ୍ୱିତୀୟ ଆନ୍ତର୍ଜାତୀୟ ଓ ସେହିପରି ଅନ୍ୟ ସଂଗଠନସବୁ ପୁଞ୍ଜିବାଦର ପୂର୍ଣ୍ଣ ଗଠନକୁ ଯଥାସାଧ୍ୟ ଛାଡ଼ି ଦେଇ ଛୋଟ ଛୋଟ ସଂସ୍କାର ପ୍ରଚେଷ୍ଟାରେ ଲାଗିଗଲେ । ସେମାନେ ଆଦର୍ଶବାଦ ଛାଡ଼ିଦେଲେ ଏବଂ ଆତ୍ମାବିହୀନ ଓ ପ୍ରକୃତ ଶକ୍ତିବିହୀନ ପ୍ରକାଣ୍ଡ ଅମଲାତାନ୍ତ୍ରିକ ଅନୁଷ୍ଠାନରେ ପରିଣତ ହେଲେ ।

ନୂତନ କମ୍ୟୁନିଷ୍ଟ ପାର୍ଟି ସ୍ୱତନ୍ତ୍ର ଅବସ୍ଥାରେ ଥିଲା । ଶ୍ରମିକମାନଙ୍କ ପ୍ରତି ଏହାର ବାର୍ତ୍ତା ଅଧିକ ଜୀବନ୍ତ ଓ ହୃଦୟସ୍ପର୍ଶୀ ଏବଂ ଏହା ପଶ୍ଚାତରେ ସୋଭିଏଟ ଇଉନିୟନର ଆକର୍ଷଣ ରହିଥିଲା, କିନ୍ତୁ ଏହା ହୋଇ ସୁଦ୍ଧା ବିଶେଷ ସଫଳ ହୋଇପାରିଲା ନାହିଁ । ଏହା ଇଉରୋପ ବା ଆମେରିକାର ଶ୍ରମିକ ଜନତାକୁ ଗତିଶୀଳ କରିପାରିଲା ନାହିଁ । ଇଂଲଣ୍ଡ ଓ ସଂଯୁକ୍ତ ରାଷ୍ଟ୍ରରେ ଏହା ଅଦ୍ଭୁତ ଭାବରେ ଦୁର୍ବଳ । ଜର୍ମାନୀ ଓ ଫ୍ରାନ୍ସରେ ଏହାର କିଛି ଜୋର ଥିଲା ଏବଂ ତଥାପି ଆମେ ଦେଖିଛେ ଅନ୍ତତଃ ଜର୍ମାନୀରେ ଏହା ତାହାର ଫାଇଦା ଉଠାଇ ପାରିଲା ନାହିଁ । ଆନ୍ତର୍ଜାତୀକ କ୍ଷେତ୍ରରେ ୧୯୨୭ରେ ଚୀନ ଓ ୧୯୩୩ରେ ଜର୍ମାନୀରେ ଏହାର ଦୁଇଟି ବିରାଟ ପରାଜୟ ଘଟିଥିଲା । ଏହି ବାଣିଜ୍ୟ ଦୁର୍ଗତି ପୁନଃ ପୁନଃ ସଙ୍କଟ ନିମ୍ନ ମଜୁରି ଓ ବେକାର କାଳରେ କମ୍ୟୁନିଷ୍ଟ ପାର୍ଟି ବିଫଳ ହେଲା କାହିଁକି ? ଏହା କହିବା କଷ୍ଟକର । କେତେକ କହନ୍ତି ଏହା ଠିକ୍ ଖରାପ କାର୍ଯ୍ୟ କୌଶଳ ଯୋଗୁଁ ଭୁଲ କର୍ମପ୍ରଣାଳୀ ଯୋଗୁଁ ହେଲା । ଅନ୍ୟମାନେ କହନ୍ତି ଯେ, ଏହି ପାର୍ଟି ସୋଭିଏଟ୍ ସରକାର ସହ ଅତ୍ୟଧିକ ଭାବରେ ଆଚ୍ଛନ୍ନ ହୋଇ ରହିଲା ଏବଂ ଆନ୍ତର୍ଜାତିକ ନୀତି ଭାବରେ ଏହା ଯେପରି ହେବାର କଥା ତାହା ଅପେକ୍ଷା ସୋଭିଏଟ୍ ପାଇଁ ଏହାର ନୀତି ଅଧିକ ଜାତୀୟମୂଳକ ହୋଇ ରହିଥିଲା । ହୁଏତ ଏହା ହୋଇପାରିଥାଏ; କିନ୍ତୁ ଏହା ଏକ ସନ୍ତୋଷଜନକ କୈଫିୟତ୍ତ ନୁହେଁ ।

ଶ୍ରମିକମାନଙ୍କ ଭିତରେ କମ୍ୟୁନିଷ୍ଟ ପାର୍ଟି ଉଧେଇପାରିଲା ନାହିଁ କିନ୍ତୁ କମ୍ୟୁନିଷ୍ଟ ଭାବଧାରା ବିସ୍ତୃତ ଭାବରେ ବିଶେଷତଃ ଶିକ୍ଷିତ ଶ୍ରେଣୀଙ୍କ ଭିତରେ ପ୍ରସାରିତ ହେଲା । ପ୍ରତ୍ୟେକ ସ୍ଥାନରେ ଏପରି କି ପୁଞ୍ଜିବାଦର ସମର୍ଥକମାନଙ୍କ ମଧ୍ୟରେ ଏକ ପ୍ରତ୍ୟାଶା ଓ ଏକ ଆଶଙ୍କା ଉପୁଜିଥିଲା ଯେ ଏହି ସଙ୍କଟ ଏକ ପ୍ରକାର କମ୍ୟୁନିଜମରେ ପରିଣତ ହେବା ଅନିବାର୍ଯ୍ୟ । ସାଧାରଣ ଭାବରେ ଏ କଥା ଉପଲବ୍ଧି କରାଯାଉଥିଲା ଯେ ପୁରୁଣା ଧରଣର ପୁଞ୍ଜିବାଦ କାଳ ପୂରିଗଲାଣି । ଏହି ସମ୍ପତ୍ତିଲିପ୍ସୁ ଅର୍ଥନୀତି ଏହି ବ୍ୟକ୍ତିଗତ ଲାଭ ଉଠାଇବା—ଯେଉଁଥିରେ ଯୋଜନା ନାହିଁ ଓ ଯାହା ଫଳରେ ବାରମ୍ବାର ସଂଘର୍ଷ ଲାଗୁଛି ସଙ୍କଟ ଉପୁଜୁଛି ଏବଂ ନଷ୍ଟ ହେଉଛି; ତାହା ଅବଶ୍ୟ ଲୋପ ହେବ ତାହା ସ୍ଥାନରେ ଏକ ପ୍ରକାର ସଂଯୋଜିତ ସାମ୍ୟବାଦୀ ଅର୍ଥନୀତି ଅଥବା ସହଯୋଗମୂଳକ ଅର୍ଥନୀତି ଅବଶ୍ୟ ପ୍ରତିଷ୍ଠିତ ହେବ । ଏହାର ଅର୍ଥ ନୁହେଁ ଯେ ଆବଶ୍ୟକରୂପେ ଶ୍ରମିକ ଶ୍ରେଣୀର ବିଜୟ ହେବ କାରଣ କୌଣସି ରାଷ୍ଟ୍ର ମାଲିକ ଶ୍ରେଣୀର ମଙ୍ଗଳ ନିମନ୍ତେ ଅର୍ଦ୍ଧସାମ୍ୟବାଦୀ ଧାରାରେ ସଂଗଠିତ ହୋଇପାରେ । ରାଷ୍ଟ୍ର ସାମ୍ୟବାଦ ଓ ରାଷ୍ଟ୍ର ପୁଞ୍ଜିବାଦ ପ୍ରାୟ ଏକ ଜିନିଷ; ପ୍ରକୃତ ପ୍ରଶ୍ନ ହେଉଛି ରାଷ୍ଟ୍ର କାହା ହାତରେ ରହିଛି ଏବଂ ସେଥିରୁ କିଏ ଲାଭବାନ ହୋଇଛି ସମଗ୍ର ସମାଜ ନା କେତେକ ବିଶିଷ୍ଟ ମାଲିକ ଶ୍ରେଣୀ ।

ବୁଦ୍ଧିଜୀବୀମାନେ ଏପରି ତର୍କରେ ଲାଗିଥିଲା ବେଳେ ନିମ୍ନମଧ୍ୟବିତ୍ତ ଶ୍ରେଣୀ ବା ପେଟି-ବୁର୍ଜୋୟା ଶ୍ରେଣୀ ପଶ୍ଚିମ ଶିଳ୍ପୋନ୍ନତ ରାଜ୍ୟମାନଙ୍କରେ ନିଜର କାର୍ଯ୍ୟ କରିଗଲେ । ଏହି ଶ୍ରେଣୀ ଅସ୍ପଷ୍ଟ ଭାବରେ ଅନୁଭବ କଲେ ଯେ ପୁଞ୍ଜିବାଦ ଓ ପୁଞ୍ଜିବାଦୀମାନେ ତାଙ୍କୁ ଶୋଷଣ କରୁଛନ୍ତି ତେଣୁ ତାଙ୍କ ବିରୁଦ୍ଧରେ ଅସନ୍ତୋଷ ପ୍ରକାଶ କଲେ । କିନ୍ତୁ ଶ୍ରମିକ ଶ୍ରେଣୀ ଓ କମ୍ୟୁନିଜମ ପ୍ରତିଷ୍ଠା ହେବାରେ ଏମାନେ ଆହୁରି ଅଧିକ ଭୟ କରୁଥିଲେ । ପୁଞ୍ଜିବାଦୀମାନେ ସାଧାରଣତଃ ଏହି ଫାସିଷ୍ଟ ଶ୍ରେଣୀ ସହିତ ମିଶିଲେ କାରଣ ସେମାନେ ଅନୁଭବ କଲେ ଯେ କମ୍ୟୁନିଜମ ବନ୍ଦ କରିବାର ଅନ୍ୟ କୌଣସି ଉପାୟ ନାହିଁ । କ୍ରମେ କମ୍ୟୁନିଜମକୁ ଭୟ କରୁଥିବା ପ୍ରାୟ ପ୍ରତ୍ୟେକ ଲୋକ ଏହି ଫାସିଜମ୍ ସହିତ ନିଜକୁ ମିଶାଇ ଦେଲେ । ଏହିପରି ଭାବରେ ଅଳ୍ପାଧିକ ପରିମାଣରେ ଯେଉଁଠାରେ ପୁଞ୍ଜିବାଦ ବିପଦରେ ପଡ଼ିଥିଲା ଓ କମ୍ୟୁନିଜମର ସମ୍ମୁଖୀନ ହେଉଥିଲା ବା ହେବାର ସମ୍ଭାବନା ଥିଲା ସେଠାରେ ଫାସିଜମ ବିସ୍ତାର ଲଭିଲା । ଏ ଦୁହିଁଙ୍କ ଭିତରେ ପାର୍ଲିମେଣ୍ଟାରୀ ଶାସନ ଖଣ୍ଡ ଖଣ୍ଡ ହୋଇଗଲା ।

ଏହା ଫଳରେ ଏହି ଚିଠିର ଆରମ୍ଭରେ ମୁଁ ଯେଉଁ ଦ୍ୱିତୀୟ ଉଲ୍ଲେଖଯୋଗ୍ୟ ଘଟଣା କଥା ଲେଖିଛି ଅର୍ଥାତ୍ ପାର୍ଲିମେଣ୍ଟଗୁଡ଼ିକର ବ୍ୟର୍ଥତା ବା ପତନ ବେଳ ପହଞ୍ଚିଲା । ପୂର୍ବ ଚିଠିମାନଙ୍କରେ ଡିକ୍‌ଟେଟର ସାହୀ ଓ ପୁରୁଣା ଧରଣର ଗଣତନ୍ତ୍ରର ଅସଫଳତା ସମ୍ବନ୍ଧରେ ମୁଁ ତତେ ବହୁତ କହିଛି । ଏହା ରୁଷ ଇଟାଲୀ ଓ ମଧ୍ୟ ଇଉରୋପରେ ସୁସ୍ପଷ୍ଟ ହେଲା ଏବଂ ଏବେ ବି ଜର୍ମାନୀରେ ନାଜୀମାନେ କ୍ଷମତା ଅଧିକାର କରିବା ପୂର୍ବରୁ ପାର୍ଲିମେଣ୍ଟ ଶାସନର

ପତନ ଘଟିଥିଲା । ଆମେ ଦେଖିଛେ ସଂଯୁକ୍ତ ରାଷ୍ଟ୍ରରେ କଂଗ୍ରେସ ସଭାପତି ରୁଜ୍‌ଭେଲ୍‌ଟଙ୍କ-ଠାରେ କିପରି ପୂର୍ଣ୍ଣ କ୍ଷମତା ଅର୍ପଣ କରୁଛି । ଏହି ପ୍ରକ୍ରିୟା ଫ୍ରାନ୍‌ସ ଓ ଇଂଲଣ୍ଡରେ ମଧ୍ୟ ପରିଲକ୍ଷିତ ହୁଏ । ଇଉରୋପର ଏହି ଦୁଇ ରାଜ୍ୟରେ ଦୀର୍ଘକାଳର ଓ ଅଧିକ ଦୃଢ଼ ଗଣତନ୍ତ୍ର ପ୍ରଚଳନର ଖ୍ୟାତି ରହିଛି । ଇଂଲଣ୍ଡ କଥା ପ୍ରଥମେ ବିଚାର କରାଯାଉ ।

ଅନ୍ୟ ଇଉରୋପ ରାଜ୍ୟମାନଙ୍କ ଅପେକ୍ଷା ଇଂରେଜମାନଙ୍କର କାର୍ଯ୍ୟ କରିବାର ଢଙ୍ଗ ସମ୍ପୂର୍ଣ୍ଣ ଭିନ୍ନ । ସେମାନେ ସର୍ବଦା ପୁରାତନ ଲକ୍ଷଣ ବଜାୟ ରଖିବାକୁ ଚେଷ୍ଟା କରନ୍ତି ଏବଂ ସେହି ହେତୁ ପରିବର୍ତ୍ତନ ତେତେ ସୁସ୍ପଷ୍ଟ ନୁହେଁ । ସାଧାରଣ ଦର୍ଶକ ଚକ୍ଷୁରେ ବ୍ରିଟିଶ ପାର୍ଲିମେଣ୍ଟ ପୂର୍ବପରି ରହିଛି କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଏହାର ଅନେକ ପରିବର୍ତ୍ତନ ହୋଇଛି । ଆଗ କାଳରେ କମନ୍‌ସ ସଭା ପ୍ରତ୍ୟକ୍ଷଭାବରେ କ୍ଷମତା ପ୍ରୟୋଗ କରି ପାରୁଥିଲା ଏବଂ ସାଧାରଣ ସଭ୍ୟର ପ୍ରତ୍ୟେକ ବିଷୟରେ ମତ ଜ୍ଞାପନ କରିବାର ଅଧିକାର ଥିଲା । ଏବେ ମନ୍ତ୍ରିମଣ୍ଡଳ ବା ସରକାର ପ୍ରତ୍ୟେକ ବଡ଼ ସମସ୍ୟା ନିଷ୍ପତ୍ତି କରେ ଏବଂ କମନ୍‌ସ ସଭା ସେଥିରେ କେବଳ ହଁ ନାହିଁ କହେ । ଅବଶ୍ୟ ଏହି ସଭା ନାଁ ବୋଲି କହି ସରକାରକୁ ତଡ଼ି ଦେଇପାରେ କିନ୍ତୁ ଏହା ଏକ ଗୁରୁତର ବିଷୟ—ସାଧାରଣତଃ କରାଯାଏ ନାହିଁ କାରଣ ଏଥିରେ ଅନେକ ଅସୁବିଧା ଘଟିବ ଓ ସାଧାରଣ ନିର୍ବାଚନ ହେବ । ତେଣୁ ଯଦି କମନ୍‌ସ ସଭାରେ ସରକାରୀ ପକ୍ଷର ବହୁମତ ଥାଏ ତେବେ ଏହା ପ୍ରାୟ ଯାହା ଇଚ୍ଛା କରେ ତାହା କରିଯାଏ ସଭା ସେଥିରେ ସମ୍ମତି ଦିଏ ଏବଂ ଏହିରୂପେ ଏହା ଆଇନ ହୋଇଯାଏ । ଏହିପରି ଭାବରେ କ୍ଷମତା ବ୍ୟବସ୍ଥା ସଭାହାତରୁ ଶାସନ ବିଭାଗ ( Executive ) ହାତକୁ ଚାଲିଯାଇଛି ଏବଂ ଏବେ ବି ଯାଉଛି ।

ପୁନର୍ବାର ଆଜିକାଲି ପାର୍ଲିମେଣ୍ଟକୁ ଏତେ ବେଶୀ କାମ କରିବାକୁ ପଡ଼ୁଛି ଏତେ ଜଟିଳ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ୁଛି ଯେ କୌଣସି ଆଇନ ବା ବ୍ୟବସ୍ଥାର କେବଳ ସାଧାରଣ ନୀତି ପାର୍ଲିମେଣ୍ଟରେ ସ୍ଥିର କରିବାର ଏକ ଧାରା ପଡ଼ିଗଲାଣି ଏବଂ ବିସ୍ତୃତ ବିବରଣୀ ସ୍ଥିର କରିବା ଲାଗି ସରକାର ବା ତାର କୌଣସି ବିଭାଗକୁ ଛାଡ଼ି ଦିଆଯାଉଛି । ଏହିପରି ଭାବରେ ଶାସକ ଗୋଷ୍ଠୀ ବିଶାଳ କ୍ଷମତା ପାଇଛନ୍ତି ଏବଂ ଜରୁରୀ ଅବସ୍ଥାବେଳେ ମନଇଚ୍ଛା କାର୍ଯ୍ୟ କରିପାରନ୍ତି । ଏହିରୂପେ ପାର୍ଲିମେଣ୍ଟ ଅଧିକରୁ ଅଧିକ ଭାବରେ ରାଷ୍ଟ୍ରର ପ୍ରଧାନ କାର୍ଯ୍ୟମାନଙ୍କରୁ ସମ୍ପର୍କ ହରାଉଛି । ଏବେ ଏହାର ମୁଖ୍ୟ କାର୍ଯ୍ୟ ହୋଇଛି ସରକାରୀ ଆଇନ ବ୍ୟବସ୍ଥା ବିଷୟରେ ପ୍ରଶ୍ନ କରିବା ଏବଂ ସମାଲୋଚନା କରିବା ଓ ଶେଷରେ ସରକାରର ସାଧାରଣ ନୀତି ସମର୍ଥନ କରିବା । ହେରଲ୍‌ଡ୍ ଜେ ଲାସ୍କି କହିଛନ୍ତି "ପାର୍ଲିମେଣ୍ଟର ବିଦ୍ରୋହ ଭୟରେ ଆମ ସରକାର ଏକ ଡିକ୍‌ଟେଟରସାହୀ ଶାସନରେ ପରିଣତ ହୋଇଛି ।"

୧୯୩୧ ଅଗଷ୍ଟ ମାସରେ ଏକ ବିଚିତ୍ର ଭାବରେ ଶ୍ରମିକ ସରକାରର ହଠାତ୍ ପତନ ହେଲା । ପାର୍ଲିମେଣ୍ଟ କିପରି କିଛି କରିପାରେନା ତାହା ଏଥିରୁ ଦେଖାଗଲା । ଇଂଲଣ୍ଡରେ

ସାଧାରଣତଃ କମନ୍ସ ସଭାରେ ପରାଜିତ ହେଲେ କୌଣସି ସରକାରର ପତନ ହୁଏ । ୧୯୩୧ରେ ସଭାଗୃହ ସାମନାରେ କିଛି ନ ଥିଲା କ'ଣ ଘଟୁଥିଲା କେହି ଜାଣି ନ ଥିଲେ ଏପରି କି ମନ୍ତ୍ରିମଣ୍ଡଳର ଅଧିକାଂଶ ସଭ୍ୟଙ୍କୁ ମଧ୍ୟ କିଛି ଜଣା ନ ଥିଲା । ପ୍ରଧାନମନ୍ତ୍ରୀ ରାମସେ ମାକ୍‌ଡୋନାଲ୍‌ଡ୍ ଅନ୍ୟ ଦଳର ନେତାମାନଙ୍କ ସହିତ ଗୁପ୍ତରେ କଥାବାର୍ତ୍ତା ଚଳାଇଥିଲେ; ସେମାନେ ରାଜାଙ୍କ ସହିତ ସାକ୍ଷାତ କଲେ ଏବଂ ପୁରୁଣା ମନ୍ତ୍ରିମଣ୍ଡଳ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲା ଓ ସମ୍ବାଦପତ୍ରମାନଙ୍କରେ ଏକ ନୂତନ ମନ୍ତ୍ରିମଣ୍ଡଳ ଘୋଷଣା ହେଲା । ପୁରାତନ ମନ୍ତ୍ରିମଣ୍ଡଳର କେତେକ ସଦସ୍ୟ ପ୍ରଥମ ଥର ପାଇଁ ସମ୍ବାଦପତ୍ରରୁ ହିଁ ଏହିସବୁ ଜାଣିପାରିଲେ । ଏସବୁ ଏକ ଅସାଧାରଣ ଓ ଅତ୍ୟନ୍ତ ଅ-ଗଣତାନ୍ତ୍ରିକ କାର୍ଯ୍ୟବିଧି ଏବଂ ପରେ କମନ୍ସ ସଭା ଏହାକୁ ମଞ୍ଜୁର କଲା ବୋଲି ପ୍ରକୃତ ଘଟଣା ଯେ ବଦଳିଯିବ ତାହା ନୁହେଁ । ଏହା ଏକ ଉତ୍କଟେଟସ୍ଥ ପନ୍ଥା ।

ଏହିରୂପେ 'ହଠାତ୍ ଶ୍ରମିକ ସରକାର ସ୍ଥାନରେ "ଏକ ଜାତୀୟ ସରକାର" ସ୍ଥଳାଭିଷିକ୍ତ ହେଲା, ଏଥିରେ ଟୋରିମାନେ ପ୍ରାଧାନ୍ୟ ଲଭିଲେ ଏବଂ ଅଳ୍ପ କେତେକ ମାତ୍ରା ଶ୍ରମିକ ମିଶି ଏହାକୁ ଏକ ଜାତୀୟରୂପ ଦେବାର ଚେଷ୍ଟା କରାଗଲା । ରାମସେ ମାକ୍‌ଡୋନାଲ୍‌ଡ୍ ଶ୍ରମିକ ଦଳରୁ ବିତାଡ଼ିତ ହୋଇ ପୁଣି ପ୍ରଧାନମନ୍ତ୍ରୀ ଭାବରେ ରହିଲେ । ଯେତେବେଳେ ମାଲିକ ଶ୍ରେଣୀଙ୍କ ସ୍ଥିତି ଦୋହଲାଇ ଦେବା ସୁଦୂରଗାମୀ ସାମ୍ୟବାଦୀ ପରିବର୍ତ୍ତନର ଆଶଙ୍କା ଉପୁଜେ, କିମ୍ବା ସେମାନଙ୍କ ଉପରେ ଏହାର ଭାର ଗୁରୁତର ହୋଇପଡ଼େ, ସେତେବେଳେ ଏପରି "ଜାତୀୟ ସରକାର"ର ଆବିର୍ଭାବ ହୁଏ । ୧୯୩୧ ଅଗଷ୍ଟ ମାସରେ ଇଂଲଣ୍ଡରେ ଏପରି ଅବସ୍ଥା ଥିଲା, ସେତେବେଳେ ସଙ୍କଟ ଆସିବାରୁ ସୁନାକୁ ପାଉଣ୍ଡରୁ ପରେ ବିଚ୍ଛିନ୍ନ କରିବାକୁ ପଡ଼ିଲା ଏବଂ ଏହାର ପ୍ରତିକ୍ରିୟା ସ୍ୱରୂପ ସାମ୍ୟବାଦ ବିରୁଦ୍ଧରେ ପୁଞ୍ଜିବାଦର ଶକ୍ତି ଦୃଢ଼ ହୋଇଗଲା । ଶ୍ରମିକ ଦଳ ଯଦି ଯଶସ୍ୱୀ ହୁଏ, ତାହାହେଲେ •ମଧ୍ୟବିତ୍ତ ଶ୍ରେଣୀର ସମସ୍ତ ସଞ୍ଚିତ ଧନ ତାଙ୍କ ହାତକୁ ଚାଲିଯିବାର ଭୟ ଦେଖାଇ ଜାତୀୟ ସରକାର ପେଟି ବୁର୍ଜୋୟା ଶ୍ରେଣୀଙ୍କୁ ସମ୍ପୂର୍ଣ୍ଣ ଭାବରେ ଆତଙ୍କିତ କରାଇଦେଲା ଏବଂ ତାର ବହୁ ସଂଖ୍ୟକ ସଭ୍ୟ ନିର୍ବାଚିତ ହୋଇ ଆସିଲେ । ମାକ୍‌ଡୋନାଲ୍‌ଡ୍ ଓ ତାଙ୍କ ସମର୍ଥକମାନେ କହିଲେ ଯେ, ଜାତୀୟ ସରକାର ଗ୍ରହଣ୍ତଥିଲେ ତାଙ୍କୁ ଶେଷରେ ଯାଇଁ କମ୍ୟୁନିଜମରେ ପହଞ୍ଚିବାକୁ ପଡ଼ିଥାଆନ୍ତା ।

ଏହିରୂପେ ଇଂଲଣ୍ଡରେ ପୁରୁଣା କାଳର ଗଣତନ୍ତ୍ର ମଧ୍ୟ ଭାଙ୍ଗିଯାଇଛି ଏବଂ ପାର୍ଲିମେଣ୍ଟ ପତନ ଅବସ୍ଥାରେ ରହିଛି । ଯେତେବେଳେ ମନୁଷ୍ୟର ଭାବ ଉଦ୍ରେକକାରୀ ଜୀବନ୍ତ ସମସ୍ୟାମାନଙ୍କ ସମ୍ମୁଖୀନ ହେବାକୁ ପଡ଼େ; ଯଥା—ଧର୍ମ ସମ୍ବନ୍ଧୀୟ ସଂଘର୍ଷ କିମ୍ବା ଦେଶଗତ ଓ ଜାତିଗତ ସଂଘର୍ଷ (ଯେପରି ଆର୍ଯ୍ୟ ଜର୍ମାନ ବନାମ ଇହୁଦୀ) ଅଥବା ଏହାଠାରୁ ଅଧିକ ଅର୍ଥ-ନୈତିକ ସଂଗ୍ରାମ (ଯଥା :—ଥିଲାବାଲା ଓ ନ ଥିଲାବାଲାଙ୍କ ମଧ୍ୟରେ) ସେତେବେଳେ ଗଣତନ୍ତ୍ର ବିଫଳ ହୁଏ । ତୋର ମନେଥିବ ୧୯୧୪ରେ ଆୟର୍ଲଣ୍ଡରେ ଅଲଷ୍ଟର ଓ ଅବଶିଷ୍ଟ ଅଞ୍ଚଳ

ଭିତରେ ଏହିପରି ଏକ ଧାର୍ମିକ-ଜାତୀୟ ସମସ୍ୟା ଉଠିଥିଲାବେଳେ ବ୍ରିଟେନରେ ବ୍ରିଟିଶ ଜାତି ଦଳ ପାର୍ଲିମେଣ୍ଟର ସିଦ୍ଧାନ୍ତ ଗ୍ରହଣ କରିବାକୁ ଅସ୍ୱୀକାର କଲା ଏବଂ ଗୃହଯୁଦ୍ଧ ଉତ୍ସାହିତ କଲା । ସୁତରାଂ ଯେ ପର୍ଯ୍ୟନ୍ତ ଆପାତତଃ ଗଣତାନ୍ତ୍ରିକ ପଦ୍ଧତି ଅଧିକାର-ଭୋଗୀ ଶ୍ରେଣୀର ଉଦ୍ଦେଶ୍ୟ ସାଧନ କରୁଥାଏ, ସେ ପର୍ଯ୍ୟନ୍ତ ନିଜର ସ୍ୱାର୍ଥ ରକ୍ଷା କରିବା ନିମନ୍ତେ ସେମାନେ ତାର ବ୍ୟବହାର କରନ୍ତି । ମାତ୍ର ଯେତେବେଳେ ଏହା ତାଙ୍କ ପଥର ଅନ୍ତରାୟ ହୁଏ ଏବଂ ତାଙ୍କର ବିଶେଷ ଅଧିକାର ଓ ସ୍ୱାର୍ଥରେ ବାଧା ଦିଏ ସେତେବେଳେ ସେମାନେ ଗଣତନ୍ତ୍ର ତ୍ୟାଗ କରନ୍ତି ଓ ଡିକ୍‌ଟେଟର ଶାସନ ପଦ୍ଧତି ଗ୍ରହଣ କରନ୍ତି । ଏହା ସମ୍ପୂର୍ଣ୍ଣ ସମ୍ଭବ ଯେ, ଭବିଷ୍ୟତରେ ଅଧିକ ସାମାଜିକ ପରିବର୍ତ୍ତନ ସପକ୍ଷରେ ବ୍ରିଟିଶ ପାର୍ଲିମେଣ୍ଟରେ ହୁଏତ ବହୁମତ ଯଦି ସ୍ଥାପିତ ସ୍ୱାର୍ଥଙ୍କ ଉପରେ ଆକ୍ରମଣ କରେ, ତେବେ ଏହିସବୁ ସ୍ୱାର୍ଥର ମାଲିକ-ମାନେ ଖୋଦ ପାର୍ଲିମେଣ୍ଟକୁ ବି ଅବଜ୍ଞା କରିପାରନ୍ତି ଏବଂ ୧୯୧୪ରେ ଅଲଷ୍ଟର ପ୍ରଶ୍ନ ଯେପରି ସେମାନେ ଯେପରି କରିଥିଲେ ସେହିପରି ଏହି ସିଦ୍ଧାନ୍ତ ବିରୁଦ୍ଧରେ ବିଦ୍ରୋହ ଉସକାଇ ପାରନ୍ତି ।

ତେଣୁ ଆମେ ଦେଖିଲେ ଯେ, ଅଧିକାର ଭୋଗୀ ଶ୍ରେଣୀ ଯେ ପର୍ଯ୍ୟନ୍ତ ନିଜର ପ୍ରଚଳିତ ଅବସ୍ଥା ରକ୍ଷା କରିପାରନ୍ତି ସେ ପର୍ଯ୍ୟନ୍ତ କେବଳ ସେମାନେ ପାର୍ଲିମେଣ୍ଟ ଓ ଗଣତନ୍ତ୍ରକୁ ବାଞ୍ଛନୀୟ ବୋଲି ବିଚାରନ୍ତି । ଏହା ଅବଶ୍ୟ ପ୍ରକୃତ ଗଣତାନ୍ତ୍ରିକ ନୁହେଁ, ଏହା ଅଗଣତାନ୍ତ୍ରିକ ଉଦ୍ଦେଶ୍ୟ ଲାଗି ଗଣତାନ୍ତ୍ରିକ ବ୍ୟବସ୍ଥାର ଶୋଷଣ ମାତ୍ର । ଏ ପର୍ଯ୍ୟନ୍ତ ପ୍ରକୃତ ଗଣତନ୍ତ୍ର ପ୍ରଚଳିତ ହେବାର ସୁଯୋଗ ଘଟିନାହିଁ କାରଣ ପୁଞ୍ଜିବାଦୀ ବ୍ୟବସ୍ଥା ଓ ଗଣତନ୍ତ୍ର ମଧ୍ୟରେ ବିରୋଧ ପୁଣି ରହିଛି । ଗଣତନ୍ତ୍ରର ପ୍ରକୃତ ଯଦି କିଛି ଅର୍ଥ ଥାଏ ତାହା ହେଉଛି ସମାନତା; କେବଳ ଭୋଟାଧିକାରରେ ସମାନତା ନୁହେଁ, ମାତ୍ର ଆର୍ଥନୀତିକ ଓ ସାମାଜିକ ସମାନତା । ପୁଞ୍ଜିବାଦର ଅର୍ଥ ଏହାର ସମ୍ପୂର୍ଣ୍ଣ ବିପରୀତ ମୁଷ୍ଟିମେୟ ଲୋକ ଆର୍ଥନୀତିକ କ୍ଷମତା ଧାରଣ କରନ୍ତି ଏବଂ ନିଜର ସୁବିଧା ଲାଗି ଏହା ବ୍ୟବହାର କରନ୍ତି । ସେମାନେ ନିଜର ବିଶେଷାଧିକାର ପ୍ରାପ୍ତ ଅବସ୍ଥିତିକୁ ନିରାପଦ ରଖିବା ନିମନ୍ତେ ଆଇନ ତିଆରି କରନ୍ତି ଏବଂ ଯେ ଏହି ଆଇନ ଭାଙ୍ଗେ ଯେ ଆଇନ ଓ ଶୃଙ୍ଖଳା ଭଙ୍ଗକାରୀ ବୋଲି କୁହାଯାଏ, ତାକୁ ସମାଜ ଅବଶ୍ୟ ଶାସ୍ତି ଦେବ । ତେଣୁ ଏହି ବ୍ୟବସ୍ଥାରେ କୌଣସି ସମାନତା ନାହିଁ ଏବଂ ଯାହା ସ୍ୱାଧୀନତା ଥାଏ, ତାହା ପୁଞ୍ଜିବାଦ ନିୟମର ସୀମା ଭିତରେ ପୁଞ୍ଜିବାଦକୁ ରକ୍ଷା କରିବା ଲାଗି ହୋଇଥାଏ ।

ପୁଞ୍ଜିବାଦ ଓ ଗଣତନ୍ତ୍ର ମଧ୍ୟରେ ସଂଘର୍ଷ ଅନ୍ତର୍ନିହିତ ଓ ଅବିଚ୍ଛିନ୍ନଧାରାରେ ଚାଲିଛି; ଏହା ଅନେକ ସମୟରେ ଭ୍ରମପୂର୍ଣ୍ଣ ପ୍ରଚାର ଏବଂ ପାର୍ଲିଆମେଣ୍ଟ ପରି ବାହ୍ୟିକ ଗଣତନ୍ତ୍ର ରୂପରେ ଲୁକ୍କାୟିତ ଥାଏ ଏବଂ ମାଲିକ ଶ୍ରେଣୀ ଅନ୍ୟ ଶ୍ରେଣୀକୁ ଅଳ୍ପେଅଧିକେ ସନ୍ତୋଷ କରିବା ନିମନ୍ତେ ଟୋକ ଦିଅନ୍ତି । ଏପରି ବେଳ ପହଞ୍ଚେ, ଯେତେବେଳେ ଆଉ ଟୋକ ବି ଦିଆଯାଇ ପାରେନା ଏବଂ ସେତେବେଳେ ଦଳ ଭିତରେ ସଂଘର୍ଷ ଗୁରୁତର ଆକାର

ଧାରଣ କରେ । ଏବେ ସଂଗ୍ରାମ ପ୍ରକୃତ ଜନ୍ମ ସକାଶେ, ରାଷ୍ଟ୍ରର ଆର୍ଥିକାଠିକ କ୍ଷମତା ସକାଶେ ହୁଏ । ଯେତେବେଳେ ଏପରି ଅବସ୍ଥା ପହୁଞ୍ଚେ ସେତେବେଳେ ପୁଞ୍ଜିବାଦର ଯେଉଁସବୁ ସମର୍ଥକ ଏତେକାଳ ହେଲା ବିଭିନ୍ନ ଦଳ ଭିତରେ ରହିଥାଆନ୍ତି, ସେମାନେ ସେମାନଙ୍କର ସ୍ଥାପିତ ସ୍ୱାର୍ଥ ଉପରେ ପଡ଼ିଥିବା ବିପଦର ସମ୍ମୁଖୀନ ହେବା ନିମନ୍ତେ ଏକାଠି ମିଳିତ ହୋଇଯାଆନ୍ତି । ମାତ୍ରା ଓ ସେହିପ୍ରକାର ଦଳସବୁ ଉଭେଇଯାଏ ଏବଂ ଗଣତନ୍ତ୍ରରୂପ ଫୋପାଡ଼ି ଦିଆହୁଏ । ଇଉରୋପ, ଆମେରିକାରେ ଏପରି ଅବସ୍ଥା ଏବେ ପହୁଞ୍ଚିଛି ଏବଂ ଫାସିଜମ ଏହି ଆସ୍ଥାର ପ୍ରତିନିଧିରୂପେ ବାହାରିଛି, ଏହା ଅଧିକାଂଶ ଦେଶରେ କୌଣସି ନା କୌଣସି ପ୍ରକାରରେ ପ୍ରାଧାନ୍ୟ ଲାଭ କରିଛି । ପ୍ରତ୍ୟେକ ଦେଶରେ ଶ୍ରମିକ ନିଜକୁ ରକ୍ଷା କରିବା ଅବସ୍ଥାରେ ରହିଛି ଯଦିଓ ସଂକଟର ଏହି ନୂତନ ଓ ପ୍ରଭାବଶାଳୀ ଶକ୍ତିର ସମ୍ମୁଖୀନ ହେବା ନିମନ୍ତେ ଯଥେଷ୍ଟ ଶକ୍ତି ତାହାର ନାହିଁ । ତଥାପି ଅଦ୍ଭୁତ କଥା ପୁଞ୍ଜିବାଦୀ ବ୍ୟବସ୍ଥା ଆପେ ଦୋହଲୁଛି ଏବଂ ନୂତନ ଜଗତ ସହ ନିଜକୁ ଖାପ ଖୁଆଇ ପାରୁନାହିଁ । ଯଦିବା ଏହା ବଞ୍ଚିବାକୁ ସମର୍ଥ ହୁଏ, ତେବେ ଏହା ନିଶ୍ଚିନ୍ତ ପରି ମନେହେଉଛି ଯେ ଏହା ଅନେକ ସଙ୍କୁଚିତ କଠିନ ଆକାର ଧାରଣ କରିବ । ଅବଶ୍ୟ ଏହା ଦୀର୍ଘ ସଂଗ୍ରାମର ଆଉ ଏକ ଅବସ୍ଥା ମାତ୍ର; କାରଣ ଯେ କୌଣସି ଆକାରର ପୁଞ୍ଜିବାଦ ଅଧୀନରେ ଆଧୁନିକ ଜୀବନ କେବଳ ଯୁଦ୍ଧକ୍ଷେତ୍ର ମାତ୍ର, ଏଠାରେ ସୈନ୍ୟମାନେ ପରସ୍ପର ବିରୁଦ୍ଧରେ ଅବିରତ ଯୁଦ୍ଧ କରୁଛନ୍ତି ।

କେତେକ ଲୋକ ଅନୁମାନ କରନ୍ତି ଯେ ଯଦି କେତେକ ସମଝଦାର ଲୋକ ବିଭିନ୍ନ ସରକାର ଭାର ଗ୍ରହଣ କରନ୍ତି ତେବେ ଏସବୁ ଗୋଳମାଳ, ସଂଘର୍ଷ, ଦୁର୍ଗତି ଅନେକ ପରିମାଣରେ ମେଣ୍ଟିଯାଆନ୍ତା । ରାଜନୀତିଜ୍ଞମାନଙ୍କ ନିର୍ବୋଧ ପଣିଆ ଯୋଗୁଁ ପ୍ରତ୍ୟେକ ଜିନିଷ ଘଟୁଛି ବୋଲି ସେମାନେ କହନ୍ତି । ସେମାନେ ଭାବନ୍ତି ଯଦି ଉତ୍ତମ ଲୋକେ ଏକାଠି ମିଳିତ ହୁଅନ୍ତି ତେବେ ଦୁଷ୍ଟ ଲୋକଙ୍କୁ ନୈତିକ ଉପଦେଶ ଓ ତାଙ୍କର ତ୍ରୁଟି ତାଙ୍କୁ ଦର୍ଶାଇଦେଇ ବଦଳାଇ ଦେଇପାରନ୍ତେ । ଏହା ଏକ ଅତି ଭ୍ରାନ୍ତ ଧାରଣା, କାରଣ ଦୋଷ ବ୍ୟକ୍ତି-ବିଶେଷର ନାହିଁ ମାତ୍ର ଅନ୍ୟାୟ ବ୍ୟବସ୍ଥାରେ ରହିଛି । ଯେ ପର୍ଯ୍ୟନ୍ତ ଏ ବ୍ୟବସ୍ଥା ରହିଥିବ ସେ ପର୍ଯ୍ୟନ୍ତ ବ୍ୟକ୍ତିବିଶେଷ ଯେପରି କାର୍ଯ୍ୟ କରୁଛନ୍ତି ସେହିପରି କରୁଥିବେ । ଅନ୍ୟଦେଶ ଶାସନ କରୁଥିବା ବିଦେଶୀ ଜାତୀୟ ଗୋଷ୍ଠୀ ହୁଅନ୍ତୁ ବା ଏକ ଦେଶ ଭିତରେ ବିଭିନ୍ନ ଅର୍ଥନୈତିକ ଗୋଷ୍ଠୀ ହୁଅନ୍ତୁ, ଯେଉଁ ମାନେ ଆଜି ପ୍ରଧାନ ଓ ସୁବିଧାଭୋଗୀ ସ୍ଥାନ ପ୍ରାପ୍ତ ହୋଇଛନ୍ତି ସେମାନେ ନିଜର ଏହି ବିଶେଷ ଅଧିକାର ତାଙ୍କର ଗୁଣର ପୁରସ୍କାରରୂପେ ପାଇଛନ୍ତି ବୋଲି ଉପଲବ୍ଧି କରିବାଟା ଏକ ଅଦ୍ଭୁତ ଆତ୍ମପ୍ରବଞ୍ଚନା ଓ ଶଠତାମାତ୍ର । ଏହି ଅବସ୍ଥାକୁ ଯେ ସ୍ୱଳେନ୍ଦ୍ରକରେ ସେ ତାଙ୍କ ଚକ୍ଷୁରେ ଏକ ନିର୍ବୋଧ, ବଦ୍‌ମାସ ଏବଂ ଉତ୍ତେଜିତ ଅବସ୍ଥାର ଉତ୍ପାଟକ ଭାବରେ ପରିଚିତ ହୁଏ । କୌଣସି ପ୍ରାଧାନ୍ୟ ଲଭିଥିବା ଗୋଷ୍ଠୀକୁ ତାର ବିଶେଷାଧିକାର ଅନ୍ୟାୟ ଏବଂ ଏହା ଛାଡ଼ିଦେବା ଉଚିତ ବୋଲି ବୁଝାଇବା ଅସମ୍ଭବ । ବିରଳ ଭାବରେ କେତେବେଳେ ବ୍ୟକ୍ତିବିଶେଷ ହୃଦୟଙ୍ଗମ କରିପାରନ୍ତି କିନ୍ତୁ ସମୂହ ବା ଦଳ

କେବେ କରନ୍ତି ନାହିଁ । ତେଣୁ ଅନିବାର୍ଯ୍ୟରୂପେ ବିବାଦ, ସଂଘର୍ଷ ଓ ବିପ୍ଳବ ଆସେ ଏବଂ ସେଥିରେ ଅପରିମିତ କଷ୍ଟଭୋଗ ଓ ଦୁର୍ଦ୍ଦଶା ଭୋଗିବାକୁ ପଡ଼େ ।

•

## ୧୯୪ : ପୃଥିବୀପ୍ରତି ଅନ୍ତିମ ଦୃଷ୍ଟିପାତ

ଅଗଷ୍ଟ ୭, ୧୯୩୩

ଯେପର୍ଯ୍ୟନ୍ତ କାଗଜ, କଲମ, କାଳି ଥିବ ଚିଠିଲେଖା ଶେଷ ହେବନାହିଁ । ପୃଥିବୀ ଘଟଣା ସମ୍ବନ୍ଧରେ ସେହିପରି ଲେଖିବାର ଅନ୍ତନାହିଁ କାରଣ ଆମର ଏ ଦୁନିଆ ଘୂରୁଛି, ସ୍ତ୍ରୀ ପୁରୁଷ ଓ ବାଳକଙ୍କର ହସକାନ୍ଦ, ପରସ୍ପର ପ୍ରତି ଶ୍ରଦ୍ଧା ଓ ଘୃଣା ଏବଂ ଲଢ଼ାଇ ଝଗଡ଼ା କେବେ ବନ୍ଦ ହେଉନାହିଁ । ଏହି କାହାଣୀ ଚାଲିଛି ଏବଂ ଏହାର ଅନ୍ତନାହିଁ । ଆମେ ଆଜି ଯେଉଁ ଯୁଗରେ ବାସ କରୁଛେ ସେଥିରେ ଜୀବନ ପ୍ରବାହ ପୂର୍ବ ଅପେକ୍ଷା ବେଗବତୀ, ଏହାର ଗତି ଦ୍ରୁତତର ଏବଂ ଗୋଟିକ ପରେ ଗୋଟିଏ ପରିବର୍ତ୍ତନ ଆସୁଛି । ଏପରିକି ମୁଁ ଲେଖିବା ସଙ୍ଗେ ସଙ୍ଗେ ପରିବର୍ତ୍ତନ ହେଉଛି ଏବଂ ଆଜି ଯାହା ଲେଖୁଛି ତାହା କାଲିକି ପୁରୁଣା ହୋଇ-ଯାଇପାରେ । ଜୀବନ ନଦୀ କେବେହେଲେ ନିଶ୍ଚଳ ହୁଏ ନା; ଏହା ପ୍ରବାହିତ ହେଉଥାଏ ଏବଂ ବେଳେ ବେଳେ ବର୍ତ୍ତମାନ ଯେପରି ହେଉଛି ଏହା ନିର୍ମମ ଭାବରେ ଆସୁରିକ ତେଜ ବହନ କରି ଆଗକୁ ମାଡ଼ିଯାଏ, ଆମର କ୍ଷୁଦ୍ର ଇଚ୍ଛା ଓ ଅଭିଳାଷ ପ୍ରତି ଦୃଷ୍ଟିପାତ କରେ ନା, ଆମର କ୍ଷୁଦ୍ର ଜୀବନକୁ କ୍ରୁର ଉପହାସରେ ଉଡ଼ାଇଦିଏ ଏବଂ ଏହାର ଆନ୍ଦୋଳିତ ସ୍ରୋତ ଭିତରେ କୁଟାଖଣ୍ଡିକପରି ଆମକୁ ଫୋପାଡ଼ି ଦିଏ; ଏହା ଭାସି ଚାଲିଥାଏ, କେଉଁଠିକୁ ଯାଏ କେହି ଜାଣେନା—ହୁଏତ ପ୍ରଧାନ ଗିରିଶୃଙ୍ଗରେ ବାଧାପାଇ ହଜାର ହଜାର ଖଣ୍ଡରେ ଖଣ୍ଡ ବିଖଣ୍ଡିତ ହୋଇଯିବ କିମ୍ବା ଏହା ସେହି ବିଶାଳ ଓ ଦୁର୍ଜ୍ଞେୟ, ଆଡ଼ମ୍ବରପୂର୍ଣ୍ଣ ଓ ନିସ୍ତବ୍ଧ, ସଦା ପରିବର୍ତ୍ତନଶୀଳ ଏବଂ ଅପରିବର୍ତ୍ତନୀୟ ସାଗର ମଧ୍ୟକୁ ଧାଉଁଛି ।

ମୁଁ ଯାହା ଇଚ୍ଛା କରିଥିଲି ବା ମୋର ଯେତେ ଲେଖିବା ଉଚିତ ତାହା ଅପେକ୍ଷା ବହୁତ ଅଧିକ ଲେଖିଯାଉଛି । ମୋ କଲମ ଧାଉଁବାରେ ଲାଗିଛି । ଆମେ ଆମର ଦୀର୍ଘ ଯାତ୍ରା ଶେଷ କରିଛେ ଏବଂ ଅନ୍ତିମଲକ୍ଷ୍ୟ ସ୍ଥିର କରି ସାରିଛେ । ଆମେ ଆଜିରେ ପହଞ୍ଚି ଯାଇଛେ ଏବଂ କାଲିର ଦ୍ୱାର ପଥରେ ଛିଡ଼ା ହୋଇଛେ, ଆଶ୍ଚର୍ଯ୍ୟ ହୋଇ ଭାବୁଁଛେ ଯେ କାଲି ଯେତେବେଳେ ଆଜିରେ ପରିଣତ ହେବ ସେତେବେଳେ କି ଆକାର ଧାରଣ କରିବ । ଆମେ ଟିକିଏ ଦମ୍ ନେବା ଏବଂ ପୃଥିବୀର ଚାରିଆଡ଼କୁ ଦୃଷ୍ଟିପାତ କରିବା । ଆଜି ୧୯୩୩ ଅଗଷ୍ଟ ମାସର ୭ମ ଦିବସରେ ଏହା କିପରି ଅବସ୍ଥାରେ ରହିଛି ?

ଭାରତରେ ଗାନ୍ଧୀଜୀ ପୁନର୍ବାର ଗିରଫ ହୋଇଛନ୍ତି, ଶାସ୍ତି ପାଇଛନ୍ତି ଏବଂ ୟେରବାଡ଼ା ଜେଲକୁ ଫେରି ଯାଇଛନ୍ତି । ଅତି ସଙ୍କୁଚିତ ଆକାରରେ ହେଲେ ସୁଦ୍ଧା ଆଇନ ଅମାନ୍ୟ ଆରମ୍ଭ କରାଯାଇଛି ଏବଂ ଆମ ସାଥୀମାନେ ପୁନର୍ବାର ଜେଲ ଯାଉଛନ୍ତି । ମୋର ଜଣେ ସାହସୀ ଓ ପ୍ରିୟସାଥୀ, ଜଣେ ବନ୍ଧୁ—ତାଙ୍କୁ ମୁଁ ଯେତେବେଳେ କେମ୍ବ୍ରିଜ ନୂତନ ହୋଇ ଯାଇଥିଲି—ପ୍ରାୟ ୨୫ ବର୍ଷ ତଳେ ପ୍ରଥମେ ସାକ୍ଷାତ୍ କରିଥିଲି । ସେ ହେଉଛନ୍ତି ଯତୀନ୍ଦ୍ରମୋହନ ସେନଗୁପ୍ତ । ସେ ଏବେ ଆମକୁ ଛାଡ଼ି ଚାଲି ଯାଇଛନ୍ତି, ବ୍ରିଟିଶ ସରକାରର ବନ୍ଦୀ ଭାବରେ ମରିଛନ୍ତି । ଜୀବନ ମୃତ୍ୟୁରେ ବିଲୀନ ହୋଇ ଯାଉଛି, କିନ୍ତୁ ଭାରତବାସୀଙ୍କ ଜୀବନକୁ ବଞ୍ଚିବା ଯୋଗ୍ୟ କରିବାର ମହାନ କାର୍ଯ୍ୟ ଚାଲିଛି । ଭାରତର ସହସ୍ର ସହସ୍ର ପୁତ୍ର କନ୍ୟା ଅତ୍ୟନ୍ତ ଉତ୍ସାହୀ ଓ ଅନେକ ସମୟରେ ଅତ୍ୟନ୍ତ ଗୁଣବାନ ଲୋକସବୁ ବନ୍ଦିଶାଳା ବା ଅନ୍ତରୀଣ ଶିବିରମାନଙ୍କରେ ପଡ଼ିଛନ୍ତି, ଯେଉଁ ପ୍ରଚଳିତ ବ୍ୟବସ୍ଥା ଭାରତକୁ ଦାସତ୍ୱ ଫାନ୍ଦରେ ବାନ୍ଧିଛି ତାହା ବିରୁଦ୍ଧରେ ସଂଗ୍ରାମ କରି ନିଜର ଯୌବନ ଓ ଶକ୍ତି ଖଟାଇଛନ୍ତି । ଏହି ସବୁ ଜୀବନ ଓ ଶକ୍ତି ନିର୍ମାଣ କାର୍ଯ୍ୟରେ, ରଚନାତ୍ମକ କାର୍ଯ୍ୟରେ, ଲାଗି ପାରିଥାଆନ୍ତା ! ଏହି ପୃଥିବୀରେ ଏତେ ଅଧିକ କର୍ତ୍ତବ୍ୟ କାର୍ଯ୍ୟ ରହିଛି । କିନ୍ତୁ ରଚନା ପୂର୍ବରୁ ଧ୍ୱଂସ ଅବଶ୍ୟ ଆସିବ, ତାହାହେଲେ ନୂତନ ଗଠନ ନିମନ୍ତେ କ୍ଷେତ୍ର ପରିଷ୍କାର ହୋଇଯିବ । ଏକ କୁଟୀରର ମାଟି କାନ୍ଥ ଉପରେ ଆମେ ସୁନ୍ଦର କୋଠା ନିର୍ମାଣ କରି ପାରିବା ନାହିଁ । ଆଜି ଭାରତର କେତେକ ଅଞ୍ଚଳରେ ବିଶେଷତଃ ବଙ୍ଗଳାରେ ସରକାରୀ ଆଦେଶ ଦ୍ୱାରା କି ପ୍ରକାର ପୋଷାକ ବ୍ୟବହୃତ ହେବ ତାହା ନିୟନ୍ତ୍ରିତ ହେଉଛି ଏବଂ ଅନ୍ୟ ଭାବରେ ପୋଷାକ ପିନ୍ଧିବା ଅର୍ଥ କାରାଗାର ଶାସ୍ତି । ଏହି ଘଟଣାରୁ ଭାରତର ଆଜିର ଅବସ୍ଥା ଅନୁମାନ କରିହେବ । ଚଟ୍ଟଗ୍ରାମରେ ଏପରିକି ବାର ବର୍ଷ ବା ତଦୂର୍ଦ୍ଧ୍ୱ ବୟସ୍କ ଶ୍ରେଷ୍ଠ ଶ୍ରେଷ୍ଠ ବାଳକ ( ଏବଂ ସମ୍ଭବତଃ ଶ୍ରେଷ୍ଠ ଶ୍ରେଷ୍ଠ ବାଳିକା ମଧ୍ୟ ) ଯେଉଁଠିକି ଗଲେ ତାଙ୍କ ସାଙ୍ଗରେ ପ୍ରମାଣପତ୍ର (Identity card) ନେଇ ଯିବାକୁ ପଡ଼ୁଛି । ମୁଁ ଜାଣେ ନା ଏପରି ଏକ ଅସାଧାରଣ ହୁକୁମ ଅନ୍ୟ କୁଆଡ଼ି ଏପରି କି ନାଜୀ ଶାସିତ ଜର୍ମାନୀ କିମ୍ବା ଯୁଦ୍ଧ କାଳରେ ଶତ୍ରୁ ସୈନ୍ୟ ଅଧିକୃତ କୌଣସି ଅଞ୍ଚଳରେ କେବେ କାର୍ଯ୍ୟକାରୀ କରାଯାଇଛି କି ନା । ଆଜି ବାସ୍ତବିକ ବ୍ରିଟିଶ ଶାସନ ଅଧୀନରେ ଆମେ ସବୁ କଏଦୀ ଅନୁମତି ପତ୍ର ପାଇଲା ପରି ଏକ ଜାତି ହୋଇ ରହିଛୁ । ଆମର ଉତ୍ତର ପଶ୍ଚିମ ସୀମାନ୍ତ ସେ କଡ଼ରେ ଆମ ପଡ଼ୋଶୀମାନଙ୍କ ଉପରେ ବ୍ରିଟିଶ ଉଡ଼ାଜାହାଜରୁ ବୋମା ବର୍ଷଣ କରାଯାଉଛି ।

ଅନ୍ୟ ରାଜ୍ୟରେ ଆମର ଦେଶ ଭାଇଙ୍କୁ କିଛି ସମ୍ମାନ ପ୍ରଦର୍ଶନ କରାଯାଉ ନାହିଁ; ସେମାନଙ୍କୁ କୌଣସିଠାରେ ପ୍ରାୟ କେହି ସ୍ୱାଗତ କରନ୍ତି ନାହିଁ । ଏଥିରେ ବିସ୍ମୟର କଥା କିଛି ନାହିଁ; କାରଣ ନିଜ ଘରେ ତାଙ୍କର ଯେତେବେଳେ ସମ୍ମାନ ନାହିଁ ଅନ୍ୟତ୍ର ବା ସେ ସମ୍ମାନ ପାଇବେ କିପରି ? ଦକ୍ଷିଣ ଆଫ୍ରିକାରୁ ସେମାନଙ୍କୁ ତଡ଼ି ଦିଆଯାଉଛି, ସେଠାରେ

ଏମାନେ ଜନ୍ମ ହୋଇଥିଲେ ଏବଂ ଲାଳିତ ପାଳିତ ହୋଇଛନ୍ତି ଓ କେତେକ ଅଞ୍ଚଳକୁ ବିଶେଷତଃ ନେଟାଲକୁ ସେମାନେ ନିଜ ଶ୍ରମରେ ଗଢ଼ିଥିଲେ । ବର୍ଣ୍ଣଭେଦ, ଜାତି ବିଦ୍ୱେଷ, ଆର୍ଥିକନୈତିକ ସଙ୍ଘର୍ଷ ଏ ସବୁ ମିଶି ଦକ୍ଷିଣ ଆଫ୍ରିକାରେ ଭାରତୀୟମାନଙ୍କୁ ଗୃହହୀନ ବା ଆଶ୍ରୟସ୍ଥାନ ଉକାସ୍ତ କରି ଦେଇଛି । ଦକ୍ଷିଣ ଆଫ୍ରିକାର ସରକାର କହେ ଅନ୍ୟ କୌଣସି ସ୍ଥାନକୁ, ବ୍ରିଟିଶ ଗାଇନାକୁ, ଭାରତକୁ (ଯେଉଁଠି ସେମାନେ ଆସି ଅଙ୍ଗ ଦ୍ୱାରରେ ମରିବାହିଁ ସାର ହେବ) କିମ୍ବା ଅନ୍ୟତ୍ର ଚାଲିଯାଅ । ଦକ୍ଷିଣ ଆଫ୍ରିକାକୁ ସବୁ ଦିନ ପାଇଁ ଛାଡ଼ିବାକୁ ହିଁ ପଡ଼ିବ ।

ପୂର୍ବ ଆଫ୍ରିକାରେ କେନିଆ ଓ ତାର ଚତୁର୍ଦ୍ଦିଗସ୍ଥ ଅଞ୍ଚଳ ଗଢ଼ିବାରେ ଭାରତୀୟମାନେ ପ୍ରଧାନ ଭାଗ ନେଇଛନ୍ତି । କିନ୍ତୁ ସେଠି ଆଉ ତାଙ୍କର ଆଦର ନାହିଁ; ଆଫ୍ରିକାବାସୀଙ୍କ ଆପତ୍ତି ଯୋଗୁଁ ନୁହେଁ କିନ୍ତୁ ମୁଷ୍ଟିମେୟ ୟୁରୋପୀୟ ପ୍ଲାଣ୍ଟର ( Planter ) ଆପତ୍ତି କରୁଛନ୍ତି । ସର୍ବୋତ୍କୃଷ୍ଟ ଅଞ୍ଚଳ ଉର୍ବର ଭୂମିସବୁ ପ୍ଲାଣ୍ଟରମାନଙ୍କ ପାଇଁ ସଂରକ୍ଷିତ ହୋଇଛି ଏବଂ ଆଫ୍ରିକାବାସୀ ବା ଭାରତୀୟ କେହି ସେଠି ଜମି ଖରିଦ କରିପାରିବେ ନାହିଁ । ଗରିବ ଆଫ୍ରିକାବାସୀଙ୍କ ଅବସ୍ଥା ଆହୁରି ଖରାପ । ମୂଳତଃ ଏହି ସବୁ ଜମି ତାଙ୍କର ଦଖଲରେ ଥିଲା ଓ ଏଗୁଡ଼ିକ ତାଙ୍କର ଏକମାତ୍ର ଆୟର ପନ୍ଥା ଥିଲା । ପ୍ରକାଣ୍ଡ ଅଞ୍ଚଳ ସବୁ ସରକାର ବ୍ୟାଜ୍ୟାପ୍ତ କରି ନେଲା ଏବଂ ଗୋରାମାନଙ୍କୁ ମାଗଣା ଜମିସବୁ ଦିଆଗଲା । ଏହିପରି ଭାବରେ ସେଠାରେ ଏବେ ଏହି ଗୋରା ପ୍ଲାଣ୍ଟରମାନେ ବଡ଼ ଜମିଦାର ହୋଇଛନ୍ତି । ସେମାନେ କୌଣସି ଆୟକର ଦିଅନ୍ତି ନାହିଁ, ପ୍ରାୟ ଅନ୍ୟ କୌଣସି ଟିକସ ମଧ୍ୟ ଦିଅନ୍ତି ନାହିଁ । ପ୍ରାୟ ସମସ୍ତ ଟିକସ କୌଣସି ଦରିଦ୍ର ପଦଦଳିତ ଆଫ୍ରିକାବାସୀଙ୍କ ଉପରେ ପଡ଼େ । ଆଫ୍ରିକାବାସୀଙ୍କ ଉପରେ ଟିକସ ବସାଇବା ସହଜକଥା ନୁହେଁ, କାରଣ ତାଙ୍କର କିଛି "ବାଡ଼ି ଗୋବରରେ ଗୋବେ ହେଲେ ନାହିଁ ।" ଅଟା ଓ ପୋଷାକ ପ୍ରଭୃତି ତାର ଜୀବନର କେତେକ ଅତ୍ୟାବଶ୍ୟକୀୟ ଜିନିଷ ଉପରେ ଟିକସ ଧାର୍ଯ୍ୟ କରାଗଲା ଏବଂ ସେ ତାହା କିଣିବାରୁ ଅପ୍ରତ୍ୟକ୍ଷ ରୂପେ ସେଥିପାଇଁ କର ଦେବାକୁ ପଡ଼ିଲା । କିନ୍ତୁ ସର୍ବାପେକ୍ଷା ଅସାଧାରଣ ଟିକସ ହେଉଛି ତାହାର କୁଟୀର ଓ ପ୍ରତ୍ୟେକ ମଣିଷପିଚ୍ଛା ଟିକସ ଧାର୍ଯ୍ୟ; ଏଥିରେ ଷୋହଳ ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ପୁରୁଷ ଓ ତା ଉପରେ ନିର୍ଭର କରୁଥିବା ସ୍ତ୍ରୀ ସମେତ ପ୍ରତ୍ୟେକ ଲୋକକୁ ଟିକସ ଦେବାକୁ ପଡ଼ୁଥିଲା । ଟିକସ ଧାର୍ଯ୍ୟର ନିୟମ ହେଉଛି ଯେ ଲୋକେ ଯାହା ରୋଜଗାର କରନ୍ତି ବା ରଖନ୍ତି ତାହା ଉପରେ ଟିକସ ଧାର୍ଯ୍ୟ ହେବା ଉଚିତ । ଆଫ୍ରିକାବାସୀଙ୍କର ଯେତେବେଳେ ଆଉ କିଛି ନ ଥିଲା ସେତେବେଳେ ତା ଶରୀର ଉପରେ ଟିକସ ବସିଲା ! କିନ୍ତୁ ତା ପାଖରେ ଧନ ନ ଥିଲାବେଳେ ସେ ବାର୍ଷିକ ପ୍ରତ୍ୟେକ ଲୋକ ଉପରେ ଧାର୍ଯ୍ୟ ଏହି ୧୨ ଶିଲିଂ ଜନସଂଖ୍ୟା କର କିପରି ଦେବ ? ଏହିଥିରେ ହିଁ ଏହି ଟିକସର ମତଲବ ରହିଥିଲା । କାରଣ ଗୋରା ଅଧିବାସୀମାନଙ୍କର ଆବାଦରେ କାର୍ଯ୍ୟ କରି କିଛି ଧନ ରୋଜଗାର କରିବା ନିମନ୍ତେ ଏହା ସେମାନଙ୍କୁ ବାଧ୍ୟ କଲା ଏବଂ ଏହିରୂପେ ସେମାନେ

ଟିକସ ଦେଲେ । ଏହା କେବଳ ଧନ ପାଇବା ପାଇଁ ନୁହେଁ ମାତ୍ର ଆବାସୀମାନଙ୍କ ଲାଗି ଶସ୍ତା ଶ୍ରମ ପାଇବାର ମଧ୍ୟ ଏକ କୌଶଳ । ତେଣୁ ଏହି ଅଡ଼ୁଗା ଅଫ୍ରିକାବାସୀଙ୍କୁ କେବଳ ଜଜସ୍ୱାକର ଦେବା ନିମନ୍ତେ ମଜୁରି ପାଇବା ଲାଗି ସୁଦୂର ଅଞ୍ଚଳମାନଙ୍କୁ ଯାତା କରିବାକୁ ପଡ଼େ । ଦେଶର ଗ୍ରାମଗହଳ ଭିତରୁ ସାତଶହ ବା ଆଠଶହ ମାଇଲ ଦୂରସ୍ଥ ଉପକୂଳବର୍ତ୍ତୀ ଆବାସୀମାନଙ୍କୁ ଯିବାକୁ ପଡ଼େ (ଦେଶ ଭିତରେ କୌଣସି ରେଳପଥ ନାହିଁ; କେବଳ ଉପକୂଳ ନିକଟରେ କିଛି ରହିଛି) ।

ଏହି ଦରିଦ୍ର ଶୋଷିତ ଅଫ୍ରିକାବାସୀଙ୍କ ସମ୍ବନ୍ଧରେ କହିବା ଲାଗି କେତେ କଥା ରହିଛି, ସେମାନଙ୍କର ଆର୍ତ୍ତନାଦ କିପରି ବାହାର ଦୁନିଆରେ ପହଞ୍ଚିବ ତାହା ମଧ୍ୟ ସେମାନେ ଜାଣନ୍ତି ନାହିଁ । ସେମାନଙ୍କର ଦୁର୍ଦ୍ଦଶା କାହାଣୀ ଦୀର୍ଘ ଏବଂ ସେମାନେ ନୀରବରେ କଷ୍ଟ ଭୋଗନ୍ତି । ଅଞ୍ଚଳ ଜମିରୁ ତଡ଼ାଖାଇ ପୁଣି ସେଠିକ ଗୋରାମାନଙ୍କର ପ୍ରଜାରୂପେ ସେମାନଙ୍କୁ ଅସିବାକୁ ପଡ଼ିଲା, ଗୋରାମାନେ ଏହି ଆଫ୍ରିକାବାସୀଙ୍କ ବ୍ୟୟରେ ଜମି ସବୁ ମାଗଣା ପାଇଥିଲେ । ଏହି ଗୋରା ଜମିଦାରମାନେ ଅର୍ଦ୍ଧସାମନ୍ତ ଖାମିଦ ଏବଂ ସେମାନେ ନାପସନ୍ଦ କରୁଥିବା ପ୍ରତ୍ୟେକ ପ୍ରକାର କାର୍ଯ୍ୟକୁ ଦବାଇ ଦିଆଯାଇଛି । ସଂସ୍କାରଦାବୀ କରିବା ନିମନ୍ତେ ଆଫ୍ରିକାବାସୀ ଏପରିକି କୌଣସି ସମିତି ଗଢ଼ି ପାରିବ ନାହିଁ, କାରଣ କୌଣସି ପ୍ରକାର ସଭା ସମିତି ନିଷେଧ କରାଯାଇଛି । ଏକ ଅର୍ଡିନାନ୍ସ ଜାରି ହୋଇ ନୃତ୍ୟକୁ ନିଷେଧ କରାଯାଇଛି କାରଣ ଆଫ୍ରିକାବାସୀ ବେଳେବେଳେ ଅନୁକରଣ କରନ୍ତି ଏବଂ ସେମାନଙ୍କର ସଙ୍ଗୀତ ଓ ନୃତ୍ୟରେ ୟୁରୋପୀୟ ଶାସକର ଉପହାସ କରନ୍ତି ? କୃଷକମାନେ ଅତ୍ୟନ୍ତ ଦରିଦ୍ର ଏବଂ ସେମାନଙ୍କୁ ସୂତା ବା କଫି କରିବାକୁ ଅନୁମତି ଦିଆଯାଏନା; କାରଣ ଏଥିରେ ଗୋରା ପ୍ଲାଣ୍ଟରମାନଙ୍କସହ ପ୍ରତିଯୋଗିତା କରିବାକୁ ପଡ଼ିବ ।

ତିନିବର୍ଷ ପୂର୍ବେ ବ୍ରିଟିଶ ସରକାର ପବିତ୍ରଭାବରେ ଘୋଷଣା କଲା ଯେ ସେମାନେ ଆଫ୍ରିକାବାସୀଙ୍କର ମାରଫତଦାର ଏବଂ ଭବିଷ୍ୟତରେ ତାଙ୍କୁ ତାଙ୍କର ଭୂମିରୁ ବଞ୍ଚିତ କରାଯିବ ନାହିଁ । ଆଫ୍ରିକାବାସୀଙ୍କର ଦୁର୍ଭାଗ୍ୟକୁ ଗତ ବର୍ଷ କେନିଆରେ ସୁନା ଆବିଷ୍କୃତ ହେଲା । ପବିତ୍ର ଶପଥ ପାଶୋର ଗଲା; ଗୋରା ପ୍ଲାଣ୍ଟରମାନେ ଏହି ଭୂମିରେ ମାଡ଼ିଗଲେ । ଆଫ୍ରିକାର ବାସୀମାନେ ତଡ଼ିଦେଲେ ଓ ସୁନା ଲାଗି ଖୋଳିବାକୁ ଅରମ୍ଭ କଲେ । ଇଂରେଜମାନଙ୍କର ପ୍ରତିଶ୍ରୁତି ସବୁ ଏହିପରି । କୁହାହେଉଛି ଯେ ଶେଷରେ ଏ ସବୁ ଆଫ୍ରିକାବାସୀଙ୍କର ମଙ୍ଗଳରେ ଆସିବ ଏବଂ ସେମାନେ ତାଙ୍କର ଭୂମି ହରାଇ ବି ଖୁବ୍ ସୁଖରେ ଅଛନ୍ତି ।

ଏକ ସ୍ୱର୍ଣ୍ଣ-ପ୍ରସୂ ଅଞ୍ଚଳକୁ ଶୋଷଣ କରିବାର ଏହି ପୁଞ୍ଜିବାଦୀ ପନ୍ଥା ଅତ୍ୟନ୍ତ ଅସାଧାରଣ । ପ୍ରକୃତରେ ଏକ ନିର୍ଦ୍ଦିଷ୍ଟ ସ୍ଥାନର ଲୋକଙ୍କୁ ଏଥିପାଇଁ ଯିବାକୁ ଦିଆଯାଏ ଏବଂ ପ୍ରତ୍ୟେକେ ଏହି ଅଞ୍ଚଳର ଏକ ଅଂଶ ଦଖଲ କରନ୍ତି ଏବଂ ତା ପରେ ଏହା କାମରେ ଲଗାନ୍ତି । ସେ ସେହି ନିର୍ଦ୍ଦିଷ୍ଟ ଜମିଖଣ୍ଡରେ ସୁନା ପାଏ କି ନା ତାହା ତାର ଭାଗ୍ୟ ଉପରେ ନିର୍ଭର

କରେ । ଏହି ପନ୍ଥା ସ୍ୱତନ୍ତ୍ରବାଦର ବିଶେଷତ୍ୱ । କୌଣସି ସୁନାଖଣି କାରବାର ସୁଦ୍ଧଷ୍ଟ ଉପାୟ ହେଉଛି ଦେଶର ସରକାର ଏହା ଦଖଲ କରିବ ଏବଂ ସମଗ୍ର ରାଷ୍ଟ୍ରର ମଙ୍ଗଳ ନିମନ୍ତେ କାର୍ଯ୍ୟରେ ଲଗାଇବ । ସୋଭିଏଟ ୟୁନିୟନ ଟାଡ୍‌ଜିକସ୍ଥାନ ଓ ଅନ୍ୟାନ୍ୟ ମିଳୁଥିବା ସୁନାଖଣିର ଏପରି ବ୍ୟବହାର କରୁଛି ।

ଆମେ ଏହି ସବୁ ଚିଠିରେ ଅଫ୍ରିକା ବିଷୟ ଆଲୋଚନା ନ କରିଥିବାରୁ ମୁଁ ଶେଷ ଅଧ୍ୟାୟରେ କେନିଆ ସମ୍ବନ୍ଧରେ କିଛି କହିଲି । ମନେରଖ, ଏହା ଏକ ବିଶାଳ ମହାଦେଶ— ଅଫ୍ରିକା ଜାତି ପରିପୂର୍ଣ୍ଣ ହୋଇ ରହିଛି । ସେମାନେ ଶହ ଶହ ବର୍ଷ ହେଲା ବିଦେଶୀମାନଙ୍କ ଦ୍ୱାରା ଶୋଷିତ ହୋଇଛନ୍ତି ଏବଂ ଏବେ ବି ଶୋଷଣ ଚାଲିଛି । ସେମାନେ ନିତାନ୍ତ ଅନୁନ୍ନତ, କିନ୍ତୁ ସେମାନଙ୍କୁ ଦବାଇ ରଖାଯାଇଛି ଓ ଉନ୍ନତ ହେବାର ସୁଯୋଗ ଦିଆ ହେଉ ନାହିଁ । ଯେଉଁଠି ସେମାନଙ୍କୁ ଏପରି ସୁବିଧା ଦିଆହୋଇଛି, ଯେପରିକି ଏବେ ପଶ୍ଚିମ ଉପକୂଳରେ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନା କରାଯାଇଛି, ସେଠାରେ ସେମାନେ ଅଲୌକିକ ପ୍ରଗତି ଦେଖାଇଛନ୍ତି ।

ପଶ୍ଚିମ ଏସିଆର ଦେଶମାନଙ୍କ ସମ୍ବନ୍ଧରେ ମୁଁ ତତେ ଯଥେଷ୍ଟ କହିଛି । ସେଠାରେ ଏବଂ ଇଜିପ୍ଟରେ ସ୍ୱାଧୀନତା ସଂଗ୍ରାମ ନାନା ପ୍ରକାରେ ଓ ବିଭିନ୍ନ ଅବସ୍ଥାରେ ଚାଲିଛି । ସେହିପରି ବି ଦକ୍ଷିଣପୂର୍ବ ଏସିଆ, ସୁଦୂର ଭାରତ ଓ ଇଣ୍ଡୋନେସିଆ—ଶ୍ୟାମ, ଇଣ୍ଡୋ-ଚାଇନା, ଜାଭା, ସୁମାତ୍ରା, ଡଚ୍-ଇଣ୍ଡିଜ୍ ଓ ଫିଲିପାଇନ ଦ୍ୱୀପପୁଞ୍ଜରେ ଚାଲିଛି । ସ୍ୱାଧୀନ ଶ୍ୟାମ ବ୍ୟତୀତ ପ୍ରତ୍ୟେକ ସ୍ଥାନରେ ସଂଗ୍ରାମର ଦୁଇଟି ବିଭାଗ ରହିଛି; ବିଦେଶୀ କର୍ତ୍ତୃତ୍ୱ ବିରୁଦ୍ଧରେ ଜାତୀୟତାବାଦ ପ୍ରେରଣା ଏବଂ ସାମାଜିକ ସମାନତା ଅଥବା ଅନ୍ତତଃ ଅର୍ଥନୈତିକ ଉନ୍ନତି ନିମନ୍ତେ ପଦଦଳିତ ଶ୍ରେଣୀର ପ୍ରେରଣା ।

ଏସିଆର ସୁଦୂର ପ୍ରାଚ୍ୟରେ ବିଶାଳ ଚୀନ ଦେଶ ତାର ଆକ୍ରମଣକାରୀଙ୍କ ସମ୍ମୁଖରେ ନିଃସହାୟ ହୋଇ ପଡ଼ିଛି ଏବଂ ଆଭ୍ୟନ୍ତରୀଣ ବିବାଦଦ୍ୱାରା ନାନା ଖଣ୍ଡରେ ବିଭକ୍ତ ହୋଇଛି । ତାହାର ଏକ ମୁଖ କମ୍ୟୁନିଜମ ଅଭିମୁଖୀ ହୋଇଛି ଏବଂ ଅନ୍ୟ ପାଖ ଏହାର ସମ୍ପୂର୍ଣ୍ଣ ବିରୋଧୀ ଏବଂ ଏଥି ଭିତରେ ଜାପାନ ଆଗକୁ ମାଡ଼ି ଚାଲିଛି, ପ୍ରାୟ ନିର୍ବିବାଦରେ ଚାଲିଛି ଏବଂ ଚୀନ ରାଜ୍ୟର ଅଧିକ ଅଞ୍ଚଳରେ ନିଜର କର୍ତ୍ତୃତ୍ୱ ଜାହିର କରି ବସିଛି । କିନ୍ତୁ ତାର ଦୀର୍ଘ ଇତିହାସ କାଳ ଭିତରେ ଅନେକ ବିରାଟ ଅଭିଯାନ ଓ ବିପଦରୁ ଉଦ୍ଧାର ପାଇଛି ଏବଂ ଜାପାନୀ ଆକ୍ରମଣରୁ ସେ ଯେ ଉଦ୍ଧାର ପାଇବ ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ସାମ୍ରାଜ୍ୟବାଦୀ, ଅର୍ଦ୍ଧ-ସାମନ୍ତ, ସାମରିକ-ପ୍ରଧାନ, ଅଥଚ ଶିଳ୍ପ ଦିଗରେ ଅତ୍ୟନ୍ତ ଉନ୍ନତ ଏବଂ ଅତୀତ ଓ ଭବିଷ୍ୟତର ଅପୂର୍ବ ସମ୍ମିଶ୍ରଣ ଜାପାନ ଏକ ବିଶ୍ୱ ସାମ୍ରାଜ୍ୟ ଗଠନ ଅଭିଳାଷର ସ୍ୱପ୍ନ ଦେଖୁଛି । କିନ୍ତୁ ଏହି କଳ୍ପନା ପାଶ୍ଚାତ୍ୟରେ ବାସ୍ତବ ଅର୍ଥନୈତିକ ପତନର

ସମ୍ଭାବନା ରହିଛି ଏବଂ ତାର ଦଳିତ ଜନତା ଶୋଷଣ ଦୁର୍ଗଣ୍ଡ ଭୋଗ କରୁଛନ୍ତି—ଏମାନଙ୍କ ଲାଗି ଆମେରିକା ଓ ଅଷ୍ଟ୍ରେଲିଆର ବିଶାଳ ଅନୁର୍ବର ସ୍ଥାନ ସବୁ ଲାଗି ଦ୍ୱାର ରୁଦ୍ଧ ହୋଇଛି । ଆଧୁନିକ ଦେଶମାନଙ୍କ ଭିତରେ ସର୍ବାପେକ୍ଷା ଶକ୍ତିଶାଳୀ ସଂଯୁକ୍ତ ରାଷ୍ଟ୍ରର ବିରୋଧିତା ହେତୁ ଏହି କଳ୍ପନା କାର୍ଯ୍ୟରେ ପରିଣତ ହେବାରେ ପ୍ରଧାନ ପ୍ରତିବନ୍ଧକ ରହିଛି । ଏସିଆରେ ଜାପାନ ବିସ୍ତୃତି ଲାଭ କରିବାରେ ଆଉ ଏକ ଶକ୍ତିଶାଳୀ ପ୍ରତିବନ୍ଧକ ହେଉଛି ସୋଭିଏଟ୍ ରୁଷ । ମାଞ୍ଚୁରିଆ ଓ ପ୍ରଶାନ୍ତ ମହାସାଗରର ଗଭୀର ଜଳରେ ଆସନ୍ନ ମହା ସମରର ଛାୟା ଅନେକ ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ ନିରୀକ୍ଷକ ଦେଖି ପାରୁଛନ୍ତି ।

ସମଗ୍ର ଉତ୍ତର ଏସିଆ ହେଉଛି ସୋଭିଏଟ୍ ଇଉନିୟନର ଏକ ଅଂଶ ଏବଂ ଏକ ନୂତନ ଦୁନିଆ ଓ ନୂତନ ସାମାଜିକ ବ୍ୟବସ୍ଥା ଗଢ଼ିବାରେ ଓ ଯୋଜନାରେ ନିଜକୁ ମିଶାଇ ଦେଇଛି । ଅଦ୍ଭୁତ କଥା ଯେ ସଭ୍ୟତା ତାର ଯାବାର ପଛରେ ଏହି ଯେଉଁ ଅନୁନ୍ନତ ରାଜ୍ୟକୁ ଛାଡ଼ି ଯାଇଥିଲା ଏବଂ ଯେଉଁଠି ଏବେ ସୁଦ୍ଧା ଏକପ୍ରକାର ସାମନ୍ତବାଦ ପ୍ରଚଳିତ ଥିଲା, ତାହା ଏବେ ଏପରି ଏକ ଅବସ୍ଥାକୁ ଡେଇଁଛି ଯାହା ପାଶ୍ଚାତ୍ୟର ଅନେକ ଉନ୍ନତ ଦେଶଠାରୁ ବହୁତ ଆଗରେ । ଇଉରୋପ ଓ ଏସିଆରେ ସୋଭିଏଟ୍ ଇଉନିୟନ ଆଜି ପାଶ୍ଚାତ୍ୟ ଜଗତର ଦୋଳାୟମାନ ପୁଞ୍ଜିବାଦର ଏକ ଚ୍ୟାଲେଞ୍ଜରୂପେ ରହିଛି । ଯେତେବେଳେ ବାଣିଜ୍ୟ ଦୁର୍ଗତି, ମାନ୍ଦା ଅବସ୍ଥା, ବେକାରି ଓ ପୁନଃ ପୁନଃ ସଂକଟ ଫଳରେ ପୁଞ୍ଜିବାଦ ପଙ୍ଗୁ ହୋଇ ପଡ଼ୁଛି ଏବଂ ପୁରାତନ ବ୍ୟବସ୍ଥା ଯେତେବେଳେ ଅଶାନ୍ତିଦାୟୀ ହୋଇ ଗଲାଣି, ଯେତେବେଳେ ଆଶା, ତେଜ ଓ ଉତ୍ସାହ ପରିପୂର୍ଣ୍ଣ ସୋଭିଏଟ୍ ଇଉନିୟନ ଉଦ୍‌ବେଗ ସହକାରେ ସାମ୍ୟବାଦୀ ବ୍ୟବସ୍ଥା ଗଠନ କରି ପ୍ରତିଷ୍ଠିତ କରୁଛି । ଏହି ପ୍ରଚୁର ଯୌବନ ଓ ଜୀବନ ଏବଂ ସୋଭିଏଟ୍ ଏ ପର୍ଯ୍ୟନ୍ତ ଯାହା ସଫଳତା ଲାଭ କରିଛି, ତାହା ସମଗ୍ର ଦୁନିଆର ଚିନ୍ତାଶୀଳ ଲୋକଙ୍କ ମନରେ ପ୍ରଭାବ ପକାଉଛି ଓ ଆକର୍ଷଣ କରୁଛି ।

ଆଉ ଏକ ବିଶାଳ ଅଞ୍ଚଳ ସଂଯୁକ୍ତ ରାଷ୍ଟ୍ର ଆମେରିକା ପୁଞ୍ଜିବାଦ ବ୍ୟର୍ଥ ହେବାର ଆଉ ଏକ ଦୃଷ୍ଟାନ୍ତ । ପ୍ରଧାନ ଅସୁବିଧା, ସଙ୍କଟ, ଶ୍ରମିକ ଧର୍ମଘଟ ଓ ଅନନୁପମ ବେକାରୀ ଭିତରେ ଏହା ଏକରକମ ଚଳିବା ପାଇଁ ଓ ପୁଞ୍ଜିବାଦୀ ବ୍ୟବସ୍ଥା ରକ୍ଷା ନିମନ୍ତେ ସାହସିକ ଉଦ୍ୟମ କରୁଛି । ଏହି ମହାନ୍ ପ୍ରୟୋଗର ଫଳାଫଳ କଣ ହେବ ଦେଖିବାକୁ ବାକି ରହିଛି । କିନ୍ତୁ ସେ ଯାହା ହେଉ ପଛକେ ଆମେରିକା ତାର ବିସ୍ତୃତ ରାଜ୍ୟ ଭିତରେ ଯେଉଁସବୁ ଜିନିଷର ସୁବିଧା ଉପଭୋଗ କରୁଛି ତାହା କେହି ନେଇ ପାରିବ ନାହିଁ; ମଣିଷର ଆବଶ୍ୟକ ପ୍ରତ୍ୟେକ ଜିନିଷରେ ତାହା ଧନୀ ଏବଂ ତାହାର ଶିଳ୍ପବିଦ୍ୟା ସମ୍ପଦରେ ଏହା ଅନ୍ୟ ଯେ କୌଣସି ଦେଶ ଅପେକ୍ଷା ଅଧିକ ଏବଂ ଏହାର ଲୋକେ ସର୍ବାପେକ୍ଷା ନିପୁଣ ଓ ଉଚ୍ଚ ଶିକ୍ଷିତ । ଭବିଷ୍ୟତରେ ପୃଥିବୀ ବ୍ୟାପାରରେ ସଂଯୁକ୍ତ ରାଷ୍ଟ୍ର ତଥା ସୋଭିଏଟ୍ ଇଉନିୟନ ଏକ ଅତ୍ୟନ୍ତ ଗୁରୁତର ଭାଗ ନେବାକୁ ବାଧ୍ୟ ।

ଲାଟିନ ଦେଶମାନଙ୍କ ସହ ମହାନ୍ ଦକ୍ଷିଣ ଆମେରିକା ମହାଦେଶ ଉତ୍ତରାଞ୍ଚଳରୁ ଏପରି ପୃଥକ୍ କାହିଁକି ? ଉତ୍ତର ପରି ଏଠାରେ ଜାତିଗତ ବିଦ୍ୱେଷ ନାହିଁ ଏବଂ ଦକ୍ଷିଣ

ଇଉରୋପୀୟ, ସ୍ପେନ, ପର୍ତ୍ତୁଗିଜ, ଇଟାଲୀ ଓ ନିଗ୍ରୋ ଆଦି ବିଭିନ୍ନ ଜାତି ରହିଛନ୍ତି ଏବଂ ଆମେରିକା ମହାଦେଶର ମୂଳ ଅଧିବାସୀ ତଥାକଥିତ ରେଡ୍ ଇଣ୍ଡିଆନ ବି ରହିଛନ୍ତି । ଏହିସବୁ ରେଡ୍ ଇଣ୍ଡିଆନ୍‌ମାନେ କାନାଡ଼ା ଓ ସଂଯୁକ୍ତ ରାଷ୍ଟ୍ରରେ ପ୍ରାୟ ଲୋପ ପାଇ ଯାଇଛନ୍ତି, କିନ୍ତୁ ଏଠି ଦକ୍ଷିଣ ଆମେରିକାରେ ବିଶେଷତଃ ଭିନେଜୁଇଲାରେ ସେମାନେ ବହୁ ସଂଖ୍ୟାରେ ରହିଛନ୍ତି । ସେମାନେ ଅଧିକ ଭାବରେ ବଡ଼ ବଡ଼ ସହରରୁ ଦୂରରେ ବାସ କରନ୍ତି । ଶୁଣି ଜାଣିଲେ ବିସ୍ମିତ ହେବୁ ଯେ ବୁଇନୋଆୟର୍ସ ଓ ରିଓଡିଜାନେରୋ ପରି କେତେକ ଦକ୍ଷିଣ ଆମେରିକାନ ସହର ଖାଲି ଯେ ବଡ଼ ତାହା ନୁହେଁ, କିନ୍ତୁ ଅତି ସୁନ୍ଦର ଓ ଚିତ୍ତାକର୍ଷକ ବିହାର କାନନ ମଧ୍ୟ । ଆର୍ଜେଣ୍ଟିନାର ରାଜଧାନୀ ବୁଇନୋଆୟର୍ସର ଲୋକ ସଂଖ୍ୟା ୨୫ ଲକ୍ଷ ଏବଂ ବ୍ରାଜିଲର ରାଜଧାନୀ ରିଓଡିଜାନେରୋର ଲୋକ ସଂଖ୍ୟା ୨୦ ଲକ୍ଷ ।

ଯଦିଓ ଜାତି ସବୁ ମିଳାମିଶା ଚାଲିଛି, ତଥାପି ଶାସକ ଶ୍ରେଣୀ ହେଉଛନ୍ତି ଶ୍ୱେତ ଶାସକ ଅଭିଜାତ୍ୟ ଶ୍ରେଣୀ । ଯେଉଁ ଗୋଷ୍ଠୀ ବା ଦଳ ସୈନ୍ୟ ଓ ପୋଲିସକୁ ଆୟତ୍ତ କରିଥାଏ, ତାହାହିଁ ସାଧାରଣତଃ ଶାସନ କରେ ଏବଂ ମୁଁ ତତେ ତ କହିଛି ଉପରେ ସେଠାରେ ବାରମ୍ବାର ବିପ୍ଳବ ହୋଇଛି । ସମସ୍ତ ଦକ୍ଷିଣ ଆମେରିକା ରାଜ୍ୟରେ ପ୍ରଚୁର ଖଣିଜ ସମ୍ପଦ ରହିଛି ଏବଂ ସେହି ହେତୁ ଏହା ଅତ୍ୟନ୍ତ ଧନୀ । କିନ୍ତୁ ଏଥିଭିତରେ ସେମାନେ ଋଣରେ ବୁଡ଼ିଛନ୍ତି ଏବଂ ଗୁରିବର୍ଷ ପୂର୍ବେ ସଂଯୁକ୍ତ ରାଷ୍ଟ୍ର ସେମାନଙ୍କୁ ଧନ ଧାର ଦେବା ବନ୍ଦ କରିଦେବା ସଙ୍ଗେ ସଙ୍ଗେ ଏଗୁଡ଼ିକ ଅତି ଗୋଳମାଳରେ ପଡ଼ିଲେ ଏବଂ ସବୁ ସ୍ଥାନରେ ବିପ୍ଳବ ହେଲା । ଆର୍ଥିକ ଅସୁବିଧା ହେତୁ ଆର୍ଜେଣ୍ଟିନା, ବ୍ରାଜିଲ ଓ ଚିଲି ଏହି ତିନୋଟି ପ୍ରଧାନ ଦେଶ ମଧ୍ୟ ବିପ୍ଳବରେ ବୁଡ଼ିଲେ ।

(୧୯୩୨ ଖ୍ରୀଷ୍ଟାବ୍ଦ କାଳଠାରୁ ଦକ୍ଷିଣ ଆମେରିକାର ଭିତର ଦୁଇଟି କ୍ଷୁଦ୍ର ଯୁଦ୍ଧ ହୋଇଛି, କିନ୍ତୁ ମାଞ୍ଚୁରିଆରେ ଜାପାନୀ ଯୁଦ୍ଧ ପରି ସରକାରୀ ଭାବରେ ଯୁଦ୍ଧ ବୋଲି ଏଗୁଡ଼ିକ ଘୋଷିତ ହୋଇନାହିଁ । ଲିଗ ଅଫ ନେସନ୍‌ସ ଚୁକ୍ତି, କେଲଗ ଶାନ୍ତି ଚୁକ୍ତି ଅନେକ ଚୁକ୍ତି ପ୍ରସ୍ତୁତ ହେଲା କିନ୍ତୁ ଯୁଦ୍ଧ ପ୍ରାୟ ହେଉନାହିଁ । ଯେତେବେଳେ କୌଣସି ଦେଶ ଅନ୍ୟ ଉପରେ ଆକ୍ରମଣ କରୁଛି ଏବଂ ତାର ନାଗରିକମାନଙ୍କୁ ହତ୍ୟା କରୁଛି, ସେତେବେଳେ ଏହା "ସଂଘର୍ଷ" ବୋଲି କୁହାଯାଉଛି ଏବଂ ଚୁକ୍ତି ଅନୁସାରେ "ସଂଘର୍ଷ" ବାରଣ ହୋଇ ନ ଥିବାରୁ ପ୍ରତ୍ୟେକ ଲୋକ ଖୁସି ! ଏହି ଗ୍ରେଟ ଯୁଦ୍ଧର ପୃଥିବୀବ୍ୟାପୀ ଗୁରୁତ୍ୱ ନାହିଁ, ମାଞ୍ଚୁରିଆର ଯେପରି ଥିଲା ଏହାର ନାହିଁ ଏବଂ ଲିଗ୍ ଅଫ୍ ନେସନ୍‌ସରୁ ଆରମ୍ଭ କରି ଅଗଣିତ ଚୁକ୍ତି ଓ ରାଜିନାମା ପର୍ଯ୍ୟନ୍ତ ଦୁନିଆର ସମଗ୍ର ପ୍ରକୃତ ଶାନ୍ତି କଳ କିପରି ବୃଥା ଓ ଦୁର୍ବଳ ତାହା ପରୀକ୍ଷା ହୋଇଗଲା । ଲିଗ୍‌ର ଗୋଟିଏ ସଦସ୍ୟ ଅନ୍ୟ ସଦସ୍ୟ ଦେଶ ଉପରେ ଆକ୍ରମଣ କରୁଛି ଏବଂ ଲିଗ୍ ନିଃସହାୟ ରୂପେ ଏଥିପ୍ରତି ଆଖି ବୁଜି ଦେଉଛି ଅଥବା କଳଂଆ ନିଷ୍ପତ୍ତି ନିମନ୍ତେ ଦୁର୍ବଳ ଓ ନିତାନ୍ତ ନାମୀ ଚେଷ୍ଟା କରୁଛି ।)

ଦକ୍ଷିଣ ଆମେରିକାରେ ଏହି ସବୁ ଯୁଦ୍ଧ ବା 'ସଂଘର୍ଷ'ରୁ ଗୋଟିଏ ହେଉଛି ବଲିଭିଆ ଓ ପାରାଗୁଏ ଭିତରେ ଗ୍ରାନ୍ ଚାକୋ ନାମକ ଏକ ଜଙ୍ଗଲ ରାଜ୍ୟ ଖଣ୍ଡ ଘେନି । ଜଣେ ବୁଦ୍ଧିମାନ ଫରାସୀ ଲୋକ କହିଛନ୍ତି "ପାରାଗୁଏ ଓ ବଲିଭିଆ ମଧ୍ୟରେ ଗ୍ରାନ୍ ଚାକୋ ଜଙ୍ଗଲ ଘେନି ସଂଗ୍ରାମ ମୋତେ ଦୁଇଟି ଚନ୍ଦା-ମୁଣ୍ଡିଆ ଲୋକଙ୍କ ଭିତରେ ପାନିଆ ପାଇଁ କଜିଆ କଥା ସ୍ମରଣ କରାଇ ଦିଏ ।" ଏହା ଏକ ନିର୍ବୋଧ ସଂଗ୍ରାମ କିନ୍ତୁ ଏହା କେବେ ବୋକାମୀର ପରିଚୟ ନୁହେଁ । ଏହି ବିରାଟ ଜଙ୍ଗଲ ଅଞ୍ଚଳରେ ତୈଳ ସ୍ୱାର୍ଥ ରହିଛି ଏବଂ ଏହା ମଧ୍ୟଦେଇ ଯାଉଥିବା ପାରାଗୁଏ ନଦୀ ଆଟଲାଣ୍ଟିକ ସାଗର ସହ ବଲିଭିଆକୁ ଯୋଗ କରୁଛି । ଦୁଇଟିଯାକ ଦେଶ ମିଳାମିଶା କରିବାକୁ ରାଜି ହେଉ ନ ଥାନ୍ତି ଏବଂ ସେମାନେ ହଜାର ହଜାର ଜୀବନ ବଳି ଦେଇ ସାରିଲେଣି ।

ଏକ ଗ୍ରେଟ ଗ୍ରାମ ଲଟିକିଆ ନେଇ ଆଉ ଏକ ସଂଗ୍ରାମ କଲମ୍ବିଆ ଓ ପେରୁ ଭିତରେ ଚାଲିଛି—ପେରୁ ଅନ୍ୟାୟ ଭାବରେ ଏହା ଦଖଲ କରିଯାଇଛି । ମୋର ମନେ ହୁଏ ଲିଗ୍ ଅଫ୍ ନେସନ୍ସ ପେରୁକୁ ଖୁବ୍ କଡ଼ା ଭାଷାରେ ସମାଲୋଚନା କରିଥିଲା ।

ଲଟିନ ଆମେରିକା ( ଏଥିରେ ମେକ୍ସିକୋ ଅନ୍ତର୍ଭୁକ୍ତ)ରେ କ୍ୟାଥଲିକ୍ ଧର୍ମ ପ୍ରଚଳିତ । ମେକ୍ସିକୋରେ ରାଷ୍ଟ୍ର ଓ କ୍ୟାଥଲିକ ପୁରୋହିତମାନଙ୍କ ଭିତରେ ଭୀଷଣ ସଂଗ୍ରାମ ଚାଲିଛି । ସ୍ପେନ ପରି ମେକ୍ସିକୋ ସରକାର ରୋମାନ ଗିର୍ଜାର ପ୍ରଧାନ କ୍ଷମତା (ଶିକ୍ଷା ଓ ପ୍ରାୟ ପ୍ରତ୍ୟେକ କଥାରେ) କାଟିବାକୁ ଚାହିଁଲେ ।

ଦକ୍ଷିଣ ଆମେରିକାର ଭାଷା ହେଉଛି ସ୍ପେନଭାଷା—କେବଳ ବ୍ରାଜିଲର ସରକାରୀ ଭାଷା ହେଉଛି ପର୍ତ୍ତୁଗିଜ । ଏତେ ବିଶାଳ ଅଞ୍ଚଳରେ ପ୍ରସାରିତ ହୋଇଥିବାରୁ ସ୍ପେନଭାଷା ଦୁନିଆରେ ଆଜି ଏକ ପ୍ରଧାନ ଭାଷା ହୋଇପାରିଛି । ଏହା ଏକ ସୁନ୍ଦର ଓ ଆରାମଦାୟୀ ଭାଷା । ଏହାର ସୁନ୍ଦର ଆଧୁନିକ ସାହିତ୍ୟ ରହିଛି ଏବଂ ଏବେ ଦକ୍ଷିଣ ଆମେରିକା ଯୋଗୁଁ ଏହା ଏକ ପ୍ରଧାନ ବାଣିଜ୍ୟ ଭାଷା ହୋଇପାରିଛି ।

## ୧୯୪ : ଯୁଦ୍ଧର ଛାୟା

ଅଗଷ୍ଟ ୮, ୧୯୩୩

ଆମର ଗତ ଚିଠିରେ ଆମେ ଦ୍ରୁତବେଗରେ ଏସିଆ ଓ ଆଫ୍ରିକା ମହାଦେଶ ଏବଂ ଆମେରିକା ବିଷୟ ଆଲୋଚନା କଲେ । ବାକୀ ଥିଲା ଇଉରୋପ—ସେଠାରେ ଗଣ୍ଡଗୋଳ ଓ ବିବାଦ ଲାଗିଥିବା ସତ୍ତ୍ୱେ ଅନେକ ଭଲ କଥା ବି ଥିଲା ।

ଏ ପର୍ଯ୍ୟନ୍ତ ପୃଥିବୀର ପ୍ରଧାନ ଶକ୍ତି ହୋଇ ରହିଥିବା ଇଂଲଣ୍ଡ ତାର ପୁରାତନ ପ୍ରାଧାନ୍ୟ ହରାଇଛି ଏବଂ ଯାହା ରହିଛି ତାକୁ ରଖିବା ନିମନ୍ତେ ଚେଷ୍ଟା କରୁଛି । ଯେଉଁ କୌଶଳ ଯୋଗୁଁ ତାହା ନିଜ ପଦ ରହିଥିଲା ଓ ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ କରୁଥିଲା ଏବଂ ତାର ସାମ୍ରାଜ୍ୟ ଗଢ଼ିବାରେ ସମର୍ଥ ହେଲା, ତାହା ଆଉ ସେପରି ନାହିଁ । ବେଶି ଦିନର କଥା ନୁହେଁ—ଏପରି ବେଳ ଥିଲା ଯେ ତାର ନୌବାହିନୀ ଯେ କୌଣସି ଦୁଇଟି ପ୍ରଧାନ ଶକ୍ତି ଅପେକ୍ଷା ଅଧିକ ବୃହତ୍ ଓ ଶକ୍ତିଶାଳୀ ଥିଲା । ଆଜି ଏହା କେବଳ ସଂଯୁକ୍ତ ରାଷ୍ଟ୍ରସହ ସମାନତା ଦାବୀ କରୁଛି ଏବଂ ଦରକାର ପଡ଼ିଲେ ଇଂଲଣ୍ଡ ଅପେକ୍ଷା ଅଧିକ ନିର୍ମାଣ କରିବାର ସମ୍ପଦ ସଂଯୁକ୍ତ ରାଷ୍ଟ୍ରର ରହିଛି । କିନ୍ତୁ ଆଜି ସମୁଦ୍ର-ଶକ୍ତି ଅପେକ୍ଷା ଅଧିକ ଶ୍ରେଷ୍ଠ ହେଉଛି ଉଡ଼ାଜାହାଜ ଶକ୍ତି, ଏବଂ ଏଥି ସମ୍ବନ୍ଧରେ ଇଂଲଣ୍ଡ ତଥାପି ଦୁର୍ବଳ ରହିଛି; କେତେକ ଦେଶର ତାହା ଅପେକ୍ଷା ଅଧିକ ଜଙ୍ଗୀ ଉଡ଼ାଜାହାଜ ରହିଛି । ତାର ବାଣିଜ୍ୟ ତଳରେ ବଡ଼ପଣିଆ ଯାଇଛି, ଆଉ ଫେରି ଆସିବାର ଆଶା ନାହିଁ ଏବଂ ତାର ବିଶାଳ ରପ୍ତାନି ବାଣିଜ୍ୟ କ୍ରମେ ପତନ ଆଡ଼କୁ ଯାଉଛି । ଉଚ୍ଚ ଶୁଳ୍କ ଓ ବିଶେଷ ସୁବିଧା ଦେଇ ନିଜର ମାଲ ପାଇଁ ତାର ସାମ୍ରାଜ୍ୟ ବନ୍ଧାବନ୍ଧି କରିବାର ଚେଷ୍ଟା କରୁଛି । ଏହି କଥାର ଅର୍ଥ ହେଉଛି ସାମ୍ରାଜ୍ୟ ବାହାରେ ପୃଥିବୀ ବେପାର ବେବାର ଅଭିଳାଷ ତ୍ୟାଗ କରିବା । ଏହି ସୀମାବଦ୍ଧ କ୍ଷେତ୍ରରେ ସେ ସଫଳ ହେଲେ ପୁଣି ଆଉ ପୁରୁଣା କର୍ତ୍ତୃତ୍ୱ ଫେରିଆସିବ ନାହିଁ । ଏହା ଚିରକାଳ ପାଇଁ ଯାଇଛି । ସାମ୍ରାଜ୍ୟ ଭିତରେ ଯାହା ବା ସୀମାବଦ୍ଧ ସାଫଲ୍ୟ ମିଳୁଛି ତାହାର ବିସ୍ତୃତି ଓ କାର୍ଯ୍ୟକାଳ ବି ସନ୍ଦେହଜନକ ।

ଆମେରିକା ସହ ବିପ୍ଳବ ସଂଗ୍ରାମ ପରେ ଇଂଲଣ୍ଡ ଏବେ ପୁଣି ପୃଥିବୀ ବେପାରର ଆର୍ଥିକ କେନ୍ଦ୍ର ହୋଇ ରହିଛି ଏବଂ ଲଣ୍ଡନ ନଗରୀ ଏଥିପାଇଁ ବିନିମୟର କେନ୍ଦ୍ର ହୋଇ ରହିଛି । କିନ୍ତୁ ପୃଥିବୀ ବେପାର ବୁଡ଼ିଯାଇ ଉଭେଇ ଯାଉଥିବାବେଳେ ଏହାର ସମସ୍ତ ମୋହ ଓ ମୂଲ୍ୟ ଚାଲିଗଲାଣି । ଇଂଲଣ୍ଡ ଓ ଅନ୍ୟ ଦେଶସବୁ ନିଜର ଅର୍ଥନୈତିକ ଜାତୀୟବାଦ, ଶୁଳ୍କ ଇତ୍ୟାଦି ମତ ହେତୁ ପୃଥିବୀ ବେପାର ବୁଡ଼ାଇବାରେ ସାହାଯ୍ୟ କରୁଛନ୍ତି । ଯଦିବା ବହୁପରିମାଣରେ ପୃଥିବୀ ବେପାର ଚାଲେ ଏବଂ ପ୍ରଚଳିତ ପୁଞ୍ଜିବାଦୀ ବ୍ୟବସ୍ଥା ଠିକ ରହିଯାଏ, ତେବେ ଏଥିରେ ସନ୍ଦେହ ନାହିଁ ଯେ ଆର୍ଥିକ ନେତୃତ୍ୱ ଲଣ୍ଡନରୁ ନିଉୟର୍କକୁ ଚାଲିଯିବ; କିନ୍ତୁ ଖୁବ୍ ସମ୍ଭବତଃ ଏହା ଘଟିବା ପୂର୍ବରୁ ପୁଞ୍ଜିବାଦୀ ବ୍ୟବସ୍ଥାରେ ବିରାଟ ପରିବର୍ତ୍ତନମାନ ହୋଇ ଯାଇଥିବ ।

ପରିବର୍ତ୍ତିତ ଅବସ୍ଥା ସହିତ ନିଜର ପରିବର୍ତ୍ତନ କରିବାର ଖ୍ୟାତି ଇଂଲଣ୍ଡର ଅଛି । କିନ୍ତୁ ଯେ ପର୍ଯ୍ୟନ୍ତ ତାର ସାମାଜିକ ଭିତ୍ତିରେ କୌଣସି ଆଞ୍ଚ ନ ଲାଗେ ଓ ଅଧିକାର ଭୋଗୀ ଶ୍ରେଣୀଙ୍କର ବିଶେଷାଧିକାର ପ୍ରାପ୍ତ ସ୍ଥାନ ସବୁ ବଜାୟ ରହେ, ସେପର୍ଯ୍ୟନ୍ତ ଏହି ମତ ଯଥାର୍ଥ । ଏହି ଗ୍ରହଣ କରିନେବାର କ୍ଷମତା ମୌଳିକ ସାମାଜିକ ପରିବର୍ତ୍ତନ ମଧ୍ୟରେ

କିପରି କାର୍ଯ୍ୟକାରୀ ହେବ ଏହା ଏବେ ସୁଦ୍ଧା ଦେଖିବା ଲାଗି ବାକି ରହିଛି । ଏପରି ପରିବର୍ତ୍ତନ ନୀରବରେ ଓ ଶାନ୍ତିପୂର୍ଣ୍ଣ ଭାବରେ ହେବା ସମ୍ପୂର୍ଣ୍ଣ ଅସମ୍ଭବ । ଯେଉଁମାନଙ୍କ ହାତରେ କ୍ଷମତା ଓ ବିଶେଷାଧିକାର ଥାଏ, ସେମାନେ ତାହା ସ୍ୱେଚ୍ଛାରେ ତ୍ୟାଗ କରନ୍ତି ନାହିଁ ।

ଇତ୍ୟବସରେ ଇଂଲଣ୍ଡ ବୃହତ୍ତର ଜଗତରୁ ତାର ସାମ୍ରାଜ୍ୟକୁ ଖସିଆସୁଛି ଏବଂ ଏହି ସାମ୍ରାଜ୍ୟରକ୍ଷା କରିବା ନିମନ୍ତେ ଏହା ନିଜର ଗଠନରେ ବହୁପରିବର୍ତ୍ତନ କରିବାକୁ ସମ୍ମତ ହୋଇଛି । ଡୋମିନିୟନଗୁଡ଼ିକ ଅନେକ ଭାବରେ ବ୍ରିଟିଶ ଆର୍ଥିକ ବ୍ୟବସ୍ଥାରେ ବନ୍ଧା ହୋଇଥିଲେ ସୁଦ୍ଧା କିଛି ସ୍ୱାଧୀନତା ପାଇଛନ୍ତି । ଜାଗ୍ରତ ଡୋମିନିୟନ-ଗୁଡ଼ିକୁ ସନ୍ତୁଷ୍ଟ କରିବା ନିମନ୍ତେ ଇଂଲଣ୍ଡ ବହୁତ ତ୍ୟାଗ କରିଛି ଏବଂ ତଥାପି ସେମାନଙ୍କ ଭିତରେ ସଂଘର୍ଷ ଉପୁଜୁଛି । ଅଷ୍ଟ୍ରେଲିଆର ହାତଗୋଡ଼ ଇଂଲଣ୍ଡ ବ୍ୟାଙ୍କରେ ବନ୍ଧା ହୋଇଛି ଏବଂ ଜାପାନୀ ଆକ୍ରମଣ ଭୟ ହେତୁ ଏହା ଇଂଲଣ୍ଡ ସହ ଘନିଷ୍ଠରୂପେ ଅଚ୍ଛିନ୍ନ ହୋଇଛି; କାନାଡ଼ାର ବର୍ଦ୍ଧିତ ଶିଳ୍ପ ଇଂଲଣ୍ଡର କେତେକ ଶିଳ୍ପ ସହ ପ୍ରତିଯୋଗିତା କରୁଛି ଏବଂ ସେଥିରେ ଆତ୍ମସମର୍ପଣ କରିବାକୁ ଅସ୍ୱୀକାର କରୁଛି ଏବଂ କାନାଡ଼ା ତାର ପ୍ରଧାନ ପଡ଼ୋଶୀ ସଂଯୁକ୍ତ ରାଷ୍ଟ୍ରସହ ବହୁତ ସଂଯୋଗ ହୋଇଛି; ଦକ୍ଷିଣ ଆଫ୍ରିକାରେ ସାମ୍ରାଜ୍ୟ ଅନୁକୂଳ ଭାବପ୍ରବଣତା ଆଉ ନାହିଁ, ଯଦିଓ ପୁରାତନ ତିକ୍ତଭାବ ଦୂର ହୋଇଯାଇଛି । ଆୟର୍ଲାଣ୍ଡ ନିଜ ଗୋଡ଼ରେ ଛିଡ଼ା ହୋଇଛି ଏବଂ ଇଂଲଣ୍ଡ-ଆୟର୍ଲଣ୍ଡ ବାଣିଜ୍ୟ-ଯୁଦ୍ଧ ଏବେ ସୁଦ୍ଧା ଚାଲିଛି । ଆୟର୍ଲଣ୍ଡକୁ ବାଧ୍ୟ କରି ବଶ୍ୟତା ସ୍ୱୀକାର କରାଇବା ନିମନ୍ତେ ଆୟର୍ଲଣ୍ଡ ମାଲ ଉପରେ ଯେଉଁସବୁ ଇଂରେଜ ଶୁଳ୍କ ବସିଲା, ତାର ବିପରୀତ ଫଳ ହେଲା । ଏଥିଯୋଗୁଁ ଆୟର୍ଲଣ୍ଡର ଶିଳ୍ପ ଓ କୃଷି ଖୁବ୍ ଆଗେଇଗଲା ଏବଂ ଆୟର୍ଲଣ୍ଡ ଅନେକ ପରିମାଣରେ ଏକ ଆତ୍ମନିର୍ଭରଶୀଳ ଓ ଆତ୍ମପ୍ରାଚୁର୍ଯ୍ୟ ଦେଶ ହୋଇ ଉଠୁଛି । ନୂତନ କାରଖାନାମାନ ଗଢ଼ି ଉଠୁଛି ଏବଂ ଘାସ ପଡ଼ିଆ ସବୁ ଶସ୍ୟକ୍ଷେତ୍ରରେ ପରିଣତ ହେଉଛି । ଯେଉଁସବୁ ଖାଦ୍ୟପଦାର୍ଥ ଇଂଲଣ୍ଡକୁ ରପ୍ତାନି ହେଉଥିଲା ତାହା ଏବେ ସ୍ଥାନୀୟ ବାସିନ୍ଦା ଖରଚ କରୁଛନ୍ତି ଏବଂ ଜୀବନନିର୍ବାହ ଢଙ୍ଗ ମଧ୍ୟ ବଢ଼ୁଛି । ଏହିରୂପେ ଡି. ଭେଲେରା ବିଜୟୀ ଭାବରେ ନିଜର ନୀତିର ଆଟ ବଜାୟ ରଖିଛନ୍ତି ଏବଂ ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ଆୟର୍ଲଣ୍ଡ ଏବେ ସୁଦ୍ଧା କଣ୍ଟକ ହୋଇ ରହିଛି—ଏହା ଢିଙ୍ଗ, ଅବଜ୍ଞାକାରୀ ଏବଂ ଅଟୋଆ କାରବାରରେ ଆଦୌ ପ୍ରବେଶ କରୁ ନାହିଁ ।

ତେଣୁ ଡୋମିନିଅନମାନଙ୍କ ସହିତ ବାଣିଜ୍ୟ ସହଯୋଗଦ୍ୱାରା ଇଂଲଣ୍ଡ କିଛି ଲାଭ କରିପାରିଲା ନାହିଁ । ତାହା ଭାରତରୁ ଖୁବ ଲାଭ କରିପାରିଲା, କାରଣ ଭାରତରେ ତାଙ୍କପାଇଁ ବିରାଟ ବଜାର ଏବେ ସୁଦ୍ଧା ମୁକ୍ତ ରହିଛି । କିନ୍ତୁ ଭାରତରେ ରାଜନୈତିକ ଅବସ୍ଥା ତଥା ଆର୍ଥିକ ଦୁର୍ଗତି ବ୍ରିଟିଶ ବାଣିଜ୍ୟ ପକ୍ଷରେ ଅନୁକୂଳ ନୁହେଁ । ଲୋକଙ୍କ

ଜେଲକୁ ପଠାଇ ବ୍ରିଟିଶ ମାଲ କିଣିବାକୁ ବାଧ୍ୟ କରାଯାଇ ପାରେ ନା । ଏବେ ମାନ୍‌ଚେଷ୍ଟାରରେ ମିଷ୍ଟର ଷ୍ଟାନ୍‌ଲି ବଲଡ୍‌ଉଇନ୍ କହିଥିଲେ—

"ଭାରତକୁ ନିର୍ଦ୍ଦେଶ ଦେବାର ଏବଂ ସେ କେତେବେଳେ ଓ କେଉଁଠୁ ତାର ମାଲ ଖରିଦ କରିବ ସେ ବିଷୟ କହିବାର ଦିନ ଚାଲିଯାଇଛି । ସଦିଚ୍ଛାହିଁ ବାଣିଜ୍ୟର ଅସଲ ହାତର ପାଞ୍ଝ । ଆମେ ସଙ୍ଗୀନ ମୂନ ତଳେରେ ଭାରତବାସୀଙ୍କୁ ମାଲ କିଣି କରି ପାରିବା ନାହିଁ ।"

ଭାରତର ଆଭ୍ୟନ୍ତରୀଣ ଅବସ୍ଥା ଛଡ଼ା ଏଠି ଏବଂ ପ୍ରାଚ୍ୟ ଦେଶରେ ଅନ୍ୟତ୍ର ଓ କେତେକ ଡୋମିନିଅନରେ ଇଂଲଣ୍ଡକୁ ଭୀଷଣ ଜାପାନୀ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ୁଛି ।

ତେଣୁ ଇଂଲଣ୍ଡ ତାର ସାମ୍ରାଜ୍ୟକୁ ଏକ ଅର୍ଥନୈତିକ ଅଙ୍ଗରେ ପରିଣତ କରି ଯାହା ଅଛି ତାହା ବଜାୟ ରଖିବା ନିମନ୍ତେ କଠିନ ଉଦ୍ୟମ କରୁଛି ଓ ଡେନମାର୍କ ବା ସ୍କାଣ୍ଡିନେଭିଆ ରାଜ୍ୟ ଗୁଡ଼ିକପରି ଛୋଟ ଛୋଟ ରାଜ୍ୟ ସହିତ ସନ୍ଧି ଅନୁସାରେ ବ୍ୟବସାୟ ଚଳାଇଛି । ଘଟଣାର ନିର୍ଦ୍ଦିଷ୍ଟ ଗତିଯୋଗୁଁ ଏପରି ନୀତି ଅନୁସରଣ କରିବାକୁ ତାହା ବାଧ୍ୟ ହେଉଛି; ଆଉ ଅନ୍ୟ ପନ୍ଥା ନାହିଁ । ଏପରିକି ଯୁଦ୍ଧକାଳରେ ନିଜକୁ ରକ୍ଷା କରିବା ନିମନ୍ତେ ତାକୁ ଆତ୍ମନିର୍ଭର ହେବାକୁ ପଡ଼ିବ । ସେହି ହେତୁ ସେ ତାର କୃଷି ଏବେ ବଢ଼ାଇବାର ଚେଷ୍ଟା କରୁଛି । ଏହି ଅର୍ଥନୈତିକ ଜାତୀୟବାଦର ସାମ୍ରାଜ୍ୟନୀତି କେତେଦୂର ସଫଳ ହେବ ବର୍ତ୍ତମାନ କୁହାଯାଇ ପାରିବ ନାହିଁ । ସଫଳତା ପ୍ରାପ୍ତି ବାଟରେ ଅନେକ ଅସୁବିଧା ଥିବା କଥା ମୁଁ କହିଛି । ଯଦି ବିଫଳ ହୁଏ ତେବେ ସାମ୍ରାଜ୍ୟର ସମୁଦାୟ ଗଠନଟି ଅବଶ୍ୟ ଟଳି ପଡ଼ିବ ଏବଂ ଇଂରେଜଲୋକେ ଯଦି ସାମ୍ୟବାଦୀ ଅର୍ଥନୀତି ଗ୍ରହଣ ନ କରନ୍ତି ତେବେ ସେମାନଙ୍କୁ ଅତି ନିମ୍ନ ଢଙ୍ଗରେ ଜୀବନ ବିତାଇବାକୁ ପଡ଼ିବ । ମାତ୍ର ଏହି ନୀତିର ସଫଳତା ମଧ୍ୟ ବିପଦପୂର୍ଣ୍ଣ, କାରଣ ଏହା ଫଳରେ ଅନେକ ଇଉରୋପୀୟ ରାଜ୍ୟ ଧ୍ୱଂସହୋଇ ଯାଇପାରେ ଯେହେତୁ ସେମାନଙ୍କର ବାଣିଜ୍ୟ ଯଥେଷ୍ଟ ଭାବରେ ଅନ୍ୟତ୍ର ଜାଗା ପାଇ ପାରିବ ନାହିଁ ଏବଂ ଇଂଲଣ୍ଡର ଖାତକମାନେ ଦେବାଳିଆ ହେଲେ ଶେଷରେ ଇଂଲଣ୍ଡର ବି କ୍ଷତି ଘଟିବ ।

ଜାପାନ ଓ ଆମେରିକା ଭିତରେ ଆର୍ଥିକ ସଂଘର୍ଷ ହେବାକୁ ବାଧ୍ୟ । ସଂଯୁକ୍ତ ରାଷ୍ଟ୍ର ସହିତ ଅନେକ କ୍ଷେତ୍ରରେ ବିବାଦ ରହିଛି ଓ ବର୍ତ୍ତମାନ ପୃଥିବୀର ଅବସ୍ଥା ଯେପରି ସେଥିରେ ଇଂଲଣ୍ଡର ପତନ ହେବା ସଙ୍ଗେ ସଙ୍ଗେ ସଂଯୁକ୍ତ ରାଷ୍ଟ୍ର ବିଶାଳ ସଂପଦ ସହି ଅବଶ୍ୟ ଆଗକୁ ମାଡ଼ିଚାଲିବ । ଏହି ପ୍ରତିଦ୍ୱନ୍ଦ୍ୱିତା ଫଳରେ ଇଂଲଣ୍ଡକୁ ନୀରବରେ ପରାଜୟ ସ୍ୱୀକାର କରିବାକୁ ପଡ଼ିବ ଅଥବା ତାର ଯାହା ଅଛି ତାକୁ ରକ୍ଷା କରିବା ନିମନ୍ତେ ଶେଷ ପ୍ରଚେଷ୍ଟାରେ ଯୁଦ୍ଧ ବିପଦ ବରଣ କରିବାକୁ ହେବ ଏବଂ ଏବେ ତା'ର ପ୍ରତିଦ୍ୱନ୍ଦ୍ୱୀମାନଙ୍କର ସମ୍ମୁଖୀନ ହେବା ପାଇଁ ସେ ବଡ଼ ଦୁର୍ବଳ ।

ଇଂଲଣ୍ଡର ଆଉ ଏକ ପ୍ରତିଦ୍ୱନ୍ଦ୍ୱି ହେଉଛି ସୋଭିଏଟ ଇଉନିଅନ । ଉଭୟର ସମ୍ପୂର୍ଣ୍ଣ ବିପରୀତ ନୀତି ଏବଂ ସେମାନେ ସମଗ୍ର ଇଉରୋପ ଓ ଏସିଆରେ ପରସ୍ପର ପ୍ରତି ଟାକି ରହିଛନ୍ତି ଓ ଚକ୍ରାନ୍ତ କରୁଛନ୍ତି । କିଛିଦିନ ନିମନ୍ତେ ଏ ଦୁଇଟି ଶକ୍ତି ଶାନ୍ତିରେ ରହିପାରନ୍ତି; ମାତ୍ର ଦୁହିଁଙ୍କି ମିଳାଇବା ସମ୍ପୂର୍ଣ୍ଣ ଅସମ୍ଭବ କାରଣ ଏ ଦୁହିଁଙ୍କର ଆଦର୍ଶ ସମ୍ପୂର୍ଣ୍ଣ ଭିନ୍ନ ।

ଆଜି ଇଂଲଣ୍ଡ ଏକ ସନ୍ତୁଷ୍ଟ ଶକ୍ତି କାରଣ ସେ ଯାହା ଚାହେଁ ତାହା ତାର ଅଛି । ତାର ଭୟ ହେଉଛି ସେ କାଳେ ଏହା ହରାଇବ ଏବଂ ଏ ଭୟ ଯଥାର୍ଥ । ସେ ପ୍ରଚଳିତ ବ୍ୟବସ୍ଥାକୁ ରକ୍ଷାକରିବା ଲାଗି କଠିନ ଚେଷ୍ଟା କରୁଛି ଏବଂ ଏହି ଉଦ୍ଦେଶ୍ୟରେ ତେଣୁ ଲିଗ୍ ଅଫ୍ ନେସନ୍‌ସକୁ ବ୍ୟବହାର କରୁଛି କିନ୍ତୁ ତା ପକ୍ଷରେ ବା ଅନ୍ୟ କୌଣସି ଶକ୍ତି ପକ୍ଷରେ ଘଟଣା ଏବେ ବଡ଼ ଶକ୍ତ ହୋଇ ଗଲଣି । ନିଃସନ୍ଦେହ ରୂପେ ସେ ଆଜି ବଳବାନ କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ତାହା ଦୁର୍ବଳ ହୋଇଛି ଏବଂ ଏକ ସାମ୍ରାଜ୍ୟବାଦୀ ଶକ୍ତି ହିସାବରେ ପତନ ଘଟୁଛି ଏବଂ ତାର ବିଶାଳ ସାମ୍ରାଜ୍ୟର ସନ୍ଧ୍ୟାକାଳ ଆସିବା ଆମେ ଦେଖୁଛେ ।

ଇଉରୋପ ମହାଦେଶରେ ଫ୍ରାନ୍‌ସ ରାଜ୍ୟ ବି ଏକ ସାମ୍ରାଜ୍ୟବାଦୀ ଶକ୍ତି; ଆଫ୍ରିକା ଓ ଏସିଆରେ ଏହାର ବିଶାଳ ସାମ୍ରାଜ୍ୟ ବ୍ୟାପିଛି । ସାମରିକ ଦୃଷ୍ଟିରେ ଇଉରୋପରେ ଏହା ସର୍ବାପେକ୍ଷା କ୍ଷମତାଶାଳୀ ଦେଶ ※ । ତାର ବିରାଟ ସେନା ରହିଛି ଏବଂ ପୋଲଣ୍ଡ ଜେକୋସ୍ଲୋଭାକିଆ, ବେଲ୍‌ଜିଅମ, ରୁମାନିଆ ଓ ଯୁଗୋସ୍ଲୋଭିଆ ଆଦି କେତେକ ଦେଶର ସେ ହେଉଛି ନେତା । ତଥାପି ସେ ଜର୍ମାନିର ସାମରିକ ଭାବ ବିଶେଷତଃ ହିଟଲର ରାଜୁତିକୁ ବେଶୀ ଡରୁଛି । ବାସ୍ତବିକ ହିଟଲର ସୋଭିଏଟ ରୁଷ ଓ ପୁଞ୍ଜିବାଦୀ ଫ୍ରାନ୍‌ସ ମଧ୍ୟରେ ଅଲୌକିକ ଭାବ ପରିବର୍ତ୍ତନ କରିବାରେ ସଫଳ ହୋଇଛି । ଏକ ସାଧାରଣ ଶତ୍ରୁ ସେମାନଙ୍କୁ ପରସ୍ପର ବନ୍ଧୁ କରିପାରିଛି ।

ଜର୍ମାନୀରେ ନାଜୀ ଆତଙ୍କ ଏବେ ଯୁଦ୍ଧା ଚାଲିଛି ଏବଂ ନୂତନ ନିଷ୍ଠୁରତା ଓ ନୃଶଂସତାର ବିବରଣ ପ୍ରତିଦିନ ଆସୁଛି । ଏହି ପାଶବିକତା କେତେଦିନ ଚାଲିବ ତାହା କହିବା ଅସମ୍ଭବ, ଏହା ଅନେକମାସ ହେଲି ତିଷ୍ଠି ରହିଲଣି ଏବଂ ଏହାର କୌଣସି ପ୍ରକାର କ୍ଷୟ ଦେଖାଯାଉ ନାହିଁ । ଏପରି ଦମନ କୌଣସି ସ୍ଥାୟୀ ଶାସନର ସଙ୍କେତ ନୁହେଁ । ଜର୍ମାନୀ ଯଦି ସାମରିକ ଦୃଷ୍ଟିରେ ବଳବାନ ହୋଇଥାନ୍ତା । ତେବେ ସମ୍ଭବତଃ

---

※ ଜର୍ମାନ ଅସ୍ତ୍ର ସଜ୍ଜିତ ହେବା ଦିନଠାରୁ ଏହା ଆଉ ସେପରି ନାହିଁ । ୧୯୩୮ ସେପ୍‌ଟମ୍ବର ମିଉନିକ ଚୁକ୍ତିପରେ ଫ୍ରାନ୍‌ସ ଏକ ପ୍ରକାର ଦ୍ୱିତୀୟ ଦରର ଶକ୍ତି ହୋଇଯାଇଛି । ମଧ୍ୟ ଇଉରୋପ ସହିତ ତାର ମିତ୍ରତା ଭାଙ୍ଗିଯାଇଛି ।

ଇଉରୋପରେ ଯୁଦ୍ଧ ଲଗି ଯାଇ ସାରନ୍ତାଣି । ଏ ଯୁଦ୍ଧ ହୁଏତ ହୋଇପାରେ । ହିଟଲର କହି ବୁଲୁଛି ଯେ କମ୍ୟୁନିଜମରୁ ରକ୍ଷା କରିବା ପାଇଁ ସେ ହେଉଛି ଏକମାତ୍ର ଲୋକ ଏବଂ ଏହା ସତ୍ୟ ହୋଇ ଥାଇପାରେ କାରଣ ଜର୍ମାନୀରେ ହିଟଲରବାଦ ଛାଡ଼ିଲେ କମ୍ୟୁନିଜମ ଛଡ଼ା ଅନ୍ୟ ଉପାୟ ନାହିଁ ।

ମୁସୋଲିନୀଙ୍କ ଅଧୀନରେ ଇଟାଲୀ ଆନ୍ତର୍ଜାତିକ ରାଜନୀତିରେ ଏକ ଅତି କୁଶଳ ବାସ୍ତବ ଓ ସ୍ୱାର୍ଥପର ନୀତି ଗ୍ରହଣ କରିଛି ଏବଂ ଅନ୍ୟ ଦେଶମାନଙ୍କ ପରି ଶାନ୍ତି ଓ ସଦିଚ୍ଛା ସମ୍ବନ୍ଧରେ ପବିତ୍ରବାଣୀ ଶୁଣାଉ ନାହିଁ । ତାହା ଯୁଦ୍ଧ ଲଗି ଅକ୍ଲାନ୍ତ ଭାବରେ ପ୍ରସ୍ତୁତ ହେଉଛି, କାରଣ ସେ ହୃଦୟଙ୍ଗମ କରିଛି ଯେ, ଅଳ୍ପ ଦିନ ଭିତରେ ଯୁଦ୍ଧ ଅବଶ୍ୟ ଲାଗିବ ଏବଂ ଇତ୍ୟବସରରେ ନିଜର ଅବସ୍ଥା ଦୃଢ଼ କରିବା ନିମନ୍ତେ ତାହା ଚେଷ୍ଟା କରୁଛି, ଫାସିଷ୍ଟ ହୋଇଥିବା ହେତୁ ଜର୍ମାନୀରେ ଫାସିଜମ୍‌କୁ ଏହା ସ୍ୱାଗତ କରୁଛି ଏବଂ ହିଟଲର ପନ୍ଥୀଙ୍କ ସହ ମିତ୍ରତା ସ୍ଥାପନ କରିଛି; ତଥାପି ଜର୍ମାନ ନୀତିର ମହାନ ଲକ୍ଷ୍ୟ—ଅଷ୍ଟ୍ରିଆ ସହିତ ମିଳନର ଏହା ବିରୋଧ କରୁଛି । ଏପରି ମିଳନ ଫଳରେ ଜର୍ମାନ ସୀମାନ୍ତ ଇଟାଲୀ ପର୍ଯ୍ୟନ୍ତ ଚାଲିଆସିବ ଏବଂ ମୁସୋଲିନୀ ତାର ସହୋଦର ଫାସିଷ୍ଟ ଜର୍ମାନୀ ଏପରି ନିକଟତର ହେବାଟା ପସନ୍ଦ କରେ ନାହିଁ ।"

ପୃଥିବୀ ଯୁଦ୍ଧର ପରବର୍ତ୍ତୀ ଫଳ ହେତୁ ଏବଂ ମାନ୍ଦା ଅବସ୍ଥାର ଚାପରେ ମଧ୍ୟ ଇଉରୋପର ଛୋଟ ଛୋଟ ଦେଶସବୁ ବହୁତ କଷ୍ଟ ଭୋଗୁଛନ୍ତି ଏବଂ ହିଟଲର ଓ ନାଜୀଙ୍କର ଭୟରେ ଥରହର ଓ ବିଚଳିତ ହୋଇ ପଡ଼ିଲେଣି । ଏହିସବୁ ମଧ୍ୟ ଇଉରୋପର ରାଜ୍ୟମାନଙ୍କରେ ବିଶେଷତଃ ଅଷ୍ଟ୍ରିଆ ପରି ଯେଉଁଠାରେ ଜର୍ମାନମାନେ ଅଛନ୍ତି ସେଠାରେ ନାଜୀ ଦଳ ବଢ଼ୁଛି । କିନ୍ତୁ ନାଜୀ ବିରୋଧୀ ଭାବ ମଧ୍ୟ ବଢ଼ୁଛି ଓ ତା ଫଳରେ ସଂଘର୍ଷ ହେଉଛି । ବର୍ତ୍ତମାନ ଏହି ସଂଘର୍ଷ ପାଇଁ ଅଷ୍ଟ୍ରିଆ ହୋଇଛି ପ୍ରଧାନ କ୍ଷେତ୍ର ।

ମୋର ମନେହୁଏ, କେତେଦିନ ତଳେ ୧୯୩୨ରେ ମଧ୍ୟ ଇଉରୋପ ଓ ଡାନ୍ୟୁବ ଅଞ୍ଚଳର ଫ୍ରାନ୍‌ସ ସପକ୍ଷବାଦୀ ତିନୋଟି ରାଜ୍ୟ—ଚେକୋସ୍ଲୋଭାକିଆ, ରୁମାନିଆ ଓ ଯୁଗୋସ୍ଲାଭିଆ ଏକ ମିତ୍ରତା ବାନ୍ଧିଛନ୍ତି । ପୃଥିବୀ ଯୁଦ୍ଧର ବନ୍ଦୋବସ୍ତରେ ଏହି ତିନୋଟି-ଯାକ ରାଜ୍ୟ ଲାଭବାନ ହୋଇଛନ୍ତି ଏବଂ ସେମାନଙ୍କର ଯାହା ଅଛି ତାହା ରଖିବାକୁ ଚାହାନ୍ତି । ଏହି ଉଦ୍ଦେଶ୍ୟରେ ସେମାନେ ମିଳିତ ହୋଇଛନ୍ତି ଏବଂ ବାସ୍ତବରେ ଯାହା କହନ୍ତି ଯୁଦ୍ଧ ଲଗି ମିତ୍ରତା ବାନ୍ଧିଛନ୍ତି ଏହାକୁ କହନ୍ତି "କ୍ଷୁଦ୍ର ଇଣ୍ଟେଣ୍ଟେ" (Little Entente) । ତିନି ଶକ୍ତି ମିଶ୍ରିତ ଏହି କ୍ଷୁଦ୍ର ଇଣ୍ଟେଣ୍ଟେ କାର୍ଯ୍ୟତଃ ଇଉରୋପରେ ଏକ

※ ୧୯୩୮ ମାର୍ଚ୍ଚରେ ଜର୍ମାନୀ ଅଷ୍ଟ୍ରିଆ ଆକ୍ରମଣ କରି ନିଜ ଦେଶରେ ମିଶାଇ ଦେଲା । ମୁସୋଲିନୀ ଅବସ୍ଥାଚକ୍ରରେ ଏଥିରେ ସମ୍ମତ ହେବାକୁ ବାଧ୍ୟ ହେଲା, କିନ୍ତୁ ଇଟାଲୀ ଏହି ପରିବର୍ତ୍ତନକୁ ଅତ୍ୟନ୍ତ ନାପସନ୍ଦ କରିଥିଲା ।

ନୂତନ ଶକ୍ତି ଗଢ଼ିଛନ୍ତି । ଏହା ଫାସିଷ୍ଟ ପକ୍ଷବାଦୀ ଏବଂ ଜର୍ମାନ ବିରୋଧୀ ଓ ଇଟାଲି ମଧ୍ୟର ମଧ୍ୟ ବିରୋଧ କରିଛନ୍ତି ।

ଜର୍ମାନୀରେ ନାଜି ବିଜୟ ଏହି କ୍ଷୁଦ୍ର ଇଣ୍ଟେଣ୍ଟେ ତଥା ପୋଲାଣ୍ଡ ପକ୍ଷରେ ଏକ ବିପଦ ସଙ୍କେତ କାରଣ ନାଜିମାନେ କେବଳ ଯେ ଭର୍ସେଇ ସନ୍ଧି ସର୍ତ୍ତର ପୁନର୍ବିଚାର ଚାହାନ୍ତି, ତାହା ନୁହେଁ, ( ସବୁ ଜର୍ମାନ ଏହା ଚାହୁଁଥିଲେ) ମାତ୍ର ଏପରି ଭାଷା ପ୍ରୟୋଗ କରନ୍ତି ଯେଉଁଥିରେ ଯୁଦ୍ଧ ନିକଟ ହେଲାପରି ବୋଧହୁଏ । ନାଜିର ଭାଷା ଓ ଅନ୍ୟ କୌଣସି ଏପରି ଉଦ୍ଧତ ଓ ହିଂସାପରିପୂର୍ଣ୍ଣ ଯେ ଅଷ୍ଟ୍ରିଆ ଓ ହଙ୍ଗେରି ପରି ଯେଉଁ ରାଜ୍ୟମାନେ ସନ୍ଧି ସର୍ତ୍ତର ପୁନର୍ବିଚାର ଚାହୁଁଥିଲେ ସେମାନେ ମଧ୍ୟ ଭୟଭୀତ ହୋଇ ଯାଇଛନ୍ତି । ହିଟଲର-ବାଦ ନାଁର ଭୟ ଫଳରେ ମଧ୍ୟ ଇଉରୋପ ଓ ପୂର୍ବ ଇଉରୋପର ଯେଉଁସବୁ ରାଜ୍ୟ ଏ ପର୍ଯ୍ୟନ୍ତ ପରସ୍ପରକୁ ଉତ୍କଟ ଘୃଣା କରୁଥିଲେ, ସେମାନେ ଏବେ ପରସ୍ପରର ନିକଟବର୍ତ୍ତୀ ହୋଇ ଯାଇଛନ୍ତି—କ୍ଷୁଦ୍ର ଇଣ୍ଟେଣ୍ଟେ, ପୋଲାଣ୍ଡ, ଅଷ୍ଟ୍ରିଆ, ହଙ୍ଗେରି ଏବଂ ବଲକାନ ଦେଶସବୁ ମିଳିତ ହୋଇଛନ୍ତି । ଏପରି କି ଏମାନଙ୍କ ଭିତରେ ଏକ ଅର୍ଥନୈତିକ ମିଳନ ମଧ୍ୟ ହେବାର କଥା ଶୁଣାଯାଉଛି । ଜର୍ମାନୀରେ ନାଜିର ପ୍ରାଦୁର୍ଭାବ ଦିନଠାରୁ ଏହିସବୁ ରାଜ୍ୟ ବିଶେଷତଃ ପୋଲାଣ୍ଡ ଓ ଚେକୋସ୍ଲୋଭାକିଆ ବି ସୋଭିଏଟ ରୁଷ ପ୍ରତି ଅଧିକ ବନ୍ଧୁତ୍ୱପୂର୍ଣ୍ଣ ହୋଇଛନ୍ତି । ଏହିହେତୁ କେତେକ ସପ୍ତାହ ପୂର୍ବେ ଏହିସବୁ ରାଜ୍ୟ ଓ ରୁଷ ଭିତରେ ଏକ ସାଧାରଣ ଅନାକ୍ରମଣର ଚୁକ୍ତି ସ୍ୱାକ୍ଷରିତ ହୋଇଛି ।

ମୁଁ ତୋତେ କହିଛି ଯେ, ଏବେ ସ୍ପେନରେ ଏକ ବିପ୍ଳବ ହୋଇଯାଇଛି । ଏହା ସ୍ଥିର ହୋଇପାରୁ ନାହିଁ ଏବଂ ଆଉ ଏକ ପରିବର୍ତ୍ତନ ମୁଖରେ ପଡ଼ିଥିଲା ପରି ବୋଧ ହେଉଛି ।

ତେଣୁ ତୁ ଦେଖୁଛୁ ଯେ, ବର୍ତ୍ତମାନ ସଂଘର୍ଷ, ଦ୍ୱେଷ ଓ ବିଭିନ୍ନ ପ୍ରତିଦ୍ୱନ୍ଦ୍ୱୀ ଜାତିର ପରସ୍ପର ପ୍ରତି ଛକାପଞ୍ଝା ମାନଦ୍ୱାରା ଇଉରୋପ କପରି ଏକ ବିଚିତ୍ର କ୍ଷେତ୍ର ହୋଇପଡ଼ିଛି । ସେଠାରେ ଅସୀମ ନିରସ୍ତ୍ରୀକରଣ ଆଲୋଚନା ଚାଲିଛି ଅଥଚ ପ୍ରତ୍ୟେକ ଦେଶରେ ଅସ୍ତ୍ର-ଧାରଣ ବଢ଼ୁଛି ଏବଂ ଯୁଦ୍ଧ ଓ ଧ୍ୱଂସ ପାଇଁ ନୂତନ ଓ ଭୟାନକ ଅସ୍ତ୍ରମାନ ଆବିଷ୍କୃତ ହେଉଛି । ଆନ୍ତର୍ଜାତିକ ସହଯୋଗର ଯଥେଷ୍ଟ କଥା ଚାଲିଛି ଏବଂ ଅଗଣିତ ସମ୍ମିଳନୀମାନ ହୋଇଛି । ମାତ୍ର ସବୁଗୁଡ଼ିକ ବେକାର ହୋଇଛି । ଲିଗ୍ ଅଫ୍ ନେସନ୍ସ ବି ବ୍ୟର୍ଥ ହୋଇଛି ଏବଂ ବିଶ୍ୱ ଅର୍ଥନୈତିକ ସମ୍ମିଳନୀରେ ପରସ୍ପର ଏକତ୍ର ହେବାର ଅନ୍ତିମ ଉଦ୍ୟମ କରାଯାଇ ସଫଳ ହୋଇନାହିଁ । ଏକ ପ୍ରସ୍ତାବ କରାଯାଉଛି ଇଉରୋପର ବିଭିନ୍ନ ରାଜ୍ୟସବୁ କିମ୍ବା ରୁଷ ବ୍ୟତୀତ ଇଉରୋପ ଏକ ପ୍ରକାର ସଂଯୁକ୍ତ ରାଷ୍ଟ୍ର ଇଉରୋପ ରୂପେ ଏକତ୍ର ହେବା ଉଚିତ । ଏହାକୁ "ପାନ-ଇଉରୋପ" କୁହାଯାଏ । ଏହା ପ୍ରକୃତରେ ଏକ ସୋଭିଏଟ ବିରୋଧୀଦଳ ଗଠନର ପ୍ରଚେଷ୍ଟା ଏବଂ ଏତେ ସଂଖ୍ୟକ ଶ୍ରେଷ୍ଠ ରାଜ୍ୟ ସେଠାରେ ଥିବାଯୋଗୁଁ

ଘଟୁଥିବା ଅସଂଖ୍ୟ ଅସୁବିଧା ଓ ଜଟିଳତା ଅତିକ୍ରମ କରିବାର ଉଦ୍ୟମ । କିନ୍ତୁ ଦେଶ ଦେଶ ଭିତରେ ବିଦ୍ୱେଷ ଏତେ ଶକ୍ତିଶାଳୀ ଯେ, ଏହି ପ୍ରସ୍ତାବକୁ କେହି ମନ ଧ୍ୟାନ ଦେଉନାହାନ୍ତି ।

ବାସ୍ତବରେ ପ୍ରତ୍ୟେକ ଦେଶ ଅନ୍ୟଠାରୁ ଦୂରକୁ ଖସିଯାଉଛି । ମାନ୍ଦା ଓ ପୃଥିବୀ ସଙ୍କଟ ହେତୁ ସବୁଦେଶ ଅର୍ଥନୈତିକ ଜାତୀୟବାଦ ଧାରାରେ ପରିଚାଳିତ ହେବାରୁ ଏହି ପ୍ରକ୍ରିୟା ଆଗେଇ ଯାଇଛି । ପ୍ରତ୍ୟେକ ଦେଶରେ ଉଚ୍ଚ ଶୁଳ୍କ ପ୍ରାଚୀର ରହିଛି ଏବଂ ବିଦେଶୀମାଲ ଯଥାସମ୍ଭବ ପ୍ରବେଶ ନ କରାଇବା ପାଇଁ ଚେଷ୍ଟା ଚାଲିଛି । ଅବଶ୍ୟ ଏହା ସବୁ ବିଦେଶୀ ମାଲକୁ ବାହାରେ ରଖିପାରି ନାହିଁ କାରଣ କୌଣସି ଦେଶ ଆତ୍ମନିର୍ଭରଶୀଳ ନୁହନ୍ତି – ଅର୍ଥାତ୍ ନିଜର ଦରକାରୀ ପ୍ରତ୍ୟେକ ଜିନିଷ ଜାତ କରିପାରୁନାହାନ୍ତି । କିନ୍ତୁ ପ୍ରତ୍ୟେକ ଦରକାରୀ ଜିନିଷ ଜାତ ବା ତିଆରି କରିବାର ଏକ ପ୍ରବୃତ୍ତି ଦେଖାଯାଉଛି । ଜଳବାୟୁ ହେତୁ ଏହା ହୁଏତ କେତେକ ଉପଯୋଗୀ ଜିନିଷ ଜାତ କରିବାରେ ସମର୍ଥ ନ ହୋଇପାରେ । ଦୃଷ୍ଟାନ୍ତ ସ୍ୱରୂପ ଇଂଲଣ୍ଡ କପା, ଝୋଟ, ଚାହା, କଫି ଏବଂ ଅନ୍ୟ ଅନେକ ଜିନିଷ ଉତ୍ପନ୍ନ କରିପାରିବ ନାହିଁ, ଏଥିଲାଗି ଉଷ୍ଣ ଜଳବାୟୁ ଲୋଡ଼ା । ଏହାର ଅର୍ଥ ଭବିଷ୍ୟତରେ ବିଭିନ୍ନ ଜଳବାୟୁ ବିଶିଷ୍ଟ ଦେଶମାନଙ୍କ ଭିତରେ ବେପାର ଅନେକ ପରିମାଣରେ ସୀମାବଦ୍ଧ ରହିବ ଏବଂ ସେହିହେତୁ ବିଭିନ୍ନ ଜିନିଷ ଜାତ ଓ ତିଆରି ହେବ । ଏକାଭଳିଆ ଜିନିଷ ତିଆରି କରୁଥିବା ଦେଶମାନଙ୍କର ପରସ୍ପର ଜିନିଷ କିଛି ବ୍ୟବହାରରେ ଲାଗିବ ନାହିଁ । ତେଣୁ ଏହି ବେପାର ପୂର୍ବପଶ୍ଚିମ ନୁହେଁ, ଉତ୍ତର ଓ ଦକ୍ଷିଣ ଭିତରେ ହେବ କାରଣ ଉତ୍ତର ଓ ଦକ୍ଷିଣର ଜଳବାୟୁ ମଧ୍ୟରେ ପ୍ରଭେଦ ଅଛି । ଏକ ଗ୍ରୀଷ୍ମପ୍ରଧାନ ଦେଶ ସମଶୀତୋଷ୍ଣ ବା ଶୀତପ୍ରଧାନ ଦେଶ ସହିତ କାରବାର କରିପାରେ କିନ୍ତୁ ଦୁଇଟି ଗ୍ରୀଷ୍ମପ୍ରଧାନ ଦେଶ ବା ଦୁଇଟି ସମଶୀତୋଷ୍ଣ ରାଜ୍ୟ ଭିତରେ କାରବାର ହୋଇପାରିବ ନାହିଁ । ଅବଶ୍ୟ ଦେଶର ଖଣିଜ ସମ୍ପଦ ପରି ଅନ୍ୟ ବିଷୟମାନ ଥାଇପାରେ । କିନ୍ତୁ ମୁଖ୍ୟତଃ ଆନ୍ତର୍ଜାତିକ ବାଣିଜ୍ୟରେ ଉତ୍ତର ଓ ଦକ୍ଷିଣ ବିଚାର ପ୍ରଯୁଜ୍ୟ ହେବ । ଅନ୍ୟ ସମସ୍ତ ବାଣିଜ୍ୟ ଶୁଳ୍କ ପ୍ରତିବନ୍ଧକ ଦ୍ୱାରା ସ୍ଥଗିତ କରିଦିଆଯାଇପାରେ ।

ଆଜି ଏକ ଅନିବାର୍ଯ୍ୟ ପ୍ରବୃତ୍ତି ଦେଖାଯାଉଛି । ଏହାକୁ ଶିଳ୍ପ ବିପ୍ଳବର ଅନ୍ତିମ ଲକ୍ଷଣ ବୋଲି କୁହାଯାଏ—ପ୍ରତ୍ୟେକ ଦେଶ ଯଥେଷ୍ଟ ଭାବରେ ଶିଳ୍ପୋନ୍ନତ ହୋଇ ସାରିଛନ୍ତି । ଏହା ସତ୍ୟ ଯେ ଏସିଆ ଓ ଆଫ୍ରିକାରେ ଶିଳ୍ପୋନ୍ନତି ବହୁତ ବାକି ରହିଛି । ଆଫ୍ରିକା ଅତ୍ୟନ୍ତ ଅନୁନ୍ନତ ଓ ଦରିଦ୍ର । ତିଆରି ମାଲ ଯେ କୌଣସି ପରିମାଣରେ ଗ୍ରହଣ କରିବାକୁ ଅସମର୍ଥ । କେବଳ ଭାରତ, ଚୀନ ଓ ସାଇବେରିଆ ଏହି ତିନୋଟି ବିସ୍ତୃତ ଅଞ୍ଚଳରେ ବିଦେଶୀ ମାଲ କାଟତି ହୋଇପାରେ । ଏହି ତିନୋଟି ବଡ଼ ବଜାର ଉପରେ ବିଦେଶୀ ଶିଳ୍ପୋନ୍ନତ ରାଜ୍ୟମାନେ ବ୍ୟଗ୍ର ଭାବରେ ଦୃଷ୍ଟି ପକାଇ ରହିଛନ୍ତି । ଅନ୍ୟ

ସାଧାରଣ ବଜାରମାନଙ୍କରୁ ବିତାଡ଼ିତ ହୋଇ ସେମାନେ ଭାବୁଛନ୍ତି ଯେ 'ଏସିଆ ଭିତରେ ପ୍ରବେଶ' ଦ୍ୱାରା ସେମାନେ ବଳକା ମାଲ ଖଲାସ କରିପାରିବେ ଓ ଏହିରୂପେ ଟଳମଳ ହେଉଥିବା ପୁଞ୍ଜିବାଦକୁ ଠେକ ଦେଇ ରଖିପାରିବେ । କିନ୍ତୁ ଏବେ ଏସିଆକୁ ଶୋଷଣ କରିବା ସେତେ ସହଜ ନୁହେଁ, କାରଣ ଆଂଶିକ ଭାବରେ ଏସିଆର ଶିଳ୍ପବୃଦ୍ଧି ଏବଂ ଆନ୍ତର୍ଜାତିକ ପ୍ରତିଦ୍ୱନ୍ଦ୍ୱିତା ଏଥିରେ ଅନ୍ତରାୟ ହୋଇ ରହିଛି । ଇଂଲଣ୍ଡ ନିଜର ତିଆରି ମାଲର ବଜାର ସକାଶେ ଭାରତକୁ ରଖିବାକୁ ଚାହେଁ କିନ୍ତୁ ଜାପାନ ସଯୁକ୍ତ ରାଷ୍ଟ୍ର ଓ ଜର୍ମାନୀ ମଧ୍ୟ ଏଠିକି ଦୃଷ୍ଟି ପକାନ୍ତି । ସେହିପରି ଚୀନରେ ମଧ୍ୟ ଏବଂ ଏହା ସାଙ୍ଗକୁ ତାର ବର୍ତ୍ତମାନର ଗୋଳମାଳିଆ ବ୍ୟବସ୍ଥା ଓ ଉପଯୁକ୍ତ ଯାତାୟାତ ପଥର ଅଭାବ ବେପାରକୁ କଷ୍ଟକର କରି ପକାଇଛି । ସୋଭିଏଟ ରୁଷକୁ ଯଦି ଭାରି ଦିଆଯାଏ ଓ ସାଙ୍ଗେ ସାଙ୍ଗେ ପରିଶୋଧ କରିବା ନିମନ୍ତେ ଦାବୀ ନ କରାଯିବ ତାହା ହେଲେ ବିଦେଶରୁ ଅନେକ ତିଆରି ଜିନିଷ ନେବାଲାଗି ତାହା ପ୍ରସ୍ତୁତ ଅଛି । କିନ୍ତୁ ଅତିଶୀଘ୍ର ସୋଭିଏଟ ଇଉନିଅନ ତାର ଦରକାରୀ ପ୍ରାୟ ପ୍ରତ୍ୟେକ ଜିନିଷ ତିଆରି କରିବ ।

ଅତୀତରେ ଜାତି ଜାତି ଭିତରେ ଅଧିକ ପରସ୍ପର ପ୍ରତି ନିର୍ଭରଶୀଳତା, ଅଧିକ ଆନ୍ତର୍ଜାତୀୟତା ପ୍ରଭୃତି ଦେଖା ଦେଇଛି । ଯଦିଓ ସ୍ୱତନ୍ତ୍ର ସ୍ୱାଧୀନ ଜାତୀୟ ଦେଶମାନ ରହିଥିଲି ତଥାପି ବିଶାଳ ଓ ଜଟିଳ ଆନ୍ତର୍ଜାତିକ ସମ୍ପର୍କ ଗଠନ ହୋଇଥିଲି ଓ ବେପାର ବୃଦ୍ଧି ପାଇଲି । ଏହି ପ୍ରକ୍ରିୟା ଏତେଦୂର ଗଲି ଯେ ଜାତୀୟ ରାଜ୍ୟ ଓ ଜାତୀୟତା ସହିତ ମଧ୍ୟ ସଙ୍ଘର୍ଷ ଲାଗିଲି । ତତ୍ପରେ ସ୍ୱାଭାବିକ ପରିଣତି ହେଉଛି ସାମ୍ୟବାଦମୂଳକ ଆନ୍ତର୍ଜାତିକ ଗଠନ । ପୁଞ୍ଜିବାଦର ଦିନ ପୂରିଲାଣି ଏବଂ ଏହା ଏପରି ଏକ ଅବସ୍ଥାରେ ପହଞ୍ଚିଛି ଯେତେବେଳେ ସାମ୍ୟବାଦ ଲାଗି ତାର ସ୍ଥାନ ଛାଡ଼ିଦେବା ଉଚିତ । କିନ୍ତୁ ଦୁର୍ଭାଗ୍ୟର କଥା ଏପରି ସ୍ୱେଚ୍ଛାକୃତ ଅବସର ଗ୍ରହଣ କେବେ ହୁଏନା । ସଙ୍କଟ ଓ ପତନର ଧମକ ହେତୁ ଏହା ନିଜ ବେଷ୍ଟନୀ ଭିତରକୁ ଫେରିଯାଏ ଏବଂ ପରସ୍ପର ଉପରେ ନିର୍ଭର କରିବାର ପୂର୍ବ ପ୍ରବୃତ୍ତି ପୁଣି ଆଣିବା ନିମନ୍ତେ ଚେଷ୍ଟା କରେ । ସେହି ହେତୁ ଅର୍ଥନୈତିକ ଜାତୀୟବାଦ ହୁଏ । ବର୍ତ୍ତମାନ ପ୍ରଶ୍ନ ହେଉଛି ଏହା ସଫଳ ହେବ କି ନାହିଁ ଏବଂ ଯଦି ହୁଏ ତେବେ କେତେଦିନ ସକାଶେ ?

ସମଗ୍ର ଦୁନିଆ ଏକ ବିଚିତ୍ର ସମିଶ୍ରଣ ହୋଇଯାଇଛି, ଶୋଷଣ ସଙ୍ଘର୍ଷ ଓ ଇର୍ଷା ପୂରି ରହିଛି ଏବଂ ନୂତନ ପ୍ରବୃତ୍ତିସବୁ ଏହି ସଙ୍ଘର୍ଷ କ୍ଷେତ୍ରକୁ ବଢ଼ାଇଛି । ପ୍ରତ୍ୟେକ ମହାଦେଶରେ, ପ୍ରତ୍ୟେକ ଦେଶରେ ଦୁର୍ବଳ ଓ ଦଳିତ ଲୋକେ ନିଜେ ଜୀବନର ଯେଉଁସବୁ ଭଲ ଜିନିଷ ଜାତ କରିବାରେ ସାହାଯ୍ୟ କରନ୍ତି ସେଥିରେ ଭାଗ ନେବାକୁ ଚାହୁଁଛନ୍ତି । ସେମାନେ ସେମାନଙ୍କର ଋଣ ପରିଶୋଧର ଦାବୀ କରୁଛନ୍ତି, ଦୀର୍ଘ ଦିନରୁ ଏହା ତାଙ୍କର ପ୍ରାପ୍ୟ । କେତେକ ସ୍ଥଳରେ ସେମାନେ ଉଚ୍ଚ ଜୋର କରି ନିଦାରୁଣ ଭାବରେ ଓ ହିଂସ୍ର ଭାବରେ

ଚାଲିଛନ୍ତି; ଅନ୍ୟ କେତେକ ସ୍ଥାନରେ ନୀରବରେ ଚାଲିଛନ୍ତି । ଏତେଦିନ ଧରି ଯେଉଁ ବ୍ୟବହାର ପାଇଛନ୍ତି ଏବଂ ଯେପରି ଶୋଷିତ ହେଉଛନ୍ତି ସେଥିରେ ବିରକ୍ତ ଓ ଯ୍ରଗାନ୍ୱିତ ହୋଇ ସେମାନେ ଆମର ନାପସନ୍ଦ ହେଲା ଭଳି ଢ଼ଙ୍ଗରେ ଯଦି କାର୍ଯ୍ୟ କରନ୍ତି ତେବେ ଆମେ ତାଙ୍କୁ ଦୋଷ ଦେଇ ପାରିବା କି ? ସେମାନେ ଅବହେଳିତ ଓ ଘୃଣିତ ହେଉଥିଲେ; ଆଜିକାଲିକାର ଭଦ୍ରଲୋକ ଧରଣ କେହି କେବେ ତାଙ୍କୁ ଶିଖାଇବାର କଷ୍ଟ କରି ନାହିଁ ।

ଦୁର୍ବଳ ଓ ଦଳିତ ଶ୍ରେଣୀର ଜାଗରଣ ଫଳରେ ପ୍ରତ୍ୟେକ ସ୍ଥାନରେ ଅଧିକାରଭୋଗୀ ଶ୍ରେଣୀ ଉପଦ୍ରୁତ ହୋଇଛନ୍ତି ଏବଂ ଏହା ଦବାଇ ଦେବା ନିମନ୍ତେ ସେମାନେ ମେଳି ବାନ୍ଧୁଛନ୍ତି । ତେଣୁ ଫାସିଜିମ ବୃଦ୍ଧି ପାଉଛି ଓ ସାମ୍ରାଜ୍ୟବାଦ ସମସ୍ତ ବିରୋଧକୁ ଚଳିତଳାନ୍ତ କରୁଛି । ଗଣତନ୍ତ୍ର ଲୋକଙ୍କର ମଙ୍ଗଳ ଓ ମାରଫତଦାରୀ ଆଦି ମଧୁର ବାକ୍ୟ କେଉଁଆଡ଼େ ପଛରେ ପଡ଼ିଗଲାଣି ଏବଂ ଅଧିକାରଭୋଗୀ ଶ୍ରେଣୀ ଓ ସ୍ଥାପିତ ସ୍ୱାର୍ଥଙ୍କର ନଗ୍ନଶାସନ ଅଧିକ ପରିସ୍ଫୁଟ ହୋଇପଡ଼ୁଛି ଏବଂ ଅନେକ ସ୍ଥଳରେ ଏହା ବିଜୟୀ ହେଲାପରି ବୋଧ ହେଉଛି । ଏକ କଠିନଯୁଗ, ଏକ ଲୌହ ଓ ହିଂସାର ଯୁଗ ଦେଖାଦେଉଛି; କାରଣ ପ୍ରତ୍ୟେକ ସ୍ଥାନରେ ପୁରାତନ ବ୍ୟବସ୍ଥା ଓ ନୂତନ ଭିତରେ ଜୀବନ ମରଣ ସଂଗ୍ରାମ ଚାଲିଛି । ଇଉରୋପ ଆମେରିକା ବା ଭାରତ ସର୍ବତ୍ର ସଙ୍କଟ ବଡ଼ ଖାପ୍ରଣ ଏବଂ ପୁରାତନ ଶାସନର ଭାଗ୍ୟ ଝୁଲୁଛି ଯଦିଓ ବର୍ତ୍ତମାନ ଲାଗି ଏହା ଦୃଢ଼ ଭାବରେ ଲାଗି ରହିଥିଲା ପରି ମନେ ହେଉଛି । ଆଂଶିକ ସଂସ୍କାର ଆଜିର ସମସ୍ୟାର ସମ୍ମୁଖୀନ ହୋଇ ପାରୁନାହିଁ ବା ସମାଧାନ କରି ପାରୁନାହିଁ, ସମଗ୍ର ସାମ୍ରାଜ୍ୟବାଦ - ପୁଞ୍ଜିବାଦୀ ବ୍ୟବସ୍ଥାର ମୂଳ ଭିତ୍ତି ଦୋହଲି ଯାଉଛି ଏବଂ ଏହାର ଋଣ ବା ଏଥିପ୍ରତି ହେଉଥିବା ଦାବୀ ବି ପୂରଣ କରି ପାରୁନାହିଁ ।

ଏହିସବୁ ଅଗଣିତ ରାଜନୈତିକ, ଅର୍ଥନୈତିକ ଜାତିଗତ ସଂଘର୍ଷ ଆଜି ଦୁନିଆକୁ ଆଚ୍ଛାଦିତ କରିଛି ଏବଂ ତାହା ସନ୍ନିହିତ ଯୁଦ୍ଧର ଗ୍ରସ୍ତ ବୋଲି ନେଉଛି । କୁହାହେଉଛି ଯେ ସଂଘର୍ଷଗୁଡ଼ିକ ଭିତରେ ସର୍ବଶ୍ରେଷ୍ଠ ଓ ଅତ୍ୟନ୍ତ ମୌଳିକ ହେଉଛି ଏକ ପକ୍ଷରେ ସାମ୍ରାଜ୍ୟବାଦ ଓ ଫାସିଜିମ ଏବଂ ଅନ୍ୟ ପକ୍ଷରେ କମ୍ୟୁନିଜମ ଭିତରେ ଲାଗିଥିବା ସଂଘର୍ଷ । ଏଗୁଡ଼ିକ ସମଗ୍ର ଜଗତରେ ପରସ୍ପରର ସମ୍ମୁଖୀନ ହେଉଛନ୍ତି ଏବଂ ସେମାନଙ୍କ ଭିତରେ ମୀମାଂସାର ସ୍ଥାନ ନାହିଁ । ସାମନ୍ତବାଦ, ପୁଞ୍ଜିବାଦ, ସୋସାଲିଜମ, ସିଣ୍ଡିକାଲିଜମ୍, ଆନାର୍କିଜମ୍ (ଅରାଜକତା), କମ୍ୟୁନିଜମ୍—କେତେ 'ଇଜମ୍' ବା ବାଦ । ଏ ସବୁର ପଶ୍ଚାତରେ ପୁଣି ରହିଛି ସୁବିଧାବାଦ । କିନ୍ତୁ ଆଦର୍ଶବାଦ ବି ରହିଛି; ସମ୍ପା ବିଳାସ ଓ ଅସୀମ କଳ୍ପନା ପ୍ରସୂତ ଆଦର୍ଶବାଦ ନୁହେଁ ମାତ୍ର ଯେଉଁ ଆଦର୍ଶବାଦ ଏକ ମହାନ ମାନବିକ ଉଦ୍ଦେଶ୍ୟ ଲାଗି କାର୍ଯ୍ୟ କରେ, ଏବଂ ଆମେ ଯାହା ବାସ୍ତବରେ କରିବାକୁ ଚାହୁଁ ତାହା କରିବାକୁ ଦିଏ ସେହି ଆଦର୍ଶବାଦ ରହିଛି । ଜର୍ଜ ବାର୍ଣ୍ଣାଡ଼ଶ' ଏକ ସ୍ଥାନରେ କହିଛନ୍ତି—

"ଜୀବନରେ ପ୍ରକୃତ ଆନନ୍ଦ କଣ ? ତାହା ହେଉଛି ତୁମେ ଯେଉଁ ମହାନ୍

ଉଦ୍ଦେଶ୍ୟକୁ ଗ୍ରହଣ କରିଛ, ସେଥିରେ ନିଜର ଜୀବନ ଅର୍ପଣ କରିବା; ତୋତେ ମାଡ଼ିଚକଟି ଦେବା ପୂର୍ବରୁ ତୁ ନିଜର ଶରୀରକୁ ଏହି କାର୍ଯ୍ୟରେ ଲିପ୍ତ କରିଦେ ଏବଂ ପ୍ରକୃତି ହାତରେ ଏକ ଶକ୍ତି ହୋଇ ରହ । ତୁ ବିକାର ଓ ସ୍ୱାର୍ଥ ପୁତ୍ତଳୀ ହୋଇ ନିଜର ଦୁଃଖ ଦୈନ୍ୟପାଇଁ କାନ୍ଦୁଛୁ ଏବଂ କହୁଛୁ ଯେ ଦୁନିଆ ତୋ ପ୍ରତି ଦୃଷ୍ଟି ଦେଉ ନାହିଁ—ସେଥିରେ ଯାଏ କେତେ ଆସେ କେତେ ?"

ଇତିହାସ ଅନୁଶୀଳନ ଦ୍ୱାରା ଆମେ ଦେଖିଛେ ପୃଥିବୀ କିପରି ଅଧିକରୁ ଅଧିକ ଭାବରେ ମିଳିତ ହେଉଛି, କିପରି ବିଭିନ୍ନ ଅଂଶ ଏକାଠି ହୋଇ ପରସ୍ପରର ନିର୍ଭରଶୀଳ ହୋଇଛନ୍ତି । ବାସ୍ତବିକ ପୃଥିବୀ ଏକ ବିରାଟ ଅବିଚ୍ଛେଦ୍ୟ ସମୂହ ହୋଇଛି, ପ୍ରତ୍ୟେକ ଅଂଶ ଅନ୍ୟ ଉପରେ ପ୍ରଭାବ ପକାଉଛି ଏବଂ ସେଥିଦ୍ୱାରା ପ୍ରଭାବିତ ହେଉଛି । ଏବେ ଦେଶ-ମାନଙ୍କର ପୃଥକ ଇତିହାସ ପାଇବା ସମ୍ପୂର୍ଣ୍ଣ ଅସମ୍ଭବ । ଆମେ ସେ ଅବସ୍ଥା ଅତିକ୍ରମ କରିଯାଇଛେ, ଏବଂ ସମସ୍ତ ଦେଶର ବିଭିନ୍ନ ସୂତ୍ରରୁ ସଂଯୋଗ କରି ଓ ଯେଉଁ ବାସ୍ତବ ଶକ୍ତି ସେଗୁଡ଼ିକ ପରିଚାଳନା କରୁଛି ତାକୁ ବାହାର କରିବାକୁ ଚେଷ୍ଟା କରିବାରେହିଁ ପ୍ରକୃତ ପୃଥିବୀ ଇତିହାସ ଲେଖାଯାଇପାରିବ ଏବଂ ଉଦ୍ଦେଶ୍ୟ ସିଦ୍ଧହୋଇ ପାରିବ ।

ଅତୀତକାଳରେ ମଧ୍ୟ ଯେତେବେଳେ ପ୍ରାକୃତିଗତ ଓ ଅନ୍ୟ ପ୍ରତିବନ୍ଧକ ହେତୁ ଏକ ଦେଶ ଅନ୍ୟ ଦେଶ ଠାରୁ ବିଚ୍ଛିନ୍ନ ହୋଇ ରହିଥିଲା । ସେତେବେଳେ କିପରି ସାଧାରଣ ଆନ୍ତର୍ଜାତିକ ଓ ଅନ୍ତର୍ମହାଦେଶୀୟ ଶକ୍ତିସବୁ ଦୁନିଆକୁ ଗଢ଼ିଛି ତାହା ଆମେ ଦେଖିଛେ । ଇତିହାସରେ ଶ୍ରେଷ୍ଠ ବ୍ୟକ୍ତିମାନେ ପୂଜ୍ୟ ହୋଇଛନ୍ତି, କାରଣ ଭାଗ୍ୟ ନିର୍ଣ୍ଣୟର ପ୍ରତ୍ୟେକ ସଙ୍କଟବେଳେ ମାନବହିଁ ପ୍ରଧାନ ଭାଗ ନେଇଛି; କିନ୍ତୁ ବ୍ୟକ୍ତିବିଶେଷ ଅପେକ୍ଷା ଅଧିକ ମହାନ ଓ ବିରାଟ ଶକ୍ତି କାର୍ଯ୍ୟ କରୁଛି, ଯାହା ପ୍ରାୟ ଅନ୍ଧଭାବରେ ଓ ବେଳେ ବେଳେ ନିଷ୍ଠୁରତାର ସହିତ ଆଗକୁ ମାଡ଼ି ଚାଲିଛି, ଆମ୍ଭମାନଙ୍କୁ ଏଣିକି ତେଣିକି ଠେଲି ଦେଉଛି ।

ଆମର ଆଜିର ଅବସ୍ଥା ଏହିପରି । ମହାନଶକ୍ତି କାର୍ଯ୍ୟକରି ଶତ ଶତ ଲକ୍ଷ ଲକ୍ଷ ମାନବର ପ୍ରାଣକୁ ଗତିଶୀଳ କରୁଛି ଏବଂ ସେଗୁଡ଼ିକ ଏକ ଭୂମିକମ୍ପ ବା ପ୍ରକୃତିର ସେହିପରି ଅନ୍ୟ କୌଣସି ଆଲୋଡ଼ନ ପରି ଅଗ୍ରସର ହେଉଛି । ଆମେ ଯେତେ ଚେଷ୍ଟାକରୁ ପଛକେ ଏଗୁଡ଼ିକୁ ବନ୍ଦକରି ପାରିବା ନାହିଁ, ଏବଂ ତଥାପି ଆମର କ୍ଷୁଦ୍ର ଦୁନିଆରେ ଆମେ ଏହାର ବେଗ ବା ନିର୍ଦ୍ଦିଷ୍ଟ ପଥରେ ସାମାନ୍ୟ କିଛି ପରିବର୍ତ୍ତନ କରିପାରିବା । ଆମର ବିଭିନ୍ନ ମନୋଭାବ ଅନୁସାରେ ଆମେ ଏହାର ସମ୍ମୁଖୀନ ହେଉଁ—କେତେକ ଏଥିରେ ଭୟଭୀତ ହୋଇଯାନ୍ତି, କେତେକ ଏହାକୁ ସ୍ୱାଗତ କରନ୍ତି, କେତେକ ଏହା ସହିତ ଲଢ଼ିବାକୁ ଚେଷ୍ଟା କରନ୍ତି ଏବଂ ଆଉ କେତେକ ଭାଗ୍ୟର କରାଳ ଗତିର ତାଡ଼ନା ନିରାଶ୍ରୟ ଭାବରେ ସହ୍ୟ କରନ୍ତି । ଆହୁରି ମଧ୍ୟ କେତେକ ଏହି ଝଡ଼ ଅତିକ୍ରମ କରିବା ନିମନ୍ତେ ଚେଷ୍ଟା

କରନ୍ତି ଓ ଏହାକୁ ସାମାନ୍ୟ ଭାବରେ ନିୟନ୍ତ୍ରଣ ଓ ପରିଚାଳିତ କରନ୍ତି; ସ୍ୱେଚ୍ଛାକୃତ ଭାବରେ ବିପଦର ସମ୍ମୁଖୀନ ହୋଇ ଏହି ବିରାଟ ପ୍ରକ୍ରିୟାରେ କ୍ରିୟାଶୀଳ ଭାବରେ ସାହାଯ୍ୟ କରିବା ଦ୍ୱାରା ଆନନ୍ଦ ଉପଲବ୍ଧି କରନ୍ତି ।

ଏହି ଦୁର୍ଦ୍ଦାନ୍ତ ବିଂଶ ଶତାବ୍ଦୀରେ ଆମର ଶାନ୍ତି ନାହିଁ, ଏହାର ଏକ ତୃତୀୟାଂଶ ଶେଷ ହୋଇଗଲାଣି ଏବଂ ସେଥି ଭିତରେ ଯୁଦ୍ଧ ଓ ବିପ୍ଳବ ପୂର୍ଣ୍ଣମାତ୍ରାରେ ଦେଖା ଦେଇଛି । ପ୍ରଧାନ ଫାସିଷ୍ଟ ମୁସୋଲିନୀ କହିଛନ୍ତି "ସମଗ୍ର ଜଗତ ବିପ୍ଳବ ଭିତରେ ରହିଛି, ଘଟଣାସବୁ ପ୍ରଖର ବେଗରେ ଆମକୁ ଏକ ଅଦମ୍ୟ ଅଭିଳାଷ ପରି ଏଣେ ତେଣେ ଠେଲି ଦେଉଛି ।" ପ୍ରଧାନ କମ୍ୟୁନିଷ୍ଟ ଟ୍ରଟସ୍କି ଆମ୍ଭମାନଙ୍କୁ ମଧ୍ୟ ସତର୍କ ବାଣୀ ଶୁଣାଇଛନ୍ତି ଯେ ଏହି ଶତାବ୍ଦୀରେ ବେଶୀ ଶାନ୍ତି ବା ସ୍ୱାଚ୍ଛନ୍ଦ୍ୟ ପ୍ରତ୍ୟାଶା କରିବ ନାହିଁ । ସେ କହନ୍ତି "ଏହା ପରିଷ୍କାର ଯେ ବିଂଶ ଶତାବ୍ଦୀ ମାନବ ସ୍ମୃତି ଭିତରେ ସର୍ବାପେକ୍ଷା ବିଶୃଙ୍ଖଳିତ ଶତାବ୍ଦୀ । ଏହି କାଳରେ ଯେଉଁ ଲୋକ ଶାନ୍ତି ବା ସ୍ୱଚ୍ଛଳ କାମନା କରେ ସେ ଆଉ କିଛି ହେଉ ନ ହେଉ, ଏକ ଦୁର୍ଦ୍ଦିନରେ ଜନ୍ମଲାଭ କରିଛି ବୋଲି ବିବେଚିବ ।"

ସମଗ୍ର ଦୁନିଆ ପ୍ରସବ ଯନ୍ତ୍ରଣା ଭୋଗୁଛି ଏବଂ ପ୍ରତ୍ୟେକ ସ୍ଥାନରେ ଯୁଦ୍ଧ ଓ ବିପ୍ଳବର ଘନ ଛାୟାପାତ ହୋଇଛି । ଆମର ଏହି ଅନିବାର୍ଯ୍ୟ ଭାଗ୍ୟକୁ ଆମେ ଯଦି ନିଜକୁ ସମ୍ଭାଳି ନ ପାରିବା ତେବେ କିପରି ଏହାର ସମ୍ମୁଖୀନ ହେବା ? ଓଟପକ୍ଷୀ ପରି ଆମେ ଏଥିରୁ ଆମର ମୁଣ୍ଡ ଲୁଚାଇବା କି ? କିମ୍ବା ଘଟଣାକୁ ଆକାର ଦେବାରେ ଆମେ ସାହସିକ ଭାଗ ନେବା ଏବଂ ଦରକାର ପଡ଼ିଲେ ବିପଦ ଓ ସଙ୍କଟର ସମ୍ମୁଖୀନ ହେବା, ମହାନ ଓ ଉଦାର ଦୁଃସାହସର ଆନନ୍ଦ ଉପଭୋଗ କରିବା ଏବଂ ଆମର "ପଦଚିହ୍ନ ଇତିହାସରେ ଲୀନ ହୋଇଯାଉଛି" ବୋଲି ଅନୁଭବ କରିବା ?

ଆମ ଭିତରୁ ସମସ୍ତେ ଅଥବା ଅନ୍ତତଃ ଯେଉଁମାନେ ଚିନ୍ତା କରୁଛନ୍ତି ସେମାନେ ଆଶାନ୍ୱିତ ଭାବରେ ଭବିଷ୍ୟତ ପ୍ରତି ଦୃଷ୍ଟି ପକାଉଛନ୍ତି ଓ ଦେଖୁଛନ୍ତି ଏହା ଗତି କରୁଛି ଏବଂ ବର୍ତ୍ତମାନରେ ପରିଣତ ହେଉଛି । କେତେକ ଏହି ପରିଣତିକୁ ଆଶାର ସହିତ ଓ କେତେକ ଭୟ ମିଶ୍ରିତ ଭାବରେ ଅପେକ୍ଷା କରିଛନ୍ତି । ଏହା ଏକ ସୁନ୍ଦର ଓ ସୁଖକର ଦୁନିଆ ହେବ କି, ଯେଉଁଠି ଜୀବନର ସମସ୍ତ ଭଲ ଜିନିଷ ମୁଷ୍ଟିମେୟଙ୍କ ପାଇଁ ରକ୍ଷିତ ହେବ ନାହିଁ ମାତ୍ର ଜନସାଧାରଣଙ୍କ ମୁକ୍ତ ଭାବରେ ଉପଭୋଗ କରିପାରିବେ କିମ୍ବା ଏହା ଆଜି ଅପେକ୍ଷା ଆହୁରି କଠୋର ଜଗତ ହୋଇ ବାହାରିବ ଯେଉଁଠି ଭୀଷଣ ଓ ଧ୍ୱଂସକାରୀ ଯୁଦ୍ଧଫଳରେ ବର୍ତ୍ତମାନ ସଭ୍ୟତାର ଅନେକ କମନୀୟତା ନଷ୍ଟ ହୋଇ ଯାଇଥିବ ? ଏହି ଉଭୟଙ୍କ ଭିତରେ ଆକାଶ ପାତାଳ ପ୍ରଭେଦ । ହୁଏତ ଦୁଇଟିଯାକ ହୋଇପାରେ, ମାତ୍ର ଏକ ମଧ୍ୟବର୍ତ୍ତୀ ପନ୍ଥା ପ୍ରଚଳିତ ହେବା ଅସମ୍ଭବ ପରି ମନେ ହେଉଛି ।

ଆମେ ଅପେକ୍ଷା ଓ ଇଚ୍ଛା କରୁଥିବା ସଙ୍ଗେ ସଙ୍ଗେ ଯେଉଁପରି ଦୁନିଆ କାମନା

କରୁଛୁ ତାହା ପ୍ରାପ୍ତି ନିମନ୍ତେ କାର୍ଯ୍ୟ ବି କରୁଛୁ । ପ୍ରକୃତିର ଗତିରେ ନିଃସହାୟ ଭାବରେ ବଶ୍ୟତା ସ୍ୱୀକାର କରି ମନୁଷ୍ୟ ତାର ପାଶବିକ ଅବସ୍ଥାରୁ ପ୍ରଗତି କରି ପାରି ନାହିଁ ମାତ୍ର ଅନେକ ସମୟରେ ଏହାକୁ ଅବଜ୍ଞା କରିବା ଦ୍ୱାରା ଏବଂ ମାନବର ମଙ୍ଗଳ ନିମନ୍ତେ ଏହା ଉପରେ କର୍ତ୍ତୃତ୍ୱ କରିବା ଅଭିଳାଷ ରଖିବା ଦରକାର ।

ଆଜିର ଅବସ୍ଥା ଏହିପରି । କାଲି ତିଆରି କରିବା ତୋର ଓ ତୋ ଯୁଗ ଉପରେ ନିର୍ଭର କରେ; ସମଗ୍ର ପୃଥିବୀର ଲକ୍ଷ ଲକ୍ଷ ବାଳକ ବାଳିକା ବୃଦ୍ଧି ପାଉଛନ୍ତି ଏବଂ ଏହି କାଳରେ ଭାର ନେବା ନିମନ୍ତେ ନିଜକୁ ଶିକ୍ଷିତ କରୁଛନ୍ତି ।

## ୧୯୬ : ଶେଷ ଚିଠି

ଅଗଷ୍ଟ ୯, ୧୯୩୩

ଶେଷ ହେଲା, ଦୀର୍ଘ କାହାଣୀ ଶେଷ ହୋଇଛି । ମୋର ଆଉ ଲେଖିବା ଦରକାର ନାହିଁ କିନ୍ତୁ ଏକପ୍ରକାର ଆଡ଼ମ୍ବରସହ ଶେଷ କରିବାର ଆକାଂକ୍ଷା ଆଉ ଏକ ଚିଠି ଲେଖିବା ନିମନ୍ତେ ମୋତେ ପ୍ରବର୍ତ୍ତାଉଛି—ଶେଷ ଚିଠି !

ଠିକ୍ ସମୟରେ ମୁଁ ଏହା ଶେଷ କଲି, କାରଣ ମୋର ଦୁଇବର୍ଷ ଜେଲଦଣ୍ଡ ଶେଷ ହୋଇ ଆସିଲାଣି । ଜେଲର ବେଳେ ବେଳେ ଯେପରି ଆସି କହୁଛନ୍ତି ସେଥିରେ ମୁଁ ଯଦି ଜଲଦି ଖଲାସ ନ ହୁଏ ତେବେ ଆଜଠୁଁ ଠିକ୍ ତେତିଶି ଦିନ ପରେ ଖଲାସ ହେବ । ଦୁଇବର୍ଷ ଏପର୍ଯ୍ୟନ୍ତ ପୂରା ହୋଇ ନାହିଁ, କିନ୍ତୁ ଭଲ ଆଚରଣ କରିଥିବା ବନ୍ଦୀଙ୍କପରି ମୁଁ ମୋର ଶାସ୍ତିର ୩୨ ମାସ ମାଫ (Remission) ପାଇଛି । କାରଣ ମୁଁ ଏକ ସଦାଚାରୀ କଏଦୀ ବୋଲି ଧରାଯାଏ, ଏପରି ଖ୍ୟାତି ପାଇବା ନିମନ୍ତେ ପ୍ରକୃତ ମୁଁ କିଛି କରି ନାହିଁ । ଏହିପରି ମୋର ଷଷ୍ଠ ଥରର ଜେଲ କାଳ ପୂରିଛି ଏବଂ ମୁଁ ପୁନର୍ବାର ବିସ୍ତୃତ ଦୁନିଆକୁ ଯିବି, କିନ୍ତୁ କି ଉଦ୍ଦେଶ୍ୟରେ ? ସେଥିରେ ଲାଭ କଅଣ ? ଯେତେବେଳେ ମୋର ଅଧିକାଂଶ ମିତ୍ର ଓ ସାଥି ଜେଲରେ ଅଛନ୍ତି ଏବଂ ସମଗ୍ର ଦେଶ ଏକ ବୃହତ୍ କାରାଗାର ବୋଲି ବୋଧ ହେଉଛି, ସେଥିରେ ମୁଁ ବାହାରେ ଯାଇ କଣ କରିବି ?

କି ଚିଠିର ପାହାଡ଼ ମୁଁ ଲେଖି ସାରିଲିଣି ! ସ୍ୱଦେଶୀ କାଗଜ ଉପରେ କେତେ ଭଲ ସ୍ୱଦେଶୀକାଳି ଖରଚ କରିଛି । ମୁଁ ଭାବେ ଏହାର କିଛି ମୂଲ୍ୟ ଅଛି କି ? ଏହି କାଗଜ ଓ କାଳି ତୋ ମନରେ ଆଗ୍ରହ ଜାତ କଲାପରି କିଛି ବାଣୀ ପହଞ୍ଚାଇବ କି ? ଅବଶ୍ୟ ତୁ ହିଁ କହିବୁ । କାରଣ ତୁ ମନେ କରିବୁ ଯେ ଆଉ କିଛି ଉତ୍ତର ଦେଲେ ମୋ ମନରେ

ଆରାତ ଆସିବ ଏବଂ ଏତେ ବଡ଼ କାମ କରିବା ପାଇଁ ତୁ କେବେ ଇଚ୍ଛା କରିବୁ ନାହିଁ । କିନ୍ତୁ ଏ ଚିଠିଗୁଡ଼ିକ ତତେ ଭଲ ଲାଗୁ ବା ନ ଲାଗୁ ଏ ଦୀର୍ଘ ଦୁଇବର୍ଷ ଭିତରେ ଦିନ ପରେ ଦିନ ବସି ଏହା ଲେଖିବା ଦ୍ୱାରା ମୁଁ ଯେଉଁ ଆନନ୍ଦଲାଭ କରିଛି ତାହା ଜାଣିଲେ ତୋର ମନରେ ଈର୍ଷା ଜାତ ହେବ । ମୁଁ ଆସିଲା ବେଳକୁ ଶୀତଦିନ ହୋଇଥିଲା, ଶୀତପରେ ଆସିଲା କ୍ଷଣକାଳ ଲାଗି ବସନ୍ତ, ତାହା ମଧ୍ୟ ଗ୍ରୀଷ୍ମର ଉତ୍ତାପରେ ଶୀଘ୍ର ଲୋପ ହୋଇଗଲା; ଏବଂ ତାପରେ ଯେତେବେଳେ ମୃତ୍ତିକା ଶୁଷ୍କ ଓ ରୁକ୍ଷ ହୋଇପଡ଼ିଲା, ମଣିଷ ଓ ପଶୁସବୁ ଆରାମ ପାଇବା ପାଇଁ ବ୍ୟାକୁଳ ରୋଦନ କଲେ ସେତେବେଳେ ବର୍ଷାକାଳ ଆସି ପହଞ୍ଚିଲା; ସାଙ୍ଗରେ ତଟକା ଓ ଶୀତଳ ବର୍ଷାଜଳ ପ୍ରଚୁର ପରିମାଣରେ ବୋହି ଆଣିଲା । ତା ପରେ ଆସିଲା ଶରତ ଋତୁ; ଆକାଶ ଅଦ୍ଭୁତ ଭାବରେ ପରିଷ୍କାର ଓ ନୀଳ ବର୍ଣ୍ଣ ହେଲା ଏବଂ ଅପରାହ୍ଣ ଆମୋଦପ୍ରଦ ହେଲା । ପ୍ରଥମ ବର୍ଷର ଚକ୍ର ଘୂରିଲା ଏବଂ ପୁନର୍ବାର ଏହା ଆରମ୍ଭ ହେଲା ଶୀତ, ବସନ୍ତ, ଗ୍ରୀଷ୍ମ ଓ ବର୍ଷାଋତୁ । ମୁଁ ଏଠି ବସିଛି, ତୋ ପାଖକୁ ଲେଖୁଛି ଏବଂ ତୋ କଥା ଚିନ୍ତା କରୁଛି ଓ ଅତିକ୍ରମ କରିଯାଉଥିବା ସବୁ ଋତୁକୁ ଲକ୍ଷ୍ୟ କରୁଛି ଏବଂ ମୋର ବାରାକ୍ ଛାତଉପରେ ବର୍ଷାର ଟୁପ୍ ଟୁପ୍ ଶବ୍ଦ ଶୁଣୁଛି ।

(ମୂଳ ଫରାସୀରୁ ଅନୂଦିତ)

"ପୃଥିବୀ ଓ ଛାତ ଉପରେ ହେଉଥିବା ବର୍ଷାର ଆରାମଦାୟକ ଶବ୍ଦ ।
ଏବଂ ପୀଡ଼ାଯୁ ଓ ଉତ୍ସୁକ ହୃଦୟ ଲାଗି ଏହି ବର୍ଷାର ସଙ୍ଗୀତ !"

ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ଇଂରେଜ ରାଜନୀତିଜ୍ଞ ବେଞ୍ଜାମିନ ଡିସରେଲି ଲେଖିଛନ୍ତି "ନିର୍ବାସନ ଓ ବନ୍ଦୀ ହୋଇଥିବା ଲୋକେ ବଞ୍ଚିଲେ ହତାଶ ହୁଅନ୍ତି; ବିଦ୍ୱାନ ଲୋକ ଏହି ଦିବସଗୁଡ଼ିକୁ ତାର ଜୀବନର ସର୍ବାପେକ୍ଷା ମଧୁର ଦିବସ ବୋଲି ମନେକରେ ।" ସପ୍ତଦଶ ଶତାବ୍ଦୀର ବିଖ୍ୟାତ ଡଚ୍ ବିଚାରକ ଓ ଦାର୍ଶନିକ ହିଉଗୋ ଗ୍ରୋଟିୟୁସ ସମ୍ବନ୍ଧରେ ସେ ଏହା ଲେଖିଛନ୍ତି । ତାଙ୍କୁ ଯାବଜ୍ଜୀବନ ଜେଲଦଣ୍ଡ ହୋଇଥିଲା କିନ୍ତୁ ଦୁଇବର୍ଷ ପରେ ସେ ଜେଲରୁ ପଳାଇଗଲେ । ଏହି ଦୁଇବର୍ଷ ଜେଲରେ ସେ ଦାର୍ଶନିକ ଓ ସାହିତ୍ୟିକ କାର୍ଯ୍ୟରେ କଟାଇଥିଲେ । ଜେଲ ଯାତ୍ରୀଙ୍କ ମଧ୍ୟରେ ଅନେକ ପ୍ରସିଦ୍ଧ ସାହିତ୍ୟିକ ଅଛନ୍ତି । ସେମାନଙ୍କ ଭିତରେ ବୋଧହୁଏ ସ୍ପେନବାସୀ ଡନ୍ କୁଇକୋସାଟ ଲେଖକ ସର୍ବେନ୍ଟିସ (Cervantes) ଓ ଦ ପିଲଗ୍ରିମ୍ସ ପ୍ରୋଗ୍ରେସ୍ (The Pilgrims Progress) ର ଲେଖକ ଇଂଲଣ୍ଡବାସୀ ଜନ ବନ୍ୟନ ଉତ୍ତମରୂପେ ପରିଚିତ ।

ମୁଁ ସାହିତ୍ୟିକ ନୁହେଁ ଏବଂ ଯେ କେତୋଟି ବର୍ଷ ମୁଁ ଜେଲରେ କଟାଇଛି ତାହା ମୋ ଜୀବନର ମଧୁରକାଳ ବୋଲି କହିବାଲାଗି ପ୍ରସ୍ତୁତ ନୁହେଁ; କିନ୍ତୁ ପଢ଼ା ଓ ଲେଖାରେ ଏହିକାଳ କଟାଇବାରେ ମୋତେ ଅଦ୍ଭୁତ ଭାବରେ ଯେ ସାହାଯ୍ୟ କରିଛି

ଏହା ଅବଶ୍ୟ କହିବାକୁ ହେବ । ମୁଁ ସାହିତ୍ୟିକ ନୁହେଁ କି ଐତିହାସିକ ନୁହେଁ; ବାସ୍ତବିକ ମୁଁ କ'ଣ ? ଏ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ କଷ୍ଟକର । ମୁଁ ଅନେକ ଜିନିଷରେ ମୁଣ୍ଡ ଘୂରାଇଛି; ମୁଁ କଲେଜରେ ବିଜ୍ଞାନ ଆରମ୍ଭ କଲି ଏବଂ ତାହାପରେ ଆଇନ ଧରିଲି ଏବଂ ଜୀବନରେ ଆଉ ଅନେକ ଆଗ୍ରହପ୍ରଦ ଜିନିଷରେ ମନଦେଇ ଶେଷରେ ଭାରତରେ ଅତ୍ୟନ୍ତ ଲୋକପ୍ରିୟ ଓ ବ୍ୟାପକ ଭାବରେ ବ୍ୟବହୃତ ଜେଲଯିବା ପେଶା ଗ୍ରହଣ କଲି !

ମୁଁ ଚିଠିରେ ଯାହାସବୁ ଲେଖିଛି ସେଗୁଡ଼ିକ କୌଣସି ବିଷୟରେ ଶେଷ କଥା ବୋଲି ତୁ ଧରିନେବୁ ନାହିଁ । ରାଜନୀତିଜ୍ଞ ପ୍ରତ୍ୟେକ ବିଷୟରେ ନିଜର ମତ ଦେବାକୁ ଚାହେଁ ଏବଂ ସେ ପ୍ରକୃତରେ ଯାହା ଜାଣିଥାଏ ସର୍ବଦା ତାହାପେକ୍ଷା ବେଶୀ ଜାଣିଥିବାର ଛଳନା କରେ । ତାକୁ ଯତ୍ନସହକାରେ ଜାଣିବାକୁ ହେବ ! ମୋର ଏହିସବୁ ଚିଠି ଉପରଠାଉରିଆ ଛାପ ମାତ୍ର; ଏହାକୁ ଏକ କ୍ଷୀଣ ସୂତ୍ରରେ ଏକତ୍ର କରାଯାଇଛି । ମୁଁ ଭ୍ରମଣକରି ଚାଲିଛି, ଶତାବ୍ଦୀ ଓ ଅନେକ ପ୍ରଧାନ ଘଟଣା ବିଷୟରେ ଅଳ୍ପ ବର୍ଣ୍ଣନା କରିଛି ଏବଂ ପରେ ଯେଉଁ ଘଟଣାରେ ମୋର ଆଗ୍ରହ ଜାତ ହୋଇଛି ବହୁ ସମୟ ଦେଇଛି । ମୋର କେଉଁ କଥା ପସନ୍ଦ, କଣ ନାପସନ୍ଦ, ତୁ ବେଶ ଏଥିରୁ ବୁଝିପାରିବୁ ଏବଂ ସେହିପରି ଜେଲରେ ମୋର ମନୋଭାବ ବି ପ୍ରକାଶ ପାଇଛି । ଏସବୁ ଜିନିଷକୁ ଠିକ ବୋଲି ତୁ ଗ୍ରହଣ କରିବା ମୁଁ ଚାହେଁ ନାହିଁ, ବାସ୍ତବିକ ମୋର ବିବରଣୀରେ ଅନେକ ଭୁଲ ଥାଇପାରେ । ବନ୍ଦୀଶାଳାରେ କୌଣସି ଲାଇବ୍ରେରି ନାହିଁ କିମ୍ବା ପରାମର୍ଶ କରିବା ପାଇଁ ପାଖରେ କୌଣସି ପୁସ୍ତକ ନାହିଁ । ଇତିହାସ ବିଷୟରେ ଲେଖିବା ନିମନ୍ତେ ଏହା ଆଦୌ ଉପଯୋଗୀ ସ୍ଥାନ ନୁହେଁ । ମୋର ବାରବର୍ଷ ପୂର୍ବେ ଜେଲଯାତ୍ରା ଆରମ୍ଭ ହେଲା ଦିନୁ ଯେଉଁ ସବୁ ନୋଟ ଖାତା ଜମା କରିଥିଲି ମୋତେ ବିଶେଷ ଭାବରେ ତାହାରି ଉପରେହିଁ ନିର୍ଭର କରିବାକୁ ପଡ଼ିଛି । ଏଠିକି ମୋ ପାଖକୁ ଅନେକ ପୁସ୍ତକ ଆସିଛି; ସେ ଗୁଡ଼ିକ ଆସେ ଓ ଚାଲିଯାଏ, କାରଣ ମୁଁ ତ ଆଉ ଏଠାରେ ଏକ ଲାଇବ୍ରେରି ସଂଗ୍ରହ କରିପାରିବି ନାହିଁ । ନିର୍ଲଜ ଭାବରେ ମୁଁ ଏହି ସବୁ ବହିରୁ ବିବରଣୀ ଓ ଭାବ ଗ୍ରହଣ କରିଛି; ମୋର ଲେଖାରେ କିଛି ହେଲେ ମୌଳିକତା ନାହିଁ । ସମ୍ଭବତଃ କେଉଁଠି କେଉଁଠି ମୋର ଚିଠି ଗୁଡ଼ିକ ବୁଝିବା ତୋ ପକ୍ଷରେ କଷ୍ଟକର ହୋଇପାରେ ସେ ସବୁ ଗଡ଼ାଇ ପକା, କିଛି ଖାତିର କର ନା । ମୋର ପ୍ରୌଢ଼ଭାବ ବେଳେ ବେଳେ ବାହାରି ପଡ଼ିଛି ଏବଂ ମୋର ଯେପରି ନ ଲେଖିବାର କଥା ସେପରି ଲେଖି ପକାଇଛି ।

ମୁଁ ତତେ କେବଳ ଗୋଟିଏ ନକ୍ସା ଦେଇଛି; ଏହା ଇତିହାସ ନୁହେଁ, ଏହା ଆମର ସୁଦୂର ଅତୀତ ପ୍ରତି ଇଷତ୍ ଦୃଷ୍ଟି ମାତ୍ର । ଇତିହାସରେ ତୋର ଯଦି ଆଗ୍ରହ ଜନ୍ମେ, ତୁ ଯଦି ଇତିହାସକୁ ମନୋମୁଗ୍ଧକର ଭାବୁ ତାହାହେଲେ ଅତୀତ ଯୁଗର ସୂତ୍ର ବାହାର କରିବା ନିମନ୍ତେ ସାହାଯ୍ୟ କରିବାର ଅନ୍ୟ ଅନେକ ପୁସ୍ତକ ତୁ ପାଇ ପାରିବୁ । କିନ୍ତୁ କେବଳ

ପୁସ୍ତକ ପଢ଼ିଲେ ହେବ ନାହିଁ । ତୁ ଯଦି ଅତୀତକୁ ଜାଣିପାରୁ ତାହାହେଲେ ଏଥିପ୍ରତି ସହାନୁଭୂତି ଓ ବୁଝିବା ଦୃଷ୍ଟିରେ ଅନାଇବା ଦରକାର । ଦୀର୍ଘକାଳ ପୂର୍ବେ ବାସ କରିଥିବା କୌଣସି ବ୍ୟକ୍ତିକୁ ବୁଝିବାକୁ ହେଲେ ତାହାର ପାରିପାର୍ଶ୍ୱିକ ଅବସ୍ଥା, ଯେଉଁ ଅବସ୍ଥା ଭିତରେ ସେ ବାସ କରୁଥିଲା, ଯେଉଁ ସବୁ ଭାବ ଧାରା ତାହାର ମନ ଅଧିକାର କରିଥିଲା ତାହା ବୁଝିବା ଦରକାର । ଅତୀତ କାଳରେ ଲୋକେ ସେତିକ ଆମ ଭଳିଆ ରହିଥିଲେ ଏବଂ ଆମ ପରି ଚିନ୍ତା କରୁଥିଲେ ଏପରି ବିଚାର କରିବା ଆମ ପକ୍ଷରେ ନିର୍ବୋଧତା । ଆଜି କେହି ଦାସତ୍ୱକୁ ପସନ୍ଦ କରୁ ନାହିଁ ଅଥଚ ପ୍ଲେଟୋ ଦାସତ୍ୱକୁ ଉପଯୋଗୀ ବୋଲି କହିଥିଲେ । ଏବକାଳର ସଂଯୁକ୍ତ ରାଷ୍ଟ୍ରରେ ଦାସତ୍ୱ ରକ୍ଷା କରିବା ପ୍ରଚେଷ୍ଟାରେ ହଜାର ହଜାର ଜୀବନ ନଷ୍ଟ ହୋଇ ଯାଇଛି । ବର୍ତ୍ତମାନ ମାପ ଅନୁସାରେ ଆମେ ଅତୀତକୁ ବିଚାର କରି ପାରିବା ନାହିଁ । ପ୍ରତ୍ୟେକ ଲୋକ ସ୍ୱେଚ୍ଛାରେ ଏହା ସ୍ୱୀକାର କରିବ । କିନ୍ତୁ ଅତୀତର ଷ୍ଟାଣ୍ଡାର୍ଡ ଅନୁସାରେ ବର୍ତ୍ତମାନକୁ ବିଚାର କରିବାର ଅଳୀକ ଅଭ୍ୟାସ କଥା କେହି ସ୍ୱୀକାର କରିବେ ନାହିଁ । ବିଭିନ୍ନ ଧର୍ମସବୁ ବିଶେଷ ଭାବରେ ପୁରାତନ ବିଶ୍ୱାସ ଓ ଗତିମତିକୁ ବଦ୍ଧମୂଳ କରିବାରେ ସାହାଯ୍ୟ କରିଛି । ଏହା ଯେଉଁ ସମୟରେ ଓ ଯେଉଁ ଦେଶରେ ଜାତ ହୋଇଥିଲା ସେତେବେଳେ ହୁଏତ ଏହାର କିଛି ଉପକାରିତା ଥାଇ ପାରିଥାଏ, କିନ୍ତୁ ଆମର ବର୍ତ୍ତମାନ ଯୁଗରେ ଏହା ଏକାନ୍ତ ଅନୁପଯୋଗୀ ।

ତେଣୁ ତୁ ଯଦି ଅତୀତର ଇତିହାସକୁ ସହାନୁଭୂତି ଦୃଷ୍ଟିରେ ଦେଖିବୁ ତେବେ ଶୁଷ୍କ ଅସ୍ଥିସବୁ ରକ୍ତମାଂସପୂର୍ଣ୍ଣ ପରି ବୋଧ ହେବ ଏବଂ ତୁ ଦେଖିବୁ ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ଦେଶରେ ଜୀବନ୍ତ ନରନାରୀ ଓ ବାଳକ ବାଳିକାଙ୍କ ଏକ ବିରାଟ ଶୋଭାଯାତ୍ରା ଚାଲିଛି । ସେଗୁଡ଼ିକ ଆମଠାରୁ ସ୍ୱତନ୍ତ୍ର ଅଥଚ ଠିକ୍ ଆମରି ପରି, ଏକ ମାନବିକ ଦୋଷଗୁଣ ବି ରହିଛି । ଇତିହାସ କିଛି ଯାଦୁକର ନୁହେଁ, କିନ୍ତୁ ଯେଉଁମାନଙ୍କର ଦେଖିବା ଭଳି ଆଖି ଅଛି ସେମାନେ ଏଥିରେ ଯଥେଷ୍ଟ ଯାଦୁ ଦେଖି ପାରିବେ ।

ଇତିହାସର ଅସଂଖ୍ୟ ଚିତ୍ର ଆମର ମନ ଅଧିକାର କରିଛି । ଇଜିପ୍ଟ—ବେବିଲୋନ—ନିନେଭ—ପୁରାତନ ଭାରତୀୟ ସଭ୍ୟତା—ଆର୍ଯ୍ୟମାନଙ୍କର ଭାରତ ଆଗମନ ଓ ଇଉରୋପ ଏସିଆରେ ବିସ୍ତୃତି—ଚୀନା ସଂସ୍କୃତିର ବିସ୍ମୟକର ବିବରଣୀ—ନୋସସ ଓ ଗ୍ରୀସ୍—ରୋମ ଓ ବିଜାଣ୍ଟିୟମ—ଦୁଇ ମହାଦେଶରେ ଆରବମାନଙ୍କର ବିଜୟ ଯାତ୍ରା—ଭାରତୀୟ ସଂସ୍କୃତିର ପୁନର୍ଜାଗରଣ ଓ ତା'ର ଧ୍ୱଂସ—ଆମେରିକାର ସ୍ୱଳ୍ପ ବିଦିତ ମାୟା ଓ ଆଜଟେକ ସଭ୍ୟତା—ମଙ୍ଗୋଲମାନଙ୍କର ବିରାଟ ବିଜୟ କାହାଣୀ—ଇଉରୋପରେ ମଧ୍ୟଯୁଗ ଓ ଅଦ୍ଭୁତ ଗୋଥିକ ଧର୍ମଗୀର୍ଜା ସବୁ—ଭାରତକୁ ଇସଲାମର ଆଗମନ ଓ ମୋଗଲ ସାମ୍ରାଜ୍ୟ—ପଶ୍ଚିମ ଇଉରୋପରେ ଶିକ୍ଷା ଓ କଳାର ପୁନର୍ଜାଗରଣ—ଆମେରିକା ଓ ପ୍ରାଚ୍ୟକୁ ଜଳପଥର ଆବିଷ୍କାର—ପ୍ରାଚ୍ୟରେ ପାଶ୍ଚାତ୍ୟ ଆକ୍ରମଣ ଆରମ୍ଭ—ବଡ଼ ମେସିନର୍ ଆଗମନ ଓ ପୁଞ୍ଜିବାଦର

ଅଭିବୃଦ୍ଧି ଶିଳ୍ପୋଦ୍ୟୋଗର ବିସ୍ତାର—ଇଉରୋପର ପ୍ରାଧାନ୍ୟ ଏବଂ ସାମ୍ରାଜ୍ୟବାଦ—ଏବଂ ଆଧୁନିକ ଜଗତରେ ବିଜ୍ଞାନର ବୈଚିତ୍ର୍ୟ ।

ବିଶାଳ ସାମ୍ରାଜ୍ୟସବୁ ଉଠିଛି ଏବଂ ପତନ ହୋଇଛି ଏବଂ ହଜାର ହଜାର ବର୍ଷ ହେଲା ଲୋକ ତାହା ଭୁଲି ଯାଇଛି; ଆବିଷ୍କାରକମାନେ ତାହା ଉପରେ ଆଚ୍ଛାଦିତ ହୋଇଥିବା ବାଲୁକାରାଶିମାନଙ୍କ ମଧ୍ୟରୁ ଖୋଳି ତା'ର ଅବଶେଷ ବାହାର କରୁଛନ୍ତି । ତଥାପି ଅନେକ ଧାରଣା, ଅନେକ ରୁଚି ରହି ଯାଇଛି ଏବଂ ସାମ୍ରାଜ୍ୟ ଅପେକ୍ଷା ଅଧିକ ବଳବାନ ଓ ଅଧିକ ଦୃଢ଼ ବୋଲି ପ୍ରମାଣିତ ହୋଇଛି ।

ମେରି କୋଲେରିଜ ଗାଇଛନ୍ତି:—

"ଗ୍ରିଚନାର ଅତଳ ଗର୍ଭରେ ମିଶରର ଶକ୍ତି ବିଲୁଣ୍ଠିତ;
ନାହିଁ ଗ୍ରୀସ—ନାହିଁ ଆଜି ଟ୍ରୟ—ସେ ରୋମର ଗୌରବ ମୁକୁଟ
ଧ୍ୱସ୍ତ ଆଜି ସେ ଭେନିସ ଉଚ୍ଚ ଗର୍ବୋନ୍ନତ ।
ସବୁ ଯାଇ ରହିଛି ସେ ସ୍ୱପ୍ନ—ତାର ଶିଶୁ ଦେଖିଥିଲି ଯାହା,
ସାରହୀନ କ୍ଷଣିକ ନିଷ୍ଫଳ ଗ୍ରୀଷ୍ମାପରି ସାଜଥିଲା କାୟା
ରୂପହୀନ ରୂପ ନେଲା—ଚିର ଅଛି ତାହା ।"

(ଅନୁବାଦ—ଚିତ୍ତରଞ୍ଜନ ଦାସ)

ଅତୀତ ଆମକୁ ଅନେକ ଦାନ ଦେଇଛି; ବାସ୍ତବିକ ଆମର ଯାହା ଅଛି—ସଂସ୍କୃତି, ସଭ୍ୟତା, ବିଜ୍ଞାନ ବା ସତ୍ୟର କେତେକ ବିଷୟର ଜ୍ଞାନ ସବୁ ଆମକୁ ସୁଦୂର ଓ ନିକଟ ଅତୀତର ଦାନ । ଅତୀତ ପ୍ରତି ଆମର ବନ୍ଧନ ସ୍ୱୀକାର କରିବା ହିଁ ଠିକ୍ । କିନ୍ତୁ ଅତୀତ ଆମର କର୍ତ୍ତବ୍ୟ ବା ଦାୟିତ୍ୱ କ୍ଷୟ କରେ ନା । ଆମର ଭବିଷ୍ୟତ ପ୍ରତି ବି ଏକ କର୍ତ୍ତବ୍ୟ ରହିଛି ଏବଂ ସମ୍ଭବତଃ ଆମର ଅତୀତ ଅପେକ୍ଷା ଏଥିପ୍ରତି ଦାୟିତ୍ୱ ଖୁବ୍ ଅଧିକ । କାରଣ ଅତୀତ ଅତୀତ ହୋଇଯାଇଛି, ଶେଷ ପାଇଛି, ଆମେ ଏହାକୁ ବଦଳାଇ ପାରିବା ନାହିଁ; ଭବିଷ୍ୟତ ଏବେ ଆସିବାର ଅଛି ଏବଂ ସମ୍ଭବତଃ ଏହାକୁ ଆମେ ଟିକିଏ ଆକୃତି ଦେଇପାରିବା । ଅତୀତ ଆମକୁ ସତ୍ୟର କେତେକ ଅଂଶ ଦେଇଛି, ତଥାପି ସତ୍ୟର ଅନେକ ଭାଗ ଭବିଷ୍ୟତରେ ଛପି ରହିଛି ଏବଂ ସେଗୁଡ଼ିକ ଅନୁସନ୍ଧାନ କରିବା ନିମନ୍ତେ ଆମକୁ ନିମନ୍ତ୍ରଣ କରୁଛି । କିନ୍ତୁ ଅନେକ ସମୟରେ ଅତୀତ ଭବିଷ୍ୟତକୁ ଈର୍ଷା କରେ ଏବଂ ଆମକୁ ଏହା ଭୟାନକ ଆକର୍ଷଣରେ ବାନ୍ଧିଦିଏ ଏବଂ ଏଥିରୁ ମୁକ୍ତ ହେବା ନିମନ୍ତେ ଓ ଭବିଷ୍ୟତ ପ୍ରତି ସମ୍ମୁଖୀନ ହୋଇ ଅଗ୍ରସର ହେବା ନିମନ୍ତେ ଆମକୁ ସଂଗ୍ରାମ କରିବାକୁ ପଡ଼େ ।

କୁହାଯାଏ ଇତିହାସରୁ ଆମର ଅନେକ ବିଷୟ ଶିଖିବାର ରହିଛି ଏବଂ ଆଉ ଏକ ପ୍ରବଚନ ରହିଛି ଯେ ଇତିହାସର କେବେ ପୁନରୁକ୍ତି ହୁଏ ନା । ଦୁଇଟିଯାକ ବିଷୟ ସତ୍ୟ,

କାରଣ ଆମେ ଦାସ ଭାବରେ ଏହାକୁ ଅନୁକରଣ କରିବାରେ ବା ଏହା ଆପଣାଛାଏଁ ଫେରି ଆସିବ ଅଥବା ନିଶ୍ଚଳ ହୋଇ ରହିବ ବୋଲି ଆଶା କରିବାରେ ଏଥିରୁ କିଛି ଶିଖିପାରିବା ନାହିଁ; କିନ୍ତୁ ଆମେ ଏହା ପଶ୍ଚାତ୍ତରେ ଗତି କଲେ ଏବଂ ଯେଉଁସବୁ ଶକ୍ତି ଏହାକୁ ଗତିଶୀଳ କରାଉଛି ତାହା ଆବିଷ୍କାର କରିବାର ଚେଷ୍ଟାକଲେ ଏଥିରୁ କିଛି ଶିକ୍ଷା କରିପାରିବା । ଏହା ହୋଇ ସୁଦ୍ଧା ଆମେ ଯାହା ବା ପାଉଛେ ତାହା ପ୍ରାୟ ସିଧା ଜବାବ ନୁହେଁ । କାର୍ଲ ମାର୍କସ୍ କହନ୍ତି "ନୂତନ ପ୍ରଶ୍ନ ପଚାରିବା ବ୍ୟତୀତ ପୁରୁଣା ପ୍ରଶ୍ନର ଜବାବ ଆଉ କୌଣସି ଉପାୟରେ ଇତିହାସରୁ ମିଳେ ନା ।"

ପୁରାତନ କାଳ ଥିଲା ବିଶ୍ୱାସ, ଅନ୍ଧ ଓ ନିଃସନ୍ଦେହ ବିଶ୍ୱାସର ଯୁଗ । କାରିଗର, ନିର୍ମାତା ଓ ଲୋକମାନଙ୍କର ଅତ୍ୟଧିକ ବିଶ୍ୱାସ ନ ଥିଲେ ଅତୀତ ଶତାବ୍ଦୀର ବୈଚିତ୍ର୍ୟପୂର୍ଣ୍ଣ ମନ୍ଦିର, ମସ୍‌ଜିଦ ଓ ଧର୍ମଗିର୍ଜା ସବୁ କେବେହେଁ ନିର୍ମିତ ହୋଇପାରି ନ ଥାନ୍ତା । ଯେଉଁସବୁ ପଥର ଭକ୍ତିପୂର୍ଣ୍ଣ ଭାବରେ ସେମାନେ ଗୋଟିକ ଉପରେ ଗୋଟିଏ ରଖିଛନ୍ତି କିମ୍ବା ଯେଉଁଥିରେ ସୁନ୍ଦର ଚିତ୍ର ଖୋଳିଛନ୍ତି ସେଥିରୁ ତାଙ୍କର ବିଶ୍ୱାସ ଜଣାପଡ଼େ । ପୁରାତନ ମନ୍ଦିର ଚୂଡ଼ା, ମସଜିଦ୍‌ର କୃଶ ଚୂଡ଼ା, ଗୋଥିକ ଧର୍ମଗିର୍ଜା– ସବୁ ଉଚ୍ଚକୁ ନିର୍ଦ୍ଦିଷ୍ଟ ହୋଇ ଅଦ୍ଭୁତ ଓ ଅପୂର୍ବ ଭକ୍ତିର ପରାକାଷ୍ଠା ସୂଚାଉଛି– ପ୍ରତ୍ୟେକ ଏକ ପଥର ବା ମାର୍ବଲ ଉପରେ ଛିଡ଼ାହୋଇ ଉଚ୍ଚ ଆକାଶକୁ ପ୍ରାର୍ଥନା କରୁଛି—ଏହାସବୁ ଏବେ ବି ଆମଠାରେ ଶିହରଣ ଜାତ କରାଉଛି, ଯଦିଓ ସେସବୁ ଯେଉଁ ପୁରାତନ ବିଶ୍ୱାସର ପ୍ରତିବିମ୍ବ ତାହା ଆମଠାରେ ଆଜି ନାହିଁ । କିନ୍ତୁ ସେହି ବିଶ୍ୱାସର ଦିନ ଯାଇଛି ଏବଂ ତାହା ସହିତ ପଥରର ଯାଦୁକର ସ୍ପର୍ଶ ବି ଯାଇଛି । ହଜାର ହଜାର ମନ୍ଦିର, ମସଜିଦ୍ ଓ ଧର୍ମ ଗିର୍ଜା ତିଆରି ଚାଲିଛି, କିନ୍ତୁ ମଧ୍ୟଯୁଗରେ ଯେଉଁ ଆତ୍ମା ତାକୁ ବଞ୍ଚାଇ ରଖିଥିଲା ତାହା ସେଥିରେ ନାହିଁ । ଏଗୁଡ଼ିକ ଓ ଆମ ଯୁଗର ପ୍ରତିନିଧି ବାଣିଜ୍ୟ ଅଫିସ ଭିତରେ ଆଦୌ ସାମଞ୍ଜସ୍ୟ ନାହିଁ ।

ଆମ ଯୁଗ ଏକ ସ୍ୱତନ୍ତ୍ର; ଏହା ବିଭ୍ରାନ୍ତି, ସନ୍ଦେହ ଅନିଶ୍ଚିତତା ଓ ତର୍କର ଯୁଗ । ଆମେ ପୁରାକାଳର ଅନେକ ବିଶ୍ୱାସ ଓ ରୀତିକୁ ଆଉ ଗ୍ରହଣ କରି ପାରିବା ନାହିଁ; ଆମର ସେଥିରେ ଆଉ ବିଶ୍ୱାସ ନାହିଁ; ଏସିଆ, ଇଉରୋପ ଓ ଆମେରିକା ବି ନାହିଁ । ତେଣୁ ଆମର ପାରିପାର୍ଶ୍ୱିକ ଅବସ୍ଥା ସହ ଅଧିକ ସାମଞ୍ଜସ୍ୟ ରଖୁଥିବା ସତ୍ୟର ନୂତନ ବିଭାଗ ନୂତନ ଉପାୟ ଖୋଜୁଁ, ଆମେ ପରସ୍ପରକୁ ପ୍ରଶ୍ନ କରୁ; ତର୍କ ଓ କଳହ କରୁ ଏବଂ ଯେତେ ସଂଖ୍ୟକ "ବାଦ" ଓ ଦର୍ଶନ ବାହାର କରୁ । ସକ୍ରେଟିସଙ୍କ କାଳପରି ଆମେ ଏକ ପ୍ରଶ୍ନ କରିବା ଯୁଗରେ ବାସ କରୁଛେଁ; କିନ୍ତୁ ଏହି ପ୍ରଶ୍ନ କରିବା ଏଥେନ୍‌ସ ପରି ଏକ ସହରରେ ଆବଦ୍ଧ ନୁହେଁ— ଏହା ପୃଥିବୀବ୍ୟାପୀ ।

ବେଳେ ବେଳେ ପୃଥିବୀର ଅନ୍ୟାୟ, ଅସୁଖ ଓ ପାଶବିକତା ଆମ ମନରେ କଷ୍ଟ ଦିଏ ଓ ଆମର ମନ ଅନ୍ଧକାରମୟ କରି ପକାଏ, ଏବଂ ଆମେ ଅନ୍ୟ କୌଣସି ପନ୍ଥା ଦେଖି

ପାରୁନା । ମାଥ୍ୟୁ ଆର୍ନଲଡ଼ଙ୍କ ପରି ଆମେ ବୋଧ କରୁ ଯେ ପୃଥିବୀରେ ଆଉ କିଛି ଆଶା ନାହିଁ ଏବଂ ଆମର ପରସ୍ପର ପ୍ରତି ସଚ୍ଚୋଟ ହେବା ଦରକାର ।

"ସମ୍ମୁଖେ ଯେ ଧରଣୀ ବିସ୍ତୃତ
ସ୍ୱପ୍ନ ରାଜ୍ୟ—ବିଚିତ୍ର, ସୁନ୍ଦର—ଅଭିନବ ହେଉଛୁ ପ୍ରତ୍ୟୟ,
ପ୍ରେମ ନାହିଁ, ନାହିଁ ତା ଆନନ୍ଦ—ତା ଆଲୋକ ଲଭିଚି ବିଳୟ,
ଶାନ୍ତି ନାହିଁ—ନାହିଁ ଯେ ପ୍ରତ୍ୟୟ—ଯନ୍ତ୍ରଣାରେ ହୁଏନା ସହାୟ;
"ଅନ୍ଧକାର ଆଚ୍ଛନ୍ନ ଜଗତ,
ସଂଘର୍ଷ ଓ ପରାଜୟ ବିହ୍ୱଳତା ନଶ୍ୱେ ସତତ,
ଅନ୍ଧକାରେ ଜ୍ଞାନହୀନ ସେନା ଅନ୍ଧପରି ହୁଏ ହଣାହଣି,
ଜଗତର ବାସ୍ତବ ରୂପ ଏ—ଏ ଜଗତେ ବଞ୍ଚୁ ଆମେ ପ୍ରାଣୀ ।"

ତଥାପି ଆମେ ଯଦି ଜୀବନର ଏପରି ଏକ ବିଷାଦପୂର୍ଣ୍ଣ ଦୃଷ୍ଟି ଗ୍ରହଣ କରୁ ତେବେ କହିବାକୁ ହେବ ଆମେ ଜୀବନ ବା ଇତିହାସରୁ ଉପଯୁକ୍ତ ଶିକ୍ଷାଲାଭ କରିନାହୁଁ । କାରଣ ଇତିହାସ ଆମକୁ ବୃଦ୍ଧି, ପ୍ରଗତି ଓ ମନୁଷ୍ୟ ପକ୍ଷରେ ଏକ ଅସୀମ ଅଗ୍ରଗତି ସମ୍ଭାବନାର ଶିକ୍ଷା ଦିଏ । ଜୀବନ ସମ୍ପଦଶାଳୀ ଓ ବିଭିନ୍ନ ଏବଂ ଯଦିଓ ଏହାର ସନ୍ତସନ୍ତିଆ ଓ କର୍ଦ୍ଦମାକ୍ତ ସ୍ଥାନସବୁ ରହିଛି, ଏହାର ବିରାଟ ସାଗର ବି ଅଛି ଏବଂ ଏଥିରେ ପର୍ବତମାଳା, ବରଫ, ତୁଷାର ଖଣ୍ଡ, ବିଚିତ୍ର ନକ୍ଷତ୍ର ଖଚିତ ରାତି (ବିଶେଷତଃ ଜେଲରେ) ଏବଂ ରବିବାର ଓ ବନ୍ଧୁମାନଙ୍କ ପ୍ରୀତି; ଏକ ସାଧାରଣ ଉଦ୍ଦେଶ୍ୟରେ କର୍ମୀମାନଙ୍କ ଭିତରେ ଭ୍ରାତୃଭାବ, ସଙ୍ଗୀତ, ପୁସ୍ତକ ଓ ଭାବ-ସାମ୍ରାଜ୍ୟ ରହିଛି । ତାହାହେଲେ ଆମ ଭିତରୁ ପ୍ରତ୍ୟେକେ କହିପାରନ୍ତି—

"ଏ ଜଗତେ ବଞ୍ଚିଲି ଜୀବନ, ଧରଣୀର ପାଳିତ ସନ୍ତାନ,
ଥିଲି କିନ୍ତୁ ତାରକା ଖଚିତ ଆକାଶ ମୋ ପିତା ଭଗବାନ ।"

ବିଶ୍ୱ ବ୍ରହ୍ମାଣ୍ଡର ସୌନ୍ଦର୍ଯ୍ୟକୁ ପ୍ରଶଂସା କରିବା ଏବଂ ଏକ ଚିନ୍ତା ଓ କଳ୍ପନା ଜଗତରେ ବାସ କରିବା ସହଜ । କିନ୍ତୁ ଏପରି ଭାବରେ ଅନ୍ୟମାନଙ୍କର ଦୁଃଖ ଶୋକରୁ ଦୂରରେ ରହିବାର ଚେଷ୍ଟା କରିବା, ସେମାନଙ୍କର କଣ ଘଟୁଛି ସେଥିପ୍ରତି ଖାତିର ନ କରିବା ଏକ ସାହସ ବା ସାହଚର୍ଯ୍ୟ ଭାବର ଚିହ୍ନ ନୁହେଁ । ଚିନ୍ତାକୁ ନିଜର ଯଥାର୍ଥତା ପ୍ରତିପାଦନ କରିବାକୁ ହେଲେ କାର୍ଯ୍ୟ ହେବା ଦରକାର । ଆମର ମିତ୍ର ରୋମାରୋଲାଁ କହିଛନ୍ତି "କାର୍ଯ୍ୟ ହେଉଛି ଚିନ୍ତାର ଅନ୍ତ, ଯେଉଁସବୁ ଚିନ୍ତା କାର୍ଯ୍ୟ ପ୍ରତି ଦୃଷ୍ଟି ଦିଏ ନା, ଯାହା ଏକ ଅପରିପକ୍ୱ ପଦାର୍ଥ ଓ ବିଶ୍ୱାସଘାତକତା । ଆମେ ଯଦି ଚିନ୍ତାର ଦାସ ହୋଇଥାଉ ତେବେ ଅବଶ୍ୟ କାର୍ଯ୍ୟର ଦାସ ହେବାକୁ ପଡ଼ିବ ।"

ଲୋକେ ଅନେକ ସମୟରେ ପରିଣତି ଭୟରେ କାର୍ଯ୍ୟର ଅବହେଳା କରନ୍ତି, କାରଣ କାର୍ଯ୍ୟ ଅର୍ଥ ବିପଦ ଓ ସଙ୍କଟ । ଦୂରରୁ ବିପଦ ଭୀଷଣ ପରି ମନେହୁଏ; ତମେ ଏହାର ନିକଟରେ ଦୃଷ୍ଟିପାତ କଲେ ଏତେ ଖରାପ ବୋଧ ହେବ ନାହିଁ । ଏହା ଅନେକ ସମୟରେ ଏକ ଆନନ୍ଦଦାୟକ ସହଚର, ଜୀବନର ଆନନ୍ଦ ଓ ଆସ୍ୱାଦନକୁ ବୃଦ୍ଧି କରେ । ବେଳେ ବେଳେ ଜୀବନର ସାଧାରଣ ଗତି ନିର୍ବେଦ ହୋଇଯାଏ ଏବଂ ଆମେ ଅନେକ ଜିନିଷକୁ ସେମିତି ପାଇଯାଉ ଏବଂ ସେଥିରେ କୌଣସି ଆନନ୍ଦ ନ ଥାଏ । ତଥାପି ଆମେ କିଛିକ୍ଷଣ ହେଲା ଏହା ବ୍ୟତିରେକେ ବଞ୍ଚିଥିଲେ ପୁଣି ଜୀବନର ଏହି ସାଧାରଣ ଜିନିଷଗୁଡ଼ିକୁ କିପରି ପସନ୍ଦ କରୁ ! ଅନେକ ଲୋକ ଆରୋହଣରେ ଆନନ୍ଦ ଓ ବିପଦ ଅତିକ୍ରମ କରିବାରେ, ଅସୁବିଧା ପାର ହୋଇ ଯିବାର ଉଲ୍ଲାସ ପ୍ରାପ୍ତି ନିମନ୍ତେ ଉଚ୍ଚ ପର୍ବତ ଉପରକୁ ଯାଆନ୍ତି ଓ ଜୀବନ ଏବଂ ଶରୀର ବିପଦ ମୁଖରେ ନିକ୍ଷେପ କରନ୍ତି । ତାଙ୍କର ଚତୁର୍ଦ୍ଦିଗରେ ବିପଦ ଦୋଲାୟମାନ ହେଉଥିବା ହେତୁ ସେମାନଙ୍କର ଦୃଷ୍ଟିବିନ୍ଦୁ ତୀକ୍ଷ୍ଣ ହୋଇଯାଏ, ତାଙ୍କର ଜୀବନର ଆନନ୍ଦ ସୂତା ଅଗରେ ଝୁଲୁଥାଏ, ତାହା ଅଧିକ ତୀବ୍ର ହୋଇଯାଏ ।

ଆମ ସମସ୍ତିଙ୍କି ବାଛିନେବାକୁ ହେବ; ଆମେ ପାତାଳପୁରୀରେ ନିମ୍ନପାତାଳପୁରୀ—ଅସ୍ୱାସ୍ଥ୍ୟକର କୁହୁଡ଼ି ଓ ଆଚ୍ଛାଦନ ଭିତରେ ଯେଉଁଠି କେତେକ ପରିମାଣରେ ନିଜର ଶାରୀରିକ ନିରାପତ୍ତା ଛଡ଼ା ଆଉ କିଛି ନାହିଁ ସେଠି ବାସ କରିବା ନା ବିପଦ ଓ ସଙ୍କଟକୁ ସାଥୀ କରି ଉଚ୍ଚ ଗିରି ଆରୋହଣ କରିବା, ଉପରେ ନିର୍ମଳ ବାୟୁ ସେବନ କରିବା ଏବଂ ସୁଦୂର ଦୃଶ୍ୟ ଦେଖି ଆନନ୍ଦ ଅନୁଭବ କରିବା ଏବଂ ଉଦୀୟମାନ ସୂର୍ଯ୍ୟର ସ୍ୱାଗତ କରିବା ।

ଏହି ଚିଠିରେ ମୁଁ କବି ଓ ଅନ୍ୟମାନଙ୍କର ଅନେକ ଲେଖା ଉଦ୍ଧୃତ କରିଛି । ମୁଁ ଆଉ ଗୋଟିକରେ ଏହା ଶେଷ କରିବ । ଏହା ଗୀତାଞ୍ଜଳୀରେ ଅଛି; ଏହା ରବୀନ୍ଦ୍ରନାଥ ଠାକୁରଙ୍କ ଲିଖିତ ଏକ କବିତା ବା ପ୍ରାର୍ଥନା:—

"ଚିତ୍ତ ଯେଥା ଭୟଶୂନ୍ୟ ଉଚ୍ଚ ଯେଥା ଶିର
ଜ୍ଞାନ ଯେଥା ମୁକ୍ତ, ଯେଥା ଗୃହେର ପ୍ରାଚୀର
ଆପନ୍ ପ୍ରାଙ୍ଗନ ତଲେ ଦିବସ ଶର୍ବରୀ
ବସୁଧାରେ ରାଖେ ନାଇ ଖଣ୍ଡ କ୍ଷୁଦ୍ର କରି,
ଯେଥା ବାକ୍ୟ ହୃଦୟେର ଉତ୍ସମୁଖ ହୋତେ
ଉଚ୍ଛସିୟା ଓଠେ, ଯେଥା ନିର୍ବାରିତ ସ୍ରୋତେ
ଦେଶେ ଦେଶେ ଦିଶେ ଦିଶେ କର୍ମଧାରା ଧାୟ
ଅଜସ୍ର ସହସ୍ର ବିଧ ଚରିତାର୍ଥ ତାୟ ।

"ଯେଥା ତୁଚ୍ଛ ଆଚାରେର ମରୁବାଲୁ ରାଶି
ବିଚାରେର ସ୍ରୋତଃ ପଥେ ଫେଲେ ନାଇ ଗ୍ରାସି,

ପୌରୁଷେରେ କରେନ ଶତଧା; ନିତ୍ୟ ଯେଥା
ତୁମି ସର୍ବ କର୍ମଚିନ୍ତା ଆନନ୍ଦେର ନେତା,
"ନିଜ ହସ୍ତେ ନିର୍ଦ୍ଦୟ ଆଘାତ କରି ପିତ
ଭାରତରେ ସେଇ ସ୍ୱର୍ଗେ କରେ ଜାଗରିତ ।"

ଆମେ ଶେଷ କଲେ, ଏହି ଶେଷ ଚିଠି ଶେଷ ହେଲା । ଶେଷ ଚିଠି ! କେବେହେଁ ନୁହେଁ ! ମୁଁ ତତେ ଆହୁରି ଅନେକ ଲେଖିବି । କିନ୍ତୁ ଏହି ପର୍ଯ୍ୟାୟ ଶେଷ ହେଲା । ତେଣୁ ତମାମ୍ ଶୁଦ୍ ।

## ପରବର୍ତ୍ତୀ ଲେଖା

ଆରବ ସାଗର,

ନଭେମ୍ବର ୧୪, ୧୯୩୫

ଛଅ ବର୍ଷ ପୂର୍ବେ ଏହାର ଶେଷ ଚିଠି ଡେରାଡୁନ ଜିଲ୍ଲା ଜେଲର ମୋର ସେଲ୍ ଭିତରୁ ତୋତେ ଲେଖିଥିଲି । ମୋର ଦୁଇ ବର୍ଷ ଜେଲ ଦଣ୍ଡ ପୂରି ଆସୁଥାଏ ଏବଂ ମୁଁ ମୋର ଏହି ଦୀର୍ଘ ନିର୍ଜନ ବାସକାଳରେ ଲେଖିଥିବା ପ୍ରକାଣ୍ଡ ଚିଠି ଗଦା ତୋ ପାଖରେ ରଖିଦେଲି (ତୋ ପାଖରେ ବୋଇଲେ ସର୍ବଦା ତୁ ମୋର କଳ୍ପନାରେ ସାଥୀ ହୋଇଥିଲୁ ।) ଏବଂ ଖଲାସ ହୋଇ ବହିର୍ଜଗତର ଆନ୍ଦୋଳନ ଓ କାର୍ଯ୍ୟ ଭିତରକୁ ଯିବା ନିମନ୍ତେ ନିଜ ମନକୁ ପ୍ରସ୍ତୁତ କରି ନେଲି । ପରେ ଖୁବ୍ ଶୀଘ୍ର ମୁକ୍ତ ଲଭିଲି, କିନ୍ତୁ ପାଞ୍ଚ ମାସ ପରେ ଆହୁରି ଦୁଇ ବର୍ଷ ସଜା ଘେନି ମୁଁ କାରାଗାରରେ ସେହି ପରିଚିତ ବେଷ୍ଟନୀ ଭିତରକୁ ପୁଣି ଫେରିଗଲି । ପୁନର୍ବାର ମୁଁ କଲମ ଧରି ଏକ କାହାଣୀ ଲେଖିଲି, ଏଥରକ ଏହା ଏକ ବ୍ୟକ୍ତିଗତ କାହାଣୀ ।

ମୁଁ ପୁନର୍ବାର ବାହାରକୁ ଆସିଲି ଏବଂ ଆମେ ଏକତ୍ର ଦୁଃଖ ବରଣ କଲେ, ସେହିଦିନଠାରୁ ଏହି ଦୁଃଖ ମୋର ଜୀବନରେ ଲାଗି ରହିଛି । କିନ୍ତୁ ଏହି ଦୁଃଖ ଓ ବିବାଦପୂର୍ଣ୍ଣ ଜଗତରେ ବ୍ୟକ୍ତିଗତ ଦୁର୍ଭାଗ୍ୟର କେହି ହିସାବ ରଖେନା; ଦୁନିଆକୁ ଯେଉଁ ସଂଗ୍ରାମ ଗ୍ରାସ କରିଛି ସେଥିରେ ଆମର ସମସ୍ତ ଶକ୍ତି ଅର୍ପଣ କରିବା ଦରକାର ପଡ଼ୁଛି । ତେଣୁ ଆମେ ବଞ୍ଚିନୁ

ହେଲେ, ଶ୍ରୁ ନିଭିଲ ଚିଦ୍ୟାଙ୍କ୍‌ନ ପନ୍ଥା ଧରିଲୁ ଏବଂ ମୁଁ ସଂଗ୍ରାମର ଝଞ୍ଜା ଓ କୋଳାହଳ ଭିତରେ ପ୍ରବେଶ କଲି ।

ଯୁଦ୍ଧ ଓ କଷ୍ଟଭୋଗର ଭାର ବହନ କରି ପାଞ୍ଚବର୍ଷରୁ ଅଧିକ କାଳ ବିତିଯାଇଛି ଏବଂ ଆମେ ଯେଉଁ ଦୁନିଆରେ ବାସ କରୁଛେ ଏବଂ ଯାହା କଳ୍ପନା କରୁଛେ ସେଥି ମଧ୍ୟରେ ବୈଷମ୍ୟ ବରାବର ବୃଦ୍ଧି ପାଉଛି । ଆଶା ବେଳେ ବେଳେ ଆମର ଦମ୍ ଅଟକାଇ ଦିଏ, ଯେଉଁ ଅନ୍ୟାୟ ଆମଠାରେ ଲାଗି ରହିଛି ତାହା ତାର ଗଳାରୋଧ କରେ । ତଥାପି ମୁଁ ଏହା ଲେଖିଲାବେଳେ ମୋ ସମ୍ମୁଖରେ ଆରବସାଗର ତାର ସମସ୍ତ ଶକ୍ତି ଓ ସୌନ୍ଦର୍ଯ୍ୟ ସହ ଏକ ସ୍ୱପ୍ନପରି ନୀରବ ଭାବରେ ଏବଂ ଚନ୍ଦ୍ରାଲୋକର ଉଜ୍ଜ୍ୱଳତାରେ ଝଲସି ଯାଇ ବ୍ୟାପି ରହିଛି ।

ଏହି ଫୋଡ଼ପତ୍ରରେ ଗତ ପାଞ୍ଚ ବର୍ଷର କାହାଣୀ ମୋତେ କହିବାକୁ ହେବ, କାରଣ ଏହି ଚିଠିଗୁଡ଼ିକ ନୂତନ ଆକାରରେ ପ୍ରକାଶିତ ହେବାକୁ ଯାଉଛି ବରଂ ମୋର ପ୍ରକାଶକଙ୍କ ଦାବୀ ଯେ ଏହାକୁ ସମୟୋପଯୋଗୀ କରିବା ଦରକାର । ଏହା ଏକ କଷ୍ଟକର କାର୍ଯ୍ୟ, କାରଣ ଏହି କାଳ ଭିତରେ ଏତେ ସବୁ ଘଟଣା ଘଟିଛି ତାହା ଲେଖିବାକୁ ହେଲେ ଓ ସେଥିପାଇଁ ମୋର ଯଦି ସମୟ ଥାଆନ୍ତା ତେବେ ମୁଁ ସମସ୍ତ ସୀମା ଅତିକ୍ରମ କରି ଆଉ ଏକ ପୁସ୍ତକ ଲେଖି ପକାନ୍ତି । ଏପରିକି ପ୍ରଧାନ ଘଟଣାମାନଙ୍କରେ କେବଳ ବିବରଣୀହିଁ ଦୀର୍ଘ ଓ ଭାରପ୍ରଦ ହେବ । ତେଣୁ ଯାହା ସବୁ ଘଟିଛି ତାହାର ଏକ ନିରୋଳା ନକ୍‌ସା ମାତ୍ର ମୁଁ ତତେ ଦେବି । ଲେଖାଯାଇଥିବା କେତେକ ଚିଠିରେ ଅଧିକ ବିବରଣୀ ଯୋଗକରି ମୁଁ ଲେଖିସାରିଛି ଏବଂ ଏବେ ଏହି ବର୍ଷର ଏକ ସଂକ୍ଷିପ୍ତ ସର୍ଭେ ଆମେ କରିବା ।

ମୋର ଅନ୍ତିମ ଚିଠିମାନଙ୍କରେ ଆଧୁନିକ ଜଗତର ପ୍ରବଳ ବିବରୋଧ ଓ ପ୍ରତିଦ୍ୱନ୍ଦ୍ୱିତା ଭାବ, ଫାସିଜିମ ଓ ନାଜିଜିମ୍‌ର ବୃଦ୍ଧି ଏବଂ ଯୁଦ୍ଧର ଛାୟା ପ୍ରତି ମୁଁ ତୋର ଦୃଷ୍ଟି ଆକର୍ଷଣ କରିଥିଲି । ଏହି ପାଞ୍ଚବର୍ଷରେ ସେହି ପ୍ରତିଦ୍ୱନ୍ଦ୍ୱିତା ଓ ସଂଘର୍ଷ ଗାଢ଼ତର ହୋଇଛି ଏବଂ ଯଦିଓ ପୃଥିବୀ ଯୁଦ୍ଧ ଏ ପର୍ଯ୍ୟନ୍ତ ହୋଇ ନାହିଁ, ତଥାପି ଆଫ୍ରିକା, ୟୁରୋପ ଓ ଏସିଆର ସୁଦୂର ପ୍ରାଚ୍ୟରେ ଭୀଷଣ ଯୁଦ୍ଧମାନ ଚାଲିଛି । ପ୍ରତ୍ୟେକ ବର୍ଷ ଏବଂ ବେଳେ ବେଳେ ପ୍ରତ୍ୟେକ ମାସରେ ନୂତନ ଆକ୍ରମଣ ଓ ଆତଙ୍କ କାହାଣୀ ଆସି ପହଞ୍ଚୁଛି । ପୃଥିବୀ ଅଧିକରୁ ଅଧିକ ଭାବରେ ଅସଙ୍ଗଠିତ ହୋଇ ପଡ଼ୁଛି, ଆନ୍ତର୍ଜାତିକ ସମ୍ବନ୍ଧ ସବୁ ଅରାଜକତାରେ ପରିଣତ ହେଉଛି ଏବଂ ଆନ୍ତର୍ଜାତିକ ସହଯୋଗ ପାଇଁ ଲିଗ୍ ଅଫ୍ ନେସନ୍‌ସ ଓ ଅନ୍ୟ ପ୍ରଚେଷ୍ଟା ସବୁ ଏକ ବିଷାଦପୂର୍ଣ୍ଣ ବ୍ୟର୍ଥତାରେ ପରିଣତ ହୋଇଛି । ନିରସ୍ତ୍ରୀକରଣ ଅତୀତର କାହାଣୀ ହୋଇଛି ଏବଂ ପ୍ରତ୍ୟେକ ଦେଶ ଦିନରାତି ନିଜର ଶକ୍ତି ଅନୁସାରେ ଶେଷ ପର୍ଯ୍ୟନ୍ତ ଅସ୍ତ୍ର ସଜ୍ଜିତ ହେବା ନିମନ୍ତେ ଲାଗିପଡ଼ିଛି । ଦୁନିଆକୁ ଭୟ ଗ୍ରାସ କରିଛି ଏବଂ ଉଦ୍ଧତ ଓ ବିଜୟୀ ନାଜିଜିମ୍ ଓ ଫାସିଜିମଠାରୁ ପ୍ରହାର ଖାଇ ୟୁରୋପ ଦ୍ରୁତଗତିରେ ଅଧୋଗତି ଆଡ଼କୁ ଯାଉଛି ଏବଂ ବର୍ବରତାର ପଥ ଗ୍ରହଣ କରୁଛି ।

ପୂର୍ବ ଚିଠିଗୁଡ଼ିକରେ ୧୯୧୪-୧୮ର ମହାସମର ପଶ୍ଚାତରେ ଯେଉଁସବୁ ସମସ୍ୟା ଥିଲା ଆମେ ତାହା ବିସ୍ତୃତ ଭାବରେ ପରୀକ୍ଷା କରିଥିଲେ । ଯୁଦ୍ଧ ଆସିଲା ଏବଂ ସେଥିରୁ ଭର୍ସେଇ ସନ୍ଧି ଓ ଲିଗ ସମ୍ମିଳନୀ ଜାତ ହେଲା । କିନ୍ତୁ ପୁରୁଣା ସମସ୍ୟା ସମାଧାନ ହେଲା ନାହିଁ ଏବଂ ଅନେକ ନୂଆ ସମସ୍ୟା ଉଠିଲା, କ୍ଷତିପୂରଣ, ଯୁଦ୍ଧ ଋଣ, ନିରସ୍ତ୍ରୀକରଣ, ସମଷ୍ଟିଗତ ନିରାପତ୍ତା, ଆର୍ଥିନୀତିକ ସଙ୍କଟ ଓ ବେକାରି ବିସ୍ତୃତ ଆକାରରେ ଦେଖାଦେଲା । ଶାନ୍ତି ପଶ୍ଚାତରେ ଅନେକ ଜୀବନ୍ତ ସାମାଜିକ ସମସ୍ୟା ରହିଥିଲା । ତାହା ଦୁନିଆର ସାମନ୍ତସଂଙ୍କୁ ଓଲଟ ପାଲଟ କରି ଦେଲା । ସୋଭିଏଟ୍ ୟୁନିୟନରେ ନୂତନ ସାମାଜିକ ଶକ୍ତି ବିଜୟୀ ହେଲା ଏବଂ ପ୍ରବଳ ଅସୁବିଧା ଓ ପୃଥିବୀ ବିରୋଧର ସମ୍ମୁଖୀନ ହୋଇ ଏକ ପ୍ରକାର ନୂଆ ଜଗତ ନିର୍ମାଣ ଲାଗି ଚେଷ୍ଟା କଲା । ଅନ୍ୟତ୍ର ଗଭୀର ସାମାଜିକ ପରିବର୍ତ୍ତନ ଚାଲିଥିଲା, କିନ୍ତୁ କୌଣସି ବାଟ ପାଇଲା ନାହିଁ ଏବଂ ପ୍ରଚଳିତ ରାଜନୈତିକ ଓ ଆର୍ଥିନୀତିକ ଗଠନରେ ପଡ଼ିରହି ରହିଗଲା । ଦୁନିଆରେ ପ୍ରାଚୁର୍ଯ୍ୟ ବ୍ୟାପିଲା, ଉତ୍ପାଦନ ବିଶାଳ ଭାବରେ ବିସ୍ତାର ଲାଭ କଲା; ଯୁଗ ଯୁଗର ସ୍ୱପ୍ନ ବାସ୍ତବ ହୋଇପାରିଲା । କିନ୍ତୁ ଦୀର୍ଘକାଳରୁ ବନ୍ଧନରେ ଅଭ୍ୟସ୍ତ ହୋଇଥିବା ଦାସ ସ୍ୱାଧୀନତାକୁ ଭୟ କରେ ଏବଂ ନିର୍ବୋଧ ମାନବ ସମାଜ ଅଭାବରେ ଏତେ ଅଭ୍ୟସ୍ତ ହୋଇ ଯାଇଛି ଯେ ସେ ସହଜରେ ଅନ୍ୟ ଭାବରେ ଚିନ୍ତା କରିପାରୁ ନାହିଁ । ତେଣୁ ନୂତନ ସମ୍ପଦକୁ ଜାଣି ଶୁଣି ନିକ୍ଷେପ କରାଯାଇଛି, ସଙ୍କୁଚିତ ଓ ସୀମାବଦ୍ଧ କରାଯାଇଛି ଏବଂ ପ୍ରକୃତରେ ଆଜି ବେକାରି ଓ ଦୁର୍ଦ୍ଦଶା ଲାଗି ରହିଛି ।

ସମ୍ମିଳନୀ ପରେ ସମ୍ମିଳନୀ ବସିଲା ଏବଂ ଏହି ଅଦ୍ଭୁତ ସ୍ୱବିରୋଧର ସମାଧାନ କରିବା ନିମନ୍ତେ ଓ ଶାନ୍ତି ଆଣିବା ପାଇଁ ପୃଥିବୀର ଦେଶସବୁ ଏକତ୍ର ମିଳିତ ହେଲେ । ଚୁକ୍ତି, ରାଜିନାମା, ମିତ୍ରତା ଚାଲିଲା—ଓ୍ୱାଶିଂଟନ, ଲୋକାର୍ଣ୍ଣୋ କେଲଗ ଚୁକ୍ତି ଅନାକ୍ରମଣ ଚୁକ୍ତିସବୁ—କିନ୍ତୁ ମୌଳିକ ସମସ୍ୟାକୁ ସ୍ପର୍ଶ କରାଗଲା ନାହିଁ ଏବଂ ନିପଟ ବାସ୍ତବତାର ପ୍ରଥମ ସ୍ପର୍ଶରେ ଏହି ସବୁ ଚୁକ୍ତି ଓ ରାଜିନାମା ଲୋପ ପାଇଗଲା; ନଗ୍ନ ତରବାରି ହିଁ ୟୁରୋପର ଭାଗ୍ୟ ନିର୍ଣ୍ଣୟକର୍ତ୍ତା ହୋଇ ରହିଲା । ଭର୍ସେଇ ସନ୍ଧି ମୃତ ହୋଇଛି, ୟୁରୋପର ମାନଚିତ୍ର ପୁନର୍ବାର ବଦଳିଯାଇଛି ଏବଂ ପୃଥିବୀର ନୂତନ ଅଧ୍ୟାୟ ଚାଲିଛି । ଯୁଦ୍ଧଋଣ ପ୍ରଶ୍ନ ଉଭେଇ ଯାଇଛି ଏବଂ ଧନୀ ଦେଶସବୁ ଏହା ପରିଶୋଧ ନ କରିବା ନିମନ୍ତେ ସ୍ଥିର କରିଛନ୍ତି ।

ତେଣୁ ଆମେ ଯୁଦ୍ଧପୂର୍ବ ଯୁଗ ୧୯୧୪ ଓ ତା ପୂର୍ବ ଅବସ୍ଥାକୁ ଫେରି ଆସିଲେ, ସମସ୍ତ ସମସ୍ୟା ଓ ସଙ୍ଘର୍ଷ ସେହିପରି ରହିଛି, ବରଂ ସେହି ଦିନଠାରୁ ଯାହା ସବୁ ଘଟିଛି ସେଥିରେ ଏହା ଶତଗୁଣ ବଢ଼ିଯାଇଛି । ପତନୋନ୍ମୁଖୀ ପୁଞ୍ଜିବାଦୀ ବ୍ୟବସ୍ଥା ଫଳରେ ଆର୍ଥିନୀତିକ ଜାତୀୟବାଦ ତଥା ଅଧିକ ଇଜାରାଦାରୀ ( Monopoly ) ବୃଦ୍ଧି ପାଇଛି; ଏହା ଉଗ୍ର ଓ ପ୍ରଚଣ୍ଡ ହୋଇ ପଡ଼ୁଛି ଏବଂ ପାର୍ଲିମେଣ୍ଟାରି ଗଣତନ୍ତ୍ରକୁ ବରଦାସ୍ତ କରୁ ନାହିଁ । ଫାସିଜମ ଓ ନାଜିଜମ୍ ତାର ନଗ୍ନ ପାଶବିକତା ସହିତ ପ୍ରକାଶ ପାଉଛି ଏବଂ ସେମାନଙ୍କର ସବୁ ଭିତର

ଶେଷ ଓ ଲକ୍ଷ୍ୟ ହେଉଛି ଯୁଦ୍ଧ । ଏହା ସଙ୍ଗେ ସଙ୍ଗେ ସୋଭିଏଟ୍ ୟୁନିୟନରେ ଏକ ନୂତନ ବିରାଟ ଶକ୍ତି ଜାଗ୍ରତ ହୋଇଛି । ଏହା ପୁରାତନ ବ୍ୟବସ୍ଥା ଉପରେ ବରାବର ପଦାଘାତ କରୁଛି ଏବଂ ସାମ୍ରାଜ୍ୟବାଦ ଓ ଫାସିଜିମ ଉଭୟର ସମାନ ଭାବରେ ଏକ ଶକ୍ତିଶାଳୀ ପ୍ରତିବନ୍ଧକ ହୋଇ ରହିଛି ।

ଆମେ ଏକ ବିପ୍ଳବ ଯୁଗରେ ବାସ କରୁଛେ; ଏ ବିପ୍ଳବ ୧୯୧୪ରେ ଯେତେବେଳେ ଯୁଦ୍ଧ ହେଲା ସେତିକବେଳୁ ଆରମ୍ଭ ହୋଇଥିଲା ଏବଂ ଦିନକୁ ଦିନ କ୍ରମାନ୍ୱୟରେ ଚାଲିଛି ଏବଂ ପୃଥିବୀ ପ୍ରତ୍ୟେକ ସ୍ଥାନରେ ସଙ୍ଘର୍ଷର କରାଳ ଛାପରେ ପଡ଼ୁଛି । ୧୫୦ ବର୍ଷ ପୂର୍ବର ଫରାସୀ ବିପ୍ଳବ ପରେ କ୍ରମେ ଏକ ରାଜନୈତିକ ସମାନତା ଯୁଗ ଆସି ପହଞ୍ଚିଲା । କିନ୍ତୁ କାଳର ପରିବର୍ତ୍ତନ ହୋଇଯାଇଛି ଏବଂ ଏହାହିଁ ଆଜି ଯଥେଷ୍ଟ ନୁହେଁ । ଗଣତନ୍ତ୍ରର ସୀମା ଏବେ ବିସ୍ତୃତ କରିବାକୁ ପଡ଼ିବ, ଯେପରି ଏଥିରେ ଅର୍ଥନୈତିକ ସମାନତା ଅନ୍ତର୍ଭୁକ୍ତ ହେବ । ଆମେ ସବୁ ଏକ ମହାନ ବିପ୍ଳବ ଦେଇ ଗତି କରୁଛେ; ଯେଉଁ ବିପ୍ଳବ ଅର୍ଥନୈତିକ ସମାନତା ଆଣିଦେବ ଏବଂ ତେଣୁ ଗଣତନ୍ତ୍ରର ପୂର୍ଣ୍ଣ ବ୍ୟାଖ୍ୟା ହେବ ଏବଂ ଆମକୁ ବିଜ୍ଞାନ ଓ ବିଜ୍ଞାନବିଦ୍ୟାର ଅଗ୍ରଗତି ସହ ସମାନ କରିବ ।

ଏହି ସମାନତା ସାମ୍ରାଜ୍ୟବାଦ ବା ପୁଞ୍ଜିବାଦ ସହ ଖାପ ଖାଏ ନାହିଁ—ଏଗୁଡ଼ିକ ଅସମାନତା ଏବଂ ଏକ ଦେଶ ବା ଜାତିର ଶୋଷଣ ଉପରେ ପ୍ରତିଷ୍ଠିତ । ତେଣୁ ଯେଉଁମାନେ ଶୋଷଣ ଦ୍ୱାରା ଲାଭବାନ ହୁଅନ୍ତି, ସେମାନେ ଏହାର ପ୍ରତିରୋଧ କରନ୍ତି ଏବଂ ଯେତେବେଳେ ସଙ୍ଘର୍ଷ ବୃଦ୍ଧି ହୁଏ ସେତେବେଳେ ରାଜନୈତିକ ସମାନତା ଓ ଏପରିକି ପାର୍ଲିମେଣ୍ଟାରି ଗଣତନ୍ତ୍ରକୁ ବି ଅଗ୍ରାହ୍ୟ କରାଯାଏ, ଏହା ହେଉଛି ଫାସିଜିମ, ଏହା ଅନେକ ଭାବରେ ଆମକୁ ମଧ୍ୟଯୁଗକୁ ଫେରାଇ ନିଏ । ଏହା ଜାତିପ୍ରାଧାନ୍ୟର ଗୌରବ ଗାନକରେ ଏବଂ ଏକ ଏକଚ୍ଛତ୍ର ରାଜ୍ୟରେ ଐଶ୍ୱରିକ ଅଧିକାର ସ୍ଥାନରେ ଏକ ସର୍ବ ଶକ୍ତିମାନ ନେତାର ଐଶ୍ୱରିକ ଅଧିକାର ସ୍ଥାପନା କରେ । ଗତ ପାଞ୍ଚ ବର୍ଷ ଭିତରେ ଫାସିଜିମର ବୃଦ୍ଧି ଏବଂ ପ୍ରତ୍ୟେକ ଗଣତାନ୍ତ୍ରିକ ନୀତି ଓ ସ୍ୱାଧୀନତା ଏବଂ ସଭ୍ୟତାର ଧାରଣା ଉପରେ ଏହାର ଆକ୍ରମଣ ହେତୁ ଗଣତନ୍ତ୍ର ରକ୍ଷା ଆଜି ଏକ ଜୀବନ୍ତ ପ୍ରଶ୍ନ ହୋଇ ଉଠିଛି । ବର୍ତ୍ତମାନ ପୃଥିବୀର ସଙ୍ଘର୍ଷ ଏକ ପକ୍ଷରେ କମ୍ୟୁନିଜିମ ଓ ସୋସିଆଲିଜିମ୍ ଏବଂ ଅନ୍ୟ ପକ୍ଷରେ ଫାସିଜିମ ମଧ୍ୟରେ ନୁହେଁ । ଏହା ଗଣତନ୍ତ୍ର ଓ ଫାସିଜିମ୍ ଭିତରେ ଲାଗିଛି ଏବଂ ଗଣତନ୍ତ୍ରର ସମସ୍ତ ବାସ୍ତବ ଶକ୍ତି ଏକଜୁଟ ହୋଇ ଫାସିଷ୍ଟ ବିରୋଧୀ ହେଉଛନ୍ତି । ଆଜି ସ୍ପେନ ଏହାର ଶ୍ରେଷ୍ଠ ଦୃଷ୍ଟାନ୍ତ ।

କିନ୍ତୁ ଏହି ଗଣତନ୍ତ୍ର ପଶ୍ଚାତରେ ଅନିବାର୍ଯ୍ୟରୂପେ ଗଣତନ୍ତ୍ରର ବିସ୍ତାର ଧାରଣା ବି ରହିଛି ଏବଂ ଏହି ଭୟରେ ପ୍ରତ୍ୟେକ ସ୍ଥାନରେ ପ୍ରତିକ୍ରିୟା ଶ୍ରେଣୀ ମୁହଁରେ ଗଣତନ୍ତ୍ର କଥା କହିଲେ ବି ଫାସିଜିମ ପ୍ରତି ସହାନୁଭୂତି ଓ ଅନୁରକ୍ତି ଦେଖାଉଛନ୍ତି । ଫାସିଷ୍ଟ ନେତାଗୁଡ଼ିକର ଉଦ୍ଦେଶ୍ୟ ପରିଷ୍କାର; ସେମାନଙ୍କର ଲକ୍ଷ୍ୟ ଓ ନୀତି ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ । କିନ୍ତୁ ପରିସ୍ଥିତିରେ ସର୍ବାପେକ୍ଷା ପ୍ରଧାନ ଜିନିଷ ହେଉଛି ତଥାକଥିତ ଗଣତାନ୍ତ୍ରିକ ଶକ୍ତି ବିଶେଷତଃ

ଇଂଲଣ୍ଡର କାର୍ଯ୍ୟ । ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବରାବର ଏସିଆ, ଆଫ୍ରିକା ଓ ୟୁରୋପରେ ପ୍ରତିକ୍ରିୟାଶୀଳ ଭାବରେ କାର୍ଯ୍ୟ କରି ଆସିଛି ଏବଂ ଫାସିଜମ୍ ଓ ନାଜିଜମ୍‌କୁ ପ୍ରତ୍ୟେକ ପ୍ରକାର ଉତ୍ସାହ ଦେଇ ଆସିଛି । ବିଚିତ୍ର କଥା ଏପରି କି ବ୍ରିଟିଶ ସାମ୍ରାଜ୍ୟର ନିରାପତ୍ତାକୁ ବିପଦସଙ୍କୁଳ କରି ଏହା କରାଯାଇଛି—ପ୍ରକୃତ ଗଣତନ୍ତ୍ର ବୃଦ୍ଧି ପ୍ରତି ଏହାର ଏପରି ବେଶୀ ଭୟ ଓ ଫାସିଜମ୍ ନେତାମାନଙ୍କ ସହିତ ଏହି ଶ୍ରେଣୀର ଏପରି ସହାନୁଭୂତି ରହିଛି । ଫାସିଜମ୍ ବୃଦ୍ଧି ପାଇ ଯଦି ଆଜି ଦୁନିଆରେ ପ୍ରାଧାନ୍ୟ ଲାଭ କରୁଛି, ତେବେ ଏଥିପାଇଁ ଅଧିକ ଭାବରେ ଅବଶ୍ୟ ବ୍ରିଟିଶ ସରକାର ନାମ ନେବାର କଥା । ଗଣତନ୍ତ୍ର ସମ୍ବନ୍ଧରେ ଟିକିଏ ବ୍ୟଗ୍ରତା ସହକାରେ ସଂଯୁକ୍ତ ରାଷ୍ଟ୍ର ଆମେରିକା ଫାସିଷ୍ଟ ଆକ୍ରମଣର ପ୍ରତିରୋଧ କରିବା ନିମନ୍ତେ ଅନ୍ୟ ଶକ୍ତିମାନଙ୍କ ସହିତ ସହଯୋଗ କରିବା ପାଇଁ ଏକାଧିକବାର ପ୍ରସ୍ତାବ କରିଛି, କିନ୍ତୁ ଇଂଲଣ୍ଡ ଏହି ପ୍ରସ୍ତାବକୁ ଅସ୍ୱୀକାର କରିଛି । ଫ୍ରାନ୍ସ ଲଣ୍ଡନନଗର ଓ ବ୍ରିଟିଶ ବୈଦେଶିକ ନୀତି ଉପରେ ଏପରି ସମ୍ପୂର୍ଣ୍ଣ ରୂପେ ନିର୍ଭର କରି ରହିଛି ଯେ ଏକ ସ୍ୱାଧୀନ ନୀତି ଗ୍ରହଣ କରିବାର ସାହସ ଏହାର ନାହିଁ ।

ଶ୍ରମିକ ସମସ୍ୟାରେ ମଧ୍ୟ ଅନ୍ତର୍ଜାତୀୟ ଶ୍ରମିକ ସମ୍ମିଳନୀମାନଙ୍କରେ ଇଂଲଣ୍ଡ ବରାବର ପ୍ରତିକ୍ରିୟାଶୀଳ ଭାବରେ କାର୍ଯ୍ୟ କରି ଆସିଛି । ୧୯୩୭ ଜୁନ ମାସରେ ଆଇ. ଏଲ. ଓ. (ଆନ୍ତର୍ଜାତିକ ଶ୍ରମିକ ସଙ୍ଗଠନ) ଲୁଗା ଶିଳ୍ପରେ ସପ୍ତାହକୁ ୪୦ ଘଣ୍ଟା ଶ୍ରମଧାର୍ଯ୍ୟ କରି ଏକ ପ୍ରସ୍ତାବ ଗୃହୀତ ହେଲା । ଗ୍ରେଟ ବ୍ରିଟେନର ବିରୋଧ ସତ୍ତ୍ୱେ ଏହା ଏପରି କଲା । ଏପରି କି ବ୍ରିଟିଶ ଡୋମିନିୟନସବୁ ବ୍ରିଟେନକୁ ତ୍ୟାଗ କଲେ ଓ ସଂଯୁକ୍ତ ରାଷ୍ଟ୍ରକୁ ସମର୍ଥନ କଲେ । ଅବଶ୍ୟ ବ୍ରିଟିଶ ସରକାର ଦ୍ୱାରା ମନୋନୀତ ହେଉଥିବା ଭାରତର ପ୍ରତିନିଧି ବ୍ରିଟେନ ପକ୍ଷରେ ଥିଲେ । ମାଲିକ ଓ ସରକାରୀ ପ୍ରତିନିଧି ସମେତ ସଂଯୁକ୍ତ ରାଷ୍ଟ୍ରର ପ୍ରତିନିଧିମାନେ ଯେଉଁମାନେ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ, ସେମାନେ ମନ୍ତବ୍ୟ ଦେଲେ ଯେ "ଜେନେଭା ନ ଆସିବା ପର୍ଯ୍ୟନ୍ତ ବ୍ରିଟିଶ ସରକାର କିପରି ପ୍ରତିକ୍ରିୟାପନ୍ଥୀ ଏ ସମ୍ବନ୍ଧରେ ତାଙ୍କର କିଛି ଧାରଣା ନ ଥିଲା ।" ତାଙ୍କ ଭିତରୁ ଆଉ ଜଣେ କହିଥିଲେ "ଗ୍ରେଟ ବ୍ରିଟେନ ପ୍ରତିକ୍ରିୟାର କେନ୍ଦ୍ରସ୍ଥଳୀ ହୋଇଛି ।"

ସକଳ ଦୁର୍ବଳତା ସତ୍ତ୍ୱେ ଲିଗ୍ ଅଫ୍ ନେସନ୍ସ ଆନ୍ତର୍ଜାତିକ ଭାବଧାରାର ଏବେ ସୁଦ୍ଧା ପ୍ରତିବିମ୍ବ ଥିଲା ଏବଂ ଏହାର ସର୍ତ୍ତରେ ଆକ୍ରମଣ ପାଇଁ ଶାସ୍ତି ବିଧାନ କରାଯାଇଥିଲା । ଜାପାନ ଯେତେବେଳେ ମାଞ୍ଚୁରିଆ ଆକ୍ରମଣ କଲା ଏହା ତାହା ବିରୁଦ୍ଧରେ କୌଣସି କାର୍ଯ୍ୟ ବିଧାନ କରି ପାରିଲା ନାହିଁ (କେବଳ ଗୋଟିଏ ତଦନ୍ତ କମିଶନ ନିଯୁକ୍ତ ହେଲା ଓ ପରେ ଆକ୍ରମଣର ନିନ୍ଦା କରାଯାଇଥିଲା) । ପ୍ରକୃତରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଜାପାନର ଦୁଃସାହସକୁ ଉତ୍ସାହିତ କରିଥିଲା ଏବଂ ସେହି ଦିନଠାରୁ କେତେକ ସାମାନ୍ୟ କାର୍ଯ୍ୟରେ ଠିକ୍ ବାଟରେ ଯିବା ଛଡ଼ା ସର୍ବଦା ଏହା ଲିଗ୍‌କୁ ଅବହେଳା ଓ ଦୁର୍ବଳ କରିବା ନୀତି ଅନୁସରଣ କରିଥିଲା ।

ନାଜିଜିମ୍ ପରିଷ୍କାର ରୂପେ ଆକ୍ରମଣ ନୀତି ଧରିଥିଲା ଏବଂ ଏହାର ଉଦ୍ଭବ ଲିଗ ପ୍ରତି ଏକ ପ୍ରତ୍ୟକ୍ଷ ଚ୍ୟାଲେଞ୍ଜ ଥିଲା; କିନ୍ତୁ ଇଂଲଣ୍ଡ ଓ କେତେକ ପରିମାଣରେ ଫ୍ରାନ୍ସ ଏହି ଚ୍ୟାଲେଞ୍ଜକୁ ମାନିନେଲେ ଓ ଲିଗ୍ ଶକ୍ତି କ୍ଷୁନ୍ନ ହେବା ନିମନ୍ତେ ଛାଡ଼ିଦେଲେ । ଫାସିଷ୍ଟ ଶକ୍ତିମାନେ ଲିଗ୍ ଛାଡ଼ିଲେ, ଜର୍ମାନୀ ୧୯୩୩ ଅକ୍ଟୋବରରେ ଓ ପରେ ଜାପାନ ଓ ଇଟାଲି ଛାଡ଼ିଲେ । ୧୯୩୪ ସେପ୍ଟେମ୍ବରରେ ସୋଭିଏଟ୍ ୟୁନିୟନ ଲିଗ୍‌ରେ ଯୋଗ ଦେଲା ଓ ଏଥିରେ ନୂତନ ଜୀବନ ସଞ୍ଚାର ହେଲା । ନାଜୀ ଜର୍ମାନୀ ଭୟ ହେତୁ ଫ୍ରାନ୍ସ ସୋଭିଏଟ ସହିତ ମିତ୍ରତା କଲା, କିନ୍ତୁ ଇଂଲଣ୍ଡ ଲିଗ୍ ଚୁକ୍ତି ଅନୁସାରେ ସୁଦ୍ଧା ସୋଭିଏଟ୍ ୟୁନିୟନ ସହିତ ସହଯୋଗ କରିବା ଅପେକ୍ଷା ନାଜୀ ଜର୍ମାନୀ ସହିତ ମିତ୍ରତା ପସନ୍ଦ କଲା । ପ୍ରତ୍ୟେକ ଆକ୍ରମଣରେ କୃତକାର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଫାସିଷ୍ଟ ଶକ୍ତିଗୁଡ଼ିକର ସାହସ ବଢ଼ିଗଲା ଏବଂ ସେମାନେ ଉପଲବ୍ଧି କଲେ ଯେ ଲିଗ୍‌କୁ ଅକ୍ଳେଶରେ ଅବଜ୍ଞା କରାଯାଇପାରେ, କାରଣ ବ୍ରିଟିଶ ସରକାର ଯେ ତାଙ୍କ ବିରୁଦ୍ଧରେ ଯିବ ନାହିଁ ଏ କଥା ସେମାନେ ଜାଣି ଥିଲେ ।

ଫାସିଷ୍ଟ ଶକ୍ତିଗୁଡ଼ିକ ସହିତ ବ୍ରିଟିଶ ସରକାରର କ୍ରମାଗତ ମିତ୍ରତା ଯୋଗୁଁ ଚୀନ, ଆବିସିନିଆ, ସ୍ପେନ ଓ ମଧ୍ୟୟୁରୋପରେ ଏତେ ଘଟଣାମାନ ଘଟି ପାରିଲା । ଯେଉଁ ଲିଗ୍ ଅଫ୍ ନେସନ୍‌ସର ଗଠନ ମନୁଷ୍ୟ ସମାଜର ଶାନ୍ତି ଓ ପ୍ରଗତି ଦିଗରେ ଏତେ ଆଶା ସଞ୍ଚାର କରିଥିଲା ସେ ଆଜି କାହିଁକି ଧ୍ୱଂସ ହୋଇଛି ତାହା ଏଥିରୁ ବୁଝାପଡ଼େ ।

ଜାପାନ କିପରି ସଫଳତାର ସହିତ ମାଞ୍ଚୁରିଆରେ ଲିଗ୍ ଓ ପୃଥିବୀକୁ ଅବଜ୍ଞା କଲା ଏବଂ ସେଠାରେ ପୁତ୍ତଳି ମାଞ୍ଚୁକୋ ସରକାର ସ୍ଥାପନ କଲା ତାହା ଆମେ ଦେଖିଛେ । ଯଦିଓ ସେଠାରେ ପ୍ରକୃତ ସାମରିକ ଅଭିଯାନ ହୋଇଥିଲା ତଥାପି କୌଣସି ଯୁଦ୍ଧ ଘୋଷଣା କରାଯାଇ ନ ଥିଲା । ଅଭ୍ୟନ୍ତରୀଣ ବିଦ୍ରୋହ ଜାଗରୂକ କରାଗଲା ଏବଂ ହସ୍ତକ୍ଷେପ କରିବା ନିମନ୍ତେ ଏହାକୁ ଏକ ପେଖନା ରୂପେ ବ୍ୟବହାର କରାଗଲା । ପରେ ଏହି ନୂତନ କୌଶଳ ଇଟାଲି ଓ ନାଜୀ ଜର୍ମାନୀ ଟେକ୍ ରୂପେ ବ୍ୟବହାର କଲେ ଏବଂ ଏହା ସାଙ୍ଗକୁ ପୁଣି ଅଭୂତପୂର୍ବ ଆକାରରେ ବିଦେଶରେ ମିଥ୍ୟା ପ୍ରଚାର ଯୋଗ କରାଗଲା । ଏବେ କୌଣସି ଯୁଦ୍ଧ ଘୋଷଣା କରାଯାଇ ନାହିଁ, ଏହା ଅତୀତ ଯୁଗର କଥା ହୋଇଗଲାଣି । ୧୯୩୭ରେ ନ୍ୟୁରେମବର୍ଗରେ ହିଟଲର କହିଥିଲେ "ଯଦି କେବେ ଏକ ବିରୋଧୀ ଉପରେ ମୁଁ ଆକ୍ରମଣ କରିବାକୁ ଚାହେଁ ତେବେ ମୁଁ ମିଳାମିଶା କରିବି ନାହିଁ ଓ ମାସ ମାସ ଧରି ପ୍ରସ୍ତୁତ ହେବି ନାହିଁ, କିନ୍ତୁ ସର୍ବଦା ଯେପରି କରି ଆସିଛୁ, ସେହିପରି କରିବ—ଅନ୍ଧାରରୁ ବାହାରି ଆସି ବିଦ୍ୟୁତ୍ ବେଗରେ ମୋର ବିରୋଧୀ ଉପରେ ନିଜକୁ ନିକ୍ଷେପ କରିବ ।"

୧୯୩୫ ଜାନୁୟାରୀରେ ଜର୍ମାନୀ ଏକ ସାଧାରଣ ନିର୍ବାଚନ ପରେ ସାର ଅଞ୍ଚଳ ଅଧିକାର କଲା । ସେହିବର୍ଷ ମେ ମାସରେ ହିଟଲର ଭର୍ସେଇ ସନ୍ଧିର ନିରସ୍ତ୍ରୀକରଣ ସର୍ତ୍ତ ଅଗ୍ରାହ୍ୟ କଲା ଏବଂ ଜର୍ମାନମାନଙ୍କ ପାଇଁ ବାଧ୍ୟତାମୂଳକ ସାମରିକ ଶିକ୍ଷା ଆଦେଶ କଲା ।

ଏହି ପ୍ରକାଶ୍ୟ ଓ ଏକତରଫା ଭାବରେ ଭର୍ସେଇ ଚୁକ୍ତିଭଙ୍ଗ ଫ୍ରାନ୍ସକୁ ଉତ୍ତେଜିତ କଲା । କିନ୍ତୁ ଇଂଲଣ୍ଡ ନୀରବରେ ଏହା ଗ୍ରହଣ କଲା ଏବଂ ବାସ୍ତବିକ ଗୋପନ ଭାବରେ ଏକ ମାସ ପରେ ଜର୍ମାନୀ ସହିତ ଏକ ନୌ-ଚୁକ୍ତି କରି ଆଉ ଏକ ପାଦ ଆଗକୁ ଚାଲିଗଲା । ଏହି ଚୁକ୍ତିଦ୍ୱାରା ଭର୍ସେଇ ସନ୍ଧି ଭଙ୍ଗ କରାଗଲା ଏବଂ ଏହି ରୂପେ ଇଂଲଣ୍ଡ ନିଜେ ଶାନ୍ତି ସର୍ତ୍ତକୁ ଅବଜ୍ଞା କଲା । ଆହୁରି ଅଦ୍ଭୁତ କଥା ହେଉଛି ଯେ, ଠିକ୍ ଯେତେବେଳେ ଜର୍ମାନୀର ଅସାଧାରଣ ବିରାଟ ଆକାରରେ ଚାଲି ୟୁରୋପକୁ ଉତ୍ତେଜିତ କରୁଥିଲା, ସେତେବେଳେ ନିଜର ପୁରାତନ ବନ୍ଧୁ ଫ୍ରାନ୍ସକୁ ପୁଚ୍ଛା ନ ପଚାରି ଇଂଲଣ୍ଡ ଏହା କଲା । ଇଂଲଣ୍ଡର କାର୍ଯ୍ୟକୁ ବିଶ୍ୱାସଘାତକତା ବୋଲି ଫ୍ରାନ୍ସ ବିଚାରିଲା ଏବଂ ଉତ୍ତେଜିତ ହୋଇଗଲା ଓ ମୁସୋଲିନୀ ସହିତ ସନ୍ଧି କରିବାକୁ ଧାଇଁଲା, ତାହା ହେଲେ ଇଟାଲୀ ସୀମାନ୍ତରେ ତାର ବିପଦ କିଛିଏ କମ୍ ହୋଇଯିବ ।

ଆବିସିନିଆ—

ମୁସୋଲିନୀ ବହୁଦିନରୁ ଯେଉଁ ସୁବିଧା ଖୋଜୁଥିଲା ତାହା ତାକୁ ଏବେ ମିଳିଗଲା । ଅନେକ ବର୍ଷରୁ ଆବିସିନିଆ ଆକ୍ରମଣର ଯୋଜନା ସେ କରିଥିଲା, ମାତ୍ର ବ୍ରିଟିଶ ଓ ଫ୍ରାନ୍ସ କିପରି ମତଗତି ଧରିବେ ସେ ସମ୍ବନ୍ଧରେ ନିଶ୍ଚିତ ନ ଥିବାରୁ ସେ ଦ୍ୱିଧା କରୁଥିଲା । ଫ୍ରାନ୍ସ ଓ ଇଟାଲୀ ଭିତରେ ଖୁବ୍ ସଂଘର୍ଷ ହୋଇଛି ଏବଂ ୧୯୩୪ ଅକ୍ଟୋବର ମାସରେ ମାର୍ସେଲସ-ଠାରେ ସମ୍ଭବତଃ ଜଣେ ଇଟାଲି ଏଜେଣ୍ଟ ଦ୍ୱାରା ଯୁଗୋସ୍ଲୋଭିଆର ରାଜା ଆଲେକ୍‌ଜାଣ୍ଡାର ଓ ଫରାସୀ ବୈଦେଶିକମନ୍ତ୍ରୀ ଲୁଇ ବାର୍ଥୋକ୍ସ ହତ୍ୟା କରାଯାଇଥିଲା । ଏବେ ମୁସୋଲିନୀ ବିଶ୍ୱାସ କଲେ ଯେ ଫ୍ରାନ୍ସ କି ଇଂଲଣ୍ଡ କେହି ତାଙ୍କର ଆବିସିନିଆ ଆକ୍ରମଣରେ ସେପରି ଫଳପ୍ରଦ ବିରୋଧ କରିବେ ନାହିଁ । ୧୯୩୫ ଅକ୍ଟୋବରରେ ଏହି ଅଭିଯାନ ଆରମ୍ଭ ହେଲା, ସେତେବେଳକୁ ପ୍ରକୃତରେ ଲିଗ୍ ଅଫ୍ ନେସନ୍ସର ବୈଠକ ଚାଲିଥାଏ । ଆବିସିନିଆ ଲିଗର ଏକ ସଦସ୍ୟ ଥିଲା ଏବଂ ପୃଥିବୀ ଚମକି ପଡ଼ିଲା । ଇଟାଲୀକୁ ଆକ୍ରମଣକାରୀ ବୋଲି ଲିଗ୍ ଘୋଷଣା କଲା ଏବଂ ଅନେକ ବିଳମ୍ବରେ ତା' ବିରୁଦ୍ଧରେ କେତେକ ଅର୍ଥନୈତିକ କ୍ରିୟା ପ୍ରୟୋଗ କଲା ଅର୍ଥାତ୍ ଲିଗ୍ ସଦସ୍ୟ ଦେଶମାନେ କୌଣସି ଜିନିଷପତ୍ର ତା ସହିତ କାରବାର କରିବା ନିଷେଧ କରିଦିଆଗଲା । କିନ୍ତୁ ପ୍ରକୃତରେ ଯୁଦ୍ଧ ପାଇଁ ନିତାନ୍ତ ଆବଶ୍ୟକୀୟ ତେଲ, ଲୁହା, ଇସ୍ପାତ ଓ କୋଇଲା ଆଦି ପ୍ରଧାନ ଜିନିଷମାନ ଏହି ତାଲିକା ଭିତରେ ନ ଥିଲା । ଆଙ୍ଗ୍ଲୋ ଇରାନିଆନ ଅଏଲ କମ୍ପାନୀ ଇଟାଲୀକୁ ତେଲ ଯୋଗାଇବା ପାଇଁ କଠିନ ପରିଶ୍ରମ କଲା । ଏହି ସବୁ କାର୍ଯ୍ୟଦ୍ୱାରା ଇଟାଲୀ କିଛିଏ ଅସୁବିଧାରେ ପଡ଼ିଲା ମାତ୍ର ତାହାର କାର୍ଯ୍ୟରେ ବିଶେଷ ଅସୁବିଧା ପଡ଼ିଥିଲା ନାହିଁ । ସଂଯୁକ୍ତ ରାଷ୍ଟ୍ର ଆମେରିକା ତେଲର ନିଷେଧ କରିବା ନିମନ୍ତେ ପ୍ରସ୍ତାବ କରିଥିଲା, ମାତ୍ର ବ୍ରିଟେନ ସେଥିରେ ସମ୍ମତ ହେଲା ନାହିଁ ।

ବ୍ରିଟିଶ ବୈଦେଶିକମନ୍ତ୍ରୀ ସାର୍ ସାମୁଏଲ ହୋର ଓ ଫରାସୀ ମନ୍ତ୍ରୀ ଲାଭାଲ ଇଟାଲୀକୁ ଆବିସିନିଆର ଅଧିକ ଅଞ୍ଚଳ ସମର୍ପି ଦେବା ନିମନ୍ତେ ଏକ ଚୁକ୍ତି କଲେ, କିନ୍ତୁ ଏହା ବିରୁଦ୍ଧରେ ଏପରି ସାଧାରଣ ଜନମତ ଉଠିଲା ଯେ ସାର୍ ସାମୁଏଲ ହୋରଙ୍କୁ ଇସ୍ତଫା ଦେବାକୁ ପଡ଼ିଲା । ଇତ୍ୟବସରରେ ଆବିସିନିଆବାସୀ ଖୁବ୍ ସାହସର ସହିତ ଯୁଦ୍ଧ କଲେ, କିନ୍ତୁ ନିମ୍ନଗାମୀ ଉଡ଼ାଜାହାଜରେ ସମଗ୍ର ଜନତା ଉପରେ ବୋମା ବର୍ଷଣ ସମ୍ମୁଖରେ ସେମାନେ ଶକ୍ତିହୀନ ଥିଲେ । ବେସାମରିକ ନରନାରୀ, ସ୍ତ୍ରୀ, ବାଳକ, ଅ୍ୟମ୍ବୁଲାନ୍ସ ଓ ହାସପାତାଳ ଆଦିରେ ଧ୍ୱଂସକାରୀ ଓ ଗ୍ୟାସ ବୋମାମାନ ନିକ୍ଷେପ କରାଗଲା ଓ ଅତ୍ୟନ୍ତ ପାଶବିକ ନରହତ୍ୟା ଚାଲିଲା । ୧୯୩୬ ମେ ମାସରେ ରାଜଧାନୀ ଆଡ଼ିସଆବାବାରେ ଇଟାଲୀ ସୈନ୍ୟ ପ୍ରବେଶ କଲେ ଏବଂ ପରେ ଦେଶର ବିସ୍ତୃତ ଅଞ୍ଚଳ ଦଖଲ କରିଗଲେ । ସେହି ଦିନଠାରୁ ଅତେଇ ବର୍ଷ ଅତିକ୍ରମ କରିଗଲାଣି; କିନ୍ତୁ ଆବିସିନିଆର ସଂଲଗ୍ନ ଅଞ୍ଚଳର ପ୍ରତିରୋଧ ତଥାପି ଚାଲିଛି । ଆବିସିନିଆ ଏ ପର୍ଯ୍ୟନ୍ତ ପୂର୍ଣ୍ଣ ବିଜିତ ହୋଇ ନାହିଁ, ଯଦିଓ ଇଂଲଣ୍ଡ ଓ ଫ୍ରାନ୍ସ ଏବେ ଏ ବିଜୟକୁ ସ୍ୱୀକାର କରିଗଲେଣି ।

ଲିଗ୍ ଶକ୍ତିମାନଙ୍କର ଆବିସିନିଆ ପ୍ରତି ବିଶ୍ୱାସଘାତକତା ଓ ଏହି କାଣ୍ଡ ପରେ ଲିଗ୍ ଯେ ଶକ୍ତିହୀନ ତାହା ଦୁନିଆ ଜାଣିଗଲା । ହିଟଲର ବିନା ଭୟରେ ଲିଗ୍‌କୁ ଏବେ ଅବଜ୍ଞା କରି ପାରିଲା ଏବଂ ୧୯୩୬ ମାର୍ଚ୍ଚ ମାସରେ ରାଇନଲଣ୍ଡର ଅଞ୍ଚଳକୁ ତାଙ୍କର ସୈନ୍ୟ ଯାତ୍ରା କଲେ । ଭର୍ସେଇ ଚୁକ୍ତି ଭଙ୍ଗର ଏହା ଆଉ ଏକ ଦୃଷ୍ଟାନ୍ତ ।

ସ୍ପେନ—

୧୯୩୬ ମସିହାରେ ୟୁରୋପରେ କର୍ତ୍ତୃତ୍ୱ କରିବା ନିମନ୍ତେ ଫାସିଷ୍ଟ ଶକ୍ତିମାନଙ୍କର ଆଉ ଏକ ଉଦ୍ୟମ ଦେଖାଗଲା ଏବଂ ଏହା ଗଣତନ୍ତ୍ର ଓ ସ୍ୱାଧୀନତା ପକ୍ଷରେ ଏକ ଜୀବନ୍ତ ସଂଗ୍ରାମରେ ପରିଣତ ହେଲା । ଆମେ ଦେଖିଛେ କିପରି ସ୍ପେନରେ ପ୍ରଭୁତ୍ୱ ନିମନ୍ତେ ପ୍ରତିଦ୍ୱନ୍ଦ୍ୱୀ ଶକ୍ତି ଲଢ଼ାଇ କରିଛନ୍ତି ଏବଂ ଯୁବକ ପ୍ରଜାତନ୍ତ୍ର ସ୍ପେନ ଅମଲାତାନ୍ତ୍ରିକ ଓ ଅର୍ଦ୍ଧସାମନ୍ତ ପ୍ରତିକ୍ରିୟା ବିରୁଦ୍ଧରେ କିପରି ସଂଗ୍ରାମ କରିଥିଲା । ଶେଷରେ ପ୍ରଗତିଶୀଳ ଦଳ ସବୁ ଏକତ୍ର ମିଳିତ ହେଲେ ଏବଂ ୧୯୩୬ ଫେବୃୟାରୀରେ ଏକ ପପୁଲାର ଫ୍ରଣ୍ଟ (Popular Front) ଗଢ଼ିଲେ । ଏହା ପୂର୍ବରୁ ଫ୍ରାନ୍ସରେ ଫାସିଜିମ୍ ଶକ୍ତି ବଢ଼ି ପ୍ରକାଶ୍ୟ ଭାବରେ ଫରାସୀ ପ୍ରଜାତନ୍ତ୍ରର ବିରୋଧ କରୁଥିବା ହେତୁ ଏବଂ ଏପରିକି ଏକ ନିଷ୍ଫଳ ବିଦ୍ରୋହ ସଙ୍ଗଠିତ କରିଥିବା ଯୋଗୁଁ ଏହା ବିରୁଦ୍ଧରେ ଲଢ଼ିବା ନିମନ୍ତେ ଫ୍ରାନ୍ସରେ ଏକ ପପୁଲାର ଫ୍ରଣ୍ଟ ସ୍ଥାପିତ ହୋଇଥିଲା । ଏକ ବିରାଟ ଜନଉତ୍ସାହ ଉପରେ ଫରାସୀ ପପୁଲାର ଫ୍ରଣ୍ଟ ସ୍ଥାପିତ ହେଲା ଏବଂ ନିର୍ବାଚନରେ ଯଶସ୍ୱୀ ହୋଇ ଏକ ସରକାର ଗଢ଼ାଗଲା; ଏହା ଶ୍ରମିକମାନଙ୍କର ଅବସ୍ଥା ସୁଧାରିବା ନିମନ୍ତେ କେତେକ ଆଇନ ପାସ କଲା ।

ଭୋଟ ନିର୍ବାଚନରେ ସ୍ପେନ ପପୁଲର ଫ୍ରଣ୍ଟ କୃତକାର୍ଯ୍ୟ ହେଲା ଏବଂ ଏକ ସରକାର ଗଢ଼ିଲା । ଏହା ଦୀର୍ଘକାଳ ହେଲା ନ ହୋଇଥିବା ଅନେକ ସଂସ୍କାର ଓ ଗୀର୍ଜାର କ୍ଷମତା ଖର୍ବ କରିବା ନିମନ୍ତେ ପ୍ରତିଜ୍ଞାବଦ୍ଧ ହୋଇଥିଲା । ଏହି ସବୁ ସଂସ୍କାର ଭୟରେ ପ୍ରତିକ୍ରିୟାପନ୍ଥୀମାନେ ଏକତାବଦ୍ଧ ହୋଇଗଲେ ଏବଂ ଏହା ଉପରେ ଆକ୍ରମଣ କରିବା ନିମନ୍ତେ ସ୍ଥିର କଲେ । ସେମାନେ ଇଟାଲୀ ଓ ଜର୍ମାନୀର ସାହାଯ୍ୟ ଭିକ୍ଷା କଲେ ଏବଂ ପାଇଲେ ଓ ୧୯୩୬ ଜୁଲାଇ ୧୮ ତାରିଖ ସ୍ପେନ ମୂରିଶ ସେନାଙ୍କୁ ଅନେକ ପ୍ରଲୋଭନ ଦେଖାଇ ସେମାନଙ୍କ ସାହାଯ୍ୟରେ ଜେନେରାଲ ଫ୍ରାଙ୍କୋ ତାଙ୍କର ବିଦ୍ରୋହ ଆରମ୍ଭ କଲେ । ଫ୍ରାଙ୍କୋ ସହଜରେ ଓ ଶୀଘ୍ର ଜୟ କରିବାକୁ ଆଶା କରିଥିଲେ । ତାଙ୍କ ପକ୍ଷରେ ସେନା ଓ ଦୁଇଟି ଶକ୍ତିଶାଳୀ ଦେଶର ସାହାଯ୍ୟ ରହିଥିଲା । ପ୍ରଜାତନ୍ତ୍ର ନିରାଶ୍ରୟ ପରି ବୋଧ ହେଲା, କିନ୍ତୁ ଏହା ସଙ୍କଟ କାଳରେ ସ୍ୱାଧୀନତା ରକ୍ଷା ନିମନ୍ତେ ସ୍ପେନର ଜନସାଧାରଣଙ୍କୁ ଆହ୍ୱାନ କଲା ଓ ସେମାନଙ୍କ ଭିତରେ ଅସ୍ତ୍ର ବଣ୍ଟନ କଲା । ସାଧାରଣ ଲୋକ ଏହି ଆହ୍ୱାନର ଜବାବ ଦେଲେ ଏବଂ ଫ୍ରାଙ୍କୋଙ୍କ ବନ୍ଧୁକ ଓ ଉଡ଼ାଜାହାଜ ବିରୁଦ୍ଧରେ ପ୍ରାୟ ଖାଲି ହାତରେ ଲଢ଼ାଇ କଲେ । ସେମାନେ ତାଙ୍କୁ ରୋକି ଦେଲେ । ବିଦେଶରୁ ଗଣତନ୍ତ୍ର ପାଇଁ ଲଢ଼ିବା ନିମନ୍ତେ ସ୍ପେନକୁ ସ୍ୱେଚ୍ଛାସେବକ ଗ୍ଲଲେ ଏବଂ ଏକ ଅନ୍ତର୍ଜାତିକ ବାହିନୀ ( International Brigade ) ଗଢ଼ା ହେଲା, ପ୍ରଜାତନ୍ତ୍ରର ନିତାନ୍ତ ଦରକାର ବେଳେ ଏହା ତାର ଅମୂଲ୍ୟ ସେବା କରିଥିଲା । କିନ୍ତୁ ପ୍ରଜାତନ୍ତ୍ର ଲାଗି ସ୍ୱେଚ୍ଛାସେବକ ଆସିବା ସଙ୍ଗେ ସଙ୍ଗେ ଫ୍ରାଙ୍କୋଙ୍କୁ ସାହାଯ୍ୟ କରିବା ନିମନ୍ତେ ବହୁ ସଂଖ୍ୟାରେ ରକ୍ଷିତ ଇଟାଲୀୟ ସେନା ଆସିଲେ ଏବଂ ଉଡ଼ାଜାହାଜ, ଉଡ଼ାଜାହାଜ ଚାଳକ, ବିଶେଷଜ୍ଞ ଓ ଅସ୍ତ୍ର ଇଟାଲୀ ଓ ଜର୍ମାନୀରୁ ଆସିଲା । ଫ୍ରାଙ୍କୋ ପଶ୍ଚାତରେ ଦୁଇଟି ପ୍ରଧାନ ଶକ୍ତିର ଅଭିଜ୍ଞ ସେନାପତି ସବୁ ଥିଲେ; ପ୍ରଜାତନ୍ତ୍ର ପକ୍ଷରେ ଉତ୍ସାହ, ସାହସ ଓ ତ୍ୟାଗ ରହିଥିଲା । ବିଦ୍ରୋହୀମାନେ ଅଗ୍ରସର ହୋଇ ୧୯୩୬ ନଭେମ୍ବର ମାସରେ ମାଡ୍ରିଡ଼ ଦ୍ୱାରରେ ପହଞ୍ଚିଲା-ବେଳକୁ ପ୍ରଜାତନ୍ତ୍ରର ଲୋକେ ଏକ ଭୀଷଣ ପ୍ରଚେଷ୍ଟାରେ ସେମାନଙ୍କର ଗତିପଥ ରୋଧ କଲେ । ସେମାନଙ୍କର ଚିତ୍କାର ହେଲା "ନୋ ପାସାରାନ୍" (No Pasaran )—ସେମାନଙ୍କୁ ଅତିକ୍ରମ କରିବାକୁ ଦିଆଯିବ ନାହିଁ ଏବଂ ପ୍ରତିଦିନ ମାଡ୍ରିଡ଼୍ ଉପରେ ଆକାଶରୁ ଉଡ଼ାଜାହାଜ ଓ ଅଶ୍ୱାରୋହୀ ସେନା ବୋମା ବର୍ଷଣ କଲେ, ସୁନ୍ଦର କୋଠା ସବୁ ପାଉଁଶ ହୋଇଗଲା, ଧ୍ୱଂସକାରୀ ବୋମା ବାରମ୍ବାର ପଡ଼ିବା ଫଳରେ ଖୁବ୍ ନିଆଁ ଲାଗିଲା, ମାଡ୍ରିଡ଼୍ ରକ୍ଷା କରିବା ନିମନ୍ତେ ତାହାର ସହସ୍ର ସହସ୍ର ସନ୍ତାନ ପ୍ରାଣତ୍ୟାଗ କଲେ ଏବଂ ମାଡ୍ରିଡ଼୍ ଦଖଲ ହୋଇ ପାରିଲା ନାହିଁ ଓ ବିଜୟୀ ହେଲା । ବିଦ୍ରୋହୀ ସେନା ମାଡ୍ରିଡ଼ର ବାହାର ପ୍ରଦେଶରେ ପହଞ୍ଚିବାର ଦୁଇବର୍ଷ ହୋଇଗଲାଣି । ତଥାପି ସେମାନେ ସେହିଠି ଅଟକିଛନ୍ତି ଓ "ନୋ ପାସାରାନ" ଧ୍ୱନି ଶୁଣୁଛନ୍ତି ଏବଂ ମାଡ୍ରିଡ଼୍ ତା'ର ବିଷାଦ ଓ ହତାଶା ଭିତରେ ସ୍ୱାଧୀନତାର ମସ୍ତକ ଉଚ୍ଚରେ ଉତ୍ତୋଳନ କରିଛି ଏବଂ ସ୍ପେନବାସୀଙ୍କର ଉନ୍ନତ ଓ ଅଜେୟ ଭାବର ପ୍ରତିବିମ୍ବ ରୂପେ ରହିଛି ।

ଏହି ସ୍ପେନ ସଂଗ୍ରାମକୁ ଆମର ବୁଝିବା ଦରକାର, କାରଣ ଏହା ଏକ ସ୍ଥାନୀୟ ବା ଜାତୀୟ ସଂଗ୍ରାମଠାରୁ ଅନେକ ଅଧିକ । ଏହି ବିଦ୍ରୋହ ଗଣତନ୍ତ୍ର ନୀତିରେ ନିର୍ବାଚିତ ଏକ ପାର୍ଲିମେଣ୍ଟ ବିରୁଦ୍ଧରେ ହୋଇଥିଲା । କମ୍ୟୁନିଜମ୍ ଓ ଧର୍ମ ବିପଦରେ ପଡ଼ିଛି ବୋଲି ଚିତ୍କାର ଉଠିଲା, କିନ୍ତୁ ପପୁଲର ଫ୍ରଣ୍ଟ ସଭ୍ୟମାନଙ୍କ ଭିତରେ ଖୁବ୍ ଅଳ୍ପ କମ୍ୟୁନିଷ୍ଟ ଥିଲେ, ଅଧିକ ସଂଖ୍ୟକ ଥିଲେ ସୋସିଆଲିଷ୍ଟ ଓ ପ୍ରଜାତନ୍ତ୍ରବାଦୀ । ଧର୍ମଦୃଷ୍ଟିରୁ ଦେଖିଲେ ପ୍ରଜାତନ୍ତ୍ରର ପ୍ରଧାନ ଯୋଦ୍ଧାମାନେ ବାସ୍କ ରାଜ୍ୟର କାଥଲିକ ଥିଲେ । ଜର୍ମାନୀରେ ହିଟଲର ପରି ନୁହେଁ, ପ୍ରଜାତନ୍ତ୍ର ଧର୍ମରେ ସ୍ୱାଧୀନତା ରକ୍ଷା କରିବା ନିମନ୍ତେ ନିର୍ଭର ଜବାବ ଦେଇଥିଲା କିନ୍ତୁ ଗିର୍ଜାର ପୁରୋହିତ ଓ ଭୂମିରେ ଥିବା ସ୍ଥାପିତ ସ୍ୱାର୍ଥ ଆପତ୍ତି ଉଠାଇଲେ । ଏହା ପ୍ରକୃତରେ ଗଣତନ୍ତ୍ର ବିରୁଦ୍ଧରେ ବିଦ୍ରୋହ, ଏହା ଭୂମି ଓ ବଡ଼ ବଡ଼ ଇଲାକାରେ ଥିବା ସାମନ୍ତବାଦୀମାନଙ୍କ ଉପରେ ଆକ୍ରମଣ କରିବ ଓ ତାଙ୍କୁ ଲୋପ କରିଦେବ ବୋଲି ଭୟ ଉପୁଜିବାରୁ ଆରମ୍ଭ ହୋଇଥିଲା । ମୁଁ ପୂର୍ବରୁ ଯେପରି କହିଛି ଏପରି ଅବସ୍ଥା ପଡ଼ିଥିଲେ ପ୍ରତିକ୍ରିୟାପନ୍ଥୀମାନେ ଆଉ ଗଣତାନ୍ତ୍ରିକ ନୀତି ରକ୍ଷା କରିବା କିମ୍ବା ଭୋଟଦାତାମାନଙ୍କୁ ସେହି ମତରେ ଦୀକ୍ଷିତ କରାଇବାର ଚେଷ୍ଟାର କଷ୍ଟ ଉଠାନ୍ତି ନାହିଁ । ସେମାନେ ଅସ୍ତ୍ର ଧରନ୍ତି ଏବଂ ହିଂସା ଓ ଆତଙ୍କବାଦ ଦ୍ୱାରା ସାଧାରଣ ଜନତା ଉପରେ ନିଜର ଇଚ୍ଛା ଶକ୍ତି ଜବରଦସ୍ତ ଲଗାଇବାକୁ ପ୍ରଚେଷ୍ଟା କରନ୍ତି ।

ସ୍ପେନର ଯେଉଁ ସେନାବାଦୀ ଓ ଅମଲାଶ୍ରେଣୀ ବିଦ୍ରୋହ କରିଥିଲେ ସେମାନେ ଇଟାଲୀ ଓ ଜର୍ମାନୀ ଦୁଇ ଫାସିଷ୍ଟ ଶକ୍ତିକୁ ନିଜ ଅନୁରୂପ ମିତ୍ର ରୂପେ ପାଇଲେ । ଏହି ଦୁଇ ଦେଶ ଭୂମଧ୍ୟସାଗରରେ କର୍ତ୍ତୃତ୍ୱ କରିବା ନିମନ୍ତେ ଓ ସେଠାରେ ନୌଘାଟି ସ୍ଥାପନ କରିବା ନିମନ୍ତେ ସ୍ପେନ ଉପରେ ପ୍ରାଧାନ୍ୟ କରିବାକୁ ଚାହୁଁଥିଲେ । ସ୍ପେନର ଖଣିଜ ସମ୍ପଦ ପ୍ରତି ମଧ୍ୟ ସେମାନେ ଆକୃଷ୍ଟ ହେଲେ । ତେଣୁ ସ୍ପେନ ଯୁଦ୍ଧ ଏକ ଗୃହଯୁଦ୍ଧ ନ ଥିଲା ମାତ୍ର ବାସ୍ତବରେ କ୍ଷମତା ରାଜନୀତି ଖେଳରେ ଫ୍ରାନ୍ସକୁ ଅସମର୍ଥ ଓ ବ୍ରିଟେନକୁ ଦୁର୍ବଳ କରି ଦେବା ନିମନ୍ତେ ଏବଂ ସେହି ଭାବରେ ୟୁରୋପ ଉପରେ ଫାସିଜମ୍‌ର ପ୍ରାଧାନ୍ୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ଏକ ୟୁରୋପୀୟ ସଂଗ୍ରାମ ଥିଲା । ଜର୍ମାନୀ ଓ ଇଟାଲୀର ସ୍ୱାର୍ଥରେ କେତେକ ପରିମାଣରେ ସଂଘର୍ଷ ଉପୁଜିଲା, କିନ୍ତୁ ସେମାନେ ସେହି ମୁହୂର୍ତ୍ତ ପାଇଁ ମିଳିତ ହୋଇ ରହିଲେ ।

ଫାସିଷ୍ଟ ସ୍ପେନ ଫ୍ରାନ୍ସ ପକ୍ଷରେ ଘାତକ ହେବ ଏବଂ ପ୍ରାଚ୍ୟକୁ ବ୍ରିଟିଶ ଭୂମଧ୍ୟସାଗର ରାସ୍ତା ଓ କେପ୍ ରାସ୍ତାରେ ବିପଦ ହୋଇ ରହିବ । ସେତେବେଳକୁ ଜିବ୍ରାଲ୍‌ଟର ଅକାମୀ ହୋଇଯିବ ଓ ସୁଏଜ କେନାଲର ବିଶେଷ କିଛି ମୂଲ୍ୟ ରହିବ ନାହିଁ । ତେଣୁ ଗଣତନ୍ତ୍ର ପ୍ରତି ପ୍ରେମ ନ ହେଲେ ସୁଦ୍ଧା ଏହି ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଇଂଲଣ୍ଡ ଓ ଫ୍ରାନ୍ସ ବିଦ୍ରୋହ ଦମନ କରିବା ନିମନ୍ତେ ସ୍ପେନ ସରକାରକୁ ପ୍ରତ୍ୟେକ ପ୍ରକାର ନ୍ୟାୟସଙ୍ଗତ ସାହାଯ୍ୟ ଦେବାର ଆଶା କରିବାର କଥା । କିନ୍ତୁ ଜାତୀୟ ସ୍ୱାର୍ଥ ମୂଳରେ ଶ୍ରେଣୀ ସ୍ୱାର୍ଥ କିପରି ସରକାରମାନଙ୍କୁ ପରିଚାଳନା କରେ ତାହା ଏଠି ଆମେ ପୁଣି ଦେଖିଲେ । ବ୍ରିଟିଶ ସରକାର ଏକ ଅହସ୍ତକ୍ଷେପ ଯୋଜନା ବାହାର କଲେ, ଏହି ଯୁଗରେ ଏହା ଏକ ମହାନ ପ୍ରହସନ ହୋଇ ରହିଛି ।

ଜର୍ମାନୀ ଓ ଇଟାଲୀ ଏହି ଅ-ହସ୍ତକ୍ଷେପ କମିଟିରେ ରହିଛନ୍ତି, ଅଥଚ ପ୍ରକାଶ୍ୟ ଭାବରେ ବିଦ୍ରୋହୀଙ୍କୁ ସାହାଯ୍ୟ କରୁଛନ୍ତି ଏବଂ ବିଧିବଦ୍ଧ ସରକାର ରୂପେ ସ୍ୱୀକାର କରୁଛନ୍ତି । ଫ୍ରାଙ୍କୋ ପକ୍ଷକୁ ସେମାନଙ୍କର ସେନା ଯାଉଛନ୍ତି ଏବଂ ଉଡ଼ାଜାହାଜ ଚାଳକମାନେ ତଥାପି ବୋମା ନିକ୍ଷେପ କରୁଛନ୍ତି । ସୁତରାଂ ଅ-ହସ୍ତକ୍ଷେପ ଅର୍ଥ କେବଳ ବିଦ୍ରୋହୀମାନଙ୍କୁ ସାହାଯ୍ୟ ଦେବାହିଁ ସାର ହେଲା । ବ୍ରିଟିଶ ପ୍ରରୋଚନାରେ ଫ୍ରାନ୍‌ସ ସରକାର ପାଇରନ୍‌ସ ସୀମାନ୍ତ ବନ୍ଦ କରି ଦେଇଛନ୍ତି, ତେଣୁ ସ୍ପେନ ପ୍ରଜାତନ୍ତ୍ରକୁ କୌଣସି ପ୍ରକାର ସାହାଯ୍ୟ ମିଳିବା ବନ୍ଦ ହୋଇଛି ।

ପ୍ରଜାତନ୍ତ୍ର ପାଇଁ ଖାଦ୍ୟ ନେଉଥିବା ବ୍ରିଟିଶ ଜାହାଜଗୁଡ଼ିକୁ ଫ୍ରାଙ୍କୋର ଉଡ଼ାଜାହାଜ ବା ନୌସେନା ବୁଡ଼ାଇ ଦେଇଛନ୍ତି ଏବଂ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚେମ୍ବରଲେନ ପ୍ରକୃତରେ ଫ୍ରାଙ୍କୋର କାର୍ଯ୍ୟକୁ ସମର୍ଥନ କରିଛନ୍ତି । ଗଣତନ୍ତ୍ର ବିସ୍ତାର ଭୟରେ ବ୍ରିଟିଶ ସରକାର ଏତେ ତଳକୁ ଖସି ଯାଇଛି । କେତେଦିନ ପୂର୍ବେ ଏହା ଇଟାଲୀ ସହିତ ଏକ ଚୁକ୍ତିନାମା କରିଛି, ଯାହା ଫଳରେ ଫ୍ରାଙ୍କୋଙ୍କୁ ସ୍ୱୀକାର କରିବାରେ ଓ ସ୍ପେନରେ ହସ୍ତକ୍ଷେପ କରିବା ନିମନ୍ତେ ଇଟାଲୀକୁ ମୁକ୍ତହସ୍ତରେ ଛାଡ଼ି ଦେବାକୁ ଏହା ଆଉ ଏକପାଦ ଆଗେଇଛି । ବାସ୍ତବିକ ଯଦି ସ୍ପେନ ପ୍ରଜାତନ୍ତ୍ର ଇଂଲଣ୍ଡ ଓ ଫ୍ରାନ୍‌ସ ଉପରେ ନିର୍ଭର କରିଥାନ୍ତା କିମ୍ବା ତାଙ୍କର ପରାମର୍ଶ ମତେ କାର୍ଯ୍ୟ କରିଥାନ୍ତା ତେବେ ଅନେକ ଦିନୁ ଏହା ଶେଷ ପାଇ ଯାଆନ୍ତାଣି । କିନ୍ତୁ ବ୍ରିଟିଶ ଓ ଫାନ୍‌ସ ନୀତି ସତ୍ତ୍ୱେ ସ୍ପେନ ଲୋକେ ଫାସିଜମ୍‌କୁ ମାନି ନେବା ନିମନ୍ତେ ଅସ୍ୱୀକାର କରିଛନ୍ତି । ତାଙ୍କ ପକ୍ଷରେ ବିଦେଶୀ ଆକ୍ରମଣକାରୀଙ୍କ ବିରୁଦ୍ଧରେ ସ୍ୱାଧୀନତା ଲାଗି ଏହା ଏକ ଜାତୀୟ ସଂଗ୍ରାମ, ଏହି ସଂଗ୍ରାମର ରୂପ ପୌରାଣିକ ହୋଇ ଯାଇଛି ଏବଂ ଲୋକଙ୍କର ଅଲୌକିକ ସାହସ ଓ ଧୈର୍ଯ୍ୟ ସମଗ୍ର ଦୁନିଆକୁ ଚକିତ କରି ଦେଇଛି । ଫାଙ୍କୋ ପକ୍ଷରେ ରହି ଇଟାଲୀ ଓ ଜର୍ମାନୀର ଉଡ଼ାଜାହାଜ ସବୁ ସହର, ଗ୍ରାମ ଓ ବେସାମରିକ ଅଧିବାସୀମାନଙ୍କ ଉପରେ ଯେଉଁ ବୋମା ବର୍ଷଣ କରିଛନ୍ତି ତାହା ଅତ୍ୟନ୍ତ ପ୍ରଚଣ୍ଡ ।

ଗତ ଦୁଇବର୍ଷ ଭିତରେ ପ୍ରଜାତନ୍ତ୍ର ଏକ ସୁନ୍ଦର ସେନା ଗଢ଼ିଛି ଏବଂ ନିକଟରେ ସେମାନେ ସମସ୍ତ ବିଦେଶୀ ସ୍ୱେଚ୍ଛାସେବକମାନଙ୍କୁ ଫେରାଇ ଦେଇଛନ୍ତି । ଫ୍ରାଙ୍କେ ସ୍ପେନର ପ୍ରାୟ ୩/୪ ଅଂଶ ଦଖଲ କରିଥିଲେ ସୁଦ୍ଧା ଏବଂ ମାଡ୍ରିଡ୍ ଓ ଭାଲେନ୍‌ସିଆକୁ କାଟାଲୋନିଆରୁ ବିଚ୍ଛିନ୍ନ କରି ପକାଇଥିଲେ ମଧ୍ୟ ନୂତନ ପ୍ରଜାତନ୍ତ୍ର ସେନା ତାକୁ ରୋକି ରଖିଛନ୍ତି ଏବଂ ମହାନ୍ ଏବ୍ରୋ ଯୁଦ୍ଧରେ ନିଜର ଯୋଗ୍ୟତା ପ୍ରମାଣିତ କରିଛନ୍ତି । ଏହି ଯୁଦ୍ଧ ପ୍ରାୟ କ୍ରମାଗତ ଭାବରେ କେତେକ ମାସ ପର୍ଯ୍ୟନ୍ତ ଚାଲିଥିଲା । ଏହା ପରିଷ୍କାର ଯେ ଫ୍ରାଙ୍କେ ପ୍ରଚୁର ବିଦେଶୀ ସାହାଯ୍ୟ ନ ପାଇଥିଲେ ଏହି ସେନାକୁ ପରାସ୍ତ କରି ପାରି ନ ଥାନ୍ତା ।

ଏବେ ପ୍ରଜାତନ୍ତ୍ରର ପ୍ରଧାନ ଅସୁବିଧା ହେଉଛି ବିଶେଷତଃ ଶୀତକାଳରେ ଖାଦ୍ୟ ଅଭାବ । କାରଣ ପ୍ରଜାତନ୍ତ୍ରକୁ ଖାଲି ନିଜର ସେନା ସକାଶେ ଓ ତାହା ଅଧୀନସ୍ଥ ଅଞ୍ଚଳର ସାଧାରଣ ଅଧିବାସୀଙ୍କୁ ନୁହେଁ, ଫ୍ରାଙ୍କୋ ଅଧିକୃତ ଅନ୍ୟ ଅଞ୍ଚଳମାନଙ୍କରୁ ଯେଉଁ ଲକ୍ଷ ଲକ୍ଷ

ଲୋକ ପଳାଇ ଆସି ଏଠାରେ ଆଶ୍ରୟ ଗ୍ରହଣ କରୁଛନ୍ତି ସେମାନଙ୍କୁ ଖାଦ୍ୟ ଯୋଗାଇବାକୁ ପଡ଼ୁଛି ।

ଚୀନ—

ସ୍ପେନର ବିଷାଦପୂର୍ଣ୍ଣ କାହାଣୀ ପରେ ଆମେ ଏବେ ଚୀନର ଦୁଃଖ କାହାଣୀ ଦେଖିବା ।

ମାଞ୍ଚୁରିଆ ଉପରେ ଜାପାନର କ୍ରମାଗତ ଆକ୍ରମଣ ଚାଲିଲା, ଏବଂ ମୁଁ ତୋତେ କହିଛି, ତାହା ବ୍ରିଟେନର ସରକାରୀ ସହିଚ୍ଛା ପାଉଥିଲା । ଜାପାନ ଆକ୍ରମଣ ବିରୁଦ୍ଧରେ ଆମେରିକାର ସହଯୋଗ ପ୍ରସ୍ତାବକୁ ବ୍ରିଟେନ ପ୍ରତ୍ୟାଖ୍ୟାନ କଲା । ବ୍ରିଟେନ ଜାପାନକୁ ଏ ପ୍ରକାରେ କାହିଁକି ଉତ୍ସାହିତ କଲା ଏବଂ ଏହିରୂପେ ଏକ ପ୍ରଭାବଶାଳୀ ପ୍ରତିଦ୍ୱନ୍ଦ୍ୱୀକୁ କାହିଁକି ବା ବଳିଷ୍ଠ କଲା । ବିଂଶ ଶତାବ୍ଦୀର ଆରମ୍ଭ କାଳରୁ ପ୍ରାୟ ବ୍ରିଟିଶ ବାହୁଚ୍ଛାୟା ତଳେ ଏକ ସାମ୍ରାଜ୍ୟବାଦୀ ଶକ୍ତିଭାବରେ ଜାପାନ ଆଗକୁ ମାଡ଼ି ଚାଲିଛି । ପ୍ରଥମେ ଏହା ଜାରଶାସିତ ରୁଷ ବିରୁଦ୍ଧରେ ଲକ୍ଷ୍ୟ କରିଥିଲା । ମହାସମର ପରେ ସଂଯୁକ୍ତ ରାଷ୍ଟ୍ର ଆମେରିକା ଓ ସୋଭିଏଟ ଇଉନିଅନ ଏହି ଦୁଇଦେଶ ଇଂଲଣ୍ଡର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ହେଲେ ଏବଂ ତେଣୁ ଅଳ୍ପପର୍ଯ୍ୟନ୍ତ ଜାପାନ ବ୍ରିଟିଶସ୍ୱାର୍ଥରେ ହାତଦେବାର ଭୟ ଥାଇ ମଧ୍ୟ ତାକୁ ସହଯୋଗ ଦେବାର ବ୍ରିଟିଶ ପୁରାତନ ନୀତି ଅକ୍ଷୁର୍ଣ୍ଣ ରହିଛି । ଜାପାନର ଆମେରିକା ପ୍ରତି ପ୍ରତିଦ୍ୱନ୍ଦ୍ୱିଭାବ ଯୋଗୁଁ ୧୯୩୩ ରେ ଆମେରିକା ସୋଭିଏଟ ଇଉନିୟନକୁ ସ୍ୱୀକାର କଲା ।

୧୯୩୩ ପରେ ଚୀନରେ କେତେଗୁଡ଼ିଏ ସରକାର ହେଲା ! ଚ୍ୟାଙ୍ଗକାଇଶେକଙ୍କର ଜାତୀୟ ସରକାର ଥିଲା, ଏହାକୁ ଅନ୍ୟ ଶକ୍ତିମାନେ ସ୍ୱୀକାର କରୁଥିଲେ, ଦକ୍ଷିଣରେ କ୍ୟାଣ୍ଟନ ସରକାର ଥିଲା, ଏହା ମଧ୍ୟ କୋମିନଟାଙ୍ଗ ନୀତି ମାନୁଥିବାର ଦାବୀ କରୁଥିଲା; ଅଭ୍ୟନ୍ତର ଅଞ୍ଚଳରେ ବୃହତ ସୋଭିଏଟ ରାଜ୍ୟ ଥିଲା, ଏହାଛଡ଼ା ଦେଶର ଗ୍ରାମ ଗହଳରେ ଅନେକ ସଂଖ୍ୟକ ଅର୍ଦ୍ଧସ୍ୱାଧୀନ ଯୁଦ୍ଧ ପ୍ରଭୁମାନେ ଥିଲେ । ପେକିଙ୍ଗର ଉତ୍ତରରେ ଜାପାନ କ୍ରମାଗତ ଚୀନକୁ କାମୁଡ଼ି ଧରିଥିଲା । ଜାପାନୀ ଆକ୍ରମଣର ସମ୍ମୁଖୀନ ହେବା ପରିବର୍ତ୍ତେ ଚ୍ୟାଙ୍ଗକାଇ-ଶେକ୍ ବର୍ଷକୁ ବର୍ଷ ସୋଭିଏଟ ଅଞ୍ଚଳକୁ ତଳିତଳାନ୍ତ କରିବା ନିମନ୍ତେ କ୍ଷମତଶାଳୀ ସାମରିକ ଅଭିଯାନମାନ ସେଠାକୁ ପଠାଇ ନିଜର ଶକ୍ତିର ଅପଚୟ କରୁଥିଲେ । ଅଧିକାଂଶ ଅଭିଯାନ ବ୍ୟର୍ଥ ଗଲା ଏବଂ ଏହି ଅଞ୍ଚଳସବୁ ସେମାନେ ଯେତେବେଳେ ଦଖଲ କଲେ ସେତେବେଳେ ଚୀନା ସୋଭିଏଟ ସେନା ତାଙ୍କୁ ଗ୍ରୁଡ଼ି ଚାଲିଗଲେ ଏବଂ ଅନ୍ତର ଭିତରକୁ ଯାଇ ସେଠାରେ ସୋଭିଏଟ ସ୍ଥାପନା କଲେ । ଚୁଟେଙ୍କ ଅଧୀନରେ ଅଷ୍ଟମ ବାହିନୀଙ୍କ (Eighth route army)ର ଆଠହଜାର ମାଇଲ ପର୍ଯ୍ୟନ୍ତ ଅପୂର୍ବ ଯାତ୍ରା କାହାଣୀ ସାମରିକ ଇତିହାସରେ ଏକ

ଆଦର୍ଶ ହୋଇ ରହିଛି । ତେଣୁ ଜାପାନ ଆକ୍ରମଣ ପ୍ରତିରୋଧ କରିବା ନିମନ୍ତେ ସୋଭିଏଟ ଚୀନ ଚ୍ୟାଙ୍ଗକାଇଶେକ୍‌ଙ୍କ ସହିତ ସହଯୋଗ କରିବା ନିମନ୍ତେ ବାହାରିଥିଲେ ସୁଦ୍ଧା ଏହି ସଂଗ୍ରାମ ବରାବର ଲାଗିରହିଛି । ୧୯୩୭ରେ ଜାପାନ ଏକ ବିରାଟ ଆକ୍ରମଣ ଆରମ୍ଭ କଲା ଏବଂ ଶେଷରେ ଏଥିଯୋଗୁଁ କଳହରତ ଗୋଷ୍ଠୀସବୁ ମିଳିତ ହେଲେ ଓ ଜାପାନ ବିରୁଦ୍ଧରେ ଏକତାବଦ୍ଧ ସଂଗ୍ରାମ ଆରମ୍ଭ କଲେ । ଚୀନ ମଧ୍ୟ ସୋଭିଏଟ ଇଉନିଅନର ଘନିଷ୍ଠ ସମ୍ପର୍କରେ ଆସିଲା ଏବଂ ୧୯୩୭ ନଭେମ୍ବରରେ ଦୁଇଦେଶ ଭିତରେ ଏକ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷରିତ ହେଲା ।

ଜାପାନକୁ ଭୀଷଣ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଲା ଏବଂ ଏହା ଆକାଶ ଉପରୁ ବୋମା ବର୍ଷଣ କରି ଭୀଷଣ ହତ୍ୟାକାଣ୍ଡ ଓ ଅବିଶ୍ୱାସ ଯୋଗ୍ୟ ବର୍ବରତାର ଅନ୍ୟ କୌଶଳ ପ୍ରୟୋଗ କରି ଏହି ପ୍ରତିରୋଧ ଭାଙ୍ଗିବା ନିମନ୍ତେ ଚେଷ୍ଟା କଲା । କିନ୍ତୁ ଏହି ଅଗ୍ନି ପରୀକ୍ଷା ଭିତରେ ଚୀନରେ ଏକ ନୂତନ ଜାତିର ଉଦ୍ଭବ ହେଲା ଏବଂ ଚୀନ ଲୋକଙ୍କଠାରୁ ପୁରୁଣା ଆଳସ୍ୟ କୁଆଡ଼େ ଉଭେଇଗଲା । ଜାପାନୀ ବୋମାଦ୍ୱାରା ବଡ଼ ବଡ଼ ସହରସବୁ ଭସ୍ମରେ ପରିଣତ ହେଲା ଏବଂ ବହୁ ସଂଖ୍ୟକ ଲୋକ ନିହତ ହେଲେ । ଜାପାନ ଉପରେ ବି ଖୁବ୍ ଚାପ ପଡ଼ିଲା ଏବଂ ତା'ର ଅର୍ଥନୈତିକ ବ୍ୟବସ୍ଥା ଓ ଆର୍ଥିକ ଅବସ୍ଥା ଭୁସୁଡ଼ି ପଡ଼ିବାର ସଙ୍କେତ ଦେଖାଦେଲା । ସ୍ୱାଭାବିକ ଭାବରେ ଭାରତୀୟ ଲୋକଙ୍କର ଚୀନ ଲୋକଙ୍କପ୍ରତି ସ୍ନେହ ପ୍ରଜାତନ୍ତ୍ର ପରି ସହାନୁଭୂତି ରହିଛି ଏବଂ ଭାରତରେ ଆମେରିକା ଓ ଅନ୍ୟ ସ୍ଥାନରେ ଜାପାନୀ ଜିନିଷର ବର୍ଜନ କରିବା ନିମନ୍ତେ ବିରାଟ ଆନ୍ଦୋଳନମାନ ଆରମ୍ଭ ହେଲା ।

ତେବେ ସୁଦ୍ଧା ଜାପାନର ବିରାଟ ସାମରିକ ଯନ୍ତ୍ର ଚୀନରେ ଅଗ୍ରଗତି କରୁଛି ଏବଂ ଜାପାନୀ ସେନାକୁ ହଇରାଣ କରିବା ନିମନ୍ତେ ଚୀନଲୋକେ ଗରିଲା କୌଶଳ ପ୍ରୟୋଗ କରୁଛନ୍ତି ଓ ଏଥିରେ ଭଲ ଫଳ ହୋଇଛି । ଜାପାନ ସାଙ୍ଘାଇ ଓ ନାନକିଙ୍ଗ ଦଖଲ କଲା ଏବଂ ଏହା ଯେତେବେଳେ କ୍ୟାଣ୍ଟନ୍ ଓ ହାଙ୍କୋରେ ପହଞ୍ଚିଲା ସେତେବେଳେ ଚୀନାମାନେ ନିଜେ ଏହି ପ୍ରଧାନ ସହରଗୁଡ଼ିକରେ ନିଆଁ ଲଗାଇଦେଲେ ଓ ଧ୍ୱଂସ କରିଦେଲେ । ନେପୋଲିଅନ ମସ୍କୋ ଦଖଲ କଲାପରି ଜାପାନୀ ସେନା ପୋଡ଼ାପାଉଁଶ ଦଖଲ କଲେ, କିନ୍ତୁ ସେମାନେ ଚୀନର ପ୍ରତିରୋଧ ଦମନ କରିପାରି ନାହାନ୍ତି । ନୂତନ ବିପତ୍ତି ସଙ୍ଗେ ସଙ୍ଗେ ଏହା ଆହୁରି ତୀବ୍ର ହୋଇ ଉଠୁଛି ।

ଅଷ୍ଟ୍ରିଆ—

ଆମେ ଏବେ ଇଉରୋପକୁ ଫେରିଯିବା ଏବଂ ଅଷ୍ଟ୍ରିଆର ଶୋଚନୀୟ ଅନ୍ତିମ କାହାଣୀ ଦେଖିବା । ଏହି କ୍ଷୁଦ୍ର ପ୍ରଜାତନ୍ତ୍ରଟି ଦେବାଳିଆ ଓ ବିଭକ୍ତ ହୋଇଯାଇଥିଲା । ଏକ ପକ୍ଷରେ ନାଜୀ ଜର୍ମାନୀ ଓ ଅନ୍ୟ ପକ୍ଷରେ ଫାସିଷ୍ଟ ଇଟାଲୀ ଏହା ଉପରେ ଚାପ ପକାଉଥିଲେ ।

ଭିଏନାରେ ଏକ ପ୍ରଗତିଶୀଳ ସାମ୍ୟବାଦୀ ମ୍ୟୁନିସିପାଲିଟି ଥିଲେ ସୁଦ୍ଧା ଦେଶ ଏକ ଆଭ୍ୟନ୍ତରୀଣ ଅମଳା ତାନ୍ତ୍ରିକ ଧରଣର ଫାସିଜମ୍ ଅଧୀନରେ ଥିଲା । ଡଲଫସ୍ ଚାନ୍‌ସେଲର ଥିଲେ ଏବଂ ନାଜି ଆକ୍ରମଣ ବିରୁଦ୍ଧରେ ମୁସୋଲିନୀ ତାଙ୍କୁ ରକ୍ଷା କରିବ ବୋଲି ସେ ନିର୍ଭର କରିଥିଲେ । ଉକ୍ତ ସନ୍ଧି ଭଙ୍ଗକରି ଇଟାଲୀ ଡଲଫସଙ୍କୁ ସୈନ୍ୟ ଯୋଗାଇଲା ଏବଂ ସୋସିଆଲିଷ୍ଟମାନଙ୍କୁ ଦମନ କରିବା ନିମନ୍ତେ ମୁସୋଲିନୀ ତାଙ୍କୁ ପରାମର୍ଶ ଦେଲେ । ଡଲଫସ ଭିଏନାରେ ଏହି ସାମ୍ୟବାଦୀ କର୍ମୀମାନଙ୍କୁ ନିରସ୍ତ୍ର କରିବା ନିମନ୍ତେ ସ୍ଥିର କଲେ ଏବଂ ଏହାଫଳରେ ୧୯୩୪ ଫେବୃୟାରୀରେ ପ୍ରତିବିପ୍ଳବ ଆରମ୍ଭ ହେଲା । ଭିଏନାରେ ଚାରିଦିନ ପର୍ଯ୍ୟନ୍ତ ଯୁଦ୍ଧ ଲାଗିଲା ଏବଂ ପ୍ରସିଦ୍ଧ ଶ୍ରମିକମାନଙ୍କ ଘର ଉପରେ ବୋମା ବର୍ଷଣ କରାଗଲା ଓ ଆଂଶିକଭାବରେ ତାହା ନଷ୍ଟ କରି ଦିଆଗଲା । ଡଲଫସ୍ ଜିତିଲେ କିନ୍ତୁ ବାହ୍ୟ ଆକ୍ରମଣକୁ ପ୍ରତିରୋଧ କରିବାରେ ସମର୍ଥ ଏକମାତ୍ର ଶକ୍ତିଶାଳୀ ଦଳ ଦେଶରେ ଭାଙ୍ଗିଗଲା ।

ଇତ୍ୟବସରରେ ନାଜି ଚକ୍ରାନ୍ତ ଚାଲିଥାଏ ଏବଂ ୧୯୩୪ ଜୁନ୍‌ରେ ଭିଏନାରେ ନାଜି-ମାନଙ୍କ ଦ୍ୱାରା ଡଲଫସ ନିହତ ହେଲେ । ଏହି ବିଦ୍ରୋହ ପରେ ଜର୍ମାନୀରୁ ନାଜି ଅଭିଯାନ ଆରମ୍ଭ ହେଲା । ହିଟଲର ସୀମାନ୍ତ ପାର କରି ତାଙ୍କର ସେନାବାହିନୀ ପଠାଇବା ଅବସ୍ଥାରେ ଥିଲେ । ଏପରି ସମୟରେ ଜର୍ମାନ ବିରୁଦ୍ଧରେ ଅଷ୍ଟ୍ରିଆକୁ ରକ୍ଷା କରିବା ନିମନ୍ତେ ସେନା ପଠାଇବାର ଧମକ ମୁସୋଲିନୀ ଦେବାରୁ ସେ ଅଟକିଗଲେ । ଜର୍ମାନୀ ଅଷ୍ଟ୍ରିଆ ଗ୍ରାସ କରିବା ଓ ଜର୍ମାନ ସୀମାନ୍ତ ଇଟାଲୀ ପର୍ଯ୍ୟନ୍ତ ଆସିବା ମୁସୋଲିନିଙ୍କ ଇଚ୍ଛା ନ ଥିଲା । ୧୯୩୫ରେ ହିଟଲର ସରକାରୀ ଭାବରେ ଘୋଷଣା କଲେ ଯେ ସେ ଅଷ୍ଟ୍ରିଆକୁ ସଂଯୋଗ କରିଦେ ନାହିଁ ବା "ଆନ୍‌ଷ୍ଟୁଲସ" (anschuloss) ନେବେ ନାହିଁ ।

କିନ୍ତୁ ଇଟାଲୀର ଆବିସିନିଆ ଅଭିଯାନ ତାକୁ ଦୁର୍ବଳ କରି ପକାଇଲା ଏବଂ ଗ୍ରେଟ ବ୍ରିଟେନ ଓ ଫ୍ରାନ୍‌ସ ଭିତରେ ବିବାଦ ବୃଦ୍ଧି ହେବାରୁ ମୁସୋଲିନୀଙ୍କୁ ହିଟଲର ସହ କେତେକ ସର୍ତ୍ତରେ ରାଜି ହେବାକୁ ପଡ଼ିଲା । ହିଟଲର ଏବେ ଅଷ୍ଟ୍ରିଆରେ ମୁକ୍ତହସ୍ତ ପାଇଲେ ଏବଂ ନାଜି କାର୍ଯ୍ୟ ବଢ଼ିଲା । ୧୯୩୮ ପ୍ରଥମ ଭାଗରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚେମ୍ବରଲେନ ଘୋଷଣା କଲେ ଯେ ଅଷ୍ଟ୍ରିଆକୁ ରକ୍ଷା କରିବା ନିମନ୍ତେ ଇଂଲଣ୍ଡ ହସ୍ତକ୍ଷେପ କରିବ ନାହିଁ । ତା ପରେ ଘଟଣା ଦ୍ରୁତଗତିରେ ଗତି କଲା ଏବଂ ଅଷ୍ଟ୍ରିଆର ଚାନ୍‌ସେଲର ସୁସ୍‌ନିଗ୍ ଯେତେବେଳେ ସାଧାରଣ ଲୋକମତ ପାଇଁ ନିର୍ବାଚନ କରିବାକୁ ସ୍ଥିର କଲେ । ହିଟଲର ସେଥିରେ ଆପତ୍ତି ଦର୍ଶାଇଲେ ଓ ୧୯୩୮ ମାର୍ଚ୍ଚ ମାସରେ ଅଷ୍ଟ୍ରିଆ ଆକ୍ରମଣ କଲେ । ପ୍ରତିରୋଧ ହେଲା ଏବଂ ଆନ୍‌ଷ୍ଟୁଲସ ଅଥବା ଜର୍ମାନୀ ସହିତ ମିଳନ ଘୋଷଣା କରାଗଲା । ଏହିରୂପେ ସାମ୍ରାଜ୍ୟର ରାଜଧାନୀରୂପେ ଦୀର୍ଘକାଳରୁ ବିରାଜମାନ କରୁଥିବା ଏହି ପୁରାତନ ଦେଶଟିର ଅନ୍ତ ହେଲା ଏବଂ ଇଉରୋପ ମାନଚିତ୍ରରୁ ଅଷ୍ଟ୍ରିଆ ଲିଭିଗଲା । ତାର ଶେଷ ଚାନ୍‌ସେଲର ସୁସ୍‌ନିଗ୍‌ଙ୍କୁ ଜର୍ମାନ-ମାନେ ବନ୍ଦୀ କଲେ ଏବଂ ସେ ପୂର୍ଣ୍ଣଭାବରେ ନାଜି ମତଲବ ସାଧନ ନ କରିବାରୁ ଏକ

ବିଗ୍ଭର କରାଯିବାର ଧମକ ତାଙ୍କୁ ଦିଆ ଯାଇଛି । ସେ ଏବେ ଯୁଦ୍ଧ ନାତ୍ସିମାନଙ୍କର କଏଦୀ ହୋଇ ରହିଛନ୍ତି ।

ଅଷ୍ଟ୍ରିଆରେ ଜର୍ମାନ ନାତ୍ସିଙ୍କ ଆଗମନ ଫଳରେ ଲୋକଙ୍କ ଉପରେ ଯେପରି ନାତ୍ସି ଉତ୍ପୀଡ଼ନ ଆରମ୍ଭ ହେଲା ଏହା ଜର୍ମାନୀ ନାତ୍ସି ଆତଙ୍କ ଆରମ୍ଭର ପ୍ରଥମକାଳ ଅପେକ୍ଷା ଆହୁରି ଖରାପ । ଇହୁଦୀମାନେ କଷ୍ଟ ଭୋଗିଲେ ଏବଂ ଅନ୍ୟରି ଭୀଷଣ ଭାବରେ ନିର୍ଯାତନା ସହିଲେ ଏବଂ ସୌନ୍ଦର୍ଯ୍ୟଖଚିତ ଓ ସାଂସ୍କୃତିକ ଭିଏନା ନଗରୀରେ ବର୍ବରତା ରାଜୁତି କଲା ଏବଂ ନୃଶଂସତା ଉପରେ ନୃଶଂସତା ଲାଗି ରହିଛି ।

ଚେକୋସ୍ଲୋଭାକିଆ—

ଅଷ୍ଟ୍ରିଆରେ ନାତ୍ସି ବିଜୟରେ ଇଉରୋପ ତ୍ରସ୍ତୀଭୂତ ହୋଇଗଲା, କିନ୍ତୁ ଏହାର ଅଧିକ ପ୍ରଭାବ ପଡ଼ିଲା ଚେକୋସ୍ଲୋଭାକିଆରେ, ଏହାର ତିନି ପାଖ ନାତ୍ସି ଜର୍ମାନୀଦ୍ୱାରା ପରିବେଷ୍ଟିତ । ଅନେକ ଲୋକ ଭାବିଲେ ଯେ ଏହି ଦେଶର ଅଭିଯାନ ଶୀଘ୍ର ଆରମ୍ଭ ହୋଇଯିବ ଏବଂ ପ୍ରାରମ୍ଭିକ ସ୍ୱରୂପ ପ୍ରଚଳିତ ଫାସିଷ୍ଟ ରୀତିରେ ସୀମାନ୍ତ ଜିଲାମାନଙ୍କରେ ନାତ୍ସିଚକ୍ରାନ୍ତ ଓ ଗୋଳମାଳ ସୃଷ୍ଟି କରିବାର ଉଦ୍ୟମ ଆରମ୍ଭ ହୋଇଗଲା ।

ଚେକୋସ୍ଲୋଭାକିଆ ସୁଡ୍ରେଟାନ ଅଞ୍ଚଳ (ପୁରୁଣା ବୋହେମିଆ)ରେ ଜର୍ମନଭାଷୀ ଲୋକ ବାସ କରନ୍ତି, ଅଷ୍ଟ୍ରୋ-ହଙ୍ଗେରୀ ସାମ୍ରାଜ୍ୟରେ ଏହା ପ୍ରାଧାନ୍ୟ ଲଭିଥିଲା । ସେମାନେ ଚେକ ଶାସନକୁ ଭଲରୂପେ ଗ୍ରହଣ କରୁ ନ ଥିଲେ ଏବଂ ସେମାନଙ୍କର କେତେକ ନ୍ୟାଯ୍ୟସଙ୍ଗତ ଅଭିଯୋଗ ଥିଲା । ସେମାନେ କେତେକ ସ୍ୱତନ୍ତ୍ରତା ଚାହୁଁ ଥିଲେ; ସେମାନଙ୍କର ଜର୍ମାନୀ ସହିତ ଯୋଗଦେବାର ଅଭିଳାଷ ନ ଥିଲା ଏବଂ ତାଙ୍କ ଭିତରୁ ଅନେକ ଜର୍ମାନ ନାତ୍ସି ଶାସନର ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ବୋହେମିଆ ପୂର୍ବରୁ କେବେହେଲେ ଜର୍ମାନୀର ଅଂଶ ରୂପେ ନ ଥିଲା । ଅଷ୍ଟ୍ରିଆ ଲୋପ ହୋଇଗଲା ପରେ ଆଶା କରାଗଲା ଯେ ହିଟଲର ଚେକୋସ୍ଲୋଭାକିଆ ଆକ୍ରମଣ କରିବ ଏବଂ ଏହି ସମ୍ଭାବନାରେ ବହୁସଂଖ୍ୟକ ଲୋକ ଭୟଭୀତ ହୋଇଥିଲେ ଓ ନିଜକୁ ନିରାପଦରେ ରଖିବା ନିମନ୍ତେ ସ୍ଥାନୀୟ ନାତ୍ସି ଦଳରେ ଯୋଗଦାନ କଲେ ।

ଆନ୍ତର୍ଜାତିକ ଦୃଷ୍ଟିରେ ଚେକୋସ୍ଲୋଭାକିଆର ଅବସ୍ଥିତି ଶକ୍ତ ଥିଲା । ତାହା ଏକ ଉନ୍ନତ ଶିଳ୍ପୋନ୍ନତ ରାଜ୍ୟ, ଖୁବ୍ ଉଚ୍ଚସଂଗଠିତ ଓ ଏହାର ଶକ୍ତିଶାଳୀ ଓ କାର୍ଯ୍ୟକ୍ଷମ ସୈନ୍ୟ-ବାହିନୀ ରହିଛନ୍ତି । ଫ୍ରାନ୍ସ ଓ ସୋଭିଏଟ ଇଉନିଅନ ସହିତ ଏହାର ମିତ୍ରତା ଥିଲା ଏବଂ ସଂଗ୍ରାମ ଲାଗିଲେ ଇଂଲଣ୍ଡ ବି ତାହା ତରଫରେ ରହିବ ବୋଲି ଧରାଯାଉଥିଲା । କେନ୍ଦ୍ର ଇଉରୋପରେ ଏକମାତ୍ର ଗଣତନ୍ତ୍ର ରାଜ୍ୟ ରହିଥିବାରୁ ସମସ୍ତ ଜଗତ ଓ ଆମେରିକାର ଗଣତନ୍ତ୍ରବାଦୀମାନଙ୍କର ସହାନୁଭୂତି ଏଥିପ୍ରତି ଥିଲା । ଏଥିରେ ସନ୍ଦେହ ନାହିଁ ଯେ ଯୁଦ୍ଧ

ଲାଗିଲେ ଯଦି ଗଣତନ୍ତ୍ରଶକ୍ତି ସବୁ ଏକତ୍ର ମିଳିତ ହୁଅନ୍ତି ତେବେ ଫାସିଷ୍ଟଶକ୍ତି ପରାସ୍ତ ହୋଇଯିବ ।

ସୁଡେଟାନ ସଂଖ୍ୟାଲଘିଷ୍ଠ ପ୍ରଶ୍ନ ଉଠାଗଲା ଏବଂ ସେମାନଙ୍କର ଅଭିଯୋଗ ଦୂର କରିବା ଉଚିତ ଥିଲା । ଯାହାହେଉ ଏହା ସତ୍ୟ ଯେ କେନ୍ଦ୍ର ଇଉରୋପର ଅନ୍ୟ କୌଣସି ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟ ଅପେକ୍ଷା ଚେକୋସ୍ଲୋଭାକିଆର ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟ ଭଲରେ ଥିଲେ । ପ୍ରକୃତ ସମସ୍ୟା ସଂଖ୍ୟାଲଘିଷ୍ଠ ନ ଥିଲା, ମାତ୍ର ହିଟଲର ସମଗ୍ର ଦକ୍ଷିଣପୂର୍ବ ଇଉରୋପରେ ପ୍ରାଧାନ୍ୟ କରିବାକୁ ଚାହୁଁ ଥିଲା ଏବଂ ହିଂସା ଓ ହିଂସାର ଧମକରେ ନିଜର କାର୍ଯ୍ୟ ସାଧିବାକୁ ଇଚ୍ଛା କରୁଥିଲା ।

ଏହି ସଂଖ୍ୟାଲଘିଷ୍ଠ ପ୍ରଶ୍ନ ସମାଧାନ କରିବା ନିମନ୍ତେ ଚେକ୍ ସରକାର କଠିନ ଉଦ୍ୟମ କଲା ଏବଂ ପ୍ରାୟ ସମସ୍ତ ଦାବୀ ସ୍ୱୀକାର କଲା, ମାତ୍ର ଗୋଟିଏ ଦାବୀ ଗୃହୀତ ହେଲା ବେଳକୁ ନୂତନ ଓ ଅଧିକ ସୁଦୂରଗାମୀ ପ୍ରସ୍ତାବମାନ କରାଗଲା, ଶେଷକୁ ରାଜ୍ୟର ସ୍ଥିତି ଟଳମଳ ଅବସ୍ଥା ଧରିଲା । ଏହା ସୁସ୍ପଷ୍ଟ ଜଣା ପଡ଼ିଲା ଯେ ଏହି ଗଣତନ୍ତ୍ର ରାଜ୍ୟକୁ ଲୋପ କରିବାହିଁ ହିଟଲରର ଉଦ୍ଦେଶ୍ୟ, ଏହା ତାହା ପକ୍ଷରେ ଏକ କଣ୍ଟକ ସ୍ୱରୂପ ରହିଥିଲା । ସମସ୍ୟାର ଏକ ଶାନ୍ତିପୂର୍ଣ୍ଣ ସମାଧାନ ଆଣିବା ପାଇଁ ସାହାଯ୍ୟ କରିବା ଆବରଣରେ ବ୍ରିଟିଶ ମିତ୍ର ହିଟଲରକୁ ଆକ୍ରମଣ କରିବା ଲାଗି ଉତ୍ସାହିତ କଲା । ବ୍ରିଟିଶ ସରକାର "ମଧ୍ୟସ୍ଥ" ଭାବରେ କାର୍ଯ୍ୟ କରିବା ନିମନ୍ତେ ଲର୍ଡ଼ ରୁନ୍‌ସିମାନଙ୍କୁ ପ୍ରେଗକୁ ପଠାଇଲା, କିନ୍ତୁ କାର୍ଯ୍ୟତଃ ଏ ମଧ୍ୟସ୍ଥତା ଫଳରେ ନାଜୀ ଦାବୀକୁ ଗ୍ରହଣ କରିବା ନିମନ୍ତେ ଚେକ ସରକାର ଉପରେ କ୍ରମାଗତ ଚାପ ଦିଆଗଲା । ଶେଷରେ ଚେକ୍‌ମାନେ ଲର୍ଡ ରୁନ୍‌ସିମାନଙ୍କ ପ୍ରସ୍ତାବ ସବୁ ଗ୍ରହଣ କଲେ, ଏହା ଅତ୍ୟନ୍ତ ସୁଦୂରଗାମୀ ଥିଲା, କିନ୍ତୁ ନାଜୀମାନେ ଏବେ ଅଧିକ ଚାହିଁଲେ ଏବଂ ନିଜର ଦାବି ବଳବତ୍ତର କରିବା ନିମନ୍ତେ ଜର୍ମାନୀ ସେନା ସମାବେଶ କଲେ । ଡେଭିଲ୍ ଚେମ୍ବରଲେନ୍ ନିଜେ ଆସି ହସ୍ତକ୍ଷେପ କଲେ ଏବଂ ବର୍ଚେଟ୍‌ସି ଗାଡ଼ିନରେ ହିଟଲର ସହିତ ସାକ୍ଷାତ କଲେ । ସେଠାରେ ସେ ହିଟଲରର ଚରମପତ୍ର ସ୍ୱୀକାର କଲେ, ଏଥିରେ ଚେକୋସ୍ଲୋଭାକିଆ ଅନେକ ଅଞ୍ଚଳ ଜର୍ମାନୀକୁ ଦେବା ନିମନ୍ତେ ଦାବୀ କରାଯାଇଥିଲା । ତା'ପରେ ଇଂଲଣ୍ଡ ଓ ଫ୍ରାନ୍‌ସ ତାଙ୍କର ବନ୍ଧୁ ଓ ମିତ୍ର ଚେକୋସ୍ଲୋଭାକିଆକୁ ନିଜର ଚରମପତ୍ର ଦେଲେ । ତତ୍‌କ୍ଷଣାତ୍ ହିଟଲରର ସର୍ତ୍ତରେ ରାଜି-ହେବା ପାଇଁ ତାକୁ କହିଲେ, ସେ ଯଦି ଅସ୍ୱୀକାର କରେ ତେବେ ତାକୁ ପୂର୍ଣ୍ଣ ଭାବରେ ଛାଡ଼ି ଯିବେ ବୋଲି ଧମକ ଦେଲେ । ତା'ର ବନ୍ଧୁମାନଙ୍କର ଏପରି ଦଗାବାଜୀରେ ଚେକ୍ ଲୋକେ ଆଶ୍ଚର୍ଯ୍ୟ ଓ ଚକିତ ହୋଇଗଲେ, ମାତ୍ର ଶେଷକୁ ଦୁଃଖ ଓ କ୍ଷମର୍ଷ ମନରେ ତାଙ୍କ ସରକାର ଏହି ଚରମପତ୍ରକୁ ମାନିନେଲା; ମିଃ ଚେମ୍ବରଲେନ ପୁନର୍ବାର ହିଟଲର ପାଖକୁ ଧାଇଁଲେ । ଏଥରକ ରାଇନରେ ଗୋଡ଼େସବର୍ଗକୁ ଗଲେ ଏବଂ ଦେଖିଲେ ଯେ ହିଟଲର ଆହୁରି ବହୁତ ଅଧିକ ଦାବୀ କରୁଛି । ଚେମ୍ବରଲେନ ବି ଏଥିରେ ସମ୍ମତ ହୋଇ ପାରିଲେ ନାହିଁ ଏବଂ ୧୯୩୮ ସେପ୍‌ଟେମ୍ବର ଶେଷ ସପ୍ତାହର ଯୁଦ୍ଧ—ପୃଥିବୀ ଯୁଦ୍ଧ ଏହାର ଘନ ଛାୟା ସମଗ୍ର ଇଉରୋପରେ

ପକାଇଲା ଏବଂ ଲୋକେ ସେମାନଙ୍କର ଗ୍ୟାସମୁଖା ପିନ୍ଧିବା ଲାଗି ଏବଂ ଉଡ଼ାଜାହାଜ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଉଦ୍ୟାନ ଓ ପାର୍କ ଇତ୍ୟାଦିରେ ଟ୍ରେଞ୍ଚ ଖୋଳିଲେ । ପୁନର୍ବାର ଚେମ୍ବରଲେନ ହିଟଲର ପାଖକୁ ଗଲେ; ଏଥରକ ଭେଟ ହେଲା ମିଉନକଠାରେ ଏବଂ ମନ୍‌ସିୟୁର ଡାଲାଡ଼ିଏର ଓ ସିନୋର ମୁସୋଲିନୀ ବି ସେଠାକୁ ଗଲେ । ଚେକୋସ୍ଲୋଭାକିଆ ଓ ଫ୍ରାନ୍‌ସର ମିତ୍ର ରୁଷକୁ ନିମନ୍ତ୍ରଣ କରାଗଲା ନାହିଁ ଏବଂ ଯେଉଁ ଚେକୋସ୍ଲୋଭାକିଆର ଭାଗ୍ୟ ନିର୍ଣ୍ଣୟ କରାଯାଉଥିଲା ତାହା ବି ଏକ ମିତ୍ର ଥିଲା, ତାକୁ ପଚରାଗଲା ନାହିଁ । ଯୁଦ୍ଧ ଓ ଆକ୍ରମଣ ଧମକ ସହ ହିଟଲରର ନୂତନ ଓ ସୁଦୂରଗାମୀ ଦାବୀସବୁ ପୂର୍ଣ୍ଣଭାବରେ ଗ୍ରହଣ କରାଗଲା ଏବଂ ସେପ୍‌ଟେମ୍ବର ୨୯ ତାରିଖରେ ଏହି ସବୁ ଦାବୀସମ୍ବଳିତ ମିଉନିକ୍ ଚୁକ୍ତି ଚାରିଶକ୍ତିଙ୍କ ଦ୍ୱାରା ସ୍ୱାକ୍ଷରିତ ହେଲା ।

କ୍ଷଣକାଳ ଲାଗି ଯୁଦ୍ଧ ଗଡ଼ାଇ ଦିଆଗଲା ଏବଂ ସବୁ ରାଜ୍ୟର ଲୋକଙ୍କ ଭିତରେ ଏକ ସ୍ୱସ୍ତିର ଭାବ ଦେଖାଗଲା । କିନ୍ତୁ ଏଥିପାଇଁ ଯାହା ମୂଲ୍ୟ ଦେବାକୁ ପଡ଼ିଲା ତାହା ଫ୍ରାନ୍‌ସ ଓ ଇଂଲଣ୍ଡ ପକ୍ଷରେ ଲଜ୍ଜା ଓ ଅସମ୍ମାନର କଥା । ଇଉରୋପରେ ଗଣତନ୍ତ୍ର ଉପରେ ପ୍ରଚଣ୍ଡ ଆଘାତ ଚେକୋସ୍ଲୋଭାକିଆ ରାଜ୍ୟର ବିଲୋପ ସାଧନ, ଶାନ୍ତି ଅନୁଷ୍ଠାନରୂପେ ଲିଗ୍ ଅଫ୍ ନେସନ୍‌ସର ଅନ୍ତ ଏବଂ ମଧ୍ୟ ଓ ଦକ୍ଷିଣପୂର୍ବ ଇଉରୋପରେ ନାଜୀବାଦର ଅପୂର୍ବ ବିଜୟ । ଯେଉଁ ଶାନ୍ତି ଏଥିରେ ଆସିଲା ତାହା କେବଳ ଏକ ସନ୍ଧିକାଳ ହୋଇ ରହିଲା, ଏଥି ଭିତରେ ଆସନ୍ନ ସଂଗ୍ରାମ ନିମନ୍ତେ ପ୍ରତ୍ୟେକ ଦେଶ ପ୍ରବଳଭାବରେ ଅସ୍ତ୍ରସଜ୍ଜିତ ହେବାକୁ ଲାଗିଲା ।

ଇଉରୋପ ଓ ପୃଥିବୀ ଇତିହାସରେ ମିଉନିକ ଚୁକ୍ତି ଏକ ଅପୂର୍ବ ଘଟଣା । ଇଉରୋପର ନୂତନ ଅଧ୍ୟାୟ ଆରମ୍ଭ ହେଲା ଏବଂ ବ୍ରିଟିଶ ଓ ଫରାସୀ ସରକାର ପ୍ରକାଶ୍ୟ ଭାବରେ ନାଜୀବାଦ ଓ ଫାସିଜିମ୍ ପକ୍ଷରେ ଆଉଜିଲେ । ବ୍ରିଟେନ ଶୀଘ୍ର ଇଂଲଣ୍ଡ-ଇଟାଲୀ ଚୁକ୍ତିକୁ ମଞ୍ଜୁର କଲା, ଇଟାଲୀର ଆବିସିନିଆ ବିଜୟ ସ୍ୱୀକାର କଲା ଏବଂ ସ୍ପେନରେ ଇଟାଲୀକୁ ମୁକ୍ତହସ୍ତ ଦେଲା । ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ ଓ ଇଟାଲୀ ଭିତରେ ଏକ ଚତୁଃଶକ୍ତି କାର୍ଯ୍ୟ କରିବା ଆରମ୍ଭ କଲେ; ରୁଷ, ସ୍ପେନ ଓ ଅନ୍ୟ ସ୍ଥାନର ଗଣତନ୍ତ୍ର ଶକ୍ତି ବିରୁଦ୍ଧରେ ଏକ ସାଧାରଣ ସାମ୍ମୁଖ୍ୟ ହେଲା ।

ରୁଷ—

ଅଲୌକିକ କଥା ଯେ ଏହିସବୁ ଚକ୍ରାନ୍ତ ଓ ପ୍ରଧାନ ଶକ୍ତିମାନଙ୍କ ପବିତ୍ର ଶପଥଭଙ୍ଗ ବର୍ତ୍ତମାନଙ୍କରେ ରୁଷ ବରାବର ତା'ର ଆନ୍ତର୍ଜାତିକ ଦାୟିତ୍ୱ ମାନି ଚାଲୁଥିଲା । ଶାନ୍ତି ପାଇଁ ଓ ଅକ୍ରମଣ ବିରୁଦ୍ଧରେ ଦୃଢ଼ମତ ପୋଷଣ କରୁଥିଲା ଏବଂ ଶେଷ ପର୍ଯ୍ୟନ୍ତ ତାର ମିତ୍ର ଚେକୋସ୍ଲୋଭାକିଅକୁ ଛାଡ଼ି ନ ଥିଲା । ଇଂଲଣ୍ଡ ଓ ଫ୍ରାନ୍‌ସ ତାକୁ ଅବହେଳା କଲେ ଓ ତାର

ଆକ୍ରମଣକାରୀ ସହିତ ବନ୍ଧୁ ସାଜିଲେ ଏବଂ ଫ୍ରାନ୍‌ସ ଓ ଇଂଲଣ୍ଡର ବିଶ୍ୱାସଘାତକତା ପରେ ସୁଦ୍ଧା ଚେକୋସ୍ଲୋଭାକିଆ ନାଜୀ ପାଲରେ ପଡ଼ିଗଲା ଏବଂ ରୁଷ ସହିତ ତାର ମିତ୍ରତା ଛିଣ୍ଡି ଦେଲା । ଚେକୋସ୍ଲୋଭାକିଆକୁ ବିଭକ୍ତ କରି ଦିଆଯାଇଛି ଏବଂ ଜର୍ମାନୀ ଶାଗୁଣା ପରି ହଙ୍ଗେରି ଓ ପୋଲାଣ୍ଡ ଏଥିରେ ଲାଭବାନ ହୋଇଛନ୍ତି । ଆଭ୍ୟନ୍ତରୀଣ ଅନେକ ପରିବର୍ତ୍ତନ ମଧ୍ୟ ହୋଇଛି—ଚେକୋସ୍ଲୋଭାକିଆ ସ୍ୱତନ୍ତ୍ରତା ଦାବୀ କରୁଛି । ଚେକୋସ୍ଲୋଭାକିଆର ଅବଶିଷ୍ଟାଂଶ ଏବେ ପ୍ରାୟ ଜର୍ମାନୀର ଏକ ଉପନିବେଶ ରୂପେ କାର୍ଯ୍ୟ କରୁଛି ।

ଏହିରୂପେ ସୋଭିଏଟ ଇଉନିଅନର ବୈଦେଶିକ ନୀତି ଏକ ଶକ୍ତ ଧକ୍‌କା ଖାଇଛି, ତଥାପି ଫାସିଜମ୍ ଓ ଗଣତନ୍ତ୍ର-ବିରୋଧୀ ଶକ୍ତିମାନଙ୍କର ଏକ ପ୍ରଭାବଶାଳୀ ଓ ଏକମାତ୍ର କ୍ରିୟାଶୀଳ ପ୍ରତିବନ୍ଧକ ରୂପେ ଏହା ଇଉରୋପ ଓ ଏସିଆରେ ରହିଛି । ଯଦିଓ ନିକଟରେ ଇଂଲଣ୍ଡ ଓ ଫ୍ରାନ୍‌ସ ରୁଷ ପ୍ରତି ଅବହେଳା ଦେଖାଇଛନ୍ତି ତଥାପି ଆଜି ଏହା ଏକ ବିରାଟ ଶକ୍ତି ହୋଇ ରହିଛି । ପ୍ରଥମ ପଞ୍ଚବାର୍ଷିକ ଯୋଜନା ସାଧାରଣ ଭାବରେ ସଫଳ ହୋଇଛି ଯଦିଓ କେତେକ ବିଶେଷ ଜିନିଷରେ ବିଶେଷତଃ ପ୍ରସ୍ତୁତ ଦ୍ରବ୍ୟର ଗୁଣ ଦୃଷ୍ଟିରେ ଏହା କେତେକ ପରିମାଣରେ ଅକୃତକାର୍ଯ୍ୟ ହୋଇଛି । କାରିଗର ସବୁ ଶିକ୍ଷା ପାଇ ନ ଥିଲେ ଏବଂ ଯାନବାହନର ମଧ୍ୟ ସୁବିଧା ନ ଥିଲା । ଗୁରୁତର ଶିଳ୍ପରେ ମନୋନିବେଶ କରିବା ହେତୁ ଲୋକଙ୍କର ବ୍ୟବହୃତ ଜିନିଷର ଅଭାବ ଘଟିଲା ଏବଂ ଜୀବନଧାରଣ ସ୍ତର କମିଗଲା । କିନ୍ତୁ ଦ୍ରୁତଗତିରେ ଶିଳ୍ପୋନ୍ନତ କରି ଓ କୃଷିକୁ ସମଷ୍ଟିଗତ ଉଦ୍ୟମରେ ପରିଣତ କରିବାଦ୍ୱାରା ରୁଷ ଏହି ଯୋଜନାରେ ଭବିଷ୍ୟତ ପ୍ରଗତିର ମୂଳଭିତ୍ତି ସ୍ଥାପନ କଲା । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା (୧୯୩୩-୧୯୩୭) 'ଭାରୀ' ଶିଳ୍ପ ଅପେକ୍ଷା ଲଘୁଶିଳ୍ପରେ ଜୋରଦେଲା ଏବଂ ପ୍ରଥମ ଯୋଜନାର ଅଭାବ ଦୂର କରିବାରେ ଓ ଲୋକଙ୍କର ବ୍ୟବହୃତ ଜିନିଷ ତିଆରି କରିବାରେ ବେଶୀ ଜୋର୍‌ଦେଲା । ଖୁବ୍ ପ୍ରଗତି ହେଲା ଓ ରହିବା ଚଳିବା ସ୍ତର ବଢ଼ିଲା ଏବଂ ଏବେ ବି ବଢ଼ୁଛି, ସ୍ୱାସ୍ଥ୍ୟ ଦିଗରେ, ଶିକ୍ଷା ଦିଗରେ ଓ ଆହୁରି ଅନେକ ଦିଗରେ ସମଗ୍ର ସୋଭିଏଟ ଇଉନିଅନରେ ଅଲୌକିକ ଅଗ୍ରଗତି ହୋଇଛି । ଏହି ଅଗ୍ରଗତି କ୍ରମାଗତ ବଜାୟ ରଖିବା ନିମନ୍ତେ ଓ ତାର ସାମ୍ୟବାଦୀ ଅର୍ଥନୀତି ଦୃଢ଼କରିବା ନିମନ୍ତେ ବ୍ୟଗ୍ର ଥିବାରୁ ରୁଷ ଆନ୍ତର୍ଜାତିକ ବ୍ୟାପାରରେ ବରାବର ଶାନ୍ତି ନୀତି ଅନୁସରଣ କରି ଆସିଛି । ଲିଗ୍ ଅଫ୍ ନେସନ୍‌ସରେ ରୁଷ ପ୍ରଚୁର ପରିମାଣରେ ନିରସ୍ତ୍ରୀକରଣ, ସମଷ୍ଟିଗତ ନିରାପଦତା ଓ ଆକ୍ରମଣ ବିରୁଦ୍ଧରେ ସାମୂହିକ କାର୍ଯ୍ୟବିଧାନ ଲାଗି ଦାବୀ କରି ଆସିଛି । ପୁଞ୍ଜିବାଦୀ ପ୍ରଧାନ ଶକ୍ତିମାନଙ୍କର ମତରକ୍ଷା କରିବା ନିମନ୍ତେ ଏହା ଚେଷ୍ଟାକରି ଆସିଛି ଏବଂ ଫଳସ୍ୱରୂପ କମ୍ୟୁନିଷ୍ଟ ପାର୍ଟି ସବୁ ଅନ୍ୟ ପ୍ରଗତିଶୀଳ ଦଳମାନଙ୍କ ସହିତ "ପପୁଲାର ଫ୍ରଣ୍ଟ" ବା "ଜନ୍‌ଯୁକ୍ତ ଫ୍ରଣ୍ଟ" ଗଢ଼ିଛନ୍ତି ।

ଏହିସବୁ ସାଧାରଣ ପ୍ରଗତି ଓ ଅଭିବୃଦ୍ଧି ସତ୍ତ୍ୱେ ଏହିକାଳ ଭିତରେ ସୋଭିଏଟ ଇଉନିୟନ ଗୁରୁତର ଆଭ୍ୟନ୍ତରୀଣ ସଙ୍କଟ ଭିତର ଦେଇ ଅତିକ୍ରମ କରିଛି । ଷ୍ଟାଲିନ ଓ

ଓ ଟ୍ରଟସ୍କି ବିବାଦ ବିଷୟରେ ମୁଁ ଉତେ ଆଗରୁ କହିଛି । ପ୍ରଚଳିତ ଶାସନ ପଦ୍ଧତି ଅସନ୍ତୁଷ୍ଟ ହୋଇ ବିଭିନ୍ନ ଲୋକେ କ୍ରମେ ଏକତ୍ର ହେଲେ ଏବଂ କୁହାଯାଏ ଯେ, ତାଙ୍କ ଭିତରୁ କେତେକ ଏପରି କି ଫାସିଷ୍ଟ ଶକ୍ତିଙ୍କ ସହିତ ମିଳିତ ହୋଇ ଷଡ଼ଯନ୍ତ୍ର କରିଥିଲେ । ଏଥିରେ ପୁଣି ସୋଭିଏଟ ବିଭାଗର ମୁଖିଆ ( G. P. U. ) ୟାଗୋଡ଼ା ବି ଏହିମାନଙ୍କ ସହିତ ମିଳିତ ହୋଇଥିବା କୁହାଯାଏ । '୧୯୩୪ ଡିସେମ୍ବରରେ ସୋଭିଏଟ ସରକାରର ଏକ ମୁଖ୍ୟ ସଭ୍ୟ କିରଭଙ୍କୁ ହତ୍ୟା କରାଗଲା । ବିରୋଧୀମାନଙ୍କ ବିରୁଦ୍ଧରେ ସରକାର କଡ଼ା ଶାସ୍ତି ବିଧାନ କଲା ଏବଂ ୧୯୩୬ଠାରୁ ଅନେକ ବିଚାର ଚାଲିଲା, ମାତ୍ର ସମଗ୍ର ଦୁନିଆରେ ଖୁବ୍ ବିବାଦ ଜାଗ୍ରତ କଲା; କାରଣ ଅନେକ ପ୍ରସିଦ୍ଧ ଓ ଖ୍ୟାତନାମା ବ୍ୟକ୍ତି ଏଗୁଡ଼ିକରେ ଲିପ୍ତ ଥିଲେ । ଯେଉଁମାନଙ୍କର ବିଚାର ହୋଇ ଶାସ୍ତି ଦିଆଗଲା, ସେମାନଙ୍କ ଭିତରେ ଟ୍ରଟସ୍କିପନ୍ଥୀ ଓ ଦକ୍ଷିଣପନ୍ଥୀ ନେତାସବୁ (ଜିନୋଭିଭ, କାମେନେଭ, ବୁଖାରିନ) ଏବଂ କେତେକ ଉଚ୍ଚ ସାମରିକ କର୍ମଚାରୀ ଥିଲେ । ଏମାନଙ୍କ ଭିତରେ ମୁଖିଆ ଥିଲେ ମାର୍ଶାଲ ଟୁଖାଚେଭସ୍କି । ଏହିସବୁ ମକଦ୍ଦମା ବିଚାର ଏବଂ ତା'ପରେ ଯାହାସବୁ ଘଟଣା ଘଟିଲା, ସେ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ମତ ବ୍ୟକ୍ତ କରିବା ମୋ ପକ୍ଷରେ କଷ୍ଟକର; କାରଣ ଘଟଣା ସବୁ ଜଟିଳ ଓ ପରିଷ୍କାର ନୁହେଁ । କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଏହିସବୁ ବିଚାର ଯୋଗୁଁ ରୁଷର ଅନେକ ବନ୍ଧୁ ଓ ଅନେକ ସଖ୍ୟକ ଲୋକ ବିଚଳିତ ହୋଇପଡ଼ିଲେ ଏବଂ ସୋଭିଏଟ ଇଉନିୟନ ବିରୁଦ୍ଧରେ ଘୃଣାଭାବ ବଢ଼ିଗଲା । ଖାଣ୍ଟି ନିରୀକ୍ଷକମାନେ କହନ୍ତି ଯେ, ଷ୍ଟାଲିନ୍ ସରକାର ବିରୁଦ୍ଧରେ ଏକ ବିରାଟ ଷଡ଼ଯନ୍ତ୍ର ହୋଇଥିଲା ଏବଂ ବିଚାରଗୁଡ଼ିକ ଯଥାର୍ଥ ହୋଇଥିଲା । ଏହା ମଧ୍ୟ ପ୍ରମାଣିତ ହୋଇଛି ଯେ, ଏହି ଷଡ଼ଯନ୍ତ୍ର ପଛରେ କୌଣସି ଗଣ ସମର୍ଥନ ନ ଥିଲା ଏବଂ ଲୋକମାନଙ୍କ ମଧ୍ୟରେ ଏହାର ପ୍ରତିକ୍ରିୟା ନିର୍ଦ୍ଦିଷ୍ଟରୂପେ ଷ୍ଟାଲିନ୍‌ଙ୍କ ବିରୋଧୀମାନଙ୍କ ବିପକ୍ଷରେ ଯାଇଛି । ସେ ଯାହାହେଉ ଯେଉଁ ଦମନ ଫଳରେ ଅନେକ ନିରପରାଧ ଲୋକଙ୍କୁ ମଧ୍ୟ ଶାସ୍ତି ଦିଆଯାଇପାରେ ତାହା ଏକ ମନ୍ଦସ୍ୱାସ୍ଥ୍ୟର ପରିଚୟ ଏବଂ ଆନ୍ତର୍ଜାତିକ ଦୃଷ୍ଟିରେ ସୋଭିଏଟର ପ୍ରତିଷ୍ଠାରେ ବହୁତ କ୍ଷତି ପହଞ୍ଚାଇଲା ।

ଆର୍ଥିକ ଉପଶମ—

୧୯୩୦ରେ ଯେଉଁ ଘୋର ବାଣିଜ୍ୟ ଦୁର୍ଗତି ଆରମ୍ଭ ହେଲା ଓ କେତେ ବର୍ଷ ନିମନ୍ତେ ପୁଞ୍ଜିବାଦୀ ଜଗତକୁ ପଙ୍ଗୁ କରିପକାଇଲା ତାହାର ଶେଷରେ ଉନ୍ନତିର ଚିହ୍ନ ଦେଖାଗଲା । ଆଂଶିକ ଭାବରେ କେତେକ ଦେଶରେ ଉପଶମ ହେଲା । ବ୍ରିଟେନରେ ଅନ୍ୟ ସ୍ଥାନ ଅପେକ୍ଷା ଏହା ଅଧିକ ପରିଲକ୍ଷିତ ହେଲା । ପାଉଣ୍ଡର ପୁନର୍ମୂଲ୍ୟ ନିରୂପଣ, ଟାରିଫ ଏବଂ ସାମ୍ରାଜ୍ୟ ବଜାର ଓ ସମ୍ପଦର ଶୋଷଣ ବ୍ରିଟେନକୁ ସାହାଯ୍ୟ କଲା । ଶୁଳ୍କ, ସରକାରୀ ଅର୍ଥ ସାହାଯ୍ୟ କୃଷି ସମ୍ଭାର ଓ ପ୍ରତିଯୋଗିତା କମାଇବା ନିମନ୍ତେ ଉତ୍ପାଦକମାନଙ୍କର ସଂଗଠନଦ୍ୱାରା ଦେଶର

ବଜାରକୁ ଉନ୍ନତ କରାଗଲା । ଉତ୍ପାଦନ ଓ ସମସ୍ତ ବଣ୍ଟନକୁ ଯୋଜନା କରିବା ନିମନ୍ତେ ଏକ ପ୍ରଚେଷ୍ଟା ହେଲା । ବ୍ରିଟିଶ ମାଲ୍ କିଣିବା ନିମନ୍ତେ ଡେନମାର୍କ ଓ ସାଣ୍ଡିନେଭିଆ ରାଜ୍ୟମାନଙ୍କ ଉପରେ ଚାପ ଦିଆଗଲା ।

ପ୍ରଚୁର ଭାବରେ ଏହି ଉପଶମ ହୋଇଥିଲେ ସୁଦ୍ଧା ଏଥିରେ ଆନ୍ତର୍ଜାତିକ ବାଣିଜ୍ୟକୁ ଛାଡ଼ିବାକୁ ପଡ଼ିଲା । ତେଣୁ ଏହା ଏକ ଅପେକ୍ଷାକୃତ ଓ ଆଂଶିକ ଉପଶମ ମାତ୍ର । ଆନ୍ତର୍ଜାତିକ ବାଣିଜ୍ୟର ପୁନରୁଦ୍ଧାର ଉପରେ ପ୍ରକୃତ ଉପଶମ ନିର୍ଭର କରେ । ଆହୁରି ସ୍ମରଣ ରଖିବା କଥା ଯେ, ବ୍ରିଟେନ ଆମେରିକାକୁ ତା'ର ଋଣ ପରିଶୋଧ କରି ନାହିଁ ଏବଂ କରିବାକୁ ବି ଚାହେଁନା । ବିଭିନ୍ନ ଦେଶର ପ୍ରବଳ ଅସ୍ତ୍ର ନିର୍ମାଣ କାର୍ଯ୍ୟ ହିଁ ଏହି ଆର୍ଥିକ ଉପଶମ ପାଇଁ ଆଂଶିକ ଭାବରେ ଦାୟୀ । ଏହିପରି ଉପଶମ ନିରାପଦ ନୁହେଁ ଓ ସ୍ଥାୟୀ ନୁହେଁ, ଏହା ପରିଷ୍କାର ଦେଖାଯାଉଛି । ଜନତା ଭିତରେ ବେକାର ସମସ୍ୟା ଏବେ ସୁଦ୍ଧା ରହିଛି ।

ବ୍ରିଟିଶ ସାମ୍ରାଜ୍ୟ—

କିନ୍ତୁ ଯଦିଓ ବର୍ତ୍ତମାନ ପାଇଁ ଇଂଲଣ୍ଡ ଆର୍ଥିକ ସଙ୍କଟରୁ ରକ୍ଷା ପାଇ ଯାଇଛି ତଥାପି ବ୍ରିଟିଶ ସାମ୍ରାଜ୍ୟ ବଡ଼ ପୀଡ଼ିତ ହୋଇଛି ଏବଂ ଏହାକୁ ଖଣ୍ଡ ଖଣ୍ଡ କରିବା ନିମନ୍ତେ ରାଜନୈତିକ ଓ ଆର୍ଥନୀତିକ ଶକ୍ତିସବୁ ଶକ୍ତିଶାଳୀ ହେଉଛି । ଏପରି କି ଏହାର ଶାସକମାନେ ଏଥିରେ ବିଶ୍ୱାସ ହରାଇଛନ୍ତି ଓ ଏହା ତିଷ୍ଠି ରହିବାର ଆଶା ଛାଡ଼ିଛନ୍ତି । ସେମାନେ ନିଜର ଆଭ୍ୟନ୍ତରୀଣ ସମସ୍ୟା ସମାଧାନ କରିପାରୁନାହାନ୍ତି, ସ୍ୱାଧୀନତା ନିମନ୍ତେ ବିଦ୍ରୋହୀ ଭାରତ ସର୍ବଦା ବଳବାନ ହେଉଛି, କ୍ଷୁଦ୍ର ପାଲେଷ୍ଟାଇନ ସାମ୍ରାଜ୍ୟକୁ ଦୋହଲାଇ ଦେଇଛି । ପୁଞ୍ଜିବାଦୀ ଜଗତରେ ଇଂଲଣ୍ଡର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଆମେରିକା ବ୍ରିଟିଶ କର୍ତ୍ତୃତ୍ୱ ଉପରେ ଆଘାତ କରୁଛି ଏବଂ ବ୍ରିଟିଶ ସରକାର ଫାସିଷ୍ଟ ଶକ୍ତିଆଡ଼କୁ ଢଳୁଥିବାରୁ ଇଂଲଣ୍ଡଠାରୁ ଏହା ଆହୁରି ଦୂରକୁ ଚାଲିଯାଉଛି । ସୋଭିଏଟ ରୁଷ ସଫଳତାର ସହିତ ସାମ୍ୟବାଦ ସ୍ଥାପନା କରୁଛି; ଏହା ସମସ୍ତ ସାମ୍ରାଜ୍ୟବାଦର ବିରୋଧୀ । ଜର୍ମାନୀ ଓ ଇଟାଲୀ ବ୍ରିଟିଶ ସାମ୍ରାଜ୍ୟର ସମ୍ପଦଶାଳୀ ରାଜ୍ୟ ଉପରେ ଲୋଲୁପ ଦୃଷ୍ଟି ନିକ୍ଷେପ କରିଛନ୍ତି । ମ୍ୟୁନିକର ଧମକରେ ଇଂଲଣ୍ଡ ବଶ୍ୟତା ସ୍ୱୀକାର କରିବା ହେତୁ ସେମାନେ ଏହାକୁ ଏକ ଦ୍ୱିତୀୟ ଶ୍ରେଣୀ ଶକ୍ତିରୂପେ ବ୍ୟବହାର କରୁଛନ୍ତି ଏବଂ ଏହାପ୍ରତି ଉଦ୍ଧତ ଭାଷା ପ୍ରୟୋଗ କରୁଛନ୍ତି । ଇଂଲଣ୍ଡ ଗଣତନ୍ତ୍ରକୁ ବିସ୍ତାର କରିବାଦ୍ୱାରା ଏବଂ ସମଷ୍ଟିଗତ ନିରାପଦତା ଗ୍ରହଣ କରିବାଦ୍ୱାରା ନିଜର ସ୍ଥାନ ଦୃଢ଼ କରି ପାରିଥାଆନ୍ତା । ଏହା ପରିବର୍ତ୍ତେ ସେ ଏହାକୁ ଛାଡ଼ିଲା ଓ ହିଟଲରକୁ ସମର୍ଥନ କଲା ଏବଂ ଏବେ ବ୍ରିଟିଶ ସାମ୍ରାଜ୍ୟବାଦ ମ୍ୟୁନିକ ନୀତିରୁ ଯେଉଁସବୁ ଅସଂଖ୍ୟ ବିରୋଧ ବାହାରିଲା ସେଥିରେ ଲିପ୍ତ ହୋଇ ଏହା ଏକ ନିରାଶ୍ରୟ ସଙ୍କଟରେ ପଡ଼ିଛି ।

ଉପନିବେଶ—

ଜର୍ମାନୀ ଏବେ ଉପନିବେଶ ଦାବୀ କରୁଛି ଏବଂ ଆମକୁ କୁହାହେଉଛି ଯେ, ଏହା ଏକ "ନ ଥିଲାବାଲା" ଏବଂ "ଅସନ୍ତୁଷ୍ଟ" ଶକ୍ତି । ଯେଉଁସବୁ ବଡ଼ ଶକ୍ତିମାନଙ୍କର ଉପନିବେଶ ନାହିଁ, ତାଙ୍କ କଥା କ'ଣ ? ପ୍ରକୃତ "ନ ଥିଲାବାଲା" ଉପନିବେଶର ଲୋକମାନଙ୍କର ଅବସ୍ଥା କଣ ? ସବୁ ସୂତ୍ର ସାମ୍ରାଜ୍ୟବାଦୀ ଅବସ୍ଥାର ପ୍ରଚଳନ ଉପରେ ପ୍ରତିଷ୍ଠିତ । କୌଣସି ଦେଶର ସନ୍ତୋଷ ବା ଅନ୍ୟ କଥା ସେ ଦେଶରେ ପ୍ରଚଳିତ ଆର୍ଥିନୀତିକ ନୀତି ଉପରେ ନିର୍ଭର କରେ ଏବଂ ସାମ୍ରାଜ୍ୟବାଦ ଅଧୀନରେ ସର୍ବଦା ଅସନ୍ତୋଷ ରହିବ, କାରଣ ସେଠାରେ ବରାବର ଅସମାନତା ରହିଛି । କୁହାଯାଉଥିଲା ଯେ ବିପ୍ଳବ ପୂର୍ବରୁ ଜାରଶାସିତ ରୁଷ ଏକ ଅସନ୍ତୁଷ୍ଟ ବିସ୍ତାରକାମୀ ଶକ୍ତି ଥିଲା । ଆଜି ସୋଭିଏଟ ରୁଷ ରାଜ୍ୟ ଦୃଷ୍ଟିରେ କ୍ଷୁଦ୍ରତର କିନ୍ତୁ "ସନ୍ତୁଷ୍ଟ"; କାରଣ ଏହାର କୌଣସି ସାମ୍ରାଜ୍ୟବାଦୀ ଅଭିଳାଷ ନାହିଁ ଓ ଏହା ସ୍ୱତନ୍ତ୍ର ଆର୍ଥିନୀତିକ ନୀତି ଅନୁସରଣ କରୁଛି ।

ଜର୍ମାନୀ ନିଜର କଞ୍ଚାମାଲ ଅନ୍ୟତ୍ର ନ ପାଇବାରୁ ଯେ ଉପନିବେଶ ଚାହୁଁଛି ତାହା ନୁହେଁ, କାରଣ କିଣିବା ନିମନ୍ତେ ତା ନିକଟରେ ଖୋଲା ବଜାର ରହିଛି, ମାତ୍ର ନିଜର ସୁବିଧା ସକାଶେ ସେ ଏହି ଉପନିବେଶମାନଙ୍କର ଲୋକଙ୍କର ଲୋକଙ୍କୁ ଶୋଷଣ କରିବାକୁ ଚାହେଁ । ସେ ସେମାନଙ୍କୁ ତାର ମୂଲ୍ୟହ୍ରାସ ମୁଦ୍ରା, ତଥାକଥିତ (Frozen) ମାର୍କଦ୍ୱାରା ପରିଶୋଧ କରିବାକୁ ଚାହେଁ ଏବଂ ତା ପରେ ଜର୍ମାନ ମାଲ କିଣିବା ନିମନ୍ତେ ସେମାନଙ୍କୁ ବାଧ୍ୟ କରିବାକୁ ଚାହେଁ ।

ଗତ ପାଞ୍ଚ ବର୍ଷର କେତେକ ପ୍ରଧାନ ଘଟଣା ଓ ସେଥିର ଫଳାଫଳ ବିଷୟରେ ମୁଁ ତୋତେ ଲେଖିଛି । କେଉଁଠି ବନ୍ଦ କରିବାକୁ ହେବ ମୁଁ ଜାଣେ ନା କାରଣ ପ୍ରତ୍ୟେକ ସ୍ଥାନରେ ଆନ୍ଦୋଳନ ପରିବର୍ତ୍ତନ ଓ ସଂଘର୍ଷ ଲାଗିଛି ଏବଂ ସ୍ଥାନୀୟ ବା ଜାତୀୟଧାରାରେ ପୃଥିବୀ ସମସ୍ୟା ବିଚାର କରିବା, ପୁଣି ତାର ସମାଧାନ କରିବା ଅସମ୍ଭବ ହୋଇ ପଡ଼ୁଛି । ବିଶ୍ୱ ସମାଧାନ ଆବଶ୍ୟକ । ଏଥି ଭିତରେ ପୃଥିବୀ ଖରାପରୁ ଆହୁରି ଖରାପ ଆଡ଼କୁ ଯାଉଛି ଏବଂ ଯୁଦ୍ଧ ଓ ହିଂସା ପ୍ରାଧାନ୍ୟ ଲାଭ କରୁଛି । ଆଧୁନିକ ଜଗତର ଅହଙ୍କାରୀ ନେତା ଇଉରୋପ ଆଜି ବର୍ବରତାକୁ ଫେରିଯାଉଛି । ତାର ପୁରୁଣା ଶାସକ ଶ୍ରେଣୀ ନପୁଂସକ ଏବଂ ଯେଉଁସବୁ ବିପଦ ତାକୁ ଆବୃତ କରିଛି, ସେଥିରୁ ବାହାରିବା ନିମନ୍ତେ ସେମାନେ ସମ୍ପୂର୍ଣ୍ଣ ଅସମର୍ଥ ।

ମ୍ୟୁନିକ ଚୁକ୍ତି ପୃଥିବୀର ଅସ୍ଥାୟୀ ସାମଞ୍ଜସ୍ୟ ଓଲଟପାଲଟ କରିଦେଲା । ଦକ୍ଷିଣ ପୂର୍ବ ଇଉରୋପ ନାନା ଶକ୍ତି ମଧ୍ୟରେ ଟଳପଡ଼ିଲା ଏବଂ ପ୍ରତ୍ୟେକ ଦେଶରେ ନାନା ଚକ୍ରାନ୍ତ ବଢ଼ିଲା । ଇଉରୋପର ଶ୍ରେଷ୍ଠ ରାଜ୍ୟସବୁ ଯାହାକୁ ଓସ୍ଲୋ ଗୋଷ୍ଠୀ ବୋଲି କହନ୍ତି (ଡେନମାର୍କ, ନରଓ୍ୱେ, ସୁଇଡେନ, ଫିନଲାଣ୍ଡ, ନେଦାରଲାଣ୍ଡ, ବେଲଜିୟମ ଓ ଲକ୍ସେମବର୍ଗ), ତାଙ୍କ

ପକ୍ଷରେ ବ୍ରିଟେନର ବନ୍ଧୁତା କୌଣସି ମୂଲ୍ୟ ନ ଥିବା ଉପଲବ୍ଧି କରି ନିଜର ନିରପେକ୍ଷତା ଘୋଷଣା କରିଛନ୍ତି ଏବଂ କୌଣସି ପ୍ରକାର ସମଷ୍ଟିଗତ ଦାୟିତ୍ୱ ନେବା ନିମନ୍ତେ ଅସ୍ୱୀକାର କରୁଛନ୍ତି । ସୁଦୂର ପ୍ରାଚ୍ୟରେ ଜାପାନ ଅଧିକ ଆକ୍ରମଣଶୀଳ ହୋଇଛି, କ୍ୟାଣ୍ଟନ ଦଖଲ କରିଛି ଏବଂ ହଂକଂରେ ବ୍ରିଟିଶ ସ୍ୱାର୍ଥ ସହିତ ସଂଘର୍ଷ ଲାଗିଛି; ପାଲେଷ୍ଟାଇନରେ ପରିସ୍ଥିତି ଦ୍ରୁତବେଗରେ ଖରାପଆଡ଼କୁ ଯାଉଛି । ଇଂଲଣ୍ଡ ଓ ଆମେରିକା ଭିତରେ ସମ୍ବନ୍ଧ ପୂର୍ବାପେକ୍ଷା ଅଧିକ ଉଦାସୀନ ହୋଇଗଲାଣି । ଚେମ୍ବରଲେନ ଫାସିଷ୍ଟ ଶକ୍ତିମାନଙ୍କ ସହିତ ସାଙ୍ଗ ଯୋଡ଼ିଲାବେଳକୁ ସଭାପତି ରୁଜଭେଲ୍ଟ ନାଜି ଲକ୍ଷ୍ୟ ଓ କୌଶଳର ନିନ୍ଦା କରୁଛନ୍ତି । ଇଉରୋପୀୟ ସଂଗ୍ରାମ ଓ ବ୍ରିଟେନ ଓ ଫ୍ରାନ୍ସର ଫାସିଷ୍ଟ ଅନୁଗମଣ ପ୍ରତି ମନୋଭାବରେ ବିରକ୍ତ ହୋଇ ଆମେରିକା ଅଲଗା ହୋଇ ରହିଛି ଏବଂ ତା' ସଙ୍ଗେ ସଙ୍ଗେ ବିରାଟ ଆକାରରେ ଅସ୍ତ୍ର ନିର୍ମାଣ କାର୍ଯ୍ୟ ଚଳାଇଛି । ସୋଭିଏଟ ଇଉନିଅନର ଅବସ୍ଥା ମଧ୍ୟ ସେହିପରି । ପଶ୍ଚିମରେ ମିତ୍ରତା ଓ ଅନାକ୍ରମଣ ଚୁକ୍ତି ନୀତି ତାର କୃତକାର୍ଯ୍ୟ ହୋଇ ନାହିଁ ଏବଂ ସେ ହୁଏତ ଅଲଗା ରହିବାକୁ ବାଧ୍ୟ ହୋଇପାରେ । ତଥାପି ଆମେରିକା ଓ ରୁଷ ଉଭୟ ଜାଣନ୍ତି ଆଜିର ବିକ୍ଷିପ୍ତ ଦୁନିଆରେ କୌଣସି ପ୍ରକାର ଅଲଗା ବା ନିରପେକ୍ଷ ହୋଇ ରହି ହେବ ନାହିଁ ଏବଂ ଯଦି ସଂଗ୍ରାମ ଲାଗେ ତେବେ ଏଥି ଭିତରକୁ ସେମାନେ ଟାଣି ହୋଇ ଆସିବାକୁ ବାଧ୍ୟ । ସେଥିପାଇଁ ସେମାନେ ନିଜକୁ ପ୍ରସ୍ତୁତ କରୁଛନ୍ତି ।

ଆମେରିକା—

ସଂଯୁକ୍ତ ରାଷ୍ଟ୍ରରେ ସଭାପତି ରୁଜ୍‌ଭେଲ୍ଟଙ୍କ ଆଭ୍ୟନ୍ତରୀଣ ନୀତି ଅନେକ ବାଧା ପାଇଛି ଏବଂ ସୁପ୍ରିମକୋର୍ଟ ଓ ପ୍ରତିକ୍ରିୟାଶୀଳ ଲୋକେ ତାଙ୍କର ପଥରେ ଅନ୍ତରାୟ ହୋଇଛନ୍ତି । ଏଥର ନିର୍ବାଚନରେ ତାଙ୍କର ପ୍ରଜାତନ୍ତ୍ରବାଦୀ ବିରୋଧୀଙ୍କ ସଂଖ୍ୟା କଂଗ୍ରେସରେ ବୃଦ୍ଧି ପାଇଛି । ତଥାପି ରୁଜ୍‌ଭେଲ୍‌ଟଙ୍କ ବ୍ୟକ୍ତିଗତ ଜନପ୍ରିୟତା ଓ ଆମେରିକାର ଜନସାଧାରଣଙ୍କ ଉପରେ ତାଙ୍କର ପ୍ରଭାବ ଅକ୍ଷୁଣ୍ଣ ରହିଛି ।

ରୁଜ୍‌ଭେଲ୍‌ଟ ଦକ୍ଷିଣ ଆମେରିକା ରାଜ୍ୟଗୁଡ଼ିକ ସହ ବନ୍ଧୁତା ସମ୍ବନ୍ଧ ସ୍ଥାପନ କରିବାର ନୀତି ଅନୁସରଣ କରିଛନ୍ତି । ମେକ୍ସିକୋରେ ସରକାର ଓ ଆମେରିକା ଏବଂ ବ୍ରିଟିଶ ତୈଳ ସ୍ୱାର୍ଥ ଭିତରେ ସଂଘର୍ଷ ଲାଗିଛି, ମେକ୍ସିକୋରେ ଏକ ସୁଦୂରଗାମୀ ବିପ୍ଳବ ଘଟିଛି, ଏଥିରେ ସ୍ଥାନୀୟ ବାସିନ୍ଦାଙ୍କ ଅଧିକାର ସାବ୍ୟସ୍ତ ହୋଇଛି । ଗିର୍ଜା, ତୈଳ ଓ ଭୂମିର ସ୍ଥାପିତ ସ୍ୱାର୍ଥସବୁ ତାଙ୍କର ଅନେକ ବିଶେଷ ଅଧିକାର ଓ ସୁବିଧା ହରାଇଛନ୍ତି ଏବଂ ସେହିହେତୁ ଏହି ପରିବର୍ତ୍ତନଗୁଡ଼ିକର ସେମାନେ ବିରୋଧୀ ।

ତୁର୍କୀ ଦେଶ—

ଏକ ସଂଗ୍ରାମଶୀଳ ଦୁନିଆ ଭିତରେ ଆଜି ତୁର୍କୀ ଏକମାତ୍ର ଶାନ୍ତିପୂର୍ଣ୍ଣ ଦେଶ ପରି ମନେ ହେଉଛି । ଏହାର କୌଣସି ବାହ୍ୟ ଶତ୍ରୁ ନାହିଁ । ଯୁଗ ଯୁଗ ଧରି ଗ୍ରୀସ ଓ ବଲକାନ ରାଜ୍ୟ

ଭିତରେ ଲାଗିଥିବା ବିବାଦ ନିଷ୍ପତ୍ତି ହୋଇଯାଇଛି । ସୋଭିଏଟ ଇଉନିଅନ ଓ ଇଂଲଣ୍ଡ ଭିତ୍ତରେ ଭଲ ସମ୍ବନ୍ଧ ସ୍ଥାପିତ ହୋଇଛି । ଆଲେକ୍‌ଜାଣ୍ଡ୍ରେଟାର ପ୍ରଶ୍ନ ଘେନି ଫ୍ରାନ୍‌ସ ସହିତ ସଂଘର୍ଷ ଲାଗିଥିଲା । ତୋର ମନେଥିବ, ଫ୍ରାନ୍‌ସ ସରକାର ସିରିଆକୁ ଯେଉଁ ପାଞ୍ଚଟି "ମାଣ୍ଡେଟ" ରାଜ୍ୟରେ ବିଭକ୍ତ କରିଥିଲା, ସେଥିରୁ ଏହା ଗୋଟିଏ ରାଜ୍ୟ । ଆଲେକ୍‌-ଜାଣ୍ଡ୍ରେଟାରେ ମୁଖ୍ୟଭାବରେ ତୁର୍କି ଅଧିବାସୀ ରହିଛନ୍ତି ଏବଂ ସେମାନେ ତୁର୍କୀର ମତ ଗ୍ରହଣ କଲା ଓ ସେଠାରେ ଏକ ସ୍ୱତନ୍ତ୍ର ରାଜ୍ୟ ସ୍ଥାପନ କଲା ।

ତେଣୁ ତୁର୍କି କେମାଲ ଆଟାଟର୍କଙ୍କ ବିଜ୍ଞ ପରିଚାଳନାରେ ନିଜର ଜାତିଗତ ଓ ଅନ୍ୟ ସମସ୍ୟାରୁ ମୁକ୍ତିଲାଭ କରି ଆଭ୍ୟନ୍ତରୀଣ ଉନ୍ନତିରେ ନିଜକୁ ନିଯୁକ୍ତ କଲା । ଆଟାଟର୍କ ତାଙ୍କ ଲୋକଙ୍କର ଉତ୍ତମ ସେବା କରି ଯାଉଥିଲେ ଏବଂ ୧୯୩୮ ନଭେମ୍ବର ୧୦ ତାରିଖରେ ମଲା-ବେଳକୁ ତାଙ୍କର ସୌଭାଗ୍ୟ ଯେ ତାଙ୍କର କାର୍ଯ୍ୟ ଅଲୌକିକ ଭାବରେ ସାଫଲ୍ୟମଣ୍ଡିତ ହୋଇଥିବାର ସେ ଜାଣିଗଲେ । ତାଙ୍କର ପୁରାତନ ସହକର୍ମୀ ଜେନେରାଲ ଇସମେଟ ଇନେନୁ ତୁର୍କୀର ସଭାପତି ହୋଇଛନ୍ତି ।

ଇସଲାମ—

ମଧ୍ୟପ୍ରାଚ୍ୟରେ ଇସଲାମର ଜୀବନ୍ତ ଅନୁପ୍ରେରଣାକୁ କେମାଲ ଆଟାଟର୍କ ନୂତନ ପ୍ରକାରେ ଗଢ଼ି ଦେଲେ । ଏହା ନୂତନ ପୋଷାକ ପରିଧାନ କଲା । ମଧ୍ୟକାଳୀନ ଯାତି ଶୃଙ୍ଖଳା ଏବଂ ଏହିରୂପେ ଅଜର ଦୁନିଆ ସହିତ ସମକକ୍ଷ ହୋଇଗଲା । ଆଟାଟର୍କଙ୍କ ଦୃଷ୍ଟାନ୍ତ ମଧ୍ୟ ପ୍ରାଚ୍ୟର ଇସଲାମୀୟ ରାଜ୍ୟମାନଙ୍କ ଉପରେ ଖୁବ୍ ପ୍ରଭାବ ପକାଇଲା ଏବଂ ଧର୍ମ ଅପେକ୍ଷା ଜାତୀୟବାଦ ଉପରେ ଭିତ୍ତି କରି ଆଧୁନିକ ଜାତୀୟ ରାଜ୍ୟସବୁ ସେଠାରେ ଗଢ଼ି ଉଠିଛନ୍ତି । ଏହାର ଫଳାଫଳ ଏ ପର୍ଯ୍ୟନ୍ତ ସମାନ ପରିମାଣରେ ଭାରତ ପରି ରାଜ୍ୟମାନଙ୍କରେ ପରିଲକ୍ଷିତ ହୋଇ ନାହିଁ । ଏଠାରେ ଅନ୍ୟମାନଙ୍କ ପରି ମୁସଲମାନ ଜନତା ସାମ୍ରାଜ୍ୟବାଦ କର୍ତ୍ତୃତ୍ୱ ଅଧୀନରେ ରହିଛନ୍ତି ।

ସଂଗ୍ରାମ ଭିତରେ—

ଇଉରୋପ ଓ ପ୍ରଶାନ୍ତ ମହାସାଗର ଆଜି ସଂଗ୍ରାମର ଦୁଇଟି ପ୍ରଧାନ କ୍ଷେତ୍ର ଏବଂ ଏହି ଦୁଇ ବିସ୍ତୃତ ଅଞ୍ଚଳରେ ଆକ୍ରମଣଶୀଳ ଫାସିଜମ, ଗଣତନ୍ତ୍ର ଓ ସ୍ୱାଧୀନତାକୁ ଦଳି ଦେଇ ପୃଥିବୀରେ ପ୍ରାଧାନ୍ୟ କରିବାକୁ ଚାହୁଁଛି । ଏକପ୍ରକାର ଫାସିଷ୍ଟ ଅନ୍ତର୍ଜାତୀୟ ଗଢ଼ା ଉଠୁଛି, ଏହା କେବଳ ଯେ ଘୋଷଣା ନ କରି ପ୍ରକାଶ୍ୟ ଯୁଦ୍ଧ ଚଳାଉଛି ତାହା ନୁହେଁ, ମାତ୍ର ସର୍ବଦା ବିଭିନ୍ନ ଦେଶରେ ଚକ୍ରାନ୍ତ କରୁଛି ଓ ଗଣ୍ଡଗୋଳ ଲଗାଉଛି । ତାହାହେଲେ ହସ୍ତକ୍ଷେପ କରିବ

କ୍ରମରେ ଏହା ସୁଯୋଗ ପାଇସିବ । ପ୍ରକାଶ୍ୟ ଭାବରେ ଯୁଦ୍ଧ ଓ ହିଂସାର ଗୌରବ ଗାନ କରାଯାଇଛି ଏବଂ ଅଭୂତପୂର୍ବ ଆକାରରେ ମିଥ୍ୟା ପ୍ରଚାର ଚାଲିଛି । କମ୍ୟୁନିଜମ ବିରୋଧ ଧ୍ୱନିର ଆବରଣରେ ଏହା ସାମ୍ରାଜ୍ୟବାଦୀ ମତଲବ ହାସଲ ଲାଗି ଅଗ୍ରସର ହେଉଛି, ଯଦିଓ ଆନ୍ତର୍ଜାତିକ କମ୍ୟୁନିଜମ କୌଣସିଠାରେ ଆକ୍ରମଣଶୀଳ ହୋଇ ନାହିଁ ଏବଂ ଅନେକ ବର୍ଷ ହେଲା ପୃଥିବୀର ଶାନ୍ତି ଓ ଗଣତନ୍ତ୍ର ପକ୍ଷରେ ଯାଉଛି । ସଂଯୁକ୍ତ ରାଷ୍ଟ୍ର ଆମେରିକାରେ ନାଜି ଷଡ଼ଯନ୍ତ୍ର ଓ ବିପ୍ଳବ ସବୁ ହୋଇଛି । ୧୯୩୭ ଡିସେମ୍ବରରେ ଫ୍ରାନ୍ସରେ ପ୍ରଜାତନ୍ତ୍ର ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ହୋଇଥିବାର ଆବିଷ୍କାର କରାଗଲା । ଜର୍ମାନୀ ଓ ଇଟାଲୀରୁ ଅସ୍ତ୍ର ସାହାଯ୍ୟ ପାଇ କଗୁଆଲଡ଼ସ୍ (Cagoulards) (ବା ଏମାନଙ୍କୁ ହୁଡ଼େଡ଼ମେନ ବୋଲି କହନ୍ତି) ଦ୍ୱାରା ଏହା ସଂଗଠିତ ହୋଇଥିଲା । ଏହିସବୁ ଲୋକେ ବୋମା ନିକ୍ଷେପ ଓ ହତ୍ୟାକାଣ୍ଡ କରିଥିଲେ । ଇଂଲଣ୍ଡରେ ପ୍ରଭାବଶାଳୀ ଦଳସବୁ ଫାସିଷ୍ଟ ଢଙ୍ଗରେ ବ୍ରିଟିଶ ବୈଦେଶିକ ନୀତି ଉପରେ ପ୍ରଭାବ ପକାଇଲେ ।

ଏହି ଆନ୍ତର୍ଜାତିକ ଫାସିଜମ କେବଳ ଯେ ଅତି ଚରମ ଆକାରର ସାମ୍ରାଜ୍ୟବାଦ ତାହା ନୁହେଁ, ମାତ୍ର ମଧ୍ୟଯୁଗ ପରି ଏହା ଧର୍ମ ସଂକ୍ରାନ୍ତ ଓ ଜାତିଗତ ବିବାଦ ଜାତ କରାଉଛି । ଜର୍ମାନୀରେ କାଥଲିକ୍ ଗିର୍ଜା ଓ ପ୍ରୋଟେଷ୍ଟାଣ୍ଟ ଉଭୟଙ୍କୁ ଦମନ କରାଯାଇଛି । ଜର୍ମାନୀରେ ଏବଂ ପରେ ଇଟାଲୀରେ ଜାତୀୟ ଭାବକୁ ଗୌରବମଣ୍ଡିତ କରାଯାଉଛି ଏବଂ ଇହୁଦୀମାନେ ଓ ଇହୁଦୀଙ୍କର ବଂଶଧରମାନଙ୍କୁ ଏପରି ବିନା ଉତ୍ତେଜନାରେ ଓ ବୈଜ୍ଞାନିକ ନୃଶଂସତା ପ୍ରୟୋଗ କରି ଲୋପ କରାଯାଉଛି । ଇତିହାସରେ ଏହାର ଆଉ ତୁଳନା ନାହିଁ । ୧୯୩୮ ନଭେମ୍ବର ପ୍ରଥମ ଭାଗରେ ପୋଲାଣ୍ଡର ଜଣେ ଯୁବକ ଇହୁଦୀ ନିଜ ଜାତିର କ୍ରୁର ଦମନରେ ଉନ୍ମତ୍ତ ହୋଇ ପ୍ୟାରିସରେ ଜଣେ ଜର୍ମାନୀ କୂଟନୀତିଜ୍ଞଙ୍କୁ ହତ୍ୟା କଲା । ଏହା ଏକ ବ୍ୟକ୍ତିବିଶେଷର କାର୍ଯ୍ୟ, କିନ୍ତୁ ଏହି ଘଟଣା ଘଟିବା ପରେ ପରେ ହଠାତ୍ ଜର୍ମାନୀରେ ସମଗ୍ର ଇହୁଦୀ ଅଧିବାସୀଙ୍କ ବିରୁଦ୍ଧରେ ସରକାରୀ ଭାବରେ ଓ ସଂଗଠିତ ଆତଙ୍କ ରାଜତ୍ୱ ଚାଲିଲା । ଦେଶର ପ୍ରତ୍ୟେକ ଇହୁଦୀ ଧର୍ମମନ୍ଦିରକୁ ପୋଡ଼ି ଦିଆଗଲା, ଇହୁଦୀ ଦୋକାନସବୁ ଭାଙ୍ଗି ଦିଆଗଲା; ବିରାଟ ଆକାରରେ ଲୁଟ କରାଗଲା; ସାଧାରଣ ରାସ୍ତାରେ ଓ ଘର ଭିତରେ ନରନାରୀଙ୍କ ଉପରେ ଅଗଣିତ ପାଶବିକ ଅନାଚାର କରାଗଲା । ନାଜି ନେତାମାନେ ଏସବୁର ସଫେଇ ଗାଇଲେ ଏବଂ ଏହା ସାଙ୍ଗକୁ ପୁଣି ଜର୍ମାନୀର ଇହୁଦୀଙ୍କ ଉପରେ ୮ କୋଟି ପାଉଣ୍ଡ ଜୋରିମାନା ବସିଲା ।

ଆତ୍ମହତ୍ୟା, ପଳାୟନ, ଦୁଃଖିତ, ନିର୍ଯ୍ୟାତିତ ଓ ଗୃହଶୂନ୍ୟ ଲୋକସବୁ ବିରାଟ ଶୋଭା-ଯାତ୍ରା କରି ହୃଦୟରେ ଯୁଗଯୁଗର ବିସ୍ମୃତ ଦୁଃଖ ବହନ କରି ଅସୀମ ଶୋଭାଯାତ୍ରାରେ ଚାଲିବାକୁ ଲାଗିଲେ—କେଉଁଠିକି ? ଆଜି ପୃଥିବୀ ଆଶ୍ରିତ ଲୋକପୂର୍ଣ୍ଣ—ଇହୁଦୀ, ସୁଡେଟନ ଅଞ୍ଚଳରୁ ଜର୍ମାନ ସୋସାଲ ଡେମୋକ୍ରାଟ, ଫ୍ରାଙ୍କୋ ଅଧିକୃତ ଅଞ୍ଚଳରୁ ସ୍ପେନର କୃଷକ,

ଚୀନା ଓ ଆବସିନିଆ ବାସୀ ପଳାଇ ଆସିଛନ୍ତି । ଏଗୁଡ଼ିକ ନାଜିବାଦ ଓ ଫାସିଜିମ୍‌ର ଚକ୍ରଫଳ । ପୃଥିବୀ ଆର୍ତ୍ତନାଦରତ ହୋଇଛି ଏବଂ ପଳାତକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଅସଂଖ୍ୟ ଅନୁଷ୍ଠାନ ଗଢ଼ି ଉଠୁଛି । ତଥାପି ଇଂଲଣ୍ଡ ଓ ଫ୍ରାନ୍‌ସର ତଥାକଥିତ ଗଣତନ୍ତ୍ର ସରକାର ନାଜି ଜର୍ମାନୀ ଓ ଫାସିଷ୍ଟ ଇଟାଲୀ ସହିତ ବନ୍ଧୁତା ଓ ସହଯୋଗ ନୀତି ଅନୁସରଣ କରିଛନ୍ତି ଏବଂ ଏହିରୂପେ ସେମାନେ ଫାସିଷ୍ଟ ଆତଙ୍କବାଦ, ସଭ୍ୟତା ଓ କର୍ମିସ୍ଥତାର ଧ୍ୱଂସ ଏବଂ ସହସ୍ର ସହସ୍ର ମାନବଙ୍କୁ ଗୃହଶୂନ୍ୟ ବା ରାଜ୍ୟହୀନ ନିରାଶ୍ରୟରେ ପରିଣତ ହେବାକୁ ଉତ୍ସାହିତ କରୁଛନ୍ତି । ଫାସିଷ୍ଟ ଶତ୍ରୁର ଯଦି ଏହା ହିଁ ଉଦ୍ଦେଶ୍ୟ ହୋଇଥାଏ, ତେବେ ଗାନ୍ଧିଜୀ କହିଲାପରି "ନିଷ୍ଠୁର" ଜର୍ମାନୀ ସହିତ କୌଣସି ମିତ୍ରତା ହୋଇପାରେ ନା । ଯେଉଁ ଦେଶ ନ୍ୟାୟ ଓ ଗଣତନ୍ତ୍ର ଲାଗି ଛିଡ଼ା ହୋଇଛି ଏବଂ ଯେଉଁ ଦେଶ ଏ ଦୁଇଟିର ଜଣାଶୁଣା ଶତ୍ରୁ ତାଙ୍କ ଭିତରେ ମିତ୍ରତା କିପରି ହୋଇପାରେ କି ? ଅଥବା ଇଂଲଣ୍ଡ ସଶସ୍ତ୍ର ଡିକଟେଟର ଶାସନ ଓ ଏହାର ମତଲବ ପାଇଁ ଗର୍ବ କରୁଛି କି ?

ଇଂଲଣ୍ଡ ଓ ଫ୍ରାନ୍‌ସ ଯଦି ଫାସିଷ୍ଟ ଶତ୍ରୁମାନଙ୍କର ଅନୁଗ୍ରହାକାଙ୍କ୍ଷୀ ଓ ରକ୍ଷକ ସାଜିଲେ ତେବେ କେନ୍ଦ୍ର ଓ ଦକ୍ଷିଣପୂର୍ବ ଇଉରୋପର ଶ୍ରେଷ୍ଠ ରାଜ୍ୟସବୁ ଫାସିଷ୍ଟ ଜାଲ ଭିତରେ ସମ୍ପୂର୍ଣ୍ଣରୂପେ ପଡ଼ିଯିବାଟା ଆଶ୍ଚର୍ଯ୍ୟ କଥା କଣ ! ପ୍ରକୃତରେ ସେଗୁଡ଼ିକ ଶୀଘ୍ର ଫାସିଜିମ୍‌ର ଅଧୀନସ୍ଥ ରାଜ୍ୟରେ ପରିଣତ ହୋଇ ଯାଇଛନ୍ତି, ନାଜି ଜର୍ମାନୀ ପ୍ରଧାନ ହୋଇ ରହିଛି । କାରଣ ଜର୍ମାନୀ କୌଶଳରେ ଇଟାଲୀକୁ ଚାପି ଯାଇଛି ଏବଂ ଫାସିଷ୍ଟ ମିଳନରେ ଇଟାଲୀ ଏକ କ୍ଷୁଦ୍ର ଭାଗୀଦାରରୂପେ ରହିଛି । ଜର୍ମାନୀ ଓ ଇଟାଲୀ ଉଭୟ ଉପନିବେଶ ବଢ଼ାଇବା ଲାଗି ଦାବୀ କରୁଛନ୍ତି । କିନ୍ତୁ ଜର୍ମାନୀର ପ୍ରକୃତ ସ୍ୱପ୍ନ ହେଉଛି ପୂର୍ବ ଦିଗକୁ ଇଉକ୍ରେନ ଓ ସୋଭିଏତ୍ ଇଉନିୟନ ଆଡ଼କୁ ବିସ୍ତୃତି ଲଭିବା । ଇଂଲଣ୍ଡ ଓ ଫ୍ରାନ୍‌ସ ସେମାନଙ୍କର ସବୁ ଅଧିକାର ରକ୍ଷାରେ ସାହାଯ୍ୟ କରିପାରେ ବୋଲି ଅଳୀକ ବିଶ୍ୱାସରେ ଜର୍ମାନୀର ଏହି ସ୍ୱପ୍ନକୁ ଉତ୍ସାହିତ କରିବାର ସମ୍ଭାବନା ରହିଛି ।

ଦୁଇଟି ବିଶାଳ ଦେଶ—ସୋଭିଏଟ ଇଉନିୟନ ଓ ସଯୁକ୍ତରାଷ୍ଟ୍ର ଆମେରିକା ଛିଡ଼ା ହୋଇଛି । ଆଧୁନିକ ଜଗତର ଏଗୁଡ଼ିକ ଅତି କ୍ଷମତାଶାଳୀ ଦେଶ, ସେମାନଙ୍କର ସୁବିସ୍ତୃତ ରାଜ୍ୟ ଭିତରେ ପ୍ରାୟ ଆତ୍ମନିର୍ଭରଶୀଳ ଅପରାଜିତ । ବିଭିନ୍ନ କାରଣରୁ ଉଭୟ ଫାସିଜିମର ବିରୋଧୀ । ଇଉରୋପର ସୋଭିଏଟ ରୁଷ ଫାସିଜିମ୍‌ର ପ୍ରଧାନ ପ୍ରତିବନ୍ଧକ ରୂପେ ରହିଛି, ତାହା ଯଦି ଧ୍ୱଂସ ପାଇଯାଏ, ତାହାହେଲେ ଫ୍ରାନ୍‌ସ ଇଂଲଣ୍ଡ ସହିତ ଇଉରୋପରେ ଗଣତନ୍ତ୍ର ସମ୍ପୂର୍ଣ୍ଣ ଲୋପ ହୋଇଯିବ । ସଯୁକ୍ତରାଷ୍ଟ୍ର ଇଉରୋପରୁ ବହୁତ ଦୂରରେ ଏବଂ ସେଠାରେ ହସ୍ତକ୍ଷେପ ସହଜରେ କରିପାରିବ ନାହିଁ ଓ ତାହାର କିଛି ସେପରି ଅଭିଳାଷ ନାହିଁ । କିନ୍ତୁ ଯଦି କେତେବେଳେ ଇଉରୋପ ବା ପ୍ରଶାନ୍ତ ମହାସାଗରରେ ଏହି ହସ୍ତକ୍ଷେପ ଆସି ପଡ଼ିଲେ ତେବେ ଆମେରିକାର ପ୍ରବଳ ଶକ୍ତି ନିଜର ପରିଚୟ ଅବଶ୍ୟ ଦେବ ।

ସ୍ୱାଧୀନତା ପକ୍ଷରେ ମଧ୍ୟ ଭାରତ ଓ ପ୍ରାଚ୍ୟଦେଶର ଜାଗ୍ରତ ଗଣତନ୍ତ୍ରସବୁ ରହିଛନ୍ତି ଏବଂ ବ୍ରିଟିଶ ଡୋମିନିଅନରୁ କେତେକ ବ୍ରିଟିଶ ସରକାର ଅପେକ୍ଷା ବହୁତ ଅଧିକ ଅଗ୍ରଗାମୀ । ଆଜି ଗଣତନ୍ତ୍ର ଓ ସ୍ୱାଧୀନତା ଗୁରୁତର ବିପଦରେ ପଡ଼ିଛି ଏବଂ ତାର ତଥାକଥିତ ବନ୍ଧୁ ପକ୍ଷରେ ଛୁରିକା ଆଘାତ କରୁଥିବାରୁ ଏହି ବିପଦ ଆହୁରି ଅଧିକ ହୋଇଛି । କିନ୍ତୁ ସ୍ପେନ ଓ ଚୀନ ପ୍ରକୃତ ଗଣତନ୍ତ୍ର ଭାବରେ ଅଦ୍ଭୁତ ଓ ପ୍ରେରଣାଦାୟକ ଦୃଷ୍ଟାନ୍ତ ଦେଖାଇଛନ୍ତି ଏବଂ ସୁନ୍ଦର ବିଶ୍ୱାସିକା ମଧ୍ୟରେ ଋଷିଆ ରାଜ୍ୟରେ ଏକ ନୂତନ ଜାତି ଗଢ଼ି ଉଠୁଛି ଏବଂ ଜାତୀୟ ଜୀବନ ଓ କାର୍ଯ୍ୟକଲାପର ଅନେକ କ୍ଷେତ୍ରରେ ପୁନରୁଦ୍ଧାର ଓ ପୁନର୍ଜାଗରଣ ଲାଗି ରହିଛି ।

୧୯୩୫ରେ ଆବିସିନିଆ ଆକ୍ରମିତ ହେଲା, ୧୯୩୬ରେ ସ୍ପେନ ଆକ୍ରମିତ ହେଲା, ୧୯୩୭ରେ ପୁନର୍ବାର ଚୀନ ଆକ୍ରମିତ ହେଲା, ୧୯୩୮ରେ ଅଷ୍ଟ୍ରିଆ ଉପରେ ଚଢ଼ାଉ ହେଲା ଏବଂ ନାଜୀ ଜର୍ମାନୀଦ୍ୱାରା ମାନଚିତ୍ରରୁ ଏହା ଲୋପ ପାଇଗଲା ଓ ଚେକୋସ୍ଲୋଭାକିଆକୁ ଭାଙ୍ଗି ଦିଆଯାଇ ଏକ କରଦ ରାଜ୍ୟରେ ପରିଣତ କରାଗଲା । ପ୍ରତ୍ୟେକ ବର୍ଷ ନୂଆ ବିପତ୍ତି ପୂର୍ଣ୍ଣ-ଭାବରେ ଆସୁଛି । ଆମେ ଯେଉଁ ୧୯୩୯ର ଦ୍ୱାରମୁଖରେ ରହିଛେ, ତାର ଅବସ୍ଥା କ'ଣ ହେବ ? ଏହା ଆମକୁ ଓ ଦୁନିଆକୁ କ'ଣ ହେବ ?

———